ଆତ୍ମଲିପି

# ହଜିଲା ଦିନ

ମଂଗଳୁ ଚରଣ ବିଶ୍ୱାଳ

■ ଆତ୍ମଲିପି :
ହଜିଲା ଦିନ

■ ରଚନା :
ମଂଗଲୁ ଚରଣ ବିଶ୍ୱାଳ

■ ପ୍ରଥମ ପ୍ରକାଶ :
୨୦୦୦

■ ସଂପାଦନା :
ଅମିତାଭ ବିଶ୍ୱାଳ



■ ପାଣ୍ଡୁଲିପି ପ୍ରସ୍ତୁତି
ଲକ୍ଷ୍ମୀନାରାୟଣ ହୋତା
ପ୍ରଶାନ୍ତ କୁମାର ବିଶ୍ୱାଳ

■ ପ୍ରକାଶକ
ପ୍ରଦୀପ କୁମାର ପାଢ଼ୀ
ସାରସ୍ୱତ ପୁସ୍ତକ ଭଣ୍ଡାର
ଗୋଲବଜାର, ସଂବଲପୁର

■ ମୁଦ୍ରଣ
ଇମ୍ପ୍ରେସନ୍ସ, ସମ୍ବଲପୁର

■ ମୂଲ୍ୟ :
୧୫୦/

■ **Autobiography :**
**HAZILA DINA**

■ **By :**
**Mangalu Charan Biswal**

■ **First Impression :**
**2000**

■ **Editing :**
**Amitabh Biswal**



■ **Script-Preparation :**
**Laxminarayan Hota**
**Prasanta Kumar Biswal**

■ **Publisher :**
**Pradeep Kumar Padhee,**
**Saraswat Pustak Bhandar**
**Golebazar, Sambalpur**

■ **Print :**
**Impression, Sambalpur**

■ **Price :**
**Rs. 150/-**

## ॥ ଉତ୍ସର୍ଗ ॥

ମୋର ପରମ ବଂଧୁ
ସ୍ୱର୍ଗତ ନିର୍ମଳ ଚନ୍ଦ୍ର ପାଢୀଙ୍କୁ
ମୋ ଜୀବନର ଏ ସାରସ୍ୱତ କୃତିକୁ
ସମର୍ପଣ କରେ।

*ମଙ୍ଗଳୁ ଚରଣ ବିଶ୍ୱାଳ*

# ॥ ମୁଖଡ଼ା ॥

ଶ୍ରୀଯୁକ୍ତ ମଙ୍ଗଳୁ ଚରଣ ବିଶ୍ୱାଳ ଓଡ଼ିଆ ପାଠକଙ୍କ ପାଇଁ ଏକ ପରିଚିତ ନାମ। କେବଳ ଓଡ଼ିଆ ସାହିତ୍ୟ ନୁହେଁ, ସମ୍ବଲପୁରୀ ସାହିତ୍ୟକୁ ମଧ୍ୟ ତାଙ୍କ ଅବଦାନ ଉଲ୍ଲେଖଯୋଗ୍ୟ। ଉଭୟ ଭାଷାରେ ଦକ୍ଷତାର ସହିତ ସେ ଲେଖନୀ ଚାଳନା କରି ଆସୁଛନ୍ତି ଦୀର୍ଘ ଚାରିଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି। ବିଶେଷ କରି କିଛି ଜାଣିନଥିଲେ ହେଁ 'ମଙ୍ଗଳୁ ବିଶ୍ୱାଳ' କହିଲେ ଲୋକ ବୁଝନ୍ତି 'ଭୁଖା' ନାଟକ ଓ ଚଳଚ୍ଚିତ୍ରକୁ। ଏଇ ଚଳଚ୍ଚିତ୍ରଟିର କଥାବସ୍ତୁ ସଂଯୋଜନା ତାଙ୍କୁ ଆନ୍ତର୍ଜାତିକ କ୍ଷେତ୍ରରେ ସୁନାମ ଆଣିଦେଇଛି। ଯେମିତି 'ଭୁଖା' କହିଲେ ମଙ୍ଗଳୁ ବିଶ୍ୱାଳ ଆଉ ମଙ୍ଗଳୁ ବିଶ୍ୱାଳ କହିଲେ 'ଭୁଖା'। ଉଭୟେ ଉଭୟଙ୍କ ପାଇଁ ପ୍ରସିଦ୍ଧ। ମନେହୁଏ ଜୀବନସାରା ମଙ୍ଗଳୁ ବିଶ୍ୱାଳ ପ୍ରକୃତରେ ଭୁଖାଟିଏ। କଳାର ଭୁଖା। ଏଥିପାଇଁ ସବୁବେଳେ ହାଇଁପାଇଁ ହେଉଥାଏ ତାଙ୍କର ମନ। ଭୁଖା କଳାକାରର ମନର ଭୋକ ମେଣ୍ଟାଇବ କିଏ?

ସୁଖର କଥା ଏଇ ଭୁଖା କଳାକାର ଏବେ ଲେଖିଛନ୍ତି ତାଙ୍କର ଆତ୍ମଜୀବନୀ। ତାଙ୍କର ସଂଗ୍ରାମବହୁଳ ଜୀବନରେ ସେ ଅନୁଭବିଥିବା ପୃଥିବୀକୁ, ନଈ, ନାଳ, ପର୍ବତକୁ ଓ ମଣିଷ ସମାଜକୁ ଯେପରି ଅନୁଭବ କରିଛନ୍ତି ସେମିତି ଫୁଟାଇବାକୁ ଚେଷ୍ଟା କରିଛନ୍ତି। ସବୁ ମଣିଷ ତ ଏଇ ପୃଥିବୀ ଓ ମଣିଷକୁ ଦେଖନ୍ତି। ମାତ୍ର କଳାକାରଟିଏ ଦେଖିବାର ଭଙ୍ଗୀଟି ଅଲଗା। ପୁଣି ସବୁ କଳାକାରଙ୍କ ଦୃଷ୍ଟିଭଙ୍ଗୀ ସମାନ ନୁହେଁ। ଶ୍ରୀଯୁକ୍ତ ବିଶ୍ୱାଳ ଯେମିତି ଦେଖିଛନ୍ତି ତାଙ୍କର ପ୍ରିୟ ଜନ୍ମମାଟିକୁ, ସମାଜକୁ ତାହା ତାଙ୍କର ସ୍ୱାତନ୍ତ୍ର୍ୟକୁ ହିଁ ଚିହ୍ନିତ କରେ। ବେଳେବେଳେ ସେ ସାମାଜିକ ତ୍ରୁଟି ବିଚ୍ୟୁତିର ନିରାକରଣ ପାଇଁ ନିଜସ୍ୱ ମତାମତ ପ୍ରଦାନ କରି ଅଛନ୍ତି ଯାହା ଖୁବ୍ ଉପାଦେୟ। ବିଶେଷ କରି ବର୍ତ୍ତମାନର ଶିକ୍ଷାବ୍ୟବସ୍ଥା, ପ୍ରୌଢ଼ଶିକ୍ଷା ଇତ୍ୟାଦି ବିଷୟରେ ତାଙ୍କର ମତ ଖୁବ୍ ମୂଲ୍ୟବାନ।

ଏକ 'ନଷ୍ଟାଲ୍‌ଜିକ୍' ପ୍ରବୃତ୍ତିରୁ ଜନ୍ମନେଇଥାଏ ଆତ୍ମଜୀବନୀ। ଅତୀତକୁ ମନେ ପକାଇ ଖୋଜିବାରେ ଥାଏ ଆନନ୍ଦ। ସେଇ ଅତୀତର ସ୍ମୃତି, ପିଲାଦିନର ସ୍ମୃତି କାହାକୁ ବା ଛଟପଟ ନକରେ? କେବେ ଜଣେ କବି କହିଥିଲେ ସମସ୍ତ ଧନ ଦଉଲତ ବଦଳରେ ନିଜର ପିଲାଦିନକୁ ଫେରେଇ ଦେବାପାଇଁ। ଗାଁ ମାଟିର ଧୂଳିଖେଳର ଆମୋଦ ପ୍ରମୋଦର ସ୍ମୃତି ମୃତ୍ୟୁ ପର୍ଯ୍ୟନ୍ତ ଛଟପଟ କରୁଥାଏ ମଣିଷକୁ। ତା ସହିତ ତାର ପ୍ରିୟ ବଣ ବିଲ, ସ୍କୁଲ ଜୀବନନ, ହଜିଲା ମଣିଷର ସ୍ମୃତି ଘାଣ୍ଟିବାରେ ଥାଏ ଆନନ୍ଦ। ନମିଳୁ ପଛକେ କିଛି। ଶ୍ରୀଯୁକ୍ତ ବିଶ୍ୱାଳଙ୍କ ଭାଷାରେ – "ଆଜି ଜୀବନ ସନ୍ଧ୍ୟାରେ ମୁଁ ମୋର ହଜିଲା ଦିନ ଗୁଡ଼ିକୁ ଖୋଜୁଛି। ପାଇବି ଆଉ କଉଠି? ପାଇବାରେ ସିନା ଆନନ୍ଦ ଥାଏ। ଏବେ ଖୋଜିବାରେ ହିଁ

ମୋର ଆନନ୍ଦ।" ସେଇ ଆନନ୍ଦର ମୁଦ୍ରା ବହନ କରିଛି ଏଇ ଆତ୍ମଜୀବନୀ ଗ୍ରନ୍ଥର ପ୍ରତ୍ୟେକଟି ପୃଷ୍ଠା। ଗ୍ରନ୍ଥଟିକୁ ସୁଖପାଠ୍ୟ କରିଛି। କେବଳ ଲେଖକଙ୍କୁ କୁତୁକୁତୁ କରିନାହିଁ, ପାଠକକୁ ମଧ୍ୟ କୁତୁକୁତୁ କରିଛି। ତାଙ୍କ ନିଜର ଜନ୍ମମାଟି ପିତାପାଲି ଗ୍ରାମର ଯେଉଁ ସ୍ମୃତି ଚିତ୍ର ସ୍ଥାନ ପାଇଛି ତାହା ଏହାର ଉତ୍କୃଷ୍ଟ ଉଦାହରଣ। ନିପଟ ମଫସଲ ଛୋଟ ଗାଁଟିଏ ପିତାପାଲି। ମାତ୍ର ଲେଖକଙ୍କୁ ଛେଲିଆ ଦୁମୁରି ପାଖରେ ଅବସ୍ଥିତ ସେଇ ପିତାପାଲିର ପାଣି-ପବନ, ଆଲୁଅ-ଅନ୍ଧାର, ସଞ୍ଜ-ସକାଳ ସବୁ ମିଠା। 'ଛୁରାଲୁ ବେର୍ନା', 'ଚିର୍ଗୁନ୍ ମୁଡ଼ା', 'କଦେଲ୍ ମୁଡ଼ା' ଆଦି ଖେତମାଳ ଲକ୍ଷ୍ମୀଙ୍କ ଭଣ୍ଡାର। ସେଇ ଗାଁର ମଣିଷ ଓ ସମାଜର ଚିତ୍ର ଆହୁରି ଶକ୍ତିଶାଳୀ। ବିଶେଷ କରି ଏଇ ଗ୍ରନ୍ଥରେ ଲେଖକଙ୍କ ସ୍ମୃତି ଚର୍ଯ୍ୟାରେ ସ୍ଥାନ ପାଇଥିବା ସ୍ଥାନ ଓ ଚରିତ୍ର ଗୁଡ଼ିକ ଅତି ଆପଣାର ଲାଗନ୍ତି। ହୃଦୟକୁ ଛୁଇଁ ପାରନ୍ତି। ଅନ୍ୟଏକ ନାଳନ୍ଦା, ମାର୍କଣ୍ଡ ଓ ମୁଁ, ମୋ ମା', ପୁଇନ ମାଉସୀ ଇତ୍ୟାଦି ପରିଚ୍ଛେଦ ଯେଉଁ ଅନୁଭବ ଆଣେ ତାହା ଅନନ୍ୟ। ସେ ମୋର ବାଲ୍ୟବନ୍ଧୁ ହୋଇଥିବାରୁ ମୁଁ ମଧ୍ୟ ଏକ ଗୌଣଚିତ୍ର ହିସାବରେ ବେଳେ ବେଳେ ଆସିଛି। କୁସୁମ ପରଶରେ ପଟ ନିସ୍ତରେ!

ମଙ୍ଗଳୁବାବୁଙ୍କ ରଚନା ଶୈଳୀଟି ମନୋରମ। ସାଧାରଣ ପାଠକକୁ ଛୁଇଁ ପାରିବା ଭଳି। ପଶ୍ଚିମ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ସମଗ୍ର ଜନ୍ମ, ଜୀବନ ଓ ଜୀବିକା କଟାଇଥିବା ଜଣେ ଲେଖକର ଖାଣ୍ଟି ଓଡ଼ିଆ ଭାଷାର ପ୍ରୟୋଗରେ ଦକ୍ଷତା ଦେଖିଲେ ବିସ୍ମିତ ହେବାକୁ ପଡ଼େ। ସବୁଠୁ ମନୋରମ ପୁଣି ଏଇ ଭାଷା ଓ ଶୈଳୀ ଭିତରେ ସମ୍ବଲପୁରୀ-କୋଶଳୀ ଭାଷା ପ୍ରୟୋଗର ସଫଳତା। ଏଇ ଶୈଳୀ ଭିତରେ ପୁଣି ଦେଖିହୁଏ ମଙ୍ଗଳୁବାବୁଙ୍କ ମୁକୁଳା ରସିକତାକୁ। ବକ୍ତବ୍ୟରେ ଶାଣିତ ହାସ୍ୟ ଓ ବ୍ୟଙ୍ଗ ଏହାର ଅନନ୍ୟ ବିଭବ। ପରିଚ୍ଛେଦ ଗୁଡ଼ିକର ନାମକରଣରେ ଏ ରସିକତା ଓ ଦକ୍ଷତା ଫୁଟିଛି। ଯଥା 'ମେଘ ରଢ଼ିଲେ ଛୁଗୁଡ଼ା ଫୁଟେ, ହମଲୋଗ ହୀରାଖଣ୍ଡକେ ଭୂତ୍, ପଗଡ଼ି ତଳର ପାଗଳାମି, ଆଇଙ୍କ ପେଡ଼ି, ଢେ଼ଣାରେ ଲାଗିଲା ପର, ନାକଜାନି ଗୁନା ଦିଅ, ହାତୀକୁ ହୋମିଓପାଥି' ଇତ୍ୟାଦି ନାମମକରଣରେ ଏଇ ସାର୍ଥକତା ଲକ୍ଷ୍ୟ କରିହୁଏ।

ଆତ୍ମଜୀବନୀ କେବଳ ଲେଖକର ବ୍ୟକ୍ତିଗତ ଜୀବନର କାହାଣୀ ହେବା ଉଚ୍ଚିତ ନୁହେଁ। ଏଥିରେ ଲେଖକର ସମସାମୟିକ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅବସ୍ଥା ମଧ୍ୟ ଅନୁରୂପ ଭାବରେ ସ୍ଥାନ ପାଇଥାଏ। ଲେଖକର ସମସାମୟିକ ସମାଜପ୍ରତି ଦୃଷ୍ଟିଭଙ୍ଗୀ ନିର୍ଲିପ୍ତ ଭାବେ ପ୍ରକାଶ ପାଇଥାଏ। ଏ ଦୃଷ୍ଟିରୁ ଏଇ ଗ୍ରନ୍ଥଟି ମୋ ବିଚାରରେ ସାର୍ଥକ। ଓଡ଼ିଆ ସାହିତ୍ୟକୁ ମଙ୍ଗଳୁବାବୁଙ୍କ ଏକ ମଙ୍ଗଳ ଅବଦାନ।

"ତୁଳସି ଦୁଇ ପତ୍ରରୁ ବାସେ।"। ମଙ୍ଗଳୁ ବାବୁଙ୍କ ସାହିତ୍ୟର ବାସ୍ନା ଦୁଇ ପତ୍ରରୁ

ବାସିବାକୁ ଆରମ୍ଭ କରିଥିଲା । ସେତୁବନ୍ଧ ନିର୍ମାଣ କାର୍ଯ୍ୟରେ ଗୁଣ୍ଡୁଚି ମୂଷା ସାଙ୍କେତିକ ଭାବରେ ସାହାଯ୍ୟ କରିଥିବା କଥା ସମସ୍ତଙ୍କୁ ଜଣା । କିନ୍ତୁ ଗୁଣ୍ଡୁଚି ମୂଷାମାନେ ମିଶି ଗୋଟିଏ ଛୋଟ ସେତୁବନ୍ଧ ନିର୍ମାଣ କରିବା କେହି କଳ୍ପନା କରିପାରିବେ ନାହିଁ । ତଥାପି ୧୯୫୧ ମସିହାରେ ମନମୋହନ ମଧ୍ୟ ଇଂରାଜୀ ବିଦ୍ୟାଳୟ ଛାତ୍ରାବାସର ଅନ୍ତେବାସୀମାନେ ଗୁଣ୍ଡୁଚିମୂଷା ହେଲେବି ଗୋଟିଏ ମହତ୍ କାର୍ଯ୍ୟ କରିବାକୁ ସକ୍ଷମ ହୋଇଥିଲେ ଏବଂ ମଙ୍ଗଳୁ ବାବୁଙ୍କ ପ୍ରଥମ କବିତା ପୁସ୍ତିକା "ଆସିଲା ବସନ୍ତ ଫେରି" ପ୍ରକାଶ ପାଇଥିଲା । ଅଣେ, ଦି'ଅଣା, ଟଙ୍କାଏ, ଦୁଇଟଙ୍କା ଚାନ୍ଦାକରି ସେତେବେଳର ୩୨ ଟଙ୍କାରେ ବହିଟି ପକାଶ କଲୁ । କି ଆନନ୍ଦ । ସତେ ଯେମିତି ଗୋଟିଏ ରାଜ୍ୟ ଜୟ କରି ପକାଇଲୁ । ସେ କାଳର ଦୁଇ ପତ୍ରିଆ କବି ଆଜି ଏକ ବିରାଟ ଦ୍ରୁମ ରୂପେ ପ୍ରକଟିତ । ମଙ୍ଗଳୁ ଆତ୍ମ ଜୀବନୀ ଦ୍ରୁମର ଡ଼ାଳ କୁ ଡ଼ାଳ ବିଚ଼ରଣ କରିସାରିଲା ପରେ ଗୁଣ୍ଡୁଚ଼ି ମୂଷା ମନରେ ଆଜି ବି ସେଇ ଆନନ୍ଦ ।

(ଧ୍ରୁବରାଜ ନାଏକ)

କୁଳପତି

ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ଶ୍ରଦ୍ଧା ଓ ସମ୍ମାନ

| ପ୍ରଦାନକାରୀ ସଂସ୍ଥା | | |
|---|---|---|
| ଶିକ୍ଷା ଓ ସମାଜ କଲ୍ୟାଣ ବିଭାଗ, | | |
| ଭାରତ ସରକାର, ନୂଆଦିଲ୍ଲୀ | ଲେଖକ | ୧୦.୦୩.୭୩ |
| N.C.E.R.T., ନୂଆଦିଲ୍ଲୀ | ସଂସ୍କୃତି | ୦୩.୧୦.୭୭ |
| ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡ଼ | ସାହିତ୍ୟ | ୨୪.୧୨.୭୭ |
| ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର, | | |
| ହୀରାକୁଦ | କବିତା | ୨୧.୧୧.୮୨ |
| ଉଦୟପୁର, ରାଜସ୍ଥାନ | ସାହିତ୍ୟ | ୨୩.୦୬.୮୨ |
| ଫତେହ ସେକେଣ୍ଡେରୀ ସ୍କୁଲ, | | |
| ଉଦୟପୁର, ରାଜସ୍ଥାନ | ସଂଗୀତ | ୩୦.୦୬.୮୨ |
| ପୁରୀ ଜିଲ୍ଲା ସ୍କୁଲ, ପୁରୀ | ପରୀକ୍ଷା ସଂସ୍କାର | ୦୫.୦୧.୮୩ |
| ଦେବଗଡ଼ ନାଟ୍ୟକଳା ସଂସଦ, ଦେବଗଡ଼ | ନାଟକ | ୨୩.୦୧.୮୪ |
| ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ, | | |
| ନନ୍ଦପଡ଼ା | ନାଟକ | ୧୯.୦୯.୮୫ |
| ୫ମ ସଂବଲପୁରୀ ଲେଖକ ସମାରୋହ, | | |
| ବରଗଡ଼ | ସଂବଲପୁରୀ ସାହିତ୍ୟ | ୨୭.୧୧.୮୫ |
| ଲରମ୍ଭା ଉଚ୍ଚ ବିଦ୍ୟାଳୟ, ଲରମ୍ଭା | ଉତ୍ତମ ଛାତ୍ର | ୦୮.୦୯.୯୦ |
| ସିଦ୍ଧେଶ୍ୱରୀ ଧର୍ମସଂସଦ, ସଂବଲପୁର | କବିତା | ୦୯.୧୧.୯୦ |
| ସାଂସ୍କୃତିକୀ, ବରଗଡ଼ | କବିତା | ୦୧.୦୧.୯୧ |
| ସୃଷ୍ଟି, ସଂବଲପୁର | ନାଟକ | ୧୩.୦୪.୯୧ |
| ଡଃ ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷାନୁଷ୍ଠାନ, | | |
| ସଂବଲପୁର | ସଗଠନ | ୨୪.୦୧.୯୨ |
| ଅଭିନବ ସାହିତ୍ୟ ସଂସଦ, ଘେଁସ, ବରଗଡ଼ | କବିତା | ୦୧.୦୭.୯୩ |
| ରାଷ୍ଟ୍ରପତି, ନୂଆଦିଲ୍ଲୀ | ଶିକ୍ଷକତା | ୦୫.୦୯.୯୩ |
| ରୋଟାରି କ୍ଲବ, ସଂବଲପୁର | ଶିକ୍ଷକତା | ୧୯.୧୦.୯୩ |
| ଡ଼ଃ ପର୍ଶୁରାମ ମିଶ୍ର ଅଗ୍ରଗାମୀ ପ୍ରତିଷ୍ଠାନ, | | |
| ସଂବଲପୁର | ଅନୁଷ୍ଠାନ ପରିଚାଳନା | ୧୪.୦୩.୯୪ |
| ବରପାଲି ମହାବିଦ୍ୟାଳୟ, ବରପାଲି, ବରଗଡ଼ | ବାସନ୍ତୀ ସମ୍ମାନ | ୦୭.୧୧.୯୪ |

| | | |
|---|---|---|
| ଓଡ଼ିଶା ସାଂସ୍କୃତିକ ସମାଜ, ସଂବଲପୁର | ଶିକ୍ଷକତା | ୧୦.୧୨.୯୪ |
| ସମ୍ବଲପୁର ଯୁବକ ସଂଘ, | | |
| ସମଲେଶ୍ୱରୀ ମନ୍ଦିର | କୃତି ସନ୍ତାନ | ୦୩.୦୮.୯୫ |
| ସଂବଲପୁର ମାଧ୍ୟମିକ ଶିକ୍ଷକ ସଂଘ | ଶିକ୍ଷକତା | ୦୩.୦୩.୯୬ |
| ଶିକ୍ଷାମଣ୍ଡଳ ଶିକ୍ଷକ ସଂଘ, ସଂବଲପୁର | ଶିକ୍ଷକତା | ୦୩.୦୩.୯୬ |
| ସୁରଜମଲ ମହାବିଦ୍ୟାଳୟ, ରଂପେଲା, | | |
| ରେଙ୍ଗାଲି | ଗଙ୍ଗାଧର ସମ୍ମାନ | ୧୨.୦୮.୯୬ |
| ଚ଼ଂଲାପଥ, ଭୁବନେଶ୍ୱର | ଲେଖକ | ୧୯୯୮ |
| ମାଧ୍ୟମିକ ଶିକ୍ଷକ ସଂଘ, କଟକ | ଶିକ୍ଷକତା | ୧୧.୦୪.୯୮ |
| ପୁରୀ ମାଧ୍ୟମିକ ଶିକ୍ଷକ ସଂଘ, ପୁରୀ | ଶିକ୍ଷକତା | ୦୮.୧୧.୯୮ |
| ଓଡ଼ିଶା ସାହିତ୍ୟ ଏକାଡେମୀ | ସାମଗ୍ରିକ ସାହିତ୍ୟ | |
| | ସାଧନା | ୧୯୯୯ |
| ଡେବ୍ରିଗଡ଼ କଳା ସାହିତ୍ୟ ସଂସଦ, ଭଟଲି, | | |
| ବରଗଡ଼ | ଲେଖକ | ୨୬.୦୮.୯୯ |
| ଶ୍ରୀଶ୍ରୀ ମାନଧାତା ମହାଦେବ ବାବା ଟ୍ରଷ୍ଟବୋର୍ଡ଼ | ଶିକ୍ଷାପ୍ରେମୀ ଓ | |
| ଓ ତୃତୀୟ ନୟନ, ମାନେଶ୍ୱର | କଳାପ୍ରେମୀ | ୧୪.୦୯.୯୯ |
| ଓଡିଶା ସାହିତ୍ୟ ଏକାଡେମୀ | ସାମଗ୍ରିକ ସାହିତ୍ୟ | |
| | ସାଧନା | ୧୯୯୯ |
| ଡ଼ଃ ଘନଶ୍ୟାମ ରଥ ସାହିତ୍ୟ ସଂସଦ | | |
| ବୁଢ଼ାହିଲ, ସଂବଲପୁର | ସାମଗ୍ରିକ ସାଧନା | ୨୩.୨.୨୦୦୦ |

# ସାରସ୍ୱତ କୃତି

**କବିତା ସଙ୍କଳନ :**

| | |
|---|---|
| ଦରିଆପାରିର କବିତା | ୧୯୫୮/୧୯୭୧ |
| ଅନନ୍ୟା | ୧୯୬୩ |
| ପାଉଁଶ ତଳର ନିଆଁ | ୧୯୬୩ |
| ବରଫ ଦେଶର କନ୍ୟା | ୧୯୬୩ |
| ମାଳଶ୍ରୀ | ୧୯୬୩ |
| ମନଛାୟା | ୧୯୬୮ |
| ସାମ୍ନା | ୧୯୭୦ |
| ଆଲୋ ନିଦ ମାଉସୀ ଆ | ୧୯୭୬ |
| ରତ୍ନ ଲଜ୍ଜାମତୀ | ୧୯୮୮ |
| ଭିତର ବାହାର | ୧୯୮୯ |

**ଗଳ୍ପ ସଙ୍କଳନ :**

| | |
|---|---|
| ଅନ୍ଧାରର ଛବି | ୧୯୬୧ |
| ଅଗ୍ନିସମ୍ଭବ | ୧୯୬୨ |
| ଅନ୍ୟ ଦିଗନ୍ତ | ୧୯୭୯ |

**ଶିଶୁ ସାହିତ୍ୟ :**

| | |
|---|---|
| ଦେଖ କଉଁଠି ଆଡ଼ିଜଣ ଦେଶ | ୧୯୭୨/୧୯୯୦ |
| ତୁମର ପରି ପିଲାଟିଏ | ୧୯୮୯ |

**ଉପନ୍ୟାସ :**

| | |
|---|---|
| ଦି' ଧାର କୂଳ | ୧୯୬୧ |
| ସ୍ମୃତିମନ୍ତ୍ରା | ୧୯୬୩ |
| ବୁଭୁକ୍ଷୁ | ୧୯୬୫ |

**ପ୍ରବନ୍ଧ ସଙ୍କଳନ :**

| | |
|---|---|
| ଚିନ୍ତା ଓ ଚେତନା | ୧୯୭୪ |
| ଚୟନିକା | ୧୯୭୫ |
| ଜାଗୌରବ | ୧୯୮୯ |

## ଆକାଶବାଣୀ ନାଟକ :

ଉପନାୟିକା ୧୯୮୨
ଭୁଖା (ସମ୍ବଲପୁରୀ ଚଳଚ୍ଚିତ୍ର ନିର୍ମିତ) ୧୯୮୪
ଉଡଲା ପଟର୍ ବୁଡଲା ଡଙ୍ଗା ୧୯୮୫
ଭୁରା ୧୯୮୬
ଭୁଟିଆର ହଟିଆର ୧୯୮୬
ଦଦରା ଦର୍ପନ ୧୯୮୯
ଉଜଗୁଲାନ୍ ୧୯୯୦
ପାହାଡର ସ୍ବରଲିପି ୧୯୯୦
ସୁରେନ୍ଦ୍ର ସାଏ ୧୯୯୧
ମଁ ସମଲେଇ ୧୯୯୫
ମାଧବୀ ୧୯୯୫
ଛଉଲି ୧୯୯୬
ଡବୁଅ ୧୯୯୬

## ଆତ୍ମଜୀବନୀ :

ହଜିଲା ଦିନ ୨୦୦୦

# -ସୂଚୀ-

ପୃଷ୍ଠା

# ୧. ଜୀବନ ଏକ ନଈ

ହଜିଲେ ଖୋଜନ୍ତି। ଖୋଜିବାରେ କଷ୍ଟ। ପାଇବାରେ ଆନନ୍ଦ। ଏମିତି କିଏ ଅଛି କହ? ହଜିଲାକୁ ଖୋଜେ ନାହିଁ? ଖୁସି ନ ହୁଏ, ପାଇଲେ? ଆମ ଥିରପିଆ ଗଉଡ଼। ଗନ୍ଥୁ ଚରାଏ। ଗୋଟେ ଗୋରୁ। ଚରୁହା ହୋଇ ଗୋଠ ଛାଡ଼ିବ? ଉଁଚ ଠେଙ୍ଗାଟାକୁ ହଲାଇ ହାଁକି ଦବ ଯେ ଗୋରୁପଲ ଆପଣା ଛାଏଁ ବାଟକୁ ସଳଖିବେ। କେଉଁଠି କେମିତି ବାଛୁରୀଟିଏ ଗୋଠ ଛଡ଼ା ହେଲା, ଥିରପିଆ ଅନେଇଲା। ଆରେ! ସମୁକ ବାଛୁରୀଟାତ ନାହିଁ ! ଗୋଠଟି ଯାକ ଛାଡ଼ି ଦୌଡ଼ିଲା ପଛକୁ। ହଜା ଗୋଟିକୁ ନ ପାଇବାଯାଏ, ଖୋଜିଲା। ଖୋଜିବାରେ ହେଳା ନାଇଁ ତାର। ଗୋଠଟା ଯାଉ ଯୁଆଡ଼େ ଯିବ। ଖୋଜୁ ଖୋଜୁ ପାଇଲା। ହିଡ଼ ସେ ପାଖେ ହମା ହମା ହଉଛି। ସିଏ ଯେ ବୁଦୁ ବୁଦୁକିଆ ପତରା ଯାକ ଅଣ୍ଡାଳି ଦେଲାଣି। ବାଛୁରୀକୁ ଦେଖି ଖୁସିରେ ଫାଟି ପଡ଼ିଲା। ବାଛୁରୀଟାକୁ ଅଁକାଳ କରି ବୋହି ଆଣିଲା। ଗୋଠ ଭିତରେ ଛାଡ଼ିଦେଲା। ଯାହାକୁ ଭେଟିଲା କହିଲା। ବାଛୁରୀଟି ହଜିଥିଲା। ମିଳିଲା। ହଜା ଦରବ ପାଇବାରେ ଖୁସିର ସୀମା ନଥାଏ। ଖୁସିରେ ନାଚେ। ଉଛୁଳି ପଡ଼େ। ତାର ଖୁସି ଅନ୍ୟକୁ ବାଣ୍ଟେ। ଆଉ ମାନଙ୍କୁ ଖୁସି ହେବାକୁ କୁହେ।

ଦିନକର କଥା। ଆମ ସାନ୍ତାଣୀ ସକାଳୁ ସକାଳୁ କଣ ଖୋଜୁଥାନ୍ତି। ଘରସାରା କେତେ ଚିଜ ବିଛେଇ ପଡ଼ିଛି। ସାରାଘର ଅଣ୍ଡାଳି ସାରିଥିଲେ। ଆଲୁକୁଚି ମାଲୁକୁଚି ଜିନିଷପତର ସବୁ ତଳ ଉପର କଲେଣି। ପେରିରୁ କାଢ଼ିଲେ। ବାକ୍ସ ଉତାରିଲେ ସବୁ। ଆଲମାରିର ସବୁ ଖାଲିକଲେ। ଯଉଠି ଜିନିଷ ସେଇଠି ପୁଣି ରଖିଲେ। କଉଠି ରଖିଲି ଯେ! ମନକୁ ମନ କହିଲେ। ବାଆଁ ହାତରେ ରଖିଦେଲିକି! ନିଉଛୁଣା ମିଳୁଛି? ଅଡ଼ାରୁ କାଢ଼ିଲେ ଚଉତା ଶାଢ଼ୀ ସବୁ। ରେକରୁ ଯାହାଥିଲା ସବୁ ଫିଙ୍ଗିଲେ। ପିଲାଙ୍କ ବହି ବସ୍ତାନି, କମ୍ପାସ, ୱାଟର ବୋଟଲ, ପାନ ବଟୁଆ, ଜଳିଆମୁନା, ଜଳଖିଆ ଡ଼ବା, ରୁମାଲ ଗଣ୍ଠିସବୁ ଫିଟେଇଲେ। କଉଠି ବୋଇଲେ କଉଠି ନାହିଁ। ଦେଖ ଦେଖ ବୋଇଲା ବେଳକୁ ଅଁଟାର ରୂପାଖୋଷଣୀରେ। ହଜିଲା ବଳଦ ଖୋଜିଲା ଠେଇ! ଆଲୋ ବହୂ! ଟଙ୍କାଟି ମିଳିଗଲା! ଖୁସିରେ ହାଟ ବସାଇଦେଲେ ସାନ୍ତାଣୀ। ମହାରାଣୀ ଅମଳର ରୂପା ଟଙ୍କାଟି! ଏବେ ସପନ!! ମୁଁ ଡ଼ାକୁଣୀ ସାରାଘର ଘାଣ୍ଟି ଚକଟି ଦେଲି। ପାଇଲିନି କଉଠି। ଅଳପେଇଷା ଟଙ୍କାଟି ଶେଷକୁ ମୋରି ଖୋଷଣୀରେ ଠ' କରିଥାନ୍ତା! ଯାଃ ହେଉ ମିଳିଗଲା!! ଖୁସିରେ ହାଟ ବସେଇଦେଲେ। ସାନ୍ତାଣୀ ଗାଧୁଆ ପାଧୁଆକୁ ବିଜେ କରନ୍ତେ କଣ ବୋହୂ ମାନଙ୍କୁ ତାଙ୍କ ଖୁସି ବାଣ୍ଟିଲେ। ପଡ଼ୋଶିନୀ ମାନଙ୍କୁ କହିବାକୁ ଭୁଲିଲେନି। ଅନେକ ଦିନଧରି ଘୋଷିଲେ। ମାଇକିନା ଗାଧୁଆ ତୁଠଟି ସାନ୍ତାଣୀଙ୍କ ରୂପା ଖୋଷଣୀ ଚର୍ଚ୍ଚାର ବିଷୟ ହେଲା।

ବାଇବେଲର ଗପ ମନେ ପଡ଼ିଯାଉଛି । ବାପପରି ବାପଟିଏ । ପୁଅ ବୋଇଲେ ଦୁଇ ପୁଅ । ସାନ ପୁଅଟି କଣ ଭାବିଲା କେଜାଣି ବାପକୁ ତାର ବାଣ୍ଟ ମାଗିଲା । ବାପ ବିଚରା କରନ୍ତା କଣ? ମରାକୁ କାଠ, ଭାଇକୁ ଭାଗ । ଆପଣାର ସବୁ ଦି ପୁଅଙ୍କୁ ବାଣ୍ଟିଦେଲା । ସାନପୁଅ ଯା' ପାଇଲା ସବୁ ଏକାଠି କରି ଚାଲିଗଲା କଉଠିନା କଉଠିକୁ । ହାତରେ ଧନ, ରଜାଝୁଅକୁ ମନ । ମଉଜ କଲା । କଦାଚାରରେ ଉଡ଼େଇ ଦେଲା ସବୁ । ଶେଷକୁ କରନ୍ତା କଣ? ଘୋଡ଼ା ଦାନା ପାଇଲାନି ଖାଇବାକୁ । ଅଭାବରେ ଗାଈ ଗୋରୁଙ୍କଠୁବି ହୀନ ହୋଇଗଲା । ଘରକଥା ମନେପଡ଼ିଲା । ବାପାକୁ ହେଜିଲା । ସରଗ ସମାନ ଘର ଛାଡ଼ି ଏ ସହରକୁ ଆସିଲା ଯେ ଏବେ ଦଶା ଅସମ୍ଭାଳ । ସବାଶେଷରେ କଣ ଭାବିଲା କେଜାଣି ଏକମୁହାଁ ଘରକୁ ଦଉଡ଼ି ଗଲା । ଖୁସିରେ ଫାଟି ପଡ଼ିଲା । ବାପ ପୁଅକୁ ପାଇଲା କୋଳାକୋଳି ହେଲେ । ଦୁହିଙ୍କ ଆଖି ଛଳଛଳ । ହଜିଲା ଦରବ ପାଇବାରେ କେତେ ଆନନ୍ଦ ସତେ!

ସେଇମିତି ମୋ ହଜିଲା ଦିନ ଗୁଡ଼ିକୁ ମୁଁ ଖୋଜୁଛି । ମନେ ପକଉଛି । ପଛକୁ ଅଣ୍ଡାଳୁଛି । ଖୋଜିବାରେ ଆଉ ପାଇବାରେତ ଆନନ୍ଦ । ମୋ ଖୁସି ଆଉ ଆଉ ମାନଙ୍କୁ ବାଣ୍ଟିବାରେ ଆହୁରି ଆନନ୍ଦ । ବସି ଖାଇଲେ ନଈବାଲି ସରିବ । ଏ ଖୁସି ବାଣ୍ଟି ଖାଇଲେ କୁଆଡ଼େ ଆହୁରି ହୁଏ ଆହୁରି ହୁଏ । ଖୋଷାର ଉପରେ ଚାଉଁରୀ ହୁଏ ।

କଉଠୁ ଆସିଛି? କଉଠିକି ଯିବ? କେହି ଜାଣେନା । ସମୟ ତ ସମୟ । ସଦା ବହୁଛି, ଆଗକୁ ଆଗକୁ । ସନାତନ ସମୟର ନଈରେ ଜୀବନ ଏକ ସୁଅ । ବର୍ଷ ମାସ ଦିନ ଦଣ୍ଡର । ବୋହି ଯିବାର ଆନନ୍ଦ । ମୁହଁ ମୋଡ଼ି ଲେଉଟି ଚାହିଁବାର ପ୍ରୟୋଜନ ଥିଲେବି, ଚାହିଁ ହୁଏନା । କେତେ କଥା, କେତେ କାହାଣୀ, ଘଟଣା, ଦୁର୍ଘଟଣା ହୋଇ ବାଟ ଓଗାଳେ । କଉଠି ଆଡ଼େଇ ଆଉ କଉଠି ସେ ସବୁକୁ ମାଡି ମକଚି ପଳେଇବାକୁ ବାଧ୍ୟ । କଉଠି କଣ ରହିଗଲା । ବାଟରେ ପାଣ୍ଡୁ ପୁଅମାନେ ରହିଯିବା ପରି । ତାକୁ ଆବୋରି ସାଉଁଟି ସାଙ୍ଗରେ ଘେନି ଆସିବାକୁ ବେଳ କାହିଁ? ନଈ ବହିଯିବା ପରି ବହିଯାଏ । ପାହାଡ଼ିଆ ଟାଙ୍ଗରା ଭୂଇଁ, ଅରଣାବଣ, ଖାଲଢ଼ିପ, କଅଁଳିଆ ବୁଦୁବୁଦୁକିଆ ଜଙ୍ଗଲ ଆଉ ଅସଂଖ୍ୟ ମୋଡ଼ କଟାଇ ଦିଗହରା ସବୁଜ ଖେତର ପେଟଚିରି ବହିଯାଏ । ଠିକ୍ ସେମିତି ଜୀବନ କେତେ ମାନ, ଅଭିମାନ, ଭଲମନ୍ଦ, ସୁଖଦୁଃଖ ଡ଼େଇଁ ଆଗକୁ ପହଁରି ଚାଲେ । ଆଗକୁ ଯିବାରେ ଯେତେ ଆନନ୍ଦ ପଛକୁ ଫେରି ଚାହିଁବାରେ ସେତେ ଖୁସି । ଏଇ ଫେରି ଚାହିଁବାର ଦୁର୍ବାର ଲୋଭ ହିଁ ଏକ ଜୀବନ । ଯେତେ ପ୍ରିୟ, ତାଠୁ ବେଶୀପ୍ରିୟ ତାର ହଜିଲା ଦିନ । ପୁରୁଣା ଲୁଗା ଯେମିତି ପିନ୍ଧିବାକୁ ସୁଖ ଲାଗେ, ପୁରୁଣା ଜୀବନ ଠିକ୍ ସେମିତି ସୁଖକର । ଗାଈର ପାକୁଳି କରିବା ଭଳି । ଘଷରା ଦିନ ଗୁଡିକ ସାକୁଲେଇ ପାକୁଳେଇ ପଶି ଆସନ୍ତି ଗହୀର ମନକୁ । ଲଳେଇ ବିଳେଇ ଯେମିତି ଗୋଡ଼ ଚଉକଟି ଘୁଡୁଘୁଡୁ କରି ଘଷି ହୁଏ । ଟିକିଏ ସୁଖ, ଟିକିଏ ହାତ ସାଉଁଳା ପାଇବାକୁ । ସେଇ ଘଷରା

ଦିନ ଗୁଡ଼ିକ ଠିକ୍ ସେମିତି ଲୋଡ଼ନ୍ତି ଲହୁଣି ପରଶ ଆଦରିଆ ହାତ ସାଉଁଳା।

ଆଜି ଜୀବନର ସନ୍ଧ୍ୟାରେ ମୁଁ ମୋର ହଜିଲା ଦିନ ଗୁଡ଼ିକୁ ଖୋଜୁଛି। ପାଇବି ଆଉ କଉଠି? ପାଇବାରେ ସିନା ଆନନ୍ଦଥାଏ। ଏବେ ଖୋଜିବାରେ ହିଁ ମୋର ଆନନ୍ଦ।



## ୨. ସୁଜଳା ସୁଫଳା

ନା' ସିନା ପିତାପାଲି। ତା'ର ସବୁ ମିଠା। ମିଠା ତା'ର ପାଣି। ମିଠା ତା'ର ପବନ। ମିଠା ତା'ର ଆଲୁଅ ଅନ୍ଧାର, ତାର ସଞ୍ଜ, ସକାଳ। ମିଠାତାର ଛାଇ ଆଉ ଖରା। ଆଉ ଆଉ ସବୁ ମିଠା।

ପିତାପାଲି। ଛୋଟ ଗାଁଟିଏ। ନିପଟ ମଫସଲ। ଏକ ପାଖରେ ଛେଲିଆ ଡୁମୁରି। ଆର ପାଖରେ ବୁଦୁ ବୁଦୁକିଆ ବଣ। ଗେଲେଇ ଝିଅପରି ନଈଟିଏ। ଇବ ନଈ। ଅଙ୍କେଇ ବଙ୍କେଇ ଧାଇଁଥାଏ। ଯେମିତି ଲାଜକୁରୀ, ସେମିତି ହସକୁରୀ। କା' ମୁହଁର ମିଠା କିରିକିରି ହସ ଯେମିତି ଛଡ଼େଇ ଆଣି ତା'କୁ କୁଳୁକୁଳୁ ଡ଼ାକ ଭିତରେ ମିଶେଇ ଦେଇଛି। ସେ ବହୁଥାଏ ଆଗକୁ ଆଗକୁ। ମହାନଦୀରେ ମିଶିବି ମିଶିବି ହଉଥାଏ ସଦାବେଳେ। ଦିନ ନାହିଁ ରାତି ନାହିଁ। ସଞ୍ଜ ନାହିଁ, ସକାଳ ନାହିଁ, ଧାଉଁଥାଏ। ଗଲା ଆଇଲା, ମଲା ହଜିଲା, କାହାରି ପାଇଁ ଦଣ୍ଡେ ଅଟକି ଭାବିବାର ବେଳ ନାହିଁ ତାର।

ସାହି ସାହିଘର। ପାଉଁଶିଆ ଛାତ ଗୁଡ଼ିକ ଯେପରି ମୁହଁମାରି ଅନେଇ ବସିଛନ୍ତି। ଗାଁ ଚଉକତି କୁନି କୁନି ଖେତ ଅବୋଧ ଶିଶୁର ଆଁ ପରି। ସରସିଆ, ଟିକାଏତ ଭାଗ। ଛୁରାଲୁ ବେରେଣା; ଚିରଗୁଣମୁଣ୍ଡା, କଦଲୀ ମୁଣ୍ଡା, ହାଣ୍ଡି ପକା, ଏମିତି ଏମିତି କେତେ ନାଁ। ସେ ଗୁଡ଼ିକ କ୍ଷେତ ନୁହଁ। ଲକ୍ଷ୍ମୀଙ୍କ ଭଣ୍ଡାର। ଯେତେଦେବୁ ତହିଁରୁ ଅଧିକ ଅଧିକ ପାଇବୁ। ଖାଉଥା, କେତେ ଖାଇବୁ। ଦେଉଥା ଯେତେ ଦେବୁ। ବଢୁଥାଏ, ସରେ ନାହିଁ। ବୁଢ଼ା ଦଦରା ପାହାଡ଼ଟି ଦରୁଆନ ପରି ଜଗିଛି। ତାର ଜଟିଆ ମୁଣ୍ଡଟାକୁ ଗାଁ ବାଲା ରାମ୍ପୁଡ଼ି ପକେଇଲେଣି। କିନ୍ତୁ ସେ ନିର୍ବିକାର। ବୁଢ଼ାମାନେ କହନ୍ତି ଶହେ ବର୍ଷ ଆଗରେ ଯେମିତି ଥିଲା ଏବେବି ସେମିତି। ସେହି ହଡ଼ା ପାହାଡ଼କୁ ବୁଢ଼ା ବୁଢ଼ା ଲୋକେ ଏବେବି ଦେବତା ବୋଲି ମାନନ୍ତି। ମଉଳା-ଭଣଜା। ମାମୁଁ-ଭଣଜା ଦି'ଜଣ କେବେ କୁଆଡ଼େ ଯାଉଥିଲେ। ଶୋଷ ହେଲା। ଶୋଷରେ ମୋର ତଣ୍ଡି ଶୁଖି ଯାଉଛି। ଭଣଜା ଗଲା ଯେ ଗଲା। ଆଇଲାନି ତେଣେ ମାମୁଁ ଶୋଷରେ ଆଉଟୁ ପାଉଟୁ। ପରାଣ ଛାଡ଼ିଯିବ କି? ସତକୁ ସତ ପରାଣ ଛାଡ଼ିଗଲା। ଭଣଜା ଫେରି ଦେଖନ୍ତେ ମାମୁଁ ଆଁ ଫାରି ପଡ଼ିଛି। ଶୋକରେ ଫାଟି ପଡ଼ିଲା ଭଣଜା ମାମୁଁକୁ ଛାଡ଼ିଯିବ କୁଆଡ଼େ? ସେଠି ସେ ମାମୁଁର ଗତି ପାଇଲା। ଦିହେଁ ଦେବତା ହୋଇଗଲେ। ମଉଳା ଭଣଜା ପ୍ରତ୍ୟକ୍ଷ ଦେବତା। ଯାହା

ମନାସିବୁ, ପାଇବୁ। ନାଆଁ ଡ଼େଙ୍ଗୁରା ବାଜୁଛି। ଗାଁ ଚ଼ଉକତି ଚ଼କା ଚ଼କା ଗହୀର ସବୁଜ ଧାନ କ୍ଷେତ। ସୁଲୁସୁଲିଆ କାରତିକିଆ ପବନରେ ଲହଡ଼ି ଭାଙ୍ଗୁଥାଏ। ଧାଙ୍ଗଡ଼ା ଧାଙ୍ଗଡ଼ା। ପାଚ଼ି ପାଚ଼ି ହଳଦୀ ମାଖିଛି ଯେମିତି। କାହିଁ କଉ ଦିଗକୁ ଫଇଲି ଯାଇଛି। ଆଖି ପାଉନାହିଁ। ଶେଷ ହିଡ଼ରେ ଏକ୍‌ଲା ତାଳଗଛରେ ଟିହାଟି ବସି ଅନଉଛି ଗାଁର ସୁଖ ଆଉ ସଂପଦ। ଗାଁ ମଝିରେ ଦିଅଁଙ୍କ ଦେଉଳ। ଦେଉଳ ଚୂଡ଼ାରେ ଦଦରା ବାନା। ଫଡ଼ ଫଡ଼ ହେଉଛି। ଗମ୍ଭିରା ଭିତରେ ଚ଼କା ଆଖିଆ। ଢ଼େଲା ଢ଼େଲା ଆଖିରେ ଅନେଇଛନ୍ତି କିଏ କଣ କହୁଛି ଶୁଣିବାକୁ। ଗାଁ ଗୋଟାକର ସବୁ ସୁଖ ଦୁଃଖ ହାନି ଲାଭ ତ ତାଙ୍କରି ହାତରେ। ତଳ ସାହିରେ ଭାଗବତ ଘର। ନିତି ସଞ୍ଜରେ ପଂଝାଏ ଠୁଳ ହୁଅନ୍ତି। ନାନା କଥାପଡ଼େ। ସତିଆ-ମାଁ ଭଏଁରୀର କଥା, ଭାନୀ ବୁଢ଼ୀର ପୋଖରୀ ଖୋଲା କଥା, ସବୁ ଏଇଠି ଚ଼ରଚା ହୁଏ। ଫଇସଲାବି। ଗାଁର ପଞ୍ଚ ଭଲ ଲୋକଙ୍କ କଥାକୁ କିଏ ବଳିଯିବ? କା' ଜିଭରେ ହାଡ଼ ଅଛି? ମୁଡ଼ିଆ ମାରି ବେକରେ ଗାମୁଛା ପକାଇ ଦେଲେ ହରିବୋଲରେ ସବୁ ଫଇସଲା ହୋଇଯାଏ।

ଗାଁ ଗୋଟାକର ସୁଖ ଦୁଃଖ ହାନି ଲାଭ, ଭଲମନ୍ଦ ସବୁ ଏଇ ଭାଗବତ ଘରେ ଚରଚା ହୁଏ। ଝାଞ୍ଜ, ପଖଉଜ, ମୃଦଙ୍ଗ, ମଞ୍ଜିରା, ଖଞ୍ଜଣି, ଦୁବି ଟବଲା ସବୁ ଏଇଠି ଥାଏ। ଖଞ୍ଜଣି ମାଡ଼ରେ କେବେ ନିଥର ରାତିର ଛାତି ଦୁଲୁକି ଉଠେତ ଝାଞ୍ଜ କରତାଳିର ଝାଏଁ ଝାଏଁ ଶୋଇଲାକୁ ଚେତେଇ ଦିଏ। ପଞ୍ଜରା କାଠି ଖଣ୍ଡି ଯେ ଖଣ୍ଡିନ ହେଲେବି ଭିମଭୋଇଙ୍କ ଗୁରୁ 'ଶୂନ୍ୟମନ୍ଦିରୁ' ଆସନ୍ତି ନାହିଁ।

ଚଂ ଭୋଳାଙ୍କ ନାମରେ ଭକ୍ ଭକ୍ କେଇ ଦମ୍ ଛୁଟେ। କୁକୁ କୁକୁ ଲଣ୍ଠନ ଆଲୁଅରେ ମୁହଁକୁ ମୁହଁ ଦିଶୁନଥିଲେବି ଢ଼େର୍ ରାତି ଯାଏ ଗପସପ ଚାଲେ। ଦଦରା କାନ୍ଥକୁ ଆଉଜି ଭଟ ତିଆଡ଼ି ନିଦେଇ ଗଲାଣି ତ ଅନ୍ଧଧର ହାତ ଚୁଟୁକି ଫୁଟାଇ ହାଇଟାଏ ମାରିଲାଣି। ପଣ୍ଡୁ ବୁଢ଼ାର କବାଟ ଫିଟା ଘଣ୍ଟି ବାଜିବା ବେଳେ ଆପଣାଛାଏଁ ନିଦ ମାଡ଼ି ଆସେ। ତା' ସାଙ୍ଗକୁ ଗଞ୍ଜେଇ ନିଶାଟା ଦିହଟାକୁ ଏକବାରେ ପୁଟୁଲେଇ ଆଣେ। ଶାମ ତିଆଡ଼ି କେତେବେଳୁ ଆଇଥିଲା କେଜାଣି, ରାତିର ଶେଷ ପହରକୁ ଉଠି "କହଇ ମନ ଆରେ ମୋ ବୋଲକର" ଗାଇଲାଣି। ଶାମ ତିଆଡ଼ିର ପରଭାତୀ ଗାଇବା ସରିଲେ ରାତି ପାଇଲା ବୋଲି କହନ୍ତି।

ଉପର ପଡ଼ାରେ ଡ଼େରା ଘର। ଗୋରା ରାଜୁତିର ସନ୍ତକ। ଦୌରାରେ ଆସିଲେ ସାହେବ ମାନେ ଠହରନ୍ତି। ପରମେଶ୍ୱର ଝାଙ୍କର ଆଉ ଠସକର ଚଉକିଦାରକୁ ପଚାର। ସେମାନେ କହିବେ। କେମିତି ନିଆଁମୁତା ସାହେବ ସେମାନେ! ଗୋଟାଏ ଗୋଟାଏ ବାଘ। ମିଛ କଥା କହିଲେ ହାତ ଠିଆ ହୁଏ। ହାମୁଡ଼େଇ ଗଲେନା, ଗୋଟାପଣେ ଖାଇଯିବେ। ବୁଢ଼ା ଠସକର ଚଉକିଦାର କହେ ଏମିତି। କଉକାମ ପାଇଁ ଧମକାଇଲା ଯେ ସେ ପରା

ଏକ କରି ପକେଇଥିଲା। ଠସକର ଚଉକିଦାର ଗାଇଥିବା ଗୀତ କେଇ ପଦ ମୋର ମନେ ପଡ଼ିଯାଉଛି।

ଶୁନ ଶୁନ  ସଭାଜନେ ରସର କାହାନୀ
ଦିଲ୍ଲୀ କଟରୀ ଦୁଲୁକୁଛେ ସିପେଇ କରେ ଠାନି ମାନି।
ଆଇଛେ ସିପେଇ ବୁଢ଼ା ଚଢ଼ି ଘୁଡ଼ା ଚ଼ମକ ଧମକ କରେ
ଟଁକେ ସୁକେ ପାଏଲେ ସିପେଇ ନରମତି ଧରେ (ନରମ)
ସେ କଥାଟା ଗୁପତ କର, ମଫସଲର, ରଜାର ଘର ଚାକିରି କରେ ମୁହିଁ।
ଦୁଇ ପୁରୁଗର ଜମି ପାଇଛେଁ କୁଲିହା ହଗା ଭୁଇଁ।
ଚାକିରି କରା ମହତ ସରା କୁଟୁମ୍ ମରା ହୁକୁମ୍ କେ ହାଜର
କାଏଁ କଥା କହେମି ମୁଇଁ ସବୁଯାକ ଲାଜର।
ଆନହୋ 'ନୁନ' ମର୍ଚ୍ଚି, ବଲିଆ ମାଛ, ଆଉ କୁଟେ କୁଟେ ଚୁରା
ଶହେ ଝନ ବିଗାଡ଼ି ଦେବ, ତହିଁ ଗୁଟେ ନାଇଁଥିବେ ବୁଢ଼ା।

ଯେଉଁ କତିକି ଯିବ, ପୋଖରୀ, ଜୁହ୍ନା ବନ୍ଧ କହକି ତିଆଡ଼ି ବନ୍ଧ କହ। ବୁଢ଼ୀ କଁଟା କହକି ଜଗବନ୍ଧୁ କଁଟା, ମାନ କଁଟା, ନୂଆଁ କଁଟା କି ଯୁହ୍ନା କଁଟା। ପାଚ଼ିଲା ଜାମୁ ପରି ପାଣି। ତାଲୁ ଫଟା ଖରାରେ ଯାଉଛୁ? ଦଣ୍ଡେ ବସିଯା ବହଳିଆ ଆମ୍ବଗଛ ଛାଇରେ। ତା' ପରେ ଆଞ୍ଜୁଳା ଆଞ୍ଜୁଳା ଢ଼ୋକି ଯା' ପେଟେ। ଦେଖିବୁ, କଉ ପଇଡ଼ ପାଣି ତାସରି ହେବ ଯେ। ସେତ ପାଣି ନୁହଁ ମା' ଥନର କ୍ଷୀର। ଅମୃତ। ଛତିଶ ପାଟକର ମୋ ଗାଁ? ସୁଜଳା ସୁଫଳା। ତାକଥା କହିବସିଲେ, ସରାଗେ ଶୁଣୁଥା। ଲେଖି ବସିଲେ ପୋଥି ହେବ, ପୋଥି। ବାହାରକୁ ଗଲେ ତାକୁ ସୁମରି ଯାଏଁ। ଫେରିଲେ ଘରକୁ ତାକୁ ମୁଣ୍ଡିଆ ମାରେ। ଗାଁ ନୁହେଁ ମୋ ମାଆଟି। ଏମିତି ଏକ ଗାଁରେ ଜନମ ଲଭିବାକୁ କିଏ ବା ଲୋଭନକରିବ? ଏଇ ଗାଁରେ ତ ମୋର ଜନମ।



## ୩. ଭଙ୍ଗାଘରେ ଭୁତବାଇ

ଗାଁ ମଝିରେ ଗଉଁତିଆ ଘର। ରାହୁପରି ଘର। ପକ୍‌କା ଘର୍‌ ଅଉରି ଚଉରୀ ବଖରୀ। ଯିଏ ଯିବ ହଜିଯିବ। ହେଲେ କଣ ହେବ ସଦାବେଳେ ବନ୍ଦ। ନିବୁଜ। ଅମୁହାଁ ଦେଉଳ ଖଣ୍ଡେ ଯେମିତି। କେତେ କାଳରୁ ମଜାଘଷା ହୋଇନି। ଚୂନ ଧୁଆ ହୋଇନି। ଘର ଖଣ୍ଡିକ ଅରଣାବଣ ପାଲଟି ଯାଇଛି। ଅନ୍ଧାରୁଆ ଘର ସନ୍ଧିରେ ବାଦୁଡ଼ି ମାଳ ମାଳ। ପାରା, ଘରଚଟିଆ ଆଦିଙ୍କର ମେଳାମଉଛବ ଲାଗି ରହିଛି। କାଉଁର (ଶିଉଳି) ବସି ଅପରଛନିଆ ଦିଶିଲାଣି। କୋଉଠି ଖଣ୍ଡେ ପଲସ୍ତରା ଖସି ପଡ଼ିଲାଣି ତ ଆଉ କଉଠି

କାନ୍ଥଫାଟି ଆଁ କଲାଣି। ଛାତ ଉପରେ କଉଠି ପିପଲ ଗଛଟିଏ ଉଠି ଟେରେଇ ଗଲାଣି ଆଉ କେଉଁଠି ବରଗଛ ଟିଏର ଡମଣା ଲାଙ୍ଗିଆ ଟେର କାନ୍ଥ ଫଟାଇ ପକାଇଲାଣି। ଗାଁକୁ ସଞ୍ଜ ଆସିଲେ, ପହିଲେ ସେଇଠିକୁ ଆସେ। ପାଣିଚିଆ ଅନ୍ଧାର ଭିତରେ ପୋକ, ଯୋକ, ଚରେଇ ଚିରିଗୁଣୀ, ସାପ, ବାଘ, ସଂସାରର ଯେଉଁ ଛପନ କୋଟି ଜୀବ ଅଛନ୍ତି, ସଭିଏଁ ଧାଇଁ ଆସନ୍ତି ସେଠାକୁ। ଶିରାବଣର କଳାରାତି ଡ଼େଣାମେଲାଇ ଗାଁଟାକୁ ଆବୋରି ପକାଏ। ଥନରେ ମୁହଁ ଥାପି କୁନି ଛୁଆଟିଏ ମାଁ ପେଟ ତଳେ ଯେମିତି ଯାକିଯୁକି ଶୋଇପଡ଼େ। ଠିକ୍ ସେମିତି ନିରୋଳା ରାତିର ବିରାମହୀନ ସାଇଁ ସାଇଁ ସାଙ୍ଗକୁ ଝିଙ୍କାରିର ଝାଇଁ ଝାଇଁ ଅନ୍ଧାରର ପରସ୍ତ ପରସ୍ତ ଛାତିଟାକୁ ଫୋଡ଼ି ପକାଏ। ପାଖ ସଜନା ଗଛଟାର ଅଗଟାକୁ ବେଢ଼ି ଜୁଲୁ ଜୁଲିଆ ଦଳ ବେଶ ସୁଆଙ୍ଗ ଆରମ୍ଭ କରି ଦିଅନ୍ତି। ଫଡ଼ଫାଡ଼ ଘିଟ ଘାଟ ଆଉ କେତେବେଳେ କି ପ୍ରକାର ବିକଟାଳ ରଡ଼ି, ଖ୍ଲି ଖ୍ଲି ହସ ସାଙ୍ଗକୁ କଇଁ କଇଁ କାନ୍ଦ ପହରିକିଆ ବିଲୁଆ ରଡ଼ିଲା ବେଳକୁ ବୁଲା କୁକୁର ଟାଏ ମୁହଁ ଟେକି ଦେଇ ବେଶ୍ ପାଳିଧରେ। ଅଭିଲା ରାତିଟା ନିଦ ବାଉଳା ଗାଁଟାର ନିଥର ଛାତିକୁ ଦୋହଲାଇ ଦିଏ। ଏକେତ ରାତି ବିକାଳ। ବାଘ କହୁଛି ମୁଁ, ସାପ କହୁଛି ମୁଁ। ଗାଆଁ ଚୌକିଦାର ଠସକର ହୁସିଆର କହି ବାହୁଡ଼ି ଯାଇଥିବ। ଗଉଁତିଆ ଘର ପଛପଟରେଥିବା ଶେରସୁଆଁ ଗଛଟାକୁ କିଏ ଯେମିତି ଝୁଣି ପକାଏ। ତାପରେ ଅଉରି ଚଉରି ଘର ଭିତରୁ ଶୁଭେ କଇଁ କଇଁ କାନ୍ଦଣା। ଠିକ୍ ତା ସାଙ୍ଗକୁ ପ୍ରକାଣ୍ଡ ବାଦୁଡ଼ିଟାଏ ଡ଼େଣା ଝାଡ଼େ ଫଡ୍ ଫଡ୍। ହଠାତ୍ ସବୁ ଥମିଯାଏ। ଏକବାରେ ଚୁପ୍‌ଚାପ୍। ତା'ପରେ ଏକ ପ୍ରକାଣ୍ଡ ତାଳଗଛିଆ ଛାଇ ଲମ୍ବିଯାଏ ଅନେକ ଦୂରକୁ। ନିତିପ୍ରତିର ଘଟଣା ନ ହେଲେ ବି ମଝିରେ ମଝିରେ ଏମିତି ହୁଏ। ଶାମ ତିଆଡ଼ି ଏମିତି କହେ। କୁରୁପା ବୁଢ଼ା ମଧ କହୁଥିଲା। ପରଶୁଧର ଅନେକଥର କହିଥିବାର ଅନେକ ଶୁଣିଛନ୍ତି। ଏମିତି ଯଦି କେବେ ଘଟୁଥିଲା ଗଉଁତିଆ ବଂଶର ନିଶ୍ଚୟ କୌଣସି ଅଘଟଣର ସୂଚନା ଦେଇ ଘଟୁଥିଲା। ଗାଁର ପୁରୁଣା ପୁରୁଖା ଲୋକେ କହନ୍ତି ଚନ୍ଦ୍ରଶେଖର ଗୌତିଆ ବୋଲି କେହି ଜଣେଥିଲେ ଏ ବଂଶରେ। ତାଙ୍କ ଆଖି ବୁଜିବା ଆଗରୁ ଶେରସୁଆଁ ଗଛଟି ଥରି ଉଠିଥିଲା। ବାଳିଆ ଗଉଁତିଆ ଆଖିବୁଜି ଆରପୁରକୁ ଯିବା ପୂର୍ବରୁ ଶେରସୁଆଁ ଗଛଟି ଏମମିତି ଦୋହଲି ଉଠିଥିଲା। ଆଉ ଏକ ଲମ୍ବା କଳାଛାଇ ଲମ୍ବି ଯାଇଥିଲା ଜୁନ୍‌ହା ବନ୍ଧର ହିଡ଼ ଆରପଟକୁ। ସେଥିପାଇଁ ପିତାପାଲି ଗଉଁତିଆ ଘରର ସେଇ ଆଉରି ଚଉରି ପକ୍‌କା ଘର ଆଖପାଖରେ ଦେହେଲିଆ ବଖରିଟିଏ ହୋଇ ଏକ ମୂର୍ତ୍ତିମନ୍ତ ରହସ୍ୟରେ ପରିଣତ ହୋଇଥିଲା।

ଅନେକଦିନ ବିତିଗଲାଣି। ହେଲେ ସେଇ ପଛକଥା ଗୁଡ଼ା ସବୁ ଏଇ କାଲି ପରି ଲାଗୁଛି। ପିତାପାଲି ଗଉଁତିଆ ବଂଶଟି କାହିଁ କୋଉ କାଳରୁ ଲମ୍ବି ଆସିଛି। ପୁରୁଷ ପରେ ପୁରୁଷ ଆସି ବାହୁଡ଼ି ଗଲେଣି। ଦୁର୍ଯ୍ୟୋଧନ ଗଉଁତିଆ ଗଲେଣି ତାଙ୍କ ପୁଅ ଶ୍ରୀବତ୍ସ

ଗଉଁଟିଆ ବି ଗଲେଣି । ହେଲେ ସେଇମାଟି ସେଇ ଗାଆଁ ଆଉ ତାର ସକଳ ରୂପ ସେମିତି ରହିଛି । ଜାଣିଲା ଶୁଣିଲା ଲୋକେ କେତେ କେତେ ନାଆଁ କହନ୍ତି । ଗୁଣ ଅବଗୁଣ ଜଣାନ୍ତି । ବାଲିଆ ଆଉ ସୁଗ୍ରୀ ଏଇ ଦୁଇ ଜଣଙ୍କର ବେଶ୍ ନାଆଁ ଅଛି । ବଡ଼ ଗୌନ୍ତିଆ ବାଲୁକେଶ୍ୱର ଆଉ ସାନଟି ସୁଗ୍ରୀବର । ବଡ଼ଙ୍କର ଗୋଟିଏ ବୋଲି ଝିଅ ଆଉ ସାନ ସୁଗ୍ରୀବରଙ୍କ ଚାରିପୁଅ । ଏ ଦୁହେଁ ଦେଉଳ ତୁଳାଇଥିଲେ । ପୁଅ ପରଜାଙ୍କୁ ସୁଖରେ ପାଳିଥିଲେ । ଲୋକଙ୍କୁ ଦେଇଥୋଇ ଆପଣାର କରିଥିଲେ । ସେଥିପାଇଁ ଖଣ୍ଡ ମଣ୍ଡଳରେ ତାଙ୍କ ନାରେ ବାଜା ବାଜୁଥିଲା । ଏବେବି ଲୋକେ କହନ୍ତି । ବଡ଼ ଗଉଁଟିଆଙ୍କର ବଡ଼ ଏକାଦଶୀ ବ୍ରତ । ଏବେ ଆଉ କିଏ କରିବ? କାହୁଁ ପାଇବ ସେ ସୁଖ? ସେ ଖିଆପିଆ କୁଣିଆ ଚରଚା? ଖାଣ୍ଟି ଗୁଆ ଘିଅରେ ଛଣା କାକରା ପିଠା । ମୁଗ ତିଖିରି । ଘର ବାଡ଼ିର ବତିଶା କଦଳୀ । ସକାଳ ପହରଠାରୁ ଯଦି ସଞ୍ଜ ଯାଏ ଆପଣାକୁ ସମ୍ଭାଳି ପାରିଲୁ । ସଞ୍ଜକୁ ପାଣି ପିଇବୁ । ନା ଟା ସିନା ପାଣିପିଆ । ଖିଆ ପିଆ ଢେର୍ । ଗୁଡ଼ପଗା ଲିଆ (ଖଇ); ସରସତିଆର ମୁଗସିଝା, ମୁଗ ତିଖିରି, ମୁଗ ମଢ଼ା, କାକରା ,ବତିଶା କଦଳୀ । ଭୁଭୁରା ନିଆଁ (ମୃଦୁଅଗ୍ନି)ରେ କାଁକୋ କରି ସିଝା ହୋଇଥିବା ଗାଈ ଗୋରସ ଥାଳିଆ ଥାଳିଆ କରି ଠୁକିଦେ । କିଏ ନାହିଁ କହୁଛି? ସେଇଥିପାଇଁ ଗାଆଁର ଆଉ ଆଉ ମାନେ ମଧ୍ୟ ବଡ଼ ଗୌନ୍ତିଆଙ୍କର ସାଙ୍ଗରେ ବଡ଼ ଏକାଦଶୀ ପାଳନ ଆରମ୍ଭ କରିଦେଲେ । ଏଇ ବାଲୀ, ସୁଗ୍ରୀ ଦୁଇଭାଇ ମାଟିରୁ ସୁନା ଫଳାଇ ବଡ଼ ହୋଇଥିଲେ । ନାଆଁ କରିଥିଲେ । ଇବ୍ ନଇ ପଠାରେ ଜଡ଼ା, ସରସତିଆରେ ମୁଗ । ନୂଆଁକଁଟା ପେଟରେ କୁସାରି । ଖାରିମାଲରେ ଉଲି, ଟିକାଏତ ଭାଗରେ ଚିନାମାଲି ଧାନ ସେମାନଙ୍କୁ ବଡ଼ କରିଥିଲା । ବାଲୀ ସୁଗ୍ରୀ ଦୁଇଭାଇଙ୍କ ଚାରିପୁଅ । ଚାରିପୁଅରୁ ଏଗାର ନାତି । ଏଗାର ନାତିରୁ ଚଉଷଠି ବଂଶ ବୃଶାଳ ହେଲା । ଏଇପରି ଏକ ସାମନ୍ତ ବଂଶରେ ଜନ୍ମ ହେବାକୁ କିଏ ବା ନ ଚାହିଁବ? ଏ ବଂଶର ଏକ ଅବକ୍ଷୟ ବେଳାରେ ମୋର ଜନ୍ମ । ବଡ଼ ପଣିଆର ଦିନ ମୋ ବେଳକୁ ସରିଯାଇଥିଲା ।

ଲୋକେ କହନ୍ତି ସୁଖରଦିନ ସହଳ ସରିଯାଏ । ସତକୁ ସତ ସେ ସୁଖର ଦିନସବୁ ସରିଗଲା । ପଣି ଆସିଲା ହୀରାକୁଦ ବନ୍ଧର ଠେଲା ପାଣି । ଗାଁଟା ପୋତି ଦେଲା ଅତଳ ଜଳରେ । କିଏ କୋଉଠିକି ଗଲା? କାହାର କଣ ହେଲା? ବୁଝିବାକୁ ବେଳ ନାହିଁ କାହାର । ସବୁ ହଜିଗଲା । ଗୋଟିଏ ଯୁଗ, ଗୋଟାଏ ସଂସ୍କୃତି, ଗୋଟାଏ ଆଭିଜାତ୍ୟର ମୃତ୍ୟୁହେଲା । ଗ୍ରାମ ଦେବତା ଭୀମବୁଢ଼ା କି ଗ୍ରାମ ଦେବତୀ ଟାହୁଢ଼େନ୍ ମାଉଲୀ କି ଢ଼େଳା ଆଖିଆ ଜଗନ୍ନାଥେ କେହି ରଖି ପାରିଲେ ନାହିଁ । ହଜାର ହଜାର ବର୍ଷର ଚଳଣି, ପରଂପରା ସବୁ ଯେମିତି ଏକ କରୁଣ ଇତିହାସରେ ହଜିଗଲା । କେବଳ ମନସ୍ତାପ, ହଜିଲା ଦିନକୁ ଗଣି ଗଣି ବଞ୍ଚିବା କଥା । ଏବେ ଲୋକେ ହାତଠାରି କହନ୍ତି, "ଏ ମଙ୍ଗଲୁ ସେଇ ପିତାପାଲ ଗଉଁଟିଆ ଘରର ପୁଅଟିଏ ପରା"!



# ୪. ଯେଉଁବୃକ୍ଷରୁ ସେଇ ତରୁ

ବାଲୁଙ୍କେଶ୍ୱର ଡ଼ାକ ନାଆଁ ବାଲିଆ ଓ ସୁଗ୍ରୀବର ଡ଼ାକ ନାଆଁ ସୁଗୁରୀ। ଜଣେ ଜଣେ ନିଷ୍ଠାପର ବ୍ରାହ୍ମଣ। ଯଜନ, ଯାଜନ ଅଧ୍ୟାପନାରୁ କେବଳ ଅଧ୍ୟାପନ କରି ନାହାନ୍ତି। ମୂରୁଖ ନଥିଲେ। ସେ ସମୟରେ କିଛି କିଛି ପାଠ ପଢ଼ିଥିଲେ। ଥିଲେ କୃଷିଜୀବୀ। ସକାଳରେ ଅଗାଧୂଆ କିଛି ଖାଇବେ ନାହିଁ। ସୁରୁଜ ସିଧା ମୁଣ୍ଡ ଉପରକୁ ଉଠିବା ବେଳକୁ ବିଲରୁ ଫେରିବେ। କୋଉ ଘଡ଼ିଥିଲା ସେ କାଳରେ! ସୁରୁଜଙ୍କ ଉଦିବା ବୁଡ଼ିବାକୁ ନେଇ ସମୟ ଜାଣୁଥିଲେ। ବିଲରୁ ଫେରିବା ବାଟରେ ଯେଉ ପୋଖରୀ ପଡ଼ିବ ସେଇଠି ପୁଣି ଗୋଧୋଇବେ। ଚିତା ଚଇତନ ପୂଜାପାଠ ଆଗରୁ ସକାଳୁ ସରିଛି। ଏବେ ଅଧିଏ ଭାଗବତ ପଢ଼ିବେ। ତାପରେ ଯାଇ ଖିଆପିଆ। ସେ ଆଡ଼େ ଘରର ମାଇପିମାନେ ଛଟପଟ। ସିହାଣା ଲୋକ ଅନ୍ନ ନ ଭୁଞ୍ଜିଲେ ସେମାନେ ଭୁଞ୍ଜିବେ କିପରି? ତିଥି, ବାର, ଯୋଗନୀର ଦିଗ, ଅମୃତବେଳା ଆଦି କେତେ ବାଛ ବିଚାର। କେତେ କଣରେ ଧରାବନ୍ଧା ନିୟମ। କହନ୍ତି ପରା ଆଚାରେ ବ୍ରାହ୍ମଣ, ଅନାଚାରେ ଯୋଗୀ। ମୋ ପୂରୁଖା ମାନେ ଯଜନ ଯାଜନ କରି ଯାଇଛନ୍ତି। ମୋ ପାଇଁ ଅଧ୍ୟାପନାଟି ଛାଡ଼ିଗଲେ ପରା! ଚନ୍ଦ୍ରଶେଖର ଗୌନ୍ତିଆ ମୋ ବଂଶରଜଣେ କୀର୍ତ୍ତିମାନ ପୁରୁଷ। ତାଙ୍କୁ, ତାଙ୍କ ବାପା ଗୋସ ବାପା ମାନଙ୍କୁ ମୁଁ ବା ଜାଣିବି କିପରି?

ବାଲିଆ ଆଉ ସୁଗ୍ରୀଙ୍କର ଠାରୁ ମୋ' ଧାରଣା ସ୍ପଷ୍ଟ। ବାଲିଆଙ୍କ ପୁଅ ନଥିଲେ। ସେଇଥିପାଇଁ ତାଙ୍କ ଭାଇ ସୁଗ୍ରୀଙ୍କର ସାନପୁଅକୁ ପୁଅ କଲେ। ସୁଗ୍ରୀଙ୍କର ଚାରିପୁଅ, ଦୁର୍ଯ୍ୟୋଧନ, ପଦ୍ମଲୋଚନ, ଡ଼ମ୍ବରୁଧର, ଆଉ ହୃଷିକେଷ। ବଡ଼ପୁଅ ଦୁର୍ଯ୍ୟୋଧନର ଚାରିପୁଅ ଆଉ ଦୁଇଝିଅ। ବଡ଼ପୁଅ (ଶ୍ରୀବତ୍ସ) ମୋର ବାପା।

ପିତାପାଲି ଗୌନ୍ତିଆ ବଂଶର ଏକ ଆଭିଜାତ୍ୟ ଥିଲା। ଷାଠିଏ ହଳର ଜମିଜାଗା। ବନ୍ଧକଁଟା ମାଳମାଳ। ଦଶଲା ପଞ୍ଚଲା ଖେତ। ଖାଲିତ ଖେତ ନୁହେଁ। ସୁନା ଫଳନ୍ତି ଖେତ। ଗାଁରୁ ଗୋଡ଼ କାଢ଼ି କାହାରି ଆଗରେ ହାତ ପାତିବା କଥା ମୁଁ ଶୁଣିନାହିଁ। ଥିଲା ନ ଥିଲା ସବୁକଥା ଗାଁ ଭିତରେ ହିଁ ବୁଝାସୁଝା ହୁଏ।

କୃଷିଜୀବୀ ମାନଙ୍କର ସାଧାରଣତଃ ଭୁଦୋ ଦଶରା ମାସରେ ଅଭାବ ଦେଖାଦିଏ। କହନ୍ତି ପରା ଥିଲାର ଭୁଦୋ କି ନଥିଲାର ଭୁଦୋ। ଯାହାର କିଛି କିଛି ଅଭାବ ହେଉଥିଲା ଥିଲା ବାଲାଙ୍କଠୁ କିଛି କିଛି ଧାର ଉଧାର କରନ୍ତି। ଚଳିଯାନ୍ତି। ନୂଆଁ ଫସଲ ଅମଳ ହେଲେ, ପୌଷ ପୂର୍ଣ୍ଣିମାକୁ ସୁଝି ଦିଅନ୍ତି।

ଥରେ କଣ ହେଲାନା। ମୁଁ ସାଇକଲରେ ଯାଉଛି। ବାଟରେ ଗୋଟିଏ ଗାଁ। ସାଲେଟିକ୍ରା। ଜଣେ ଲୋକ ବାଟରେ ମତେ ଅଟକାଇଲା। କହିଲା, "ତମେ ପରେ ବାବୁ

ପିତାପାଲି ଗଉଁତିଆ ଘରର ପିଳା?" ମୁଁ କହିଲି "ହଁ।" ସେ କିଛି ନକହି ଲାଙ୍ଗଛାଟ ହୋଇ ମୋ' ଆଗରେ ଶୋଇପଡ଼ି ଦଣ୍ଡବତ କଲା। ମୁଁ ଆକାବାକା ହୋଇ ଅନାଇଲି। ବୁଝି ପାରିଲିନି। ତାକୁ ଉଠେଇ କହିଲି "ମଲା, କଣ ହେଲା ଯେ ଏମିତି ଯୁଗରେଇ ହେଇ ପଡ଼ିଲ? ଦେହ ପା' ଠିକ୍ ଅଛିତ?" ସେ ବିଚରା ବଡ଼ ବିନୟରେ ଖାଲି କହିଲା, ବାବୁ, ତମ ବୁଢ଼ା ମାନଙ୍କଠୁ ଅଭାବରେ ମୁଁ କିଛି ଧାନ ଆଣିଥିଲି। ଶୁଝିନି। ପୁଅ, ମୋତେ ସେ ଋଣରୁ ମୁକୁଲେଇ ଦିଅ। ଧାନନବ କ'ଣ ତା ବଦଳରେ ଏଇ ଟଙ୍କା ତକ ନିଅ। ଆଉ ମୋତେ ଋଣ ମୁକ୍ତ କର।" ଏବେବି ଖାଣ୍ଟି ସୁନା ପରି ଖାଣ୍ଟିଲୋକ ଅଛନ୍ତି। ମୁଁ ସେ ମହାପୁରୁଷଙ୍କ ହାତରୁ ଟଙ୍କାତକ ନେଲି ଆଉ ନାଟକୀୟ ଢ଼ଙ୍ଗରେ ଘୋଷଣା କଲି ତୁମେ କିମ୍ବା ତମର ପୂର୍ବଜ ବା ଅନୁଜ ଯଦିବା ମୋର ପୂର୍ବଜ କିମ୍ବା ଅନୁଜଙ୍କ ଠାରୁ କିଛି ନେଇଥାଆନ୍ତି ଆଜି ମୁଁ ଦଶ ଦିଗପାଳଙ୍କୁ ସାକ୍ଷୀରଖି ଘୋଷଣା କରୁଛି ଯେ ସଦା ସର୍ବଦା ପାଇଁ ଋଣରୁ ମୁକ୍ତ ହେଲ।" ସାଙ୍ଗେ ସାଙ୍ଗେ ପାଖରେ ଥିବା ଜଣେ ଲୋକର ହାତରେ ଟଙ୍କାତକ ଗୁଞ୍ଜିଦେଇ କହିଲି ଏତକ ନିଅ। ରାତିରେ ଅଧିଏ ଭାଗବତ କରିବ। ଏଥିରୁ ବାଲଭୋଗ କରି ବାଣ୍ଟିଦେବ ତମ ଗାଆଁ ପିଲାମାନଙ୍କୁ। ରୁଣ୍ଡ ହୋଇଥିବା ଲୋକେ ଖୁସିହେଲେ। ମୁଁ ମଧ ଖୁସି ହେଲି। ମୋ ପୂର୍ବଜମାନେ ଲୋକଙ୍କ ହେଲା ନ ହେଲା ବେଳକୁ ଏମିତି ପିଠିରେ ପଡ଼ି ପେଟକୁ ମୁଠାଏ ଦେଉଥିଲେ।

ଚାରିଆଡ଼େ ଚ଼ହଳ ପଡ଼ିଥାଏ। ବାବାଜୀ ମୂର୍ତ୍ତିଜଣେ ବିଜେ କରିଛନ୍ତି। ଯାହା ହାଙ୍କି ଦେଉଛନ୍ତି ଫଳି ଯାଉଛି। ଯିଏ ଖବର ପାଇଲା ଧାଉଁଛି। କିଏ ବାବାଙ୍କ ପାଦଧୂଳି ନେଉଚିତ, କିଏ ବିଭୁତି ମାଗୁଛି। କିଏ ଫଳ ପାଉଛି ଓ ଆଉ କିଏ ତୁଳସୀପତ୍ର। ଏକ ହସ ହସ ମୁଦ୍ରାରେ ଗାଁର ଭାଗବତ ଘରେ ବାବା ବିଜେ କରିଛନ୍ତି। ସଞ୍ଜବେଳ। ପ୍ରବଚନ କରନ୍ତି। ଲୋକେ ରୁଣ୍ଡ। ଆଖିବୁଜି କ'ଣ ଭାବିଲେ ଭାବିଲେ ଆଖି ଖୋଲି କହିଲେ।

"ଅରେ ଏକ ଗାଁରେ ଚୋର ଭୟ ହେଲା। ପୋଲିସ ବି ଚୋରମାନଙ୍କୁ ଆୟତ କରି ପାରିଲା ନାହିଁ। ଦଶଜଣ ସିପେଇଙ୍କୁ ଥାନାବାବୁ ଡ଼ାକୁ ବେଶରେ ପଠେଇଲେ। ରାତିରେ ଗାଁ ପହରା କଲେ। ଡ଼ାକୁମାନେ ସିପେଇ ବେଶରେ ଗାଁ ଆଡ଼କୁ ମୁହେଁଇଲେ। ଉଭୟଦଳ ମୁହାଁମୁହିଁ ହେଲେ ଛେଲିଆଡୁମୁରି ପାଖରେ। ଡ଼ାକୁ ବେଶୀ ସିପେଇ ମାନେ ସିପେଇ ବେଶୀ ଚୋରମାନଙ୍କୁ ପଚାରିଲେ, "କିହୋ ଆଜି କିଛି ମିଳିଲା? ସିପେଇ ବେଶୀ ଚୋରମାନେ କହିଲେ ନା, କିଛି ମିଳିଲା ନି। ତମ କଥା କହ? ଡ଼ାକୁ ବେଶୀ ସିପେଇପାନେ କହିଲେ ନା, ଆମକୁ ବି କିଛି ମିଳିଲାନି।"

ସଞ୍ଜ ସରି ସକାଳ ହେଲା। ଚୋରମାନେ ପଳେଇଲେ! ସିପେଇମାନେ ଥାନାବାବୁଙ୍କୁ ଭେଟିଲେ। କହିଲେ, "ଆମେ ଆଉଦଳେ ଚୋର ଦେଖିଲୁ।" ବୁଦ୍ଧୁ ସେମାନେ ଯଦି ଚୋର ହୋଇଥାନ୍ତେ ତମେ ସିପେଇ ବେଶ ଦେଖି ପଳେଇଥାନ୍ତେ। ପ୍ରକୃତରେ ସେମାନେ ଚୋର

ନୁହନ୍ତି । ଚୋର ବେଶୀ ସିପେଇମାନେ। ଥାନାବାବୁ ଗର୍ଜି ଉଠିଲେ। "ଆରେ ଷ୍ଟୁପିଡ଼ ସେମାନେ ସତକୁ ସତ ସିପେଇ ହୋଇଥିଲେ ତମ ଡ଼ାକୁ ବେଶ ଦେଖି କଣ ଧରି ନଥାନ୍ତେ। ସେମାନେ ପ୍ରକୃତରେ ସିପେଇ ନୁହନ୍ତି, ଚୋର।"

ବାବାଜୀ ବୁଝାଇ କହିଲେ ବେଶ ବଦଳିଲେ ଗୁଣ ବଦଳେ ନାହିଁ।.ପିତାପାଲି ଗଉଁତିଆ ବଂଶର ଦେଶ ବଦଳିଛି। ବେଶ ବଦଳିନାହିଁ। ସେମାନେ ଆଉ ସେଇ ପୁରୁଣା ପିତାପାଲିରେ ନାହାନ୍ତି। ହେଲେ ଯିଏ ଯେଉଁଠିବି ଅଛନ୍ତି ସେଇଠି ମହତପଣିଆ ଚାଲିଛି। ମୁଁ ଶୁଣିଛି ସେଇବଂଶର କେହିଜଣେତ ଏ ଗାଁରେ ଅବଧାନ ଅଛନ୍ତି। ମୁଁ ଶୁଭ ମନାସୁଛି ତାଙ୍କ ବଡ଼ତି ଉପରେ ବଡ଼ତି ହଉ।



## ୪. ଦୁଧ ଧାଇ : ସେକ ଧାଇ

ଘର ବାରଣ୍ଡାରେ ପଞ୍ଚାଏ ମାଇକିନା। ଦାଣ୍ଡ ପିଣ୍ଡାରେ ଦଳେ ମରଦ। ମହରଗୀ ଆଉ ବିଷ୍ଣୁପ୍ରିୟା ଭିତରେ ପଶିଛନ୍ତି। "ପୁଅଟିଏ ହେଲା ଗୋ" ପୁଅଟିଏ। ବଖାଣିଲା ମହରଗୀ। ଝିଅଟିଏ ଥିଲା ଏବେ ପୁଅଟିଏ। କି ସୁନ୍ଦର ଘରକରା। ଠାକୁରେ କୋଟି ପରମାୟୁ ଦିଅନ୍ତୁ। ଆଉ ଲୋଡ଼ା ନାହିଁ। କୁହାକୁହି ହେଲେ ଲୋକେ। ମାମୁଁଘର ଆଇ ମାଳା। ତା ଭଉଣୀ ବିଷ୍ଣୁପ୍ରିୟାକୁ କହିଲା 'ତୁ ମାଉସୀଟା ଅଛୁ ବୋଲିସିନା ଝିଅମୋର ଜାଣି ପାରିଲା ନାହିଁ। ଠାକୁରେ ଗଛ ଚଢ଼େଇ ଥିଲେ। ସେ ଉତାରିଲେ। ପାର ପିଲାଟି ଭଲରେ ଭଲରେହେଲା। ଆଉ ଗୋଟିଏ ଜନମ୍।

ଆବୋ ଦିରିଯୋ' ତୋର ପରୁହାଁ ନାତି ହୋଇଛି। ଏଇ ନଡ଼ିଆ ଖଣ୍ଡକରେ ଠକି ଦେବୁ? ପରଶୁଧର କହିଲା। ଠହରି ଥା' ଭୋଜି ଖାଇବୁ ଯେ! ହାଡ଼ିପକା ଖେତରେ ଲଟା ବାଛୁଥିଲେ ଭୁତିଆର ମାନେ। ତାଙ୍କ ଭିତରେ ଚରଚା ଚାଲିଛି। ବଡ଼ ଗଉଁତିଆ ଘରେ ପୁଅ ହୋଇଛି। କୁଦୋପାଲିକୁ ମିଠେଇ ନଡ଼ିଆ ନେଇ ଏଇବାଟେଟ ସୁନ୍ଦର ଗଉଡ଼ ଗଲା।

ସତିଆ ମାଁ ଭଏଁରୀ ଆଉ ଭାନୀ ବୁଢ଼ୀ (ଭାନୁମତୀ) ରେଢ଼ି ରେଁଟୁଁ ରେଁଟୁଁ କୁହାକୁହି ହେଲେ। "ଆଲୋ ଏ ସତିଆ ମା' ଶୁଣିଲୁଣି ମାନୁର ପୁଅ ହୋଇଛି। ଦିରିଯୋର ନାତି। ମାତୁ ତିଆଡ଼ି କଅଁରିଆ ପଟରେ ଦଉଡ଼ି ବଲୁବଲୁ ଅଣ୍ଟାରୁ ଭାଙ୍ଗ ଡୁବିଟାକୁ କାଢ଼ିଲା। ଫାଁକେ ଭାଙ୍ଗ ଜିଭ ମଝିକୁ ଛାଡ଼ିଦେଇ ଛେପ ଗିଳୁ ଗିଳୁ ଖନେଇ ଖନେଇ କହିଲା କବୀର ବୁଢ଼ା କଣ କହିଛି, ଜାଣୁ? କହିଛି

ଯବ ତୁମ ପଏଦା ହୁଏ ଜଗ ହଁସା, ତୁମ ରୋଏ
କରଲୋ ଏସି କରନି ଯାତେ ବକ୍ତ୍ ତୁମ ହସେ, ଜଗ ରୋଏ॥

ଜନମ କାଳରେ କାନ୍ଦି କାନ୍ଦି ଆସିଲୁ । ଜଗତ ହସିଲା, ଏପରି କରିଯା' ତୁ ହସି ହସି ଯିବା ବେଳକୁ ଜଗତ ତୋ ପାଇଁ କାନ୍ଦିବ ।

ମା ପୁଅ କେମିତି ଅଛନ୍ତି ବୋଲି ଗଲା ଆଇଲା ଲୋକେ ପଚାରନ୍ତି । ବନ୍ଧୁ ବାନ୍ଧବ ଦେଖିଆସନ୍ତି । ପାଖ ପଡ଼ୋଶୀ ମାନେ ପୁଅକୁ ଧରନ୍ତି । ଲସବୁଢ଼ୀ କହେ ପୁଅଟି ନାଦୁଲୁ ମାଦୁଲୁ । ହେଲେ ପୁତନାକୁ ଶୋଷିଲା ପରି କେମିତି ଶୋଷି ପକାଉଅଛି ଯେ ମାଁ ବୁଦୁରୀର ନାକ ଅଗରେ ଜୀବନ । ଭଗର ମାଁ ଆଇଛି । ଝିଅକୁ ଘେନିଯିବ ଆପଣା ଘରକୁ । ସେଇଠି ଯତନ ପାତନ କରିବ । ଶଶୁର ଘରେ ଜଞ୍ଜାଳ ସମ୍ଭାଳିବ କିଏ? ଶାଶୁଟା ଥାନ୍ତା ଭଲା, ନିନ୍ଦା ନାଇଁ ଟା ଶଶୁରକୁ । ପୁଅର ପେଟ ଭରୁନି ଶୁଣିଲା ଯେମିତି, ଏମିତି ହାଙ୍କି ଦେଲାଯେ ଚାରି ଚାରିଟା ମାଇକିନା କ୍ଷୀର ଖୁଆଇବାକୁ ହାଜର ।

ପରୁହାଁ ନାତିର ଖାଇବାକୁ ଅଭାବ କରିବେ ଠାକୁର? ଦଇବ ଯୋଗକୁ ବାଇଗିନୀର ମାଁ ପିଲାଟି ହୋଇଥାଏ । ଜାତିରେ ପାଣ ହେଲେ କଣ ହେଲା । ମା' କ୍ଷୀରରକି ଜାତି ଥାଏ? ପିଲାଟି ବଞ୍ଚିଲା ମା'ବି । ମା ମାଉସୀ ବିଷ୍ଣୁପ୍ରିୟା ରୋଜ ରୋଜ ସକାଳୁ ଆସେ ପୁଅକୁ ମାଲପା ମଖାଏ । କାଠି ଭାଙ୍ଗୁ ପତ୍ର ଭାଙ୍ଗୁ ଷଠୀମା'କୁ ଜେଜେ କରୁଁ । ନାହିଁରେ ତେଲ ଦେଇ ଦେଇ ଭୂଇଁର ତାତିରେ ସେକେ । କହନ୍ତି ପରା, ତେଲ ପଟା ପୁଅ କ୍ଷୀର ପଟାଧାନ । ଅଖୁଁ ଘିଅକରି ଦୁଧ ଧାଇ ସେକ ଧାଇ କରେ । ମା' ଛାତିର କଞ୍ଚା ତାତି ଆଉ ମାଟି ମାଁର ଶୁଖିଲା ତାତି ଖାଇ ଖାଇ ପୁଅ ହେଲା ଏଡ଼େଟିରୁ ଏଡୁଟିଏ ।

ମାଁକୁ କି ନିଉଛୁଣା ବାତ ଧରିଲା ସତେ ରାଜରାଣୀର ଠାଟଥିବା ଦିହ ଶୁଖି ଶୁଖି ଖଡ଼ିକା ପାତି ହୋଇଗଲା । ମାଁ ନଥିଲେ କେମିତି ହନ୍ତସନ୍ତ ହୋଇଥାନ୍ତେ ସତେ । ସତକୁ ସତ ଯାର ମାଁ ନାହିଁ ତାର ଗାଁଆ ନାହିଁ । ମୋ ପରି ଗୋଟିଏ ବାଲୁଙ୍ଗାକୁ ଜନ୍ମଦେଇ ମୋ ମାଁ ନିଜକୁ ଉଜାଡ଼ି ଦେଲେ । ଆପଣାର ସବୁକିଛି ସମର୍ପିଦେଇ ପାଇଲେ କଣ? ସବୁ ମାଁର ଆତ୍ମ ନିପୀଡ଼ନର ଏକ ଇତିହାସ ଅଛି ।

ପିଲାବେଳେ ପଢ଼ିଥିବା ଏକ ଇଂରାଜୀ କବିତା କାହିଁକି କେଜାଣି ମୋତେ ଭାରି ଭଲ ଲାଗେ, ସେ କବିତାର ସାର କଥାଟି ଏଇଠି ନ ଥୋଇ ରହିପାରୁନି । ପୁଅ କହିଲା ମା'କୁ । ମା'ଗୋ ଆମେ ଏଇ ଛେଛରି କୁଡ଼ିଆରେ କଣ ସବୁଦିନ ଥିବା? ମୁଁ ତତେ ଭଲ ଘରକୁ ନେଇ ଯିବି ମା' । ସହରକୁ ନେଇ ଯିବି । ଆହୁରି ସୁନ୍ଦର ଜାଗାକୁ ନେଇ ଯିବି । ମାଁ କହିଲା "ହଁରେ ପୁଅ, ପାରିବୁ ଯଦି ନେ" । ମା' ପୁଅ ବିହେଁ ଗଲେ । ଏ ଘର ଦେଖିଲେ ସେ ଘର ଦେଖିଲେ । ତହୁଁ ବଡ଼ା ତହୁଁ ବଡ଼ା ଅନେକ ଘର । ସଞ୍ଜ ହେବାରୁ ଜଣକର ପିଣ୍ଡାରେ ଶୋଇବାକୁ ମାଗିଲେ । ସେ ମନାକଲା । "ଏଠୁ ପଲା, ଏଠୁ ପଲା । ନାଲାଏକ କାହାଁକା । ସହରକୁ ଗଲେ । ଘର ପାଖରେ ଘର । ପକା ଘର, ହବେଲି ।

ଏକତାଲା, ଦୋ ତାଲା, ତିନିତାଲା, ଚଉତାଲା ଏପିଟି ଏମିତି ତିରିଶ ତାଲା। ଘର। ଦେଖିଲା ପୁଅ, ଦେଖିଲା ମା' ଆକାଶକୁ ଛୁଇଁବି ଛୁଇଁବି ହେଉଛି ଘର। ହେଲେ ମା ପୁଅ ପାଇଁ ଜାଗା କାହିଁ? ଯଉଠିକି ଯାଉଛନ୍ତି ଖାଲି ହଟୋ ହଟୋ, ଆଗକୁ ଯା ଆଗକୁ। ଦୂରଦୂର ମାର୍‌ମାର୍ କରୁଛନ୍ତି। ଖେଦୁଛନ୍ତି। ଶେଷରେ ଲେଉଟି ଆସିଲେ। ଆପଣା କୁଡ଼ିଆକୁ। ପୁଅ କହିଲା ମା' ଗୋ ମା' ତୁ ଯେଉଠି ମୋ ଘର ସେଇଠି। ତୁ ମୋର ସବୁଠୁ ନିରାପଦ ଘର। ଶେଷ ଆଶ୍ରା। ତୁ ତ ଅଛୁ ଏହାଠୁ ଆଉ କଉ ବଡ଼ ଘର ଦରକାର ଯେ! ଆଜିତ ମଙ୍ଗଳୁର ମା' ନାହିଁ। ସେ ଘର ପାଇବ କଉଠୁ ଯେ! ଆଶ୍ରା ପାଇବ କଉଠି? ଛେଉଣ୍ଡ ଟାଏ!



## ୬. ମଧୁବାବୁ ସଙ୍ଗେ ଲଢ଼ିବି

ଆମ ବେଳର ପାଠ ପଢ଼ାରେ ପାଠ ଯେମିତି ପଢ଼ାବି ସେମିତି। ସେକଥା ବଖାଣିଲେ ପୋଥି ହେବ। ଗୋରା ଶାସନ ଥାଏ। ପିଲାକୁ ଛଅ ହେଲେ ଚାଟଶାଳୀ। ଏବକାର ପରି ତିନିପ୍ଲସ୍ ହେଲେ ପିଲା ପାଠର ବୋଝରେ କୁଜା।

ସହରର ଛକ କହ କି ରାସ୍ତାକଡ଼ର ଗଛ ଛାଇ କହ କୁନି କୁନି ପିଲାଙ୍କର ଅନେକ ଭିଡ଼। ୟୁନିଫର୍ମରେ ଫିଟ୍‌ଫାଟ୍। ଟାଇରେ ଟାଇଟ ଗଣ୍ଠି। ପିଠିରେ ପାଠର ବୋଝ। ରିକ୍ସା ଭର୍ତ୍ତି ପିଲା। ସାଙ୍ଗରେ ଟିଫିନ୍ ଡ଼ବା, ୱାଟର ବୋଟ୍‌ଲ। ସର୍କସକୁ ବାଘ ବୁହା ହେବାପରି ବୁହା ହୋଇଯାନ୍ତି। ପବ୍ଲିକ ସ୍କୁଲର ପିଲା ଏମାନେ। କେଜିର ପିଲା, ଷ୍ଟାଣ୍ଡାର୍ଡ଼ ୱାନ ଟୁର ପିଲା। ବିଚାରୀ ମାରିଆ ମଣ୍ଟେସରିର ପିଲା। ଫ୍ରୋବେଲ, ଜନଡିଉର ପିଲା। ଆମେ ଥିଲୁ ବିଷ୍ଣୁଶର୍ମାଙ୍କର ପିଲା। ଏବକାର ପବ୍ଲିକ ସ୍କୁଲର ପବ୍ଲିକ ସହ ସଂପର୍କ କାହିଁ? ଯାର ପଇସା ତାର ଭରସା। ଜୀବନ ଜଞ୍ଜାଳରେ ବ୍ୟସ୍ତ ବାପ ମା'। କାଞ୍ଜି ହାଉସକୁ ଗୋରୁ ଖେଦିବା ପରି ପିଲାଙ୍କୁ ପାଠ ଗାରଦକୁ ଠେଳି ଦେଇ ପାରିଲେ, ଖୁସି। ପୁଅଝିଅଙ୍କୁ ପାଠ ଢ଼ୋକି ପିଏଇ ଦେବାର ବ୍ୟାକୁଳତା। ପିଲା ଗଲା ଆଇଲା। ଆଦବ କାଇଦା ଶହେକୁ ଶହେ। ପିଲା ମୁହଁରୁ ଡ଼ାଡ଼ି, ମାମିର ବରଷା। ବାପ ମାଁଙ୍କର ପାରିଲା ପଣର ଉଚ୍ଚାରଣ। ହେଲେ ପିଲାର ଭିତରଟା ଯେମିତିକୁ ସେମିତି। ମିଟୁ ରଟିଲା ପରି ପିଲା ରଟି ଦେଇଛି ନରସରି ରାଇମ୍, ମେଥ ଆଉ ମ୍ୟୁଜିକ୍। ଏମାନଙ୍କୁ ଅନେଇଲେ କାହିଁକି କେଜାଣି ମୋର ବାଲ୍ୟ ବେଳ ଓହ୍ଲାଇ ଆସେ। କେତେ ସୁନ୍ଦର ଶିଶୁ ଏମାନେ। ନୀରିହ ଶିଶୁ ଶାବକ ପରି। ଚ଼କରେ ଥୋଇ ମାଠି ଜାଣିଲେ ସିନା ଯା ଚାହିଁବୁ ଗଢ଼ିବୁ। ଖାଲିଚକ୍‌କୁ ଘୁରାଉଥିଲେ ଗଢ଼ିବୁ କଣ?

ବାପା କହିଲେ ଯା'ର ଖଡ଼ିଛୁଆଁ ସରିଛି ସରସ୍ୱତୀ ପୂଜାଦିନ। ଏବେ ଛଅ ପୂରିଲା।

କାଲିଠୁ ସ୍କୁଲ। ସଜକରି ପଠାଇବ। ମାଁ କହିଲେ ହଁ। ଆମ ଗାଁରେ ପ୍ରାଥମିକ ସ୍କୁଲଟିଏ ଥିଲା। ଗାଁ ମୁଣ୍ଡରେ ଦି'ବଖରା ଘର। ଟିଣ ଛାତ। ଶିକ୍ଷକ ବୋଇଲେ ଜଣେ। ଶିଶୁ, ପ୍ରଥମ, ଦ୍ୱିତିଅ, ତୃତୀୟ, ଚାରିଶ୍ରେଣୀ। ଷାଠିଏ ସରିକି ପିଲା। ସଭିଙ୍କୁ ସମ୍ଭାଳନ୍ତି। ପାଠ ନଥିଲା, ଶାଠ ଥିଲା।

ଆମ ପରିବାର ଯୌଥ ପରିବାର। ପ୍ରଥମ ନାତି ମୁଁ। ସଭିଙ୍କର ଗେଲ୍ହା। ଦୁଷ୍ଟାମିରେ ଗୁରୁ। ଏଠି କହିଲେ ସେଠିକୁ ଯିବା ପିଲା। ବାପା କହିଲେ ମାମୁଁଘରେ ରହିବ। ସେଠୁ କୁର୍ଲାଯିବ। ମାମୁଁଘର କୁଦୋପାଲି। ମାମୁଁମାନଙ୍କର ପୁଅନଥିଲେ। ସ୍ନେହରେ ମୋତେ ବୁଢ଼େଇ ରଖିଥିଲେ। କୁଦୋପାଲିରୁ କୁର୍ଲା ଡ଼ାକେ ବାଟ। ଉଚ୍ଚ ପ୍ରାଥମିକ ସ୍କୁଲଟିଏ ଥାଏ। କୁର୍ଲାରେ ପ୍ରଧାନ ଗୁରୁ ନାଁ କରା ଶିକ୍ଷକ। ଯୁଧିଷ୍ଠିର ପ୍ରଧାନ। ଚାରିଆଡ଼େ ନାଆଁ। ମାଟିକୁ ମଣିଷ କରିବାର କରାମତି ତାଙ୍କ ହାତରେ। ଯାହାଯାହା ଛୁଅନ୍ତି ସୁନା। ରାଜା ମିଦାସ୍ ପରି।

ଆମ ବେଳେ ଦି' ଓଳି ସ୍କୁଲ। ରାତି ପାହେ। ପାଖ ପୋଖରୀରେ ଦାନ୍ତଘଷୁ। ମୁହଁଧୋଉଁ। ନିପଟ ପଙସଲ। ଖଣ୍ଡେ ଗାମୁଛାରେ ମୁଢ଼ି ଗଁଠେଇ, ଖାଉଁ, କାଖରେ ବସ୍ତାନି। ବସ୍ତାନିରେ ବହିର ଭୀଡ଼ ନଥାଏ। ଗାଆଁରୁ ଗୋଟାଏ ଗୋଠ ବାହାରି ପଡ଼େ ଆଉ ଆଉ ପିଲାଙ୍କୁ ନେଇ। ପାଠ ବୋଇଲେ ପାଠ। ଶିକ୍ଷକ ପିନ୍ଧୁଥିଲେ ଖଣ୍ଡେ ଧୋତି। ଧରୁଥିଲେ କରିଆ ଖଣ୍ଡେ। ଦେହ ଯେମିତି ମୂକୁଳା, ମନବି।

ବାପା କହିଲେ, "ଯୁଧିଷ୍ଠିର ବାବୁ, ପୁଅକୁ ପାଇଲେ।" ସେ ହସିଦେଲେ। ହସିବାଟା ତାଙ୍କ ହଁ। ସେଇ କୁର୍ଲା ସ୍କୁଲରେ ମୋର ପ୍ରାଥମିକ ଶିକ୍ଷା।



## ୭. ଅଖ ବୁଲୁଥିଲେ ଚ଼କ ବୁଲୁଥାଇ

ଗୋରା ରାଜୁତି ସରିବ ସରିବ ହେଉଥାଏ। ଦେଶଟା ଉଠୁଥାଏ ପଡୁଥାଏ। ଆକାଶରେ ପଇଁତରା ମାରୁଥିବା ଉଡ଼ାଜାହାଜ ଆମକୁ ଭିଡ଼ି ନେଉଥାଏ ବାହାରକୁ। ଅନାରେ, ହେଇ! ଗଲା ଗଲା। ମେଘର ପେଟ ଚିରି। ଗୋଠରୁ ଗୋରୁ ଲାଞ୍ଜଟେକି ଦଉଡ଼ନ୍ତି ଏପଟ ସେପଟ। ଦ୍ୱିତିଅ ମହା ଲଢ଼େଇ ସରିଥାଏ। ଚାରିଆଡ଼େ ଗାନ୍ଧୀବୁଢ଼ାର ଡ଼ାକରା।

ଖାଉଟି ଦରବର ଅଭାବଥାଏ। ଗାଁରେ କିରାସିନି ମିଳୁନଥାଏ। ଆମେ ଗେଜିଆ ମହାରାଜଠାରୁ ସଂଗ୍ରହ କରି ଠୁଳ କରିଥାଉଁ। ନୂଆଁଖାଇ ହଉକି ଦଶହରା ଛୁଟି ହେଉ ଘରକୁ ଆଇଲେ ସେଇ କିରାସିନି ଆଣୁ।

ଅବତାର ସିଂ ଆଉ ବଳବନ୍ତ ସିଂଙ୍କୁ ଆମର ଭାରିଡ଼ର। ବି.ଏନ୍.ଆର୍ କମ୍ପାନୀର ଟି.ଟି.ଆଇ ଏମାନେ। ଭାରି କଡ଼ା ଲୋକ। ସତସତ କହିଲେ ରକ୍ଷା। ମିଛ କହିଲେ

ମଲୁ। ଦୁଷ୍ଟ ପାଇଁ ଦାନବ ଯେମିତି। ସାଧୁପାଇଁ ଲହୁଣୀ ପରି ଦେବତା। ଏଇ ଦୁଇ ଟି.ଟି.ଆଇଙ୍କୁ ନେଇ ନାନା ଗପ। ତାଙ୍କ ଝିଅଟିଏ ଆମ ସାଙ୍ଗରେ ପଢୁଥିଲେବି ଆମେ ଡ଼ରୁ ଅନେକ। ହେଲେ ଖାଣ୍ଟି କର୍ମଚାରୀ ସେମାନେ।

ଝାରସୁଗୁଡ଼ା–ସମ୍ବଲପୁର ପାସେଞ୍ଜର ଗାଡ଼ି। ଦିନକୁ ଦୁଇଥର ଆସେ। ଯାଏବି। ସକାଳୁ ଝାରସୁଗୁଡ଼ା ଛାଡ଼େ। ରାନ୍ଧୁଣୀ ଗାଧୁଆ ବେଳକୁ ସମ୍ବଲପୁର। ଅଧଘଣ୍ଟାଏ ପରେ ଲେଉଟାଣି ଯାତ୍ରା। ମଧ୍ୟାହ୍ନ ବେଳକୁ ଝାରସୁଗୁଡ଼ା। ଉପରବେଳା ସେଇପରି ଯା'ଆସ। ଆମେ ରେଙ୍ଗାଲିରୁ ଗାଡ଼ି ଚଢୁ। ଝାରସୁଗୁଡ଼ାରୁ ଆଇଲେ ରେଙ୍ଗାଲିରେ ଓହ୍ଲାଇ ଗାଁକୁ ଚାଲି ଚାଲି ଯାଉଁ। କେତେ ପ୍ରିୟଥିଲା ସେ ରେଲଗାଡ଼ି। ସୁଖବୋଲି କିଛି ନଥିଲା ତହିଁରେ। ନଥିଲା ଶୀତତାପ ସମାନ ରଖୁଥିବାଯନ୍ତ୍ର। ବସିବାକୁ ଗଦିନଥିଲା। ସେଲୁଲାର ଫୋନ୍ ନଥିଲା। ଟୁ ଟାୟାରକି ଥ୍ରି ଟାୟାର ନଥିଲା ତହିଁରେ। ହେଲେ ମୋ ପିଲା ବେଳର ରେଲ୍‌ଗାଡ଼ିରେ ଗାର୍ଡ଼ ଯେମିତି ଥିଲା, ଗରିମା ବି ସେମିତି ଥିଲା।

ଆମ ଗାଁକୁ ସଡ଼କ ନଥିଲା। ଗାଉଁଲି ଧରସା। ହିଡ଼ ଉପରେ ପାଦଚଲା ରାସ୍ତା। ଯିବତ ଶଗଡ଼ ଯିବ। ଯିବାକୁ ମଟରଗାଡ଼ି ନଥିଲା। ଏକ କଥାରେ ଆମ ଗାଁକୁ ବାଟ ନଥିଲା। ସମ୍ବଲପୁର ଯିବାକୁ ଚାହିଁଲେ ଶାସନକୁ ଯା। ରେଲରେ ଯିବୁ। ଚାଲି ଚାଲି ଗଲେ ଜମାଦାର ପାଲି, ଛତର କୁଇଁ, କାଇଁଶିର ଅଇଁଠାପାଲି ଦେଇ ଫାଟକ। ବାଟରେ ଲମ ଢୁଙ୍ଗୁରି। ବାଘର ହାବୁଡ଼ରେ ପଡ଼ିବୁ, ସାବଧାନ। ଦୁଇ ଦିଗରେ ନଈ। ଆଉ ଦୁଇ ଦିଗରେ ବଣ ପାହାଡ଼। ଏଣୁ ଆମେ ପିଲାବେଳରୁ ପଦାତିକ। ଘରକୁ ଝରକା ନଥିଲେ ଯିମିତି ଦୁଖ ପଳେଇ ଯାଏ। ଗାଁକୁ ବାଟ ନଥିଲେ ବିକାଶ ପଶେ ନାହିଁ।

ଆମ ଗାଁ ପାଖରେ ମାଇନର ସ୍କୁଲ ନଥିଲା। ଥିଲା ରମେଲାରେ। ହେଲେ ଇବନଈଟା ମଝିରେ। ଦୂରପିଲା ରହିବାକୁ ଛାତ୍ରାବାସ ନଥିଲା। ଛାତ୍ରାବାସ ଯହିଁ ଆମେ ତହିଁ। ଝାରସୁଗୁଡ଼ା ମନମୋହନ ମି.ଇ. ସ୍କୁଲରେ ଆମ ଗାଁର ଅନେକ ପିଲା ଆଗରୁ ପଢୁଥିଲେ। ଜନାର୍ଦ୍ଦନ ଧର, ବିରଞ୍ଚି ଧର ହାଇସ୍କୁଲରେ ଥିଲେ। ରାହାସ ବିହାରୀ ଧର, ତୋଫାନ ତ୍ରିପାଠୀ, ବଳଦେବ ବେହେରା, ପୂର୍ଣ୍ଣ ବେହେରା, ସନାତନ ତ୍ରିପାଠୀ, ମନମୋହନ ଏମ୍.ଇ ସ୍କୁଲ ଛାତ୍ରାବାସରେ ରହୁଥିଲେ। ମୋର ନାଁ ସେଠାରେ ଲେଖାଇଲି। ମାଁଙ୍କୁ ଛାଡ଼ି ଦୂରଜାଗାରେରହି ପାଠ ପଢ଼ିବାର ଅନୁଭୂତି ବଡ଼ ବିଚିତ୍ର। ଝାରସୁଗୁଡ଼ା ମଙ୍ଗଳ ବଜାରରେ ଆମ ଗାଁର କାହାକୁ ଭେଟିଲେ ତା ସଙ୍ଗରେ ଘରକୁ ପଳେଇ ଯିବାକୁ ମନହୁଏ। ଖରାଛୁଟି ପରେ ଯାଉଁ ଯେ ନୂଆଁଖାଇକୁ ଆସୁଁ। ଅଧରାତିରୁ ଷ୍ଟେସନରେ ହାଜର। ନିଦ ହେଉଚି କଉଠି? ଘରମୁହାଁ ମନ। ଆଖିକୁ ନିଦକାହିଁ? ସକାଳ ହେଲେ ସିନା ଗାଡ଼ି ଛାଡ଼ିବ?

ମୋ ଆଗରୁ ପଢୁଥିବା ପିଲାମାନେ ସ୍କୁଲ ବିଷୟରେ ନାନା କଥା ଗପନ୍ତି। ସାତକୁ ସତର କରନ୍ତି। ସତର ହୋଇଯାଏ ସାତ।

## ମଂଗଲୁ ଚରଣ ବିଶ୍ୱାଲ

ସବୁ ପିଲାଙ୍କ ମୁହଁରେ ଗୋଟିଏ କଥା ପ୍ରଧାନ ଶିକ୍ଷକ ଭାରି କଡ଼ା ଲୋକ। ଦିନକୁ ପଚାଶ ବିଡ଼ା ପାନ ଖାଆନ୍ତି। ଧୋତି ପଞ୍ଜାବୀର ଆଭରଣ। ରାଗିଲେ ହିନ୍ଦୀ। ନରମ ମିଜାଜରେ କଣ କିସ। ଖୁସିରେ ଫାଟିଯିବେ। ହସ କାହିଁ କେତେଦୂରକୁ ଶୁଭିବ। ଚିନ୍ତାମଣି ଡ଼ାକଟା ଇକୋ ହୋଇ ଶୁଭୁଥାଏ ପବନରେ। ପିନ୍ଧା ପଞ୍ଜାବୀକୁ ଉପରକୁ ମୋଡ଼ିବା ଆରମ୍ଭ କଲେ ଜାଣିବ ରାଗିବେ। ଗୋଟାପଣେ ବାଘ। ଏଡ଼େ ବଡ଼ ଝାରସୁଗୁଡ଼ାର ରାଜଦାଣ୍ଡରେ ପାହୁଣ୍ଡ ପାହୁଣ୍ଡ ଆସୁଥିବେ। ସତେ ଯିମିତି ଏକ ଗୁଣ୍ଡୁଣୀ ହାତୀ। ନବ ଗୁଞ୍ଜର ବାଘ ଦେଖିଲେ ଯିମିତି ସଭିଏଁ ତରାତରା ତାଙ୍କ ଆସିବା କି ଯିବା ଦେଖିଲେ ଲୋକ ମୁଣ୍ଡ ନୁଆଁଇ ଜୁହାର କରନ୍ତି। ରାସ୍ତା କଡ଼ରେ ଅଟକିଥାନ୍ତି। ମୋ ମନ ଭିତରେ ଏ ଯାଏଁ ତାଙ୍କର ଏକ ମୂରତି ଆସ୍ଥାନ ମାଡ଼ି ବସିଛି। ତାଙ୍କୁ ପିଲାଙ୍କର ଜୀବନେ ଡ଼ର। ମଣିଷ ଗଢ଼ିବାରେ ପୋଖତ ଥିଲେ ସେ। ସେ ବୁଝିଥିଲେ ପିଲାଙ୍କୁ ବିହନ ପରି ସାଇତିବାକୁ ହେବ। ପାଛୁଡିବାକୁ ହେବ। ଖରାରେ ଶୁଖାଇ ନିଖୁଣ କରିବାକୁ ହେବ। ବେଶୀ ପାଠ ପଢ଼ିନଥିଲେ। ଯେତିକି ପଢ଼ିଥିଲେ ସେଥିରେ ମଞ୍ଜଥିଲା ବେଶୀ ଭାଗ। ଶିକ୍ଷକର ସଜ୍ଞାଠାରୁ ଅନେକ ଉପରେ ଥିଲେ। ହିନ୍ଦୀ ଶିକ୍ଷକ ବିହାରୀ ଲୋକ। ନାଁ ନାମ୍‌ଜାଦ୍ ସିଂ। "କାହୋ ମଂଗ୍ଲୁ ତନିଧ'କେ ଆଓ ହୋ" ଡ଼ାକ ଶୁଣିଲେ ନିଦବି ଫାଟିଯିବ। ଛାତ୍ରାବାସ ସଦର ଦରଜା ପାଖରେ ଥାଇ ସେ ବାପାମା'ର କାମ କରୁଥିଲେ। ଆମକୁ ହସଉଥିଲେ, ବସଉଥିଲେ। ତାଙ୍କ କଠଉ ଶବ୍ଦ ଆମର ଘଣ୍ଟି। ଗାନ୍ଧୀମହାତ୍ମାଙ୍କ ଚେହେରା ପରି ଚେହେରା। ଧୋବ ଫରଫର ଧୋତି ଓ ଢ଼ିଲା। ୧୯୪୭ରେ ଯିମିତି ଦିଶୁଥିଲେ ୧୯୭୦ରେ ସେମିତି। ଗୁଣ କହକି ଅବଗୁଣ କହ। ଗାଧୋଇ ସାରି ଦୁଇ ଯାଆନ୍ତି। ତାଙ୍କ ଆଗରେ ହାତଯୋଡ଼ି ନତଜାନୁ ହେବାକୁ ମନହୁଏ।

ଥରେ ଘରକୁ ଆଇଲେ ଯିବାକୁ ମନ ବଳେନା। ବାପା ବୁଝାଇ କହନ୍ତି। ମା କହେ ପାଠ ନପଢ଼ିଲେ ମଣିଷ କେମିତି ହବୁ? ମଣିଷ ହବାକୁ ପାଠ ଯେ ଦରକାର, ଏବେ ବୁଝୁଛି।

ଛାତ୍ରାବାସରେ ଶହେ ଉପରେ ପିଲା। ପ୍ରତି କୋଠରୀରେ ଚାରିଜଣ। ଖଟ ବାକ୍ସ ଲଣ୍ଠନ। ପିଲା ଦିନରୁ ମୋର କଠଉ ଅଭ୍ୟାସ। ତାକୁବି ନେଇଥାଏଁ। ମାସକୁ ମାସ ଖର୍ଚ୍ଚ ଷୋହଳ ସେର ଚାଉଳ। ଦୁଇ ସେର ଭଜା ମୁଗଡ଼ାଲି। ଟଙ୍କାଏ ଚାରଣା ମେସ ଖର୍ଚ୍ଚ ଆଉ ଖରଚ ପାଇଁ ଉପର ପିଲାଏ ଆମର ଗାଇଡ଼। ଅନୁଷ୍ଠାନର ଚପରାଶୀ ଚିନ୍ତାମଣି ତ୍ରିପାଠୀ। ନିରଳସ ମଣିଷଟାଏ। କାମରେ ବୁଡିରହିଥାନ୍ତି। ଆମପାଇଁ ଦେବତାଟିଏ।

ମୋର ସ୍କୁଲ ମୋର ପିଲା ଘୋଷୁଥାନ୍ତି ସେଇ ମହାତ୍ମା। ଅନୁଷ୍ଠାନଟି ଥିଲା ତାଙ୍କର ପୁଅ। ତାଙ୍କର ପୁଅ ନଥିଲେ। ଝିଅଟିଏ। ଶାସନ ଶୃଙ୍ଖଳା ପାଠପଢ଼ା ସବୁରେ ବିଚକ୍ଷଣତା। ସ୍ଥାଣୁ ଶିକ୍ଷାକୁ ଗତିଶୀଳ କରିବା ତାଙ୍କର  କାମ। ଶିକ୍ଷକର ନିଜର ବିଚକ୍ଷଣ କୌଶଳ ହିଁ

ତାକୁ ଯୋଗ୍ୟ କରିଥାଏ। ମଣିଷକୁ ଭଲ ପାଇଲେ ଯାଇ ସବୁକାମ କରିହୁଏ। ଆମ ପ୍ରଧାନ ଶିକ୍ଷକ ଶ୍ରୀ କୁଞ୍ଜ ବିହାରୀ ପଣ୍ଡା ମଣିଷକୁ ଭଲ ପାଉଥିଲେ। ସେଥିପାଇଁ ତାଙ୍କ ଛାତ୍ରମାନେ ତାଙ୍କୁ ମାଳା କରି ଜପିବାକୁ ଆଗଭର ହୁଅନ୍ତି। ଝାରସୁଗୁଡ଼ାର ମନମୋହନ ମି.ଇ. ସ୍କୁଲ ଛାଡ଼ିବା ବେଳକୁ ଭାରତ ସ୍ୱାଧୀନତା ପାଇଗଲା। ପାଇଗଲା ବୋଲି ଆଉ କେହି ହେଣ୍ଡ୍ସି ମାରୁ  ନମାରୁ ମୁଁ ଦେଶର ବାନା ଉଡ଼ାଇବାକୁ ଚାଲିଲି ଲରମ୍ଭା। ଆଖିଓଦା କରି 'ଅଲବିଦା' କହିବାକୁ ରହିଗଲେ ଧନେଶ୍ୱର ଦାଶ, ଧ୍ରୁବରାଜ ନାଏକ, ଗୌରୀଶଙ୍କର ନାଏକ ଭଳି ବନ୍ଧୁମାନେ।



## ୮. ଅନ୍ୟ ଏକ ନାଳନ୍ଦା

ସ୍ୱାଧିନତା ମିଳିଥାଏ। ତାର ସୁଆଦ ପାଟିରେ ଲାଗିନଥାଏ। ଏ ପରିବର୍ତ୍ତନର ଚେର ରକତରେ ଚେରେଇ ନଥାଏ। ଏବେ କୋଉଠି ଚେରେଇଲାଣି ଯେ! ଝାରସୁଗୁଡ଼ା ମନମୋହନ ସ୍କୁଲ ରହଣି ମନରେ ବସା ବାନ୍ଧିଥାଏ। ତାଜା ଥାଏ ସେ ସ୍ମୃତି। ଆମ ବଙ୍ଗାଳୀ ଶିକ୍ଷକ 'ତୁମି ଝାର୍‌ସୁଗୁଡ଼ାର ଛେଲେ' କହିବା ବେଳକୁ ଭିତରଟା ଗୋଟାପଣେ ଶିହରି ଉଠେ। କଞ୍ଚା ସ୍ମୃତିକୁ ମନରେ, ଚଉତି ଚାଉତି ଗଲି ଲରମ୍ଭା।

ଆମ ଗାଁରୁ ଲରମ୍ଭା ଚାଳିଶ କୋଶ। ଶହେ ସରିକି କିଲୋ ମିଟର। ମହାନଦୀ ଉପରେ ପୋଲ ହୋଇନଥାଏ। ମୁଡ଼ୋଘାଟରୁ ବରଗଡ଼। ବରଗଡ଼ରୁ ତୁରୁମ୍। କଛି ବସ ଯିବାଆସିବା କରୁଥାଏ। ବାଟରେ ଲରମ୍ଭା। ଆମ ଗାଁରୁ ପାଦରେ ଚାଲିଯିବାକୁ ହୁଏ। ବାଟରେ ଯୋଗକୁ ଯାହା ମିଳିଲା ବସିଯା। ଏଣୁ ଆମେ ସଦବେଳେ ପଦାତିକ। ଜୁଲାଇ ପହିଲା ବେଳକୁ ସ୍କୁଲ ଖୋଲେ। ମୌସୁମୀ ଆସିଥାଏ। ମେଘଳଦା ଆକାଶ। ଅମାନିଆଁ ଆଷାଢ଼ର ଆଡ଼ମ୍ବର ଗରଜୁଥାଏ। ତୁହାକୁ ତୁହା ଛେଚେ। ଯିବାକୁ ହେବ। ମହାନଦୀରେ ତୋଳ ଫିଟିଥାଏ। ଲୋକ କହନ୍ତି ତୋଳ ଫିଟିଲେ ବରଷା ଆସେ। ଜୁନ୍ ୧୫ରେ ତୋଳ ଫିଟେ। ଲମ ଡୁମୁରି ପାରି ହୋଇ ଡ଼ଙ୍ଗାରେ ମହାନଦୀ ପାରି ହେବାକୁ ହୁଏ। ଘରୁ ସକାଳରୁ ବହାରିବୁ ଯେ ସଞ୍ଜକୁ ଲରମ୍ଭା। ଦିନ ତମାମ୍ ବସି ଉଠି ଯାଉଥା ଯେ ଯାଉଥା। ଏଁ ଏଇତ ଲରମ୍ଭା। କାଳିଦାସୀ ତାଳ ତମାଳର ବଣ। କେଇ ଖଣ୍ଡ ଘର। ମଳିନ କାନ୍ଥ। କେଉଁଟେନ୍ ପାଲି ଡ଼ାକେ ବାଟ। ତଳି ଲରମ୍ଭା, ଉପର ଲରମ୍ଭା। ଝାଟିମାଟିର ବସତି। ପାଉଁଶିଆ ପାଉଁଶିଆ। ଆକାଶ ଛୁଆଁ ତାଳବଣ। ଶୁଖିଲା ଭୂଇଁ ସଦାବେଳେ ଖାଁ ଖାଁ। ଆଉ ଏବେ? ସୁଜଳା ସୁଫଳା, ଆମ ବେଳର ଲରମ୍ଭା ସହ ଏବର ଲରମ୍ଭାର ସମ୍ପର୍କ କଣ? ଜାତି ଜାତିଘର ଏବେ ପ୍ରତିଯୋଗିତାର ଦଉଡ଼ରେ ଠିଆ ଯେପରି। ଏକ ପରିପୁଷ୍ଟ ଅନୁଦାର ସହର। ସ୍ୱାଭିମାନୀ ସେ ଲରମ୍ଭା ଉପରେ ସବାର ହେବାକୁ ବ୍ୟଗ୍ର ସତେ!

ତାଳ ତମାଳର ଛିନ୍ନ ଛାଇ। ଶାନ୍ତ ନିଥର କୋଳ। ଅଳ୍ପ ବସନା ମଫସଲୀ ଝିଅଟାଏ ଯେମିତି। ଯେଉଁଠି ଜୀବନର କିଛି ମାନେଥିଲା। ବିଷୟ ବୈରାଗୀ ଗୈରିକ ସାଧୁର ସ୍ଥବିର ଆଶ୍ରମ ପରି ସେ ଅନୁଷ୍ଠାନ। ସଜଫୁଟା ଫୁଲପରି ମନୋରମ। ମନ୍ତ୍ର ଉଚ୍ଚାରଣ ପରି ସ୍ପଷ୍ଟ। ମେଘଶୂନ୍ୟ ଆକାଶ ପରି ପରିଛନ୍ନ। ଓଁକାର ଧ୍ୱନି ପରି ଗଭୀର ଓ ଗମ୍ଭୀର।

ଲରମ୍ଭା ଆବାସିକ ବିଦ୍ୟାଳୟର ସୁନାମ ଥିଲା। ଏଣୁ ଚାରିଆଡୁ ପିଲା ଧାଉଁଥିଲେ। ପ୍ରାୟ ସବୁପିଲା ଛାତ୍ରାବାସରେ ରହୁଥିଲେ। ଆଖପାଖ ଗାଁରୁ କିଛି ପିଲା ଯା ଆସ କରୁଥିଲେ। ପଢ଼ିବା ଛଡ଼ା ଆଉ କାମ କଣ? ଦଣ୍ଡା ବାଳୁଙ୍ଗାଙ୍କ ପାଇଁ ବିଶ୍ୱକର୍ମାମାନେ ଥିଲେ ସେଇଠି। ସବୁ ଶିକ୍ଷାନୁଷ୍ଠାନର ମୂଳପିଣ୍ଡ ପ୍ରଧାନ ଶିକ୍ଷକ, କିରାଣି ଓ ଚପରାଶି। ଏମାନେ ଭଲତ ଅନୁଷ୍ଠାନ ଭଲ। ଏମାନେ ବିଗିଡ଼ିଲେ, ଅନୁଷ୍ଠାନ ଗଲା। ଆମ ପ୍ରଧାନ ଶିକ୍ଷକ ଖଗେନ୍ଦ୍ରନାଥ ସେନ୍‌ଗୁପ୍ତ ଗୋଟାପଣେ ସମର୍ପି ଦେଇଥିଲେ ନିଜକୁ। କିରାଣୀ ବାବୁ ଶତ୍ରୁଘ୍ନ। ସତକୁ ସତ। ସେ ଶତ୍ରୁ ମାରିବେ କଣ? ତାଙ୍କ ସାମନାରେ ଶତ୍ରୁତ ଆପେ ଆପେ ମରିଯାଉଥିଲା। ଚାରି ଫୁଟିଆ ମଣିଷଟାଏ। ସକାଳୁ ଅଫିସ ଯିବେ ଯେ ସଞ୍ଜଯାଏ ସେଇଠି ଥିବେ। ବେଳ ଅବେଳ କଣ? ଅଫିସ ଖଣ୍ଡକ ଯେମିତି ତାଙ୍କ ଘର। ନିରଳସ ନିର୍ବିକାର ମଣିଷଟିଏ। ଅକ୍ଷର ଯେମିତି ଗୋଲ୍ ଗୋଲ୍ ତାଙ୍କ ମହିମାବି। ଚପରାଶି ନାରାଣ ପିଲାଙ୍କର କୃଷ୍ଣ ସୁଦାମା ସଖା। ଥିଲା ନଥିଲା ବେଳକୁ ଚିହ୍ନେ। ନିଆଁକୁ ନିଆଁ ଚିହ୍ନିଲା ଭଳି ଅଭାବକୁ ଚିହ୍ନେ। ପେଟକଥା ବୁଝେ। ପିଠିକୁ ଭାଇପରି ଆବୋରି ବସେ। ପ୍ରଧାନ ଶିକ୍ଷକ କି, ଶତ୍ରୁଘ୍ନ ବାବୁ ନାରାଣ କହିବା ଆଗରୁ 'ହଜୁର' କହିପକାଏ। ଲରମ୍ଭାରେ ଅନେକ ବଙ୍ଗାଳୀ ଶିକ୍ଷକ ଥିଲେ। ଏଥିପାଇଁ ଜଣେ ପରିଦର୍ଶକ ଆକ୍ଷେପ କଲେ। ତାର ଦୃଢ଼ ବିରୋଧ କଲେ ବ୍ରଜମୋହନ ପଣ୍ଡା। ଆଜି ଆମେ ଜାତୀୟ ସଂହତି ପାଇଁ ବ୍ୟାକୁଳ। ଭାଷାଗତ ବିଭେଦ ଭୁଲି ସମସ୍ତଙ୍କୁ ଏକାଠି ରଖି ଜାତୀୟ ସଂହତି ରୂପ ଦେବା ଥିଲା ବ୍ରଜ ମୋହନବାବୁଙ୍କ ଦୃଷ୍ଟିଭଙ୍ଗି। ମଫସଲର ପିଲା ହୋଇଥିବାରୁ ସେ ପାଠପଢ଼ାର ଅସୁବିଧା ବୁଝିଥିଲେ। ଏଣୁ ଆବାସିକ ବିଦ୍ୟାଳୟ ଗଢ଼ିଥିଲେ। ଏବେ ସରକାର ନବୋଦୟ ବିଦ୍ୟାଳୟରେ ଯାହା କରିପାରୁ ନାହାନ୍ତି ବ୍ରଜମୋହନ ପଣ୍ଡା ତାହା ସ୍ୱାଧିନତା ପ୍ରାପ୍ତିର ବହୁ ଆଗରୁ ଦେଖେଇ ଦେଇଥିଲେ। ସେ ପୁଣି ନିଜ ହାତରୁ ଖର୍ଚ୍ଚକରି। କୃଷି ଓ ଶିକ୍ଷା ପାଇଁ ତାଙ୍କର ଦୃଷ୍ଟିଭଙ୍ଗି ସୁଦୂର ପ୍ରସାରୀ ଥିଲା। ସେ କହିବାଠୁ କରିବାକୁ ବେଶୀ ପସନ୍ଦ କରୁଥିଲେ।

ଫେସକଟ୍‌କୁ ଆଜିବି ମନେପଡ଼େ। ସେ ରୋଜ ରୋଜ ସକାଳୁ ଛାତ୍ରବାସକୁ ମୁଢ଼ିବିକି ଆଣୁଥିଲେ। ବଗୁଲିଆ ପିଲାଏ ତାଙ୍କର ଏ ନାଆଁ ଦେଇଥିଲେ। ଅର୍ଥ କରୁଥିଲେ ସୁନ୍ଦରୀ। ବୁଢ଼ୀ ଶୁଣି ଖୁସି। ସେଇ ମା'ଙ୍କୁ କୋଟି କୋଟି ପ୍ରଣାମ। ଅଗଣିତଙ୍କ ଭିତରେ ହଜିଯାଇଥିବା ଜଣେ ପୁଅ ତାଙ୍କୁ ମନେ ରଖିଛି।

ଲରମ୍ଭା ପାଠପଢ଼ା ଏକ କୃଚ୍ଛ୍ର ସାଧନା । ବୌଦ୍ଧଯୁଗୀୟ ଶିକ୍ଷଣ ପ୍ରଣାଳୀର ଅନୁରୂପ ଥିଲା । ଦୁନିଆରେ କେହି ଶହେକୁ ଶହେ ତୁଳସୀ ନୁହନ୍ତିକି ବିଛୁଆତି ନୁହନ୍ତି । ଗୋଟାପଣେ ଦେବତା ନୁହନ୍ତି କି ଦାନବ ବି ନୁହନ୍ତି। ସଭିଙ୍କ ଭିତରେ ଆଠଣି ପରି ଚୁପ୍‌ଚାପ୍ ଧରମାଟିଏ ନଥିବ ବା କାହିଁକି? ପିଲା ଭିତରୁ 'ମଞ୍ଜ'କୁ ଠଉରାଇ ପାରିଲେ ହେଲା। ଏବେତ ସବୁ ଉପରୁ ଆସୁଛି। ଟେପରୁ ପାଣି ଭଳି। ଭଗାରିର 'ଛି' ଭିତରେ ବନ୍ଧୁର ସଦାଳାପ ଖୋଜିବାକୁ ହେବ। ଜିତିବା ଭଳି ହାରିବା ବି ସୁଆଦିଆ। ନିଜଛାଇ ପରି ନିଜକୁ ନିଜେ ଭଲ ପାଇବାର ଅଭ୍ୟାସ କରଉଥିଲା ଆମ ଅନୁଷ୍ଠାନ। ଏବେତ ଏଠି ସେଠି ସବୁଠି ଅନୁଷ୍ଠାନ। ପିଲାଙ୍କୁ ମାଠିମାଠି ଗଢ଼ିବାର କୌଶଳ ଜାଣିବେ ବା କାହିଁ? ବହୁପିଲା ଏକାଠି ଚ଼ଳି ପାଠପଢ଼ିବାର ମାନସିକତା ଏବେ ମିଳିବ କେଉଁଠୁ? ଆପଣା ବୁଦ୍ଧିରେ ଠାକୁର ହେବାକୁ ବଟଉଛି କିଏ?

ରୋଜ ରୋଜର ରୋଟିନ୍ କାମକୁ ନିର୍ମମ ଭାବେ ଧ୍ୟାନ ଦିଆଯାଉଥିଲା। ସାହିତ୍ୟ, ସଂସ୍କୃତି, କଳାଶିକ୍ଷା ପ୍ରତି ନଜର ଦେଉଥିଲା। ଏଣୁ ଶିକ୍ଷକ ଜନାର୍ଦ୍ଦନ ପାତ୍ର ଓ ନିତ୍ୟାନନ୍ଦ ନାୟକ ଉତ୍ସାହରେ 'ଜ୍ୟୋତି' ପତ୍ରିକା ଓ ପରେ 'ଛାତ୍ର ଭାରତୀ' ପତ୍ରିକା ପ୍ରକାଶ ପାଇଲା। ଆମ ଭିତରୁ ରଣଛୋଡ଼ ମିଶ୍ର ଗୀତ ଗାଉଥିଲେ। ଶ୍ରୀ ବିଭୂତି ପାଣିଗ୍ରାହୀଙ୍କ ବହୁମୁଖୀ ପ୍ରତିଭାଥିଲା। ପତ୍ରିକା ସଂପାଦନା, ନାଟକ ନିର୍ଦ୍ଦେଶନାରେ ତାଙ୍କର ଦକ୍ଷତା ଥିଲା। ଭୋଳାନାଥ ନାୟକ ଚିତ୍ର ଆଙ୍କିବାରେ ଆଗ୍ରହୀଥିଲେ। ହରିଶଙ୍କର ବଡ଼ପଣ୍ଡା, ଶ୍ରୀରାମ ପାଣିଗ୍ରାହୀ କବିତା ଲେଖୁଥିଲେ। ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ନୂତନ ଆଗ୍ରହ ସୃଷ୍ଟି ହେଲା।

ପତ୍ରିକା ବାହାର କରିବା, ନାଟକ ମଞ୍ଚରେ ଥୋଇବା, ବଣଭୋଜି ଐତିହାସିକ ସ୍ଥାନ ବୁଲି ଦେଖିବା, ବିତର୍କ ସଭା, ପାଠଚକ୍ର, ସେମିନାର ଆଦିର ଆୟୋଜନ କରିବାକୁ ଶିକ୍ଷକ ଗଣ ଉତ୍ସାହ ଦେଉଥିଲେ। ଦୟା ସାଗର ପଣ୍ଡାଙ୍କ 'ଶୁଭଦ୍ରା ହରଣ' ସେତେବେଳେ ବେଶ ନାଁ କରିଥିଲା। ଜନାପଢ଼ା ଓ ମନାପଢ଼ାର 'ଜରତା ନାଟକ' ବରଗଡ଼ ଅଞ୍ଚଳରେ ପ୍ରସିଦ୍ଧ ଥିଲା।

ଆମେ କେଇଜଣ କମ୍ୟୁନିଷ୍ଟ ହେବାପାଇଁ ମନକଲୁ। ଲାଲକୁର୍ତ୍ତା, ଲାଲରୁମାଲ୍ ବ୍ୟବହାର କରି 'ସବ ଲାଲ୍ ହୋଯାଏଗା' ଘୋଷିଲୁ। କମ୍ୟୁନିଷ୍ଟ ମାନେ ସବୁଯୁଗରେ କାହିଁକି କେଜାଣି 'ବାଘର ବଇରୀ ଆଖିର କୁଟା' ହୋଇ ରହିଆନ୍ତି। କମ୍ୟୁନିଷ୍ଟର 'କ' ନବୁଝି ଆମେ ମସ୍‌କୋର ସ୍ୱପ୍ନ ଦେଖିଲୁ। ଲେଲିନ୍‌ଙ୍କୁ ଗୁରୁବୋଲି ମାନିଲୁ। ନଟବର ବନଛୋର, ସୋମନାଥ ପଣ୍ଡା, ବଜେନ୍ଦ୍ର ମହାକୁରଙ୍କ ସହ ସମ୍ପର୍କ ରଖିଲୁ। ଖୋର୍ଦ୍ଧାର ପ୍ରାଣନାଥ ପଟ୍ଟନାୟକଙ୍କ 'ନୂଆଁ ଦୁନିଆଁ'ରେ ବିପ୍ଳବୀ କବିତା ଲେଖିଲୁ ବିଭୂତି ପାଣଗ୍ରାହୀ 'ବିଦୃପ' ପତ୍ରିକା ବାହାର କଲେ କମ୍ୟୁନିଷ୍ଟ ହେବୁ ହେବୁ କହି କିଛି ହେଲୁନି।



# ୯. ସାଇତା ସ୍ମୃତିର ଆକରୁ

ଯି ଲୋକର ଜୀବନରେ ଚଢ଼ା ଉତୁରା ଅଛି। ଲରମ୍ଭାର ଆବାସିକ ବିଦ୍ୟାଳୟର ଜୀବନରେ ସେପରି ନହେବ ବା କାହିଁକି? ସେଇଠି ଆମ ସମୟଟି ତା'ର ଉଠାଣିର ସମୟ। ଆମ୍ଭେ ଥିଲୁ ବୋଲି ଯେ ହେଲା, ସେ କଥା ନୁହେଁ। ଯେ' କେହି ଥିଲେ ସେମିତି ହୋଇଥାନ୍ତା। ସେପରି ଏକ ସ୍ୱଚ୍ଛ ସମୟରେ ଆମେ ସେଠି ଥିବାରୁ ବହୁ ସୁଯୋଗ ଲାଭ କଲୁ। ଆମ ପାଇଁ ଲରମ୍ଭା ଗର୍ବ କଲା କି ନାହିଁ କହି ହେବ ନାଇଁ। ବରଂ ତା ପାଇଁ ଛାତି ଫୁଲାଇ ପାରୁଛୁ।

ଆମ ସମୟରେ ଲରମ୍ଭାର ନାଆଁ ଥିଲା। ଏଣୁ ବହୁ ଦୂରରୁ ପିଲା ପଢ଼ିବାକୁ ଆସୁଥିଲେ। ପାଠ ପଢ଼ାତ ଉଚ୍ଚ ମାନର ଥିଲା। ଏଣୁ ବାପ ମା କିଶୋର ପିଲାଙ୍କୁ ଛାଡ଼ି ଦେବାକୁ କୁଣ୍ଠାପ୍ରକାଶ କରୁନଥିଲେ। ପିଲାକୁ ପାଠୁଆ କରିବାର ମାନସିକ ବୋଝ ନିଜେ ମୁଣ୍ଡରୁ ଉତାରି ପାରୁଥିଲେ। ଏଠି ସେଠି ଗୋଟିଏ ଦୁଇଟା ସରକାରୀ ସ୍କୁଲଥିଲା। ସେ ଗୁଡ଼ିକରେ ଛାତ୍ରାବାସ ନଥିଲା। ମଫସଲୀ ପିଲାଙ୍କର କାମରେ ଆସୁ ନଥିଲା। ଆମ ଜିଲ୍ଲାରୁ ପିଲା ଆସୁଥିଲେ। ଆମ ସାଙ୍ଗରେ ମଧ୍ୟପ୍ରଦେଶର ପିଲାବି ପଢୁଥିଲେ। ଲରମ୍ଭାକୁ ଦୁଇ ପ୍ରକାର ପିଲା ଆସୁଥିଲେ। ଭଲ ପଢୁଥିବା ପିଲା ଆଉ ବଦମାସ ପିଲା। ଏ ଦୁଇ ପ୍ରକାରର ପିଲା ଏକାଠି ରହି ଗଙ୍ଗା ଯମୁନାର ସଙ୍ଗମ ପରି ଏକାକାର ହୋଇ ଯାଉଥିଲେ ଏ ସଂଯୋଗରେ କିଛି ବିଲକ୍ଷଣ ବି ଦେଖା ଦେଉଥିଲା। ସେ ଗୁଡ଼ିକ କିଛି କୁପ୍ରଭାବ ପକାଇ ପାରୁ ନଥିଲା। ପରିବେଶର ବିଶାଳତା ଓ ପ୍ରଶାସନର ସ୍ୱଚ୍ଛତା ସେ ଗୁଡ଼ିକୁ ଗିଳି ଦେଉଥିଲା। ଲରମ୍ଭା ଥିଲା ଉତ୍ସାହର ଉତ୍ସ। ପରୀକ୍ଷାରେ ଥରେ ଫେଲ୍ ମାଇଲେ ପିଲା ଭାଙ୍ଗିପଡ଼େ। ମନ ଲାଗେନା ଆଉଥରେ। ଅନୁଷ୍ଠାନ ମଧ୍ୟ ସେପରି ଅସଫଳ ପିଲାଙ୍କୁ ପ୍ରେରଣା ଦେଇ ପାରନ୍ତି ନାହିଁ। ଏ ଦିଗରେ ଲରମ୍ଭାର ନାହିଁ ନଥିବା ଦକ୍ଷତା ଥିଲା। ଚ଼ରୈବେତି, ଚ଼ରୈବେତି ଆଗେଇ ଯା, 'ଆଗେଇ ଯା' ଥିଲା ଲରମ୍ଭାର ଡ଼ାକରା। ଆମେ ଯେତେବେଳେ ଅଷ୍ଟମ ଶ୍ୟାମ ଷଡ଼ଙ୍ଗୀ ପଢୁଥିଲେ ଏକାଦଶରେ। ଆମେ ଏକାଦଶ ଯିବା ବେଳକୁ ସେ ଆମ ସାଙ୍ଗରେ ପଢ଼ିଲେ। ସେ ଆମ ପରବର୍ତ୍ତୀ ମେଟ୍ରିକ ପିଲାଙ୍କ ସହ ପାଶକଲେ। ସେ କୁଆଡ଼େ ଏଗାରଥର ମେଟ୍ରିକ ପରୀକ୍ଷା ଦେଇଥିଲେ। ଲରମ୍ଭା ଶ୍ରୀମାନ୍ ଷଡ଼ଙ୍ଗୀଙ୍କୁ ସମ୍ମାନିତ କଲାକି ନାହିଁ, ମୁଁ ଜାଣେନା। ତାଙ୍କ ନୀରବଚ୍ଛିନ୍ନ ଚେଷ୍ଟା ଓ ଏକାଗ୍ରତା ନିଶ୍ଚିତ ପୁରସ୍କୃତ ହେବାକଥା। ଯେଉଁ ଅନୁଷ୍ଠାନ ଏଭଳି ଉଦ୍ୟମୀ ଛାତ୍ରଙ୍କୁ ଉତ୍ସାହ ଦେଲା ତାର ପ୍ରଶାସନିକ ଉଦାରତା କୁ ସମ୍ମାନ ଜଣାଇବାକୁ ହେବ। ପିଲା ଭିତରେ ହତାଶା ନ ଆଣି ନୂଆଁ ମୋଡ଼ ପୂରାଇବାରେ ଏ ଏକ ନୂଆ କଉଶଳ। ଆମ

ବେଳକୁ ମାନେ ବହି ପ୍ରାୟ ନଥିଲା। ଏଣୁ ନିଜ ସିଂହରେ ନିଜେ ମାଟି ତାଡ଼ିବା କଥା। ଏବେ ଅଙ୍କ ଖଣ୍ଡେ ନ ହେଲା। ଖୋଲିପକା ମାନେବହି Made easy ଉତାରିଦେ। କାମ ସରିଲା। ଆମ ପାଇଁ ସେ ସବୁ ସପନ। ଅଙ୍କ ଖଣ୍ଡେ ଟାଣୁଆ ଲାଗିଲା। ଆଉକି ନିଦ ହେବ? କାଉଳି ବାଉଳି ଅବସ୍ଥା କହିଲେ ନ ସରେ। ଭିଡ଼ା ଉଟରା କଷାକଷି। ଏପଟୁ ସେପଟୁ କସରତ। ପଂଝାଏ ଠୁଳ ହୁଅନ୍ତି। ପିଲା ଭିତରେ ଭିତରେ ଟଣାଭିଡ଼ା ଚାଲିଥାଏ। କେଉଁ ଲଗା ଲୁତୁରିଆ ପିଲା ପ୍ରଥମକୁ କହେ ଦୁତିଅ କରି ପାରିଲାନି, ପାରିବୁତ ଦେଖ। କଥା ଏ କାନରୁ ବାର କାନକୁ ଯାଏ। ପୂର୍ଣ୍ଣଚନ୍ଦ୍ର ନାଥ, ଟିକେଲାଲ ମେହେର ଭଲ ଅଙ୍କ କରନ୍ତି। ଏକ ଟାଣୁଆ ବାହିନି ଅଙ୍କ ଅରାତି କୁ ଅକ୍ତିଆର କରିବା କାମରେ ଲାଗି ପଡ଼ନ୍ତି। ଯୋଗକୁ ଅଙ୍କଟି ଦୁଃଶାସନ ପାଲଟିଲେ। ଭୀମ ପାଖକୁ ଯିବାକୁ ହେବ। ଆମ ରାଜକୁମାର ସରକାର ଓ କ୍ଷତ୍ରିୟ ମେହେର ଅଙ୍କ କଷିବାରେ ଭୀମ। ଏମାନେ ଆମର ଶିକ୍ଷକ। ବେଳେ ବେଳେ ଏମାନଙ୍କ ଅକଲ ବି ଗୁଡୁମ୍ ହୋଇଯାଏ। କଡ଼ାପାନ ଖଣ୍ଡେ ଖାଇ ଆମ ସରକାର ସାର୍ ଅଙ୍କ ରାକ୍ଷସର ତ୍ରୁଟି ଖୋଜନ୍ତି। ତ୍ରୁଟିଟା ପାଇଗଲେ ରାତି ହଉ କି ଅଧରାତି ହେଉ ସଞ୍ଜ ହେଉକି ସକାଳ ହେଉ ସେ ଆମ ପାଖକୁ ଧାଇଁ ଆସନ୍ତି ପାଗଳା ପଣ୍ଡିତ ଆର୍କିମେଡିସ୍ ଭଳି। ୟୁରେକ୍‌କା ୟୁରେକ୍‌କା (ପାଇଗଲି, ପାଇଗଲି) ହୋଇଗଲା ହୋଇଗଲା। ବହୁଚେଷ୍ଟା ପରେ ଭିଡ଼ ଅଙ୍କ ଖଣ୍ଡେ କରି ପାରିବାର ଆନନ୍ଦ ଯେ କେତେ ସେ କଥା କାହାକୁ ବୁଝାଇ କହି ହେବ ନାହିଁ। ଆଜି ସେ କଥା କାହିଁ? ଭିଡ଼ ପଡିଲେ ମାନେ ବହି ଅଣ୍ଡାଳିଲେ। ଚେଷ୍ଟା କରିବାର ପ୍ରବୃତ୍ତି କାହିଁ? ଏବେ ସାର୍‌ଙ୍କୁ ପଚାରିଲେ ସେ କହିବେ "ରୁହ, ପରେ କରିବା।" ଜାଗତିକ ଜଞ୍ଜାଳରେ ବୁଡ଼ିରହିଥାନ୍ତି ସାର୍। ପିଲାଙ୍କୁ ମାଠି ମାଠି ଗଢ଼ିବାର ମନ କାହିଁ? ଏଣୁ ଜାଣିବାର, ଖୋଜି ଖୋଜି ବାହାର କରିବାର ପ୍ରବୃତ୍ତି ପିଲାଏ ପୋଡ଼ି ଖାଇଲେଣି। ଯେଉଁଠି, ଦେଖିବ ଟେକାପାଣି, ସ୍କୁନ୍ ଫିଡ଼ିଙ୍ଗ! ମାଗି ଆଣି ଥିବା ତିଅଣ ସୁରୁପେ ନ ହେବତ କେତେ ହେବ?

ଲରମ୍ବା କଥା କହି ବସିଲେ ପୋଥିହେବ। ବ୍ରଜମୋହନ ପଣ୍ଡାଙ୍କୁ ପାଶୋରି ହେବନାହିଁ। ଦେଖିବାକୁ ସୁନ୍ଦର। ବାହାରଟା ଯେମିତି, ଭିତରଟା ସେମିତି। ଭିତରଟା ବାହାର ଠାରୁ ଆହୁରି ସୁନ୍ଦର, ଗଭୀର ଓ ବିଶାଳ। ତାଙ୍କ ଭିତରେ ଯେମିତି ଆକାଶ ଆଉ ସମୁଦ୍ର ଖୁନ୍ଦାଖୁନ୍ଦି ହୋଇ [illegible]। ତାଙ୍କ ସହ ମୁହାଁ ମୁହିଁ କଥା ହେବାର ସାହସ ପାଇନି କେବେ। ତାଙ୍କ ପୁଅ ଗଙ୍ଗା [illegible]କ୍ଷଣ ପଣ୍ଡା ଆମ ଆଗରୁ ଶିକ୍ଷକ ଥିଲେ। ଆମ ଛାତ୍ରାବାସକୁ ଆସି ଧରମ କରମ କ[illegible] କହୁଥିଲେ ବେଳେବେଳେ। ବ୍ରଜମୋହନ ବାବୁ ମୋଧାବୀ ଥିଲେ ଓ ମଫସଲର ପିଲା ଥିଲେ ଏଣୁ ମଫସଲୀ ପିଲାଙ୍କର ପାଠପଢ଼ାରେ ଅସୁବିଧା ବୁଝିଥିଲେ। ଏଣୁ ମଫସଲରେ ଅନୁଷ୍ଠାନଟିଏ ଗଢ଼ି ମଫସଲୀ ପିଲାଙ୍କୁ ପାଠ ପଢ଼ାର ସୁଯୋଗ ଦେବା

ତାଙ୍କର ଲକ୍ଷ୍ୟଥିଲା । ଲରମ୍ଭାକୁ ସେ କେନ୍ଦ୍ର କଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ବିକାଶରେ ତାଙ୍କର ଦାନ ଅଛି । ବରଗଡରେ ମଧ୍ୟ ଶିକ୍ଷା ପାଇଁ ଜମିଦାନ କରିଛନ୍ତି । ପଶ୍ଚିମ ଓଡ଼ିଶାର ଶିକ୍ଷା, ସଂସ୍କୃତି କୃଷି ଓ ଶିଳ୍ପ ବିକାଶ ପାଇଁ ତାଙ୍କର ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀ ଥିଲା ଏବେ ତାଙ୍କ ପୁଅ ପଦ୍ମଲୋଚନ ପଣ୍ଡା ଓ ନାତି ଯଦୁନନ୍ଦନ ପଣ୍ଡା ସେପରି ଉଦ୍ୟମରେ ବ୍ରତୀ । ବ୍ରଜମୋହନ ପଣ୍ଡା କେବେ ଆତ୍ମପ୍ରଚାର ଚାହିଁନଥିଲେ । ସେ ଜ୍ଞାନୀଥିଲେ । ଗୁଣୀଥିଲେ । ନିଆଁକୁ ନିଆଁ ଚିହ୍ନିଲା ଭଳି ଗୁଣୀ ଲୋକଙ୍କୁ ଚିହ୍ନିଥିଲେ । ପୋଖତ ବଣିଆଟିଏ ସୁନା ଚିହ୍ନିବାକୁ । ଜମିଦାର ନଥିଲେ ହେଲେ ଅମାପ ଜମିର ଅଧିକାରୀ ଥିଲେ । ଧନୀ ଥିଲେ । ଧନର ଗର୍ବ ନଥିଲା । ଉନ୍ନତ ମାନର କୃଷକ ଥିଲେ । ସର୍ବୋପରି କବିଟାଏ । ଅନ୍ତରଟା କାବ୍ୟିକ ଆବେଗରେ ଛଳଛଳ ଥିଲା, ରସାଳ ଥିଲା । ଅନୁଷ୍ଠାନଟିକୁ ଟେକି ଦେଇଥିଲେ ପ୍ରଧାନ ଶିକ୍ଷକଙ୍କ ହାତକୁ । ଏବେଲୋକେ ଅନୁଷ୍ଠାନଟିଏ କଲେ ନିଜର ବୈଠକଖାନା କରିପକାନ୍ତି । ଲୋକଙ୍କ ଆଗରେ ନିଜ ପାରିଲା ପଣର ନାଗରା ବଜାନ୍ତି । ବ୍ରଜମୋହନ ପଣ୍ଡା ସେ ସବୁ କିଛି କରୁନଥିଲେ । ଆମ ବେଳେ ଆମେ ତାଙ୍କୁ ସ୍କୁଲ ହତାରେ କେବେ ଦେଖିନଥିଲୁ । ଦରକାର ପଡ଼ିଲେ ପ୍ରଧାନ ଶିକ୍ଷକଙ୍କୁ ଦେଖା କରୁଥିଲେ । ସେ ସ୍ୱଭାବତଃ ଗମ୍ଭୀର ଓ ସଞ୍ଜମୀ ପ୍ରକୃତିର ଲୋକ । ସରକାରୀ ଅଫିସର ମାନଙ୍କ ହାକିମ ପଣିଆକୁ ବେଖାତିର କରୁଥିଲେ । ତେଣୁ ଲରମ୍ଭାର ଅନୁଷ୍ଠାନକୁ ବହୁ ସରକାରୀ ସାହାଯ୍ୟରୁ ବଞ୍ଚିତ ରହିବାକୁ ପଡୁଥିଲା । ନିଜ ଗୋଡରେ ନଜେ ଠିଆ ହେବାର ଯାର ଅଭ୍ୟାସ, ତାକୁ ଅନ୍ୟର କରୁଣା ଦରକାର କଣ? ମନେ ପଡୁଛି ୧୯୫୨ କି ୧୯୫୩ର କଥା ବ୍ରଜମୋହନ ପଣ୍ଡା କାଶ୍ମିର ଯାଇଥିଲେ । ଶ୍ରୀ ନଗରରୁ ସେ ପ୍ରଧାନ ଶିକ୍ଷକଙ୍କ ପାଖକୁ ଖଣ୍ଡେ ଚିଠି ପଠାଇଥିଲେ । ଇଂରାଜୀରେ ଲେଖା । ଏବେ ବି ସେ ଚିଠିଟା କାହାଠିଥିବ । ଛୋଟ ଛୋଟ ବାକ୍ୟରେ ଲେଖା । ଇଂରାଜୀ ଶିକ୍ଷକ ଧୀରେନ୍ଦ୍ରନାଥ ଚକ୍ରବର୍ତ୍ତୀ ବାକ୍ୟ ଗଠନ ନମୁନା ଦେବାକୁ ଯାଇ ଚିଠିଟି କଳାପଟାରେ ଲେଖିଥିଲେ । ବ୍ରଜମୋହନ ପଣ୍ଡାଙ୍କ "ପ୍ରତିକ୍ଷିତା ରାଧାର" ଆଲୋଚନା ପ୍ରସ୍ତୁତ କରିବା ବେଳେ ପୁରୁଣା କାଗଜ ପତ୍ର ଖୋଜୁ ଖୋଜୁ ପାଇଲି । ମାତ୍ର କେତୋଟି ବାକ୍ୟରେ କାଶ୍ମିର ଶୋଭା ବର୍ଣ୍ଣନା କରିଥିଲେ । ସତେ କେତେ ଗଭୀର ତାଙ୍କର ରସବୋଧ । ଲରମ୍ଭାର ରହଣି ବେଳେ କଞ୍ଚା ବୟସ ହେତୁ ତାଙ୍କୁ ଅନ୍ତରଙ୍ଗ ଭାବେ ଜାଣିପାରି ନଥିଲି । ଏବେ ଭାବୁଛି ନିପୁଣତାରେ କେତେ ମଜଭୁତ । ମଞ୍ଜଭରି ରହିଥିଲା ତାଙ୍କ ଭିତରେ । "ହେଇ ଥିର ଥିର ଶୁଭେ ଚରଣ ଶବ୍ଦ ସେହିକି ମାଧବ ଆସେ, ସଖି, ସେବର ତନୁର ଅଗୁରୁ ଗନ୍ଧ ମଧୁରମଳୟେ ଭାସେ" । ଲରମ୍ଭାର ଭୁଗୋଳରେ ବ୍ରଜମୋହନ ବାବୁଙ୍କୁ ନ ପାଇଲେବି ଏଇ "ପଦାବଳି"ରେ ମିଳିବେ ।



# ୧୦. ମାର୍କଣ୍ଡ ଓ ମୁଁ

''ହଇରେ କଥା ପଦେ ହୋଇଯା'। ଅନ୍ତତଃ ଏଇ ବିଦାୟ ବେଳାରେ!' ବେଶ୍ ଦବେଇ କରି କହିଲା ରଣଛୋଡ଼ ମିଶ୍ର।

"କାହାସହ? କଣ ପାଇଁ?" ଖୁବ୍ ସହଜ ଓ ସରାଗରେ ପଚାରିଲି। ସେ ପୁଣି କହିଲା।

"ଏକାଠି ରହିଲ ଚାରିବର୍ଷ। ଏକା ମେସ୍। ଏକା ଛାତ୍ରାବାସ। ଏକାଠି ଖିଆପିଆ। ଏକାଠି ବସା ଉଠା, ପଢ଼ାପଢ଼ି। ବୁଲାବୁଲି। ଆଉ ତା ସହିତ ତୁ ଜମା କଥାବାର୍ତ୍ତା କରିନୁ। ହଇରେ, କଣ ହୋଇଛି ତୋର?"

ସତକୁ ସତ ଲରମ୍ଭାରେ ମୋର ଚାରିବର୍ଷର ରହଣି। ତାଙ୍କ ସହିତ କଥାବାର୍ତ୍ତା କରିନି। ଆଜି ଭାବିଲେ ଭାରି ହସ ମାଡ଼େ। ତାଙ୍କ ସହିତ ମୋର ଶତ୍ରୁତା ନଥିଲା। ଆମେ କେବେ କଳି କଜିଆ କରି ନଥିଲୁ। କିଶୋର ସୁଲଭ ଯୁକ୍ତି ତର୍କ ବା ବାକ୍ ବିତଣ୍ଡା ବି ନଥିଲା। ତଥାପି ଆମେ କଥାବାର୍ତ୍ତା କରୁନଥିଲୁ। ସେ ଯେଉଁ ଘାଟରେ ଗାଧୋଉ ଥିଲେ ମୁଁ ଯାଉ ନଥିଲି। ମୁଁ ଯେଉଠି ଥାଏ ସେ ଆସୁ ନଥିଲେ। ମୁହାଁମୁହିଁ ହୋଇଗଲେ ବାଟ ଭାଙ୍ଗି ଯିଏ ଯା' ବାଟରେ ଚାଲି ଯାଉଥିଲୁ। କ୍ଲାସରେ ମୁଁ ଗୋଟାଏ ପଟରେ ତ ସେ ଆର ପଟରେ ବସୁଥିଲେ। ପଂଝାଏ ପିଲା ମୋର ପଛୁଆ ଥିଲେ ତ ଆଉ ପଂଝାଏ ତାଙ୍କର। ଦେଢ଼ସୁର ଭାଇବୋହୂ ଭଳି ଚଳୁଥିଲୁ ଆମେ ଦିଜଣ।

କଥାର ମଞ୍ଜିଟା ଥିଲା ଅନ୍ୟଠି। ତାଙ୍କ ଆଉ ମୋ ଭିତରେ ଏକ ନୀରବ ଲଢ଼େଇ ଲାଗିଥିଲା। ସେ କିଲାସରେ ଫାଷ୍ଟ ହେବେ କି ମୁଁ। ଶ୍ରେଣୀରେ ପ୍ରଥମ ହେବାକୁ ସେ ଲାଗିପଡ଼ିଥିଲେ। ହେଲେ ମୁଁ ପ୍ରଥମ ହେଉଥିଲି। ସେ ମୋଠୁ କମ୍ ନମ୍ବର ରଖୁଥିଲେ। ଆଜି ଏ ପରିଣତ ବୟସରେ କହିବାକୁ ଡରୁନାହିଁ ଯେ ମାର୍କଣ୍ଡ ମୋଠୁଁ ମେଧାବୀ ଥିଲେ। ତାଙ୍କ ବିଚକ୍ଷଣତା ପାଖରେ ମୁଁ କିଛି ନୁହେଁ।

ମାର୍କଣ୍ଡ ପ୍ରଧାନ। ଶ୍ୟାମଳ ବର୍ଣ୍ଣର ସାଧାସିଧା ମଣିଷଟାଏ। ଗାଈ ଗଙ୍ଗାଭଳି ଉଦାର ଓ ନିର୍ବିକାର। ତାଙ୍କର ପାଟି ଲାଗେ। କମ୍ କଥା କହନ୍ତି। ଚେ଼କା ଚେ଼କା ଅକ୍ଷର ଭିତରୁ ଅନାବିଳ ମରମଟା ଦିଶିଯାଏ। ଜ୍ଞାନ ଗର୍ବ ହୋଇଥିବା କଥା ଜଣାପଡ଼େ ତାଙ୍କ ହାତ ଲେଖାରୁ। କଉଠି କେବେ ତାଙ୍କୁ ଦେଖିଲେ ମୋର ତମାମ ଭିତରଟା ତାଙ୍କ ଆଗରେ ନତଜାନୁ ହୁଏ। ଲଳେଇ ବିଲେଇ ପରି ତାଙ୍କ ଚ଼ଉକତି ଘୁରଘୁର କରେ। ମୁଁ ଅନୁଭବ କରେ, ମାର୍କଣ୍ଡ ପ୍ରଧାନ ମଣିଷ ପରି ମଣିଷଟାଏ। ତାଙ୍କ ସାଙ୍ଗ ହେବାକୁ କେହି ବି ଲୋଭ କରିବ।

ଆମ ବେଳେ ଲରମ୍ଭାର ପରିବେଶ ଭିନ୍ନ ଥିଲା। ବିଦ୍ୟାଳୟଟି ଥିଲା ଆବାସିକ। ଶହଶହ ଛାତ୍ର ଛାତ୍ରାବାସରେ ରହୁଥିଲେ। ପଢ଼ିବା, ଖାଇବା ବ୍ୟତୀତ ଅନ୍ୟକିଛି କାମ ନଥିଲା। ରାତି ପାହି ନଥାଏ ଆମେ ଉଠୁ। ଜୁଲୁ ଜୁଲୁ ଲଣ୍ଠନ ଆଲୁଅରେ ଆମେ ଅଙ୍କ କଷୁ। ଧାତୁ ରୂପ ଶବ୍ଦରୂପ ମୁଖସ୍ଥ କରୁ। ରାତି ପାହେ। ସକାଳ ହୁଏ। ନିତ୍ୟକର୍ମ ଶେଷକରୁ। ଫେସକଟ ପାଖରୁ ମୁଢ଼ି ଚଣା ଅଟାବରାଖାଇ ପୁଣି ପଢ଼ି ବସୁ। ଖାଇବା ଘଣ୍ଟି ବାଜେ। ମାର୍କଣ୍ଡ ବାବୁଙ୍କ ପଛୁଆ ମାନେ ତାଙ୍କ ଥାଳି ପକାଇଥାନ୍ତି। ମୋର ଥାଳି ମୋର ପଛୁଆମାନେ। ତିନି ଶହ ପିଲାଙ୍କ ଭାତ ଦାଲି ପରଷିବା ସମୟତକ ଅନ୍ତତଃ କିଛି ପଢ଼ିହେବ। ଯି ମିନିଟ୍ ଆମ ପାଇଁ ମୂଲ୍ୟବାନଥିଲା। ଏକ ନିର୍ବାକ ପ୍ରତିଯୋଗିତା ଆମକୁ ବାଧ କରୁଥିଲା ବହି ମେଲାଇ ବସିବା ପାଇଁ।

ଆମ ପଛୁଆମାନେ ଆମକୁ ପରକ୍ଷିବା ପାଇଁ ବେଶ୍ ତତ୍ପର ଥାନ୍ତି। ଭିଡ଼ ଅଙ୍କ ଖଣ୍ଡେ ନେଇ କେତେ ଜଣ ମୋ ପାଖକୁ ଆସନ୍ତି। ମୁଁ କରି ନ ପାରିଲେ ମାର୍କଣ୍ଡ ବାବୁଙ୍କୁ ପରଖନ୍ତି। ମାର୍କଣ୍ଡ ବାବୁଙ୍କ କବଳରୁ ଅଙ୍କ ମୁକୁଳିବ କେମିତି? ଘଡିଏ ଚିନ୍ତା କରି ସମାଧାନ କରି ଦିଅନ୍ତି। ପିଲାଏ କହନ୍ତି ଦେଖ ମାର୍କଣ୍ଡ କରିଦେଲା। ତୁ ଗଲୁ। ଏଥର ସେ ଫାଷ୍ଟ ହେବ। ହେଲେ ମୁଁ ଫାଷ୍ଟ ହୁଏ। ମାର୍କଣ୍ଡ ୨ୟରେ ରହନ୍ତି। ପରୀକ୍ଷାରେ ଫାଷ୍ଟ ହେବା ଭିନ୍ନ କଥା। ଆଉ ଜ୍ଞାନ ଗର୍ଭ ହେବା ଆଉ ଏକ କଥା। ନେଇ ଆଣି ଥୋଇ ଜାଣିଲେ ଫାଷ୍ଟ। ମାତ୍ର ଚାରିବର୍ଷ ସିନା ମୁଁ ଫାଷ୍ଟ ହେଲି। ମାର୍କଣ୍ଡ ବାବୁ ଜୀବନ ତମାମ୍ ଫାଷ୍ଟ ହୋଇ ରହିଛନ୍ତି। ରହିବେ ମଧ୍ୟ। ତାଙ୍କ ଭଳି ଜଣେ ଉଦ୍ୟମୀ ନିରଳସ ଓ ନିଷ୍ଠାବାନ ଛାତ୍ରଙ୍କ ପଛରେ ମୁଁ କାହିଁକି ଯେ କେହିବି ରହିବାକୁ ଗୌରବ ଅନୁଭବ କରିବ। ଆମ ବେଳେ ଲରମ୍ଭାର ପାଠପଢ଼ା ଏକ ମିଶନ ଭଳି କାମ କରୁଥିଲା। ଶିକ୍ଷକମାନେ ଆପଣାକୁ ସମର୍ପି ଦେଇଥିଲେ। ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଖଗେନ୍ଦ୍ରନାଥ ସେନଗୁପ୍ତା ଥିଲେ ବୈଦିକ ଯୁଗର ଗୁରୁ। ସେ ମଣିଷ ନ ଥିଲେ ଥିଲେ ଦେବତା। ଧିରେନ୍ଦ୍ର ନାଥ ଚକ୍ରବର୍ତ୍ତୀ, ଜନାର୍ଦ୍ଦନ ପାତ୍ର, ରାଜକୁମାର ସରକାର, ନିତ୍ୟାନନ୍ଦ ନାୟକ, କ୍ଷତ୍ରିୟ ମେହେର, କୃଷ୍ଣଚନ୍ଦ୍ର ପଣ୍ଡା, କୃଷ୍ଣ ଚନ୍ଦ୍ର ମିଶ୍ର ଏ ସଭିଏଁ ଜଣେ ଜଣେ ଦକ୍ଷ ଶିକ୍ଷକ ଥିଲେ। ଆମ ପଛରେ ଛାଇ ପରି ଲାଗିଥିଲେ। ଆମେ କେବେ ଟିଉସନ ପଢ଼ିନଥିଲୁ। ଆମେ ଯାହା ପାଖକୁ ଯାଉଥିଲୁ ପୁଅ ଭଳି ପାଖରେ ବସାଇ ବତାଇ ଦେଉଥିଲେ। ଆମବେଳେ ଆଇଡ଼େନ୍‌ଟିଟି ଅଙ୍କ ଥିଲା। ମାର୍କଣ୍ଡ କରିପାରୁ ନଥିଲେ, ପିଲାମାନେ ସରକାର ସାରଙ୍କ ପାଖକୁ ଯାଉଥିଲେ। ସେ ବି ହଠାତ୍ କରି ପାରୁନଥିଲେ। ପରେ କରିଦେବାକୁ କହୁଥିଲେ। ହେଲେ ଛାଡୁ ନଥିଲେ। କଡ଼ା ପାନର ହାକୁଟିରେ ସେ ଅରଣା ଅମାନିଆ ଅଙ୍କଟାକୁ ବୋଲ ମନାଇ ପକଉଥିଲେ। ଥରେ ରାତି ତିନିଟାରେ ଆମକୁ ଉଠାଇଲେ। ହୋଇଗଲା ହୋଇଗଲା ବୋଲି ଏକ ଉଛୁଳା ଖୁସିରେ ଧାଇଁ ଆସିଲେ। ସେଇ ପାଗଳା ଗ୍ରୀକ ପଣ୍ଡିତ ଭଳି ୟୁରେକ୍‌କା,

ୟୁରେକ୍‌କା କହି ଦୌଡିବା ଭଳି। ଗୋଟା ପଣେ ଆର୍କମେଡ଼ିସ୍। ଭିଡ଼ ଅଙ୍କ ଖଣ୍ଡେ ବହୁଚେଷ୍ଟା କରି କରିପାରିବାର ଖୁସି ଯେ କେତେ ଏ' ମାନେ ଯୁଗରେ Made eaasy ଯୁଗରେ ମିଳିବ କାହୁଁ? ଆମ ବେଳରେ ମାନେ ବହି ନଥିଲା ଯଦି କାର୍ଭା କେଉଁଠି ମିଳୁଥିଲା। ଆମ ଲରମ୍ପା ବାଳାଙ୍କ କପାଳକୁ ଯୁଟିବ ବା କେମିତି?

ମାର୍କଣ୍ଡ ବାବୁଙ୍କ ସହ ଦେଖା ହେଲେ ଲରମ୍ପା ସ୍ମୃତି ଓହ୍ଲାଇ ଆସେ। ମନ ହୁଏ ଫେରି ଯାଆନ୍ତି କି ମୋର ଅବିସ୍ମୃତ ନାଳନ୍ଦାକୁ। ତାଳ ବନାନୀର ସଂକୀର୍ଣ୍ଣ ଛାଇକୁ। ଫାଷ୍ଟ ନହେଲେ ନାଇଁ ମାର୍କଣ୍ଡ ପ୍ରଧାନଙ୍କ ପରି ମେଧାବୀ ଛାତ୍ରଙ୍କ ପଛରେ ତ ରହିପାରନ୍ତି।



# ୧୧. ଢେଣାରେ ଲାଗିଲା ପର

କଲେଜ ମାଡ଼ିଲା ବେଳକୁ ମୋତେ ଅଠର। ଆମବେଳେ ପ୍ରାୟ ସବୁ ପିଲାଙ୍କର ଏହାହିଁ ଥିଲା ହାରାହାରି ବୟସ। ପ୍ରାଇମେରୀ ଚାରି ବରଷ। ମାଇନର ପାସ କରିବାକୁ ଚାରି ବରଷ। ହାଇସ୍କୁଲରେ କଟେ ଚାରିବରଷ। ଛଅ ବରଷ ପରେ ବାପ ମାନେ ନାମ ଲେଖାଉଥିଲେ। ଏଇମିତି ପ୍ରାୟ ମୋଟ ଅଠର ବରଷ ହେଉଥିଲା ମହାବିଦ୍ୟାଳୟର ମହକ ପାଇବାକୁ। ଏବେତ ପିଲାଏ ଚଉଦ ପୂରିବା ବେଳକୁ କଲେଜରେ ଦାଦା ପାଲଟି ଯାଉଛନ୍ତି।

କଞ୍ଚା ମଫସଲୀ ପିଲା ମୁଁ। ନାକରୁ ସିଙ୍ଘାଣି ପୋଛି ଜାଣିଥିଲି କିନା କେଜାଣି। ଟିନ୍ ଏଜ୍ ମାନେ ଛନଛନିଆ ବୟସ। ଅଧା ପେଣ୍ଟରୁ ପୂରା ପେଣ୍ଟ ପିନ୍ଧିବାର ଠାଣି। ଜଣାମୂଳକରୁ ଅଜଣା ଆଖଡ଼ାରେ ହରବର ହେବାର ବୟସ। ଲଗାମ ଛଡ଼ା ମନ। ଅପନା ହାତ ଜଗନ୍ନାଥ ଘୋଷିବାର ବେଳ। ଆପଣା ବୁଦ୍ଧିରେ ଠାକୁର ହେବୁ ନ ହେବୁ ନିଜେ ବିଚାର କରିବୁ। କଉ ବାପ ମା ଥିବେ ଯେ ମନା କରିବେ। ଗୁରୁଜନଙ୍କର ଆକଟ ନାହିଁ। ବଡ଼ମାନଙ୍କର ସଁ ନାଇଁ କି ଫଁ ନାଇଁ। ମନ କଲେ ମାଲିକ ହବୁ। ଅଳି କରିବୁ କାହାକୁ? ମୋଡ଼୍ ମୋଡ଼୍ କେ ନାଦେଖି ବୋଲି ମନା କରିବ କିଏ? ମନ ଭିତରେ ଫଗୁଣ ପଶି ସାରିଥାଏ। ରକତରେ ପଳାଶ ଯେ ଲାଲେ ଲାଲ। ଅନେକ କିଛି କରିବାକୁ ମନ ସକସକ ହୁଏ। କଉ ଘୋଡା ସରିସମ ହେବ ଏ ମନର। ପବନ ବି ଦୌଡ଼ରେ ମନଠୁ ହାରମାନେ। ଯଉବନ ନାମକ ଚିଜଟି ରକତଭିତରେ ଗାତକୁ ସାପ ପଶିଲା ପରି ପଶି ସାରିଥାଏ। ଯଉବନ ଧନ, ପ୍ରଭୁପଣିଆ ଆଉ ବିବେକ ହୀନତା ଗୋଟିଏ ଗୋଟିଏ କରି ହାନିକାରକ। ଚାରିଟି ଯାହା ପାଖରେ ଠୁଳ, ସେଇଠି କଥା ସଇଲା। ପୁରୁବ କାଳରୁ ଏ କଥା ବଡ଼ମାନେ କହିଛନ୍ତି। ଏପଟେ ଦେହ ଭିତରେ ନବ କଳେବରର ସଜବାଜ ଚାଲିଥାଏ। ଦାରୁ ଖୋଜା ଚାଲିଥାଏ। ସେ ପଟେ ରଥ ଗଢ଼ା ହଉଥାଏ। ଆଖି ଆଗରେ ଅନେକ ବାଟ

ଫିଟି ସାରିଥାଏ। ଯଉ ବାଟରେ ଯିବୁ ଯା'। ଦଶ ଦିଗରୁ କେତେ ଡାକରା। ଶତଶତ ଆହ୍ୱାନ। ଆ'ରେ ଆ'। ନିଜକୁ ନିଜେ ଚିହ୍ନି ରଖ। ଅନେକ କିଛି ଅଛି ତୋ ଭିତରେ। ପାରିଲା ପଣ ଖୁନ୍ଦି ହୋଇଛି ଦେହରେ। ଆଖି ଫିଟି ଫିଟି ଆସୁଛି। ଦୁନିଆକୁ ଦେଖ। ଦିହସାରା କଳକଳ, ଛଳଛଳ ଭାବ। ରକତରେ ରକତରେ ଲମ୍ଫ ଦବାର ଉଦ୍ଧାମତା। ଭିତରୁ ପାଖୁଡା ପାଖୁଡା ମେଲି ଫୁଟି ଆସୁଛି। ଫୁଲଟିଏ ମହ ମହ ମହକରେ ମାତାଲ। ଆପଣା ଉପରେ କଣଟାଏ ଯିମିତି ଲାଭ ହେଉଛି। ସଂସାରର ସବୁ ଚ଼ିଜ ନିଜର ହୁଅନ୍ତାକି? ସାରା ସଂସାର ମୋର ସଂସାର। ମୋର ସଂସାର ଗଢ଼ିବି ମୁଁ। ଏଇ ବଳ ଅଛି ମୋର। ବିଶ୍ୱାସ ଅଛି। ସାହସ ବି। ଏଇ ପ୍ରଭୁ ପଣ ଟିକକ ହିଁ ମୋର ସବୁ ପାରିଲା ପଣର ମୂଳ। ଏଇଟାର ମୂଳ ହିଁ ସବୁ। ଏଇଭାବ ନୂଆଁ ହୋଇ ଆସେ। ବାଟ ଫିଟାଏ। ଏଇ ମୂଳଟାକୁ ମୋ ଭିତରେ ମୋର ବାର ବରଷର ତପସ୍ୟା ହିଁ ଚେରେଇ ଦେଇଛି। ତପସ୍ୟାର ସେଇ ବୀଜ ମନ୍ତ୍ରକୁ ଉଚ୍ଚାରଣ କରିବି ମୁଁ। ଓମ୍ କହି ନାଭି ମଣ୍ଡଳରୁ ନାଦ ବ୍ରହ୍ମକୁ ଉଦ୍‌ଘୋଷିବି। ଏଇ ମାଟିରେ ମୋର ଜନମ। ଏ ମାଟି ମୋର। ଏଇ କଲେଜ ମୋର। ଏଇ ସହର ମୋର ସବୁ ମୋର। ସବୁ ମୋର ମୋର। ମମତ୍ୱର ଏକ ମୁଖର ମର୍ମର ରକତ ସାରା ଟଣଟଣ।

ଭିତରେ ଭିତରେ ମୁଁ ଅନୁଭବ କରିବାକୁ ଆରମ୍ଭ କଲି ମୌରସି ଅଧିକାର ମୋର, ମୋ ଉତ୍ତର ଦାୟିତ୍ୱ ଘର ବାହାର ସାରା ସଂସାର ଯେମିତି ମୋତେ କୋଟି କୋଟି ଆହ୍ୱାନରେ ଉବୁଟୁବୁ କରି ପକେଇବ।

ମୁଁ କଣ ହେବି ବଡ଼ କଥା ନ ଥିଲା। ବଡ଼ କଥା ଥିଲା କିପରି ହେବି। ମଣିଷର ଭାଇ ହେବି ନା ଭଗାରି ହେବି। ଗରିବ ହେବି ନା ଗୌରବ ଅର୍ଜିବି। ଖୁବ୍ କମେଇବି ନା ସବୁ ବୁଡ଼ାଇ ଦେବି। ବଙ୍ଗଳା ବାନ୍ଧିବି? ଏକତାଲା, ଦୋତାଲା, ତେ' ତାଲା, ଚ଼ଉତାଲା? ଗାଡ଼ି ଚଢ଼ିବି ନା ମୋଟା ହେବି? ସବୁ ଭୋଗ କରିବି ନା ରୋଗର ଘର ହେବି? ବଇରାଗୀ କହି କହି ଅନୁରାଗୀ ହେବି? ଗଢ଼ିବି ଗଢ଼ିବି କହି ସବୁ ଭାଙ୍ଗି ଦେବି। ଏଇମିତି ଶତଶତ ବିରୋଧାଭାସ ଭିତରେ ଆମ ବେଳେ ଲକ୍ଷ୍ୟଟା ଅନ୍ତତଃ ସ୍ଥିର ହୋଇ ରହିଥିଲା। ମଣିଷଟାଏ ହେବି ଆଉ କିଛି ନ ହେଲେ ନାହିଁ।

କଉଠି ଥିଲା କେଜାଣି କଲେଜ ଭିତରକୁ ପଶି ଆସିଲା ଏକ ନୂଆଁ ସଂକ୍ରମଣ। କଲେଜ ଗୁଡ଼ିକ ନୂଆ ପ୍ରତିଶ୍ରୁତିର କାରଖାନା ହେବା କଥା ହେଇ ପାରିଲା ନାହିଁ। ଉପର ଥାକର ଲୋକେ ଆତ୍ମକାମୀ ହେଲେ। ଦେଶର ସବୁ ନିଜେ ଭୋଗ କରିବାକୁ ରୋଗ ପାଳଟିଲେ। ଉତ୍ତରପୀଢ଼ିର ପିଲାଙ୍କୁ ଚାଲାକ କଲେ କଥା ସରିଲା। ଏଣୁ ବଦିଲା ଛେଳି ଛୁଆକୁ ମନ୍ଥୁରା ଚାଉଳ ଚଖେଇଲା ପରି ଅଠରରେ ଭୋଟ ଦେବାର ମେଁ ମେଁ ଶିଖେଇଲେ।

କଞ୍ଚା ବୟସରେ କଉ ଛେନାଗୁଡ଼ ବାରିପାରିବେ ଏ ମେଣ୍ଢାପଳ, ଭଲ ମନ୍ଦର? ଦିନରେ ମେଣ୍ଢା। ଭେଣ୍ଡାକରି ରାତି ସାରା ଫୁଲ ଶୁଙ୍ଘେଇ ରଖିଥାନ୍ତା ମାଲ୍ୟାଣୀ। ଦେଶର ପୁଏ ରାଜପୁତ୍ର ହେବେ କଣ ମେଣ୍ଢାବନି ରହିଛନ୍ତି। ଦେଶର ଦୁଃଶାସନ ମାନେ ଦିନ ରାତି ଆଠିପର ପରଜା–ପାଞ୍ଚାଳିକୁ ବିବସନା କରିବାରେ ବ୍ୟସ୍ତ। ଏଇ ଲକ୍ଷ୍ୟରେ ଆମ ବେଳର ଏକୋଇଶଙ୍କୁ ଖସେଇ ଆଣିଲେ ଅଠରକୁ।

ପିଲାଏ ଡ଼େଇଁଲେ। ପାଇଗଲୁ ପାଇଗଲୁ ଆମେ ଆମ ଅଧିକାର। କଲେଜ ଥିଲା ମଣିଷ ତିଆରି କାରଖାନା ହୋଇଗଲା ଭୋଟ ବାକ୍ସ। ନେତାଏ, ଉପନେତାଏ ପଶିଲେ ପିଲାଙ୍କ ଭିତରେ। ପିଲାଙ୍କୁ ସୁଆଦ ଚଖେଇଲେ। ରାଜଧାନୀକୁ ବୁଲେଇ ନେଲେ। ହାବେଲିରେ ରହିଲେ। ଖ୍ମରି ରୋଟି, ବିରିଆନି ଆଉ ମାଂସ ଝୋଳରେ ଝୁଲିଲେ। କଞ୍ଚା ମଫସଲି, ପିଲାଙ୍କୁ ଏ ସୁଖ ଅପୂର୍ବ। ତମେ ସବୁ ଅମୁକ ହେବ। ସମୁକ ହେବ। ଢେଁକି ହେବ, ବଗ ହେବ କହି କହି ସଭିଙ୍କୁ ଗବ କରିଦେଲେ। ଏଇ ଗବମାନେ ରାଜଧାନୀରୁ ଉତୁରି କଲେଜ ବାରଣ୍ଡାରେ ରାଜୁତି କଲେ। ପ୍ରିନ୍ସପାଲ ଗୋଟିଏ କିଏ ବେ? କଲେଜ ଆମର। ଶାସନ ଆମର। ଆମେ ଯାହା ଚାହିଁବୁ, କରିବୁ। ଅଧ୍ୟାପକ ମାନେ କରିବେ ବା କଣ? ପିଲାଙ୍କ ପରି ସେମାନେ ବି ମାତିଲେ। ପାଠଗଲା ଚୂଲିକି। କଲେଜ କିମିତି ଚାଲିଛି ପଚାରିଲେ ଉତ୍ତର ପାଇବେ ଠିକ ଚାଲିଛି। ପୁଅ ଝିଅମାନେ କେତେ ଦର୍ପରେ ଆତଯାତ ହେଉଛନ୍ତି। ସଭା ଚାଲିଛି। ମାଇକ ବାଜୁଛି। ଫଙ୍କସନ ହେଉଛି। ଛତର ବଇରଖ ଉଡ଼ାଇ ମନ୍ତ୍ରିଏ ଆସୁଛନ୍ତି। ଲକ୍ଷ ଲକ୍ଷ ଟଙ୍କାର ବରଷା ହେଉଛି। ପିଲାଙ୍କ ଭିତରୁ ପିଲାଏ ଠିକା ନେଉଛନ୍ତି। ରୋଜଗାର ହେଉଛି। ସବୁ ଠିକ୍ ଚାଲିଛି। ଚୁପଚାପ କଲେଜ ଚାଲିଛି। ଭିତରଟା କିନ୍ତୁ ନାରଖାର, ଅପନ୍ତରା। ସଭିଏଁ ହନ୍ତ ସନ୍ତ। ବାଁଝ ଫୁଟାଣି ଗୁଡ଼ିକ ଆଉ କେତେଦିନ ଫଳିବ ଫଳିବ ହୋଇ ରହିପାରିବ ଯେ!

ଆମେ କଣ ଆମ ବେଳ ପରି ଏଇ କଲେଜ ଗୁଡ଼ିକରୁ କିଛି ଆଶା କରିବାନି? ଏଇଠୁ ନେତା ଗଜୁରିବେ। ଧରମା ମୁଣ୍ଡି ମାରିବେ। ଗାନ୍ଧି ମହାତ୍ମା ପରି ମହାତ୍ମା ମାନେ ଜନମ ନେବେ। ଗଣେଶ ଓ ସରସ୍ୱତୀ ବିରାଜମାନ ହେବେ। ଏ ଦାରୁଣ ଦୁର୍ଦ୍ଦିନ କେତେଦିନ ରାଜୁତି କରିବ? ପାଠକୁ ଉଠାଇ ଖାତାର ଖତିଆନରେ ଥୋଇ ପାସ କରିବାର ଦାଦାଗିରି କେତେଦିନ ଆଉ କରିବା? ପିଲା ବୁଝିବ ନିଶ୍ଚୟ ବୁଝିବ। ଏସବୁ ଫଳର ସେହିଁ କର୍ତ୍ତା। ତାର କିଛି କହିବାର ଅଛି। ତାକୁ କେହିଜଣେ ତା ଭିତରୁ ତାକୁ ଫୋଡ଼ିବ ପିନ୍‌କଣ୍ଟା ପରି। ଛଟପଟ ହବସିଏ ଦିନେ ନା ଦିନେ।

'ଦମ୍ ମାରୋ ଦମ୍'ରୁ ଓହରି ଛଟପଟ ହେବ। ସବୁ ପରିବର୍ତ୍ତନ ବେଳେ ଏଇମିତି ଛଟପଟ ହେବାକୁ ହୁଏ। ସମ୍ୟାଳୁଆରୁ ପ୍ରଜାପତିଟାଏ ପାଇବାକୁ ହେଲେ ଏଇମିତି କଷ୍ଟ ଦେଇଯିବାକୁ ହୁଏ। ପିଲାଙ୍କ ରକତରେ ରକତରେ ଯଉବନର ନୂଆ ଉଦ୍ଦାମତା ଉକୁଟି

ଉଠିବ। ଆକାଶ ତମାମ ଉଦ୍‌ଭାସିତ ହେବ ନୂତନ ପ୍ରତିଶ୍ରୁତି। ଅନେକ ସମ୍ଭାବନା, ନୂତନ ବିଶ୍ୱାସ ଜବା କୁସୁମ ପରି ଲାଲ ଦିଶିବ୍ ପରିବେଶ ସ୍ୱଚ୍ଛ, ସୁନ୍ଦର ହେବ। ଅପନ୍ତରା ହୋଇ ପଡ଼ି ରହିଲେ ପାଠଦିଅଁ ଆସିବ କେମିତି? ମୁଁ ତ ଆଶାବାଦୀ। ସବୁ ବଦଳିବ।

ପାଠ ଘୋଡାରେ କ୍ଷମତା ସବାର ହୋଇଛି। ପିଲାଏ ସେଇ ମୂଢ଼ କ୍ଷମତାକୁ ବେସବାର କରିବେ। ଦିନେ ନା ଦିନେ ମାତିବେ।ସେମାନେ ପୋଢ଼ ମାତିଲା ପରି। କଲେଜ ତାଙ୍କର ହେବ। ସେମାନେ କଲେଜର ହେବେ। ଅନ୍ୟମାନେ ଧାଁ ଧପଡ଼ କରି କିଛି କରିପାରିବେ ନାହିଁ। ନିଜକୁ ନିଜେ ଚିହ୍ନିଲେ ଯାଇ ମଣିଷ ମହାତ୍ମା ହୁଏ। ଡ଼ର ଛାଡ଼ିଯାଏ। ଅନ୍ଧାରରେ ଫିଙ୍ଗା ହେବାରୁ ମୋହନ ଦାସଙ୍କ ଡ଼ର ଛାଡ଼ିଲା। ମହାତ୍ମା ହେଲେ। ଆଇନ ତା'କାଇଦାରେ ଚାଲେ। ମଣିଷକୁ ଡ଼ରାଏ। ତାକୁ ଡ଼ରୁଆ କରେ। ଚାଟୁକାର କରେ। ଚାମଚା ବନାଏ। ପିଲାଏ ଏହି କଲେଜରେ ହିଁ ଶିଖନ୍ତି ଭୟଶୂନ୍ୟ ହେବାକୁ। ଅବ ଦୀଲ୍ଲି ଦୂର ନେହିଁ ଡ଼ାକରା ଦିଅନ୍ତି। ଏକଲା ଚଲୋର ନାରା ଲଗାନ୍ତି। ଆମ ବେଳର ସାରମାନେ ଆମକୁ ଆମ ଭିତରୁ ଉଠେଇ ପାରୁଥିଲେ। ଏବର ସାରମାନେ ପାରିବେ ନାହିଁ କାହିଁକି? ଖାଲି ଫାନ୍ଦରେ ନ ପଡ଼ିଲେ ହେଲା।

ଆମ ବେଳେ କଲେଜ ଗୁଡ଼ିକ ଏବେକାର ପରି ନଥିଲା। ସେଇଠି ନୂଆ ଜାଗରଣର ହାୱା ଚଲୁଥିଲା। ଆଗକୁ ମାଡ଼ି ଯିବାକୁ ଡାକୁଥିଲା। ଶଙ୍ଖଧ୍ୱନି ଶୁଭୁଥିଲା। ଆମେ ଡ଼େଣା ମେଲାଇ ଉଡ଼ିବୁଲିବାକୁ ତତ୍ପର ଥିଲୁ। ଦେବତା ମାନେ ଆମ ଗୁହାରି ଶୁଣୁଥିଲେ। ଭୋ'ଇଶ୍ୱର ଭୋ ପାରବତୀ ହେ' ଦଶଦିଗ ପାଳ ବୋଲି ଡାକ ଛାଡ଼ିଲା ବେଳକୁ ସେମାନେ ଯେମିତି ଓଓ କରୁଥିଲେ। କାହିଁକି କେଜାଣି ଆମ ଉପରେ ଫୁଲ ବରଷା କରିବାକୁ ଉପରେ ଅନାଇଥିଲେ। ଏବେ ଆମ ପିଲାଙ୍କୁ ସେପରି କରୁଣା କରୁଥାଅ ହେ ଠାକୁର!



## ୧୨. କଟା ଡ଼େଣାର ଜଟାୟୁ

ଆମ ବେଳର ପାଠପଢ଼ାରେ ପିଲାଥିଲା ମୂଳ। ପିଲାକୁ ଗଢ଼ିବାଥିଲା ଶିକ୍ଷାର କାମ। ପିଲା 'କଣ ପଢ଼ିବ' ଠାରୁ 'କିପରି ପଢ଼ିବ' ଥିଲା ଆଗ କଥା। ପିଲାକୁ ମାଠିବାକୁ ହେବ। କୁମ୍ଭାର ଯେମିତି ମାଟିକୁ ମାଠେ। ତା'ପରେ ଯା' ଚାହେଁ ଗଢ଼େ। ଆମେ କଣ ହେବୁ? ଏଇଟା ମୂଳ ନଥିଲା। ବାପାମାନେ କହୁଥିଲେ ମୋ ପିଲାକୁ ମଣିଷ କରନ୍ତୁ ଆଜ୍ଞା। ନିଦା ମଣିଷ। ତା' ଭିତରେ ମଞ୍ଜ ଥାଉ। ସାହେବ ହେବାଠାରୁ ବିହନ ହେବା ବେଶୀ ଦରକାର। ପିଲା ପହିଲେ ମଣିଷ ହେଉ। ତାପରେ ବାକି କଥା। ହଉ ହଉ ଯା' ହେବ ଦେଖାଯିବ। ମାରତେ ମାରତେ ରାଜା, ଫିରତେ ଫିରତେ ଯୋଗୀ। ତମେ ବଡ଼ ହେଲେ କଣ ହେବ

ପ୍ରଶ୍ନ ଆମକୁ କେହି ପଚାରୁ ନଥିଲେ। ଯେମିତି କଣଟାଏ ହେବି ହେବି ହଉ ହଉ ଶରତ ବେହେରା ଆକାଶ ବାଣୀକୁ ପଶିଲେ। ମାଧବ ଚନ୍ଦ୍ର ପଣ୍ଡା ଓକିଲାତି କଲେ। ହର ନାୟକ ସାମ୍ୟବାଦୀ ହେଲେ। ଆଉ ଶୈଳେଶ ପଟ୍ଟନାୟକ ଶିକ୍ଷକ ହୋଇଗଲେ। ଆଉ ଆଉ ବହୁ ବନ୍ଧୁ ଜୀବନରେ ବହୁକିଛି ହୋଇଥାନ୍ତେ ଆଉ କିଛି ହୋଇଗଲେ।

ଆମ ବେଳେ ବାପ ମାଁ ବୁଝିଥିଲେ। ଶିକ୍ଷକ ବି ବୁଝିଥିଲେ ପିଲାକୁ ହିଁ ଶିକ୍ଷା ଦେବାକୁ ହେବ। ଶିକ୍ଷାକୁପିଲା ଗୋଟାପଣେ ଗିଳି ଦେବାକୁ ନୁହେଁ। ଏବେ ପିଲା କିଛି ନୁହେଁ। ଶିକ୍ଷାହିଁ ସବୁ। ସାପ ବେଙ୍ଗକୁ ଗିଳି ପକାଇଲା ଭଳି ଯିଏ ଯେତେ ଗିଳି ପାରିଲା, ସିଏ ସେତେ ପାରଙ୍ଗମ। କେହି ଗୋଟାପଣେ ଦାନବ ନୁହେଁ କି ଦେବତା ବି ନୁହେଁ। ଦୁନିଆରେ କେହି ଶହେକୁ ଶହେ ବିଚ୍ଛୁଆତି ନୁହେଁ କି ତୁଳସୀବି ନୁହେଁ। ଏ କଥାଟି ବୁଝିଥିଲେ ଆମ ବେଳର ସାର୍‌ମାନେ। ବୀରାପ୍ପାନ୍ ଭିତରେ ଆଠଣି ପରି ଚୁପ୍‌ଚାପ ଧରମାଟିଏ ନଥିବବା କାହିଁକି? ପିଲା ଭିତରେ ମଞ୍ଜ ଭରିବାକୁ ହେବ। ମାଟିରୁ ରସ ଶୋଷି ଶୋଷି ଗଛ ଯେପରି ନିଜ ଭିତରେ ମଞ୍ଜ ଭରେ, ପିଲା ଭିତରେ ମଞ୍ଜ ଭରି ଦେବାକୁ ଆମ ସାର୍‌ମାନେ ଲାଗି ରହୁଥିଲେ। କେହି ଗାନ୍ଧୀ ନ ହେଲେ ନାଇଁ ନିର୍ବୋଧ ଗୋବର୍ଦ୍ଧନଟାଏତ ହେବ। ପ୍ରସାରିତ ସବୁଜିମାରେ ଆପଣାର ଝାଳକୁ ବୁହାଇ ପାରିବ।

ପିଲା ଭିତରେ ତା ନିଜର ବୋଲି କିଛି ଥାଏ। ତାକୁ ଫିଟାଇଲେ ସିନା। ସେଇ ନିଜତ୍ୱକୁ ଫୁଲ ଫୁଟିବା ପରି ଫୁଟେଇଲେ ସିନା। ଉପରୁ ଟେକା ପାଣି ପରି ତାର ଆଁ ଭିତରେ ଢ଼ାଳିବାରେ ଲାଭ କଣ?

ଭଗାରୀର 'ଛି' ଭିତରେ ବନ୍ଧୁର ସଦାଳାପ ନଥିବ ବା କାହିଁକି? ଜିତିବା ଠାରୁ ହାରିବା ହିଁ ସୁଆଦିଆ, ମିଠା। ପରଶ୍ରୀକାତର ହେଇ ଦରହଜା ଦୀର୍ଘ ଶ୍ୱାସରେ ଦିହୁଡ଼ି ପରି ଜଳିବା ଠାରୁ ଫାଳେ ଜହ୍ନର ମୁରୁକି ମୁରୁକି ହସ ଯେ ଭଲ, ଏକଥା ଶିଖଉଥିଲେ ଆମ ସାର୍‌ମାନେ। ଏବେ ତ ସବୁ ଓଲଟା। ପିଲା ବହି ଭିତରେ ନିଜକୁ ମୁହାଁମୁହିଁ ଭେଟୁଛି। ବାହାରେ ସାମନା ସାମନି ହେବାକୁ ଡରୁଛି। ଆଉ ଆଉ ପିଲା ପରି ମୋ ପିଲା ସେମିତି ମାତୁ। ନିରୋଳାରେ ପିଲାକୁ ଦଣ୍ଡେ ଚିନ୍ତିବାକୁ ସୁଯୋଗ ଦିଅନ୍ତୁ। ପୋଥିଏ କଥା ତା'ମନର ଥାକରେ ନ ଚଢ଼ଉତି, କ୍ଷୀରଢ଼ୋକି ଧାନ ପରି ପାଚୁ। ଜୀବନର ମାନେ ବୁଝୁ। ମାଇଲ ମାଇଲ ଅମ୍ଳାନ ଖରାରେ ଖରାଟିଆ ନଇପରି ମରମଟା ନ ଶୁଖାଇ ଭରାନଈ ପରି ନାଚୁ। ଆଦିଗନ୍ତ ସବୁଜିମାରେ ବନ ଝରଣାର ଅସ୍ଥିରତାରେ ଛମ୍‌ଛମ୍ ନାଚରେ ନିଜକୁ ନିଜେ ଭେଟୁ। ଜହ୍ନମାମୁଁକୁ ହାତ ଠାରି ଡ଼ାକ ପକାଇବାର ବିଚିତ୍ର ମୁଦ୍ରାରେ ଜୀବନକୁ ମାପିବାକୁ ଶିଖାଉଥିଲେ ଆମ ସାର୍‌ମାନେ। ଭଲବହିଟିଏ ପଢ଼ିବା ଭଲ। ଭଲ ଜୀବନଟିଏ ଜୀଇଁବା ଆହୁରିଭଲ। ସେଇ ଜୀବନକୁ ନେଇ ଭଲ ବହିଟିଏ ଲେଖିବା ସବୁଠୁ ଭଲ। ଠକିବା ଠାରୁ ଠକେଇ ହେବା ଭଲ। ଆପଣା ବୁଦ୍ଧିରେ ଠାକୁର ହେବା ଆହୁରି ଭଲ। ଏ

କଥା ଶଖାଇଥିଲେ ଆମ ଅବଧାନ। ସବିଙ୍କ କଥା ଶୁଣ ବିବେକର ଚାଲୁଣିରେ ସେ ସବୁ କୁ ଛାଣ। ଖାଲି ସତଟାକୁ ରଖ। ବାକିସବୁ ଫୋପାଡ। ଦୁଃଖ ଗଛ ପରି ଆଗରେ ଠିଆ ହେଲେ ଶାଖାରେ ଶାଖାରେ ଫୁଲପରି ବିରାଜମାନ ହୁଅ। ନିଜ ଆଡ଼କୁ ଆଉ ମାନଙ୍କୁ ଟାଣି ଆଣି ନିଜକୁ ଭଲପାଇ ଶିଖ। ତା'ପରେ ମଣିଷ ଭଳି ମଣିଷକୁ ଭଲପାଅ। ଯାହା ଠିକ୍ ତହିଁରୁ ନ ଟଳିବାକୁ ଦମ୍ଭ ଦେଇଥିଲେ ଆମ ସାର୍। ନିଜ ଛାଇ ପରି ନିଜକୁ ନିଜେ ଭଲ ପାଇଲେ ଯାଇ ଅନ୍ୟକୁ ଭଲ ପାଇ ହୁଏ। ମୋଟାମୋଟି ଆମ ବେଳର ଶିକ୍ଷା ଏ ସବୁ ଲକ୍ଷ୍ୟ ହାସଲ କରିବାକୁ ଅଣ୍ଟା ଭିଡୁଥିଲା। କୁର୍ଲା ପ୍ରାଇମେରିରେ ଚାରିବର୍ଷ, ଝରସୁଗୁଡ଼ା ମି.ଇ. ସ୍କୁଲରେ ଚାରିବର୍ଷ ଓ ଲରମ୍ଭା ହାଇସ୍କୁଲରେ ଚାରିବର୍ଷ କଟିଲା। ବାର ବର୍ଷର ଶିକ୍ଷାପରେ ମେହେର କଲେଜକୁ ଆଇଲି। ଧାନ ପରି କ୍ଷୀର ଢ଼ୋକି ଢ଼ୋକି ପାଚି ପାଚି ପ୍ରବେଶିଲି ମହାବିଦ୍ୟାଳୟରେ। ଲରମ୍ଭା ପରି ମଫସଲରୁ ମେଟ୍ରିକ ପାସ୍ କରିଥିବାରୁ ସାଙ୍ଗମାନେ ହସୁଥିଲେ ଓ ହସଉଥିଲେ। ରେଲଗାଡ଼ି ଚକାରେ କୁଆଡ଼େ ପମ୍ପ ଦିଅନ୍ତି ବୋଲି ବିରଝଉଥିଲେ। ସେ ବେଳର ମଫସଲି ହେବାରେ ଯେଉଁ ଆରୋହୀ ଉଲ୍ଲାସ ଥିଲା। ଏବେ ସହରୀ ହେବାରେ ସେ ସୁଆଦ କାହିଁ?

ଆମ ବେଳେ ଜି.ଏମ୍. କଲେଜ ଆକାରରେ ସାନ ଥିଲା। ବିଚାରରେ ଥିଲା ବଡ଼। 'ଟି' ସାଇଜର ଘର। ପୁରୁବରୁ ପଶ୍ଚିମକୁ ଧାଡ଼ିଏ। ଦକ୍ଷିଣ ରୁ ଉତ୍ତରକୁ ଆଉ ଧାଡ଼ିଏ। ପୁଅ ଝିଅର କଲେଜ। ଝିଅ ସଂଖ୍ୟା ଅଳ୍ପ। ପୁଅ ବେଶୀ। ଏବେତ ଝିଅ ମାନେ ପୁଅଙ୍କଠୁ ଟପି ଗଲେଣି। ଏ ଏକ ସୁଲକ୍ଷଣ। ଝିଅମାନେ ପାଠ ଶିଖିଲେ ଦେଶ ବଦଳି ଯାଏ। ସମାଜ ବଦଳେ।

ମୁଁ ବି ବିଜ୍ଞାନରେ ନାମ ଲେଖାଇଥିଲି। ଛ'ମାସ ର 'ଠ' କରି କଟିଗଲା। ଦିନେ ନିତ୍ୟାନନ୍ଦ ହେଡ଼କ୍ଲାର୍କ ଅଫିସକୁ ଡାକିଲେ, ଗଲି। ଆଦେଶ କଲେ ଅଧକ୍ଷଙ୍କୁ ଭେଟ। ଡରୁଥିଲି, ପିଲାବେଳରୁ ଡରକୁଳାଟାଏ। ଏବେ କଉ ସିଂହ ପାଲଟି ଯାଇଛିଯେ। ଯିବି କି ନି ଯିବି ହେଉଛି। ପରଦା ଫାଙ୍କରେ ମୁହଁ ଗୁଞ୍ଜି ଦେବାରୁ ଭିତରୁ ଡାକ ଶୁଭିଲା 'ମଙ୍ଗଳୁ' ଆସ, ଭିତରକୁ ଆସ। ଚଉକିରେ ବସିବାକୁ କହିଲେ। ଠିଆରହିଲି। ଦିହ ଶୀତେଇ ଗଲାଣି। ପଚାରିଲେ, ବିଜ୍ଞାନ ପଢୁଛ? "ଆଜ୍ଞା ହଁ" କଲି। ବିଜ୍ଞାନ ଛାଡ଼ି କଳାକୁ ଆସ। ନିତ୍ୟାବାବୁଙ୍କୁ କହି ଦେଇଛି। ସେ ସବୁ ଠିକ୍ କରିଦେବେ। ସେତକ କହି ମୋର ତାଲୁରୁ ତଳିପା ଯାଏ ଅନାଇଲେ। କାହିଁକି ବୋଲି ପଚାରିବାର ଜୁ ଥିଲା କଉଠି? ତାଙ୍କଠୁ ଚାଲିଆସି ହୁରଗୁନି ହେଲି। ପାଠରେ ଟ ହେଳା କଲିକି? ବିଜ୍ଞାନ, ସାର୍‌ମାନେ କିଛି କହିଲେ କି? ମନରେ ନାନା ପ୍ରଶ୍ନ। ବାପା କୁଆଡ଼େ ମାୟାଧର ମାନସିଂହଙ୍କୁ ଘରର ହାଲଚାଲ ଶୁଣେଇଥିଲେ। ହୀରାକୁଦ ବନ୍ଧ ଯୋଗୁଁ। ଆମେ ଶହଶହ ଏକର ଜମି ଥାଇବି

ସ୍ୱର୍ଗବାସୀ ହୋଇ ସାରିଥିଲୁ। ବାଟ ଅଧରେ ପଢ଼ା ସରିଯିବ ବୋଲି ମାନସିଂ ମୋତେ କଳାକୁ ଠେଲିଲେ। ଚମତ୍କାର ତାଙ୍କର ଦୂରଦୃଷ୍ଟି!



# ୧୩. ମର୍ତ୍ତେ ଲାଗୁ ଡାଳକି ସ୍ୱର୍ଗେ ଲାଗୁ ଡାଳ

୧୯୫୫ର କଥା। ଆଜିପରି ଲାଗୁଛି। ଆଇ.ଏ ପଢୁଥିଲି ମୁଁ। ଅଧ୍ୟକ୍ଷ ଥାନ୍ତି ମାୟାଧର ମାନସିଂହ ଓଡ଼ିଶାର ନା'କରା କବି। ନିଆଁକୁ ନିଆଁ ଚିହ୍ନିଲା ଭଳି ଗଙ୍ଗାଧରଙ୍କୁ ଚିହ୍ନିଥିଲେ ସେ। ମାନସିଂ ଚାହାନ୍ତି ମେହେର କଲେଜ ହେଉ ମେହେର ମହିମାର ପୀଠ। ଏଣୁ ଗଙ୍ଗାଧର ସାହିତ୍ୟ ସାଧନା ପୀଠ ଗଢ଼ିଲେ। ତାର ମୁଖପତ୍ର ମେହେର ପ୍ରଦୀପ। କବି ଚିନ୍ତାମଣି ବେହେରା ଆସି ଯୁଟିଲେ। ଯୁବକ ଓ ଦକ୍ଷ। ଭୀମ ହାତରେ ଗଦାପରି। ତାଙ୍କ ପାରିଲା ହାତରେ ପଡ଼ିଥିଲା ସମ୍ପାଦନାର ଦାୟିତ୍ୱ। ନୂଆଁ ରୁଚିରେ ପରଷଣା ସୁଆଦିଆ ନ ହେବ କେମିତି? ଶ୍ରୀ ଦୁର୍ଗାପ୍ରସାଦ ନାୟକ, ଓ କୀର୍ତ୍ତନ ବିହାରି ପଟ୍ଟନାୟକ ଥାନ୍ତି ତାଙ୍କ ସଙ୍ଗରେ। ଅଦୁଆ ମଦୁଆରେ ଟିକେ ସଳଖି ଦେବାକୁ। 'ମୋ' ଭଳି ଦଳେ ପିଲାଙ୍କ ସଉକ ଥିଲା ଲେଖାଲେଖିରେ। ସବୁ ଚୋର ବିରହି ହାଟେ ଠୋଲ୍ ପରି ଆମେ ଯୁଟିଗଲୁ ଚିନ୍ତାମଣି ବାବୁଙ୍କ ପଛରେ।

ବିଭୂତି ଭୂଷଣ ପଣ୍ଡା, ମାଧବ ଚନ୍ଦ୍ର ପଣ୍ଡା, ରାମଚନ୍ଦ୍ର ପରିଛା ଆଉ ଏଇ ଅଧମକୁ ସମ୍ପାଦନାରେ ପୂରେଇ ଦେଲେ କବି ମାନସିଂ। ପାଟ ହାତୀ କା ମୁଣ୍ଡରେ ସୁନା କଳସୀ ଢାଳୁ କି ନ ଢାଳୁ ମୋ ଉପରେ ପଡ଼ିଲା ପ୍ରୁଫ ଦେଖାର ଭାର, ମାରୱାଡ଼ି ପଡ଼ାର 'ଶ୍ରୀକୃଷ୍ଣ ପ୍ରିଣ୍ଟିଙ୍ଗ ପ୍ରେସ'ରେ ଛପା ହେଉଥାଏ ମେହେର ପ୍ରଦୀପ। ପ୍ରେସର ମାଲିକ ଶ୍ରୀ ବ୍ରଜମୋହନ ପୋଦ୍ଦାର ଉଦାର ଓ ନିଷ୍ଠାପର ଲୋକ। ଆମକୁ ସବୁଦିଗରେ ସବୁ ସମୟରେ ସହଯୋଗ କରୁଥିଲେ। ସେତେବେଳେ ସମ୍ବଲପୁରରେ ପତ୍ରିକା ଛାପିବା ସେତେ ସହଜ ନଥିଲା। ପରେ ଶ୍ରୀକୃଷ୍ଣ ପ୍ରସାଦ ଷଡ଼ଙ୍ଗୀ, ଶରତ କୁମାର ଷଡ଼ଙ୍ଗୀ ଓ ଯୋଗେଶ ଚନ୍ଦ୍ର ପଣ୍ଡା, ସୁବଳ ସୁଦାମ ଯୁଟିଲା ପରି ଯୁଟିଗଲେ। ମେହେର ପ୍ରଦୀପର ପ୍ରଥମ ସଂଖ୍ୟା ବାହାରିଲା ୧୯୫୫ ଅକ୍ଟୋବର ଶେଷ ବେଳକୁ। କବି ମାନସିଂଙ୍କର "ଅମୃତତ୍ୱ ଲୋଡ଼ାନାହିଁ"। ବଡ଼ ଦେଉଳକୁ ବାଇଶି ପାହାଚ ପରି ପ୍ରଥମ ପୃଷ୍ଠା ମଣ୍ଡନ କଲା। ସେଇ ସଂଖ୍ୟାରେ ଛୋଟ କବିତାଟିଏ ପ୍ରକାଶ ପାଇଥିଲା। ଶ୍ରୀ ଶରତ ନାରାୟଣ ବେହେରାଙ୍କର। କବିତା ନାଁଥିଲା "କୃଷ୍ଣା"। ଏକ ଅନୁବାଦ କବିତା **Warg Cuney** ଙ୍କ **'No-Image'** ର ଅନୁବାଦ। ସଫଳ କବିତାଟିଏ। ସେ କବିତାର ଅନେକ ଅଂଶ ଏବେ ବି ମୋର ମନେ ପଡ଼େ।

"ସେ ଜାଣେନା ସେ କେତେ ସୁନ୍ଦର। ପାମ୍ ଗଛ ତଳର ନଇ ପାଖରେ ତାର ଛାଇ। ଦେଖନ୍ତା ଯଦି, ସେ ଜାଣି ପାରନ୍ତା। କିନ୍ତୁ କଡ଼େଇ ପାଣିରେ ପ୍ରତିଫଳିତ ହୁଏନା ତାର

ଛାଇ!"

ବହୁ ବର୍ଷର ବ୍ୟବଧାନ ପରେ ମେହେର ପ୍ରଦୀପ ବାହାରିଲା। ତାର ପ୍ରଥମ ସଂଖ୍ୟାରେ 'ସମିଆ' ଥିଲା ଏକ ଛୋଟ କବିତା। ଛୋଟ ହେଲେ ବି ଟାଣୁଆ।

"ସମିଆ ଥିଲା....

ପିତଳ ଗିନାଥି ତେଲ ରଖୁଥିଲ। କପଡ଼ାଥି ଚୁରା ଗଁଠଉଥିଲ।

ସମିଆ ଥିଲା.....

ପିତଳ ଗିନା କନ୍‌ହା ହେଲା। ଚୁରା ବୁଚ୍‌କା ଫାଟିଗଲା।

ଏ ଦୁଇ କବିତା ମୁହାଁମୁହିଁ ହେବାର କବିତା। ସମଧର୍ମୀ କବିତା। ଶରତ ବେହେରାଙ୍କୁ ବହୁବାର ଧନ୍ୟବାଦ ଦେଇଛି। ଏବେ ଭବାନୀଶଙ୍କର ପ୍ରଧାନଙ୍କୁ ଧନ୍ୟବାଦ ନ ଦେଇ ରହିପାରୁନି।

ଆମବେଳେ ମେହେର ପ୍ରଦୀପ ମଫସଲୀ ଝିଅପରି ନିରାଭରଣାଥିଲା। କବି ଚିନ୍ତାମଣି ବେହେରା ପଜାଲା ଛୁରି ପରି ତାଙ୍କ ମାର୍ଜିତ ରୁଚିରେ ଖୁବ୍ ଦାମିକା ଦାମିକା କଥା ସବୁଯୋଡୁଥିଲେ। 'କଷଟି ପଥର'ରେ ଅସଲି ନକଲି ପରଖୁଥିଲେ। 'ମୂଲ୍ୟବାନ ଧାର'ରେ ବହୁ ପ୍ରସଙ୍ଗକୁ ଭସେଇ ନେଉଥିଲେ। "ପ୍ରାସଙ୍ଗିକ"ରେ କବି ମାନସିଂ ଆପଣାର ନିର୍ଭିକ ମତାମତ ବାଢୁଥିଲେ। କୀର୍ତ୍ତନ ବିହାରି ପଟ୍ଟନାୟକ "ରସ ଓ ଚାତୁରୀ"ରେ ସ୍ୱାଭାବିକ ମୃଦୁହାସ୍ୟ ପରଶୁଥିଲେ।

'ମେହେର ପ୍ରଦୀପ' ଜରିଆରେ ଶ୍ରୀ ଦୁର୍ଗା ପ୍ରସାଦ ନାୟକ କୋକେଡିରାର ସ୍ୱର୍ଗତ ଲକ୍ଷ୍ମଣ ପତିଙ୍କୁ ଆବିଷ୍କାର କରିଥିଲେ। ଲକ୍ଷ୍ମଣ ପତିଙ୍କ 'ଶବର ଲୀଳା' ତାଙ୍କୁ ପୁଣି କବି ବୈଷ୍ଣବ ପାଣିଙ୍କ ସମତୁଲ ମର୍ଯ୍ୟାଦା ଦେଇ ପାରିଥିଲା। କବି ମାନସିଂ ଗୋପୀ ମହାନ୍ତିଙ୍କ 'ଅମୃତର ସନ୍ତାନ'କୁ କେନ୍ଦ୍ର ସାହିତ୍ୟ ଏକାଡେ଼ମୀର ପୁରସ୍କାର ପାଇଁ ସୁପାରିଶ କରିଥିଲେ। ତାଙ୍କ ଇଂରାଜି ସୁପାରିଶକୁ ଓଡ଼ିଆରେ ଦୁର୍ଗା ନାୟକ ରୂପାନ୍ତର କରିଥିଲେ। ମେହେର ପ୍ରଦୀପ ପ୍ରଥମ ସଂଖ୍ୟାରେ ତାହା ଛପା ହୋଇଥିଲା।

ସବୁକାମ ଚିନ୍ତାମଣି ବେହେରା କରୁଥିଲେ। ମାନସିଂଙ୍କ ନଜରଥିଲା। ଆଜେବାଜେ ଲେଖା ସେ ପୂରେଇ ଦେଉ ନଥିଲେ। ନୂଆ ପ୍ରତିଭା ପ୍ରତି ଉଦାର ଥିଲେ ସେ। ପାଠକ ହାତରେ ମେହେର ପ୍ରଦୀପକୁ ଟେକି ଦେବା ଆଗରୁ ଲେଖାଗୁଡ଼ିକୁ ମାଜି ଘଷି ସଜେଇବାରେ ହେଳା କରୁନଥିଲେ।

ମେହେର ପ୍ରଦୀପର ୪ମ ସଂଖ୍ୟାରେ **Wordsworth** ଙ୍କର **"She dwelt among the untrodden ways"**କୁ ଛପେଇବାକୁ ଆଦେଶ ଦେଲେ। 'ବାସ କରେ ସିଏ ଅମଡ଼ା ପଥଧାରେ' ଜାଗାରେ 'ପଲ୍ଲିମାନେ' ବସେଇଲେ। ଆଭିଧାନିକ ପ୍ରୟୋଗ ସଂପର୍କରେ ସଫା ସଫା ବୁଝେଇଦେଲେ। 'କଏନିଙ୍ଗ ଅଫଓ୍ୱାର୍ଡ଼ସ' ବା ଶବ୍ଦର ସ୍ଥାନୀୟ ପ୍ରୟୋଗ

ଉପରେ ସେ ଯୋର ଦେଉଥିଲେ । କବି ମାନସିଂଙ୍କର ବହୁଲେଖା ଉତାରିବାର ଅବସରରେ ମୁଁ ତାଙ୍କର ସାନ୍ନିଧରେ ଆସିଛି । ମୋ ମନର ବହୁ ସନ୍ଦେହ ସେ ନିର୍ବିକାର ଭାବରେ ବୈଦିକ ସନ୍ୟାସୀ ଭଳି ମୋଚନ କରି ପାରିଥିଲେ ।

ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ କାବ୍ୟ-ଚେତନା ଓ ଗଣିତ ଦୃଷ୍ଟିକୋଣ ଭିନ୍ନ ଶ୍ରେଣୀର । ତାଙ୍କଙ୍କ ଉତ୍ସାହ ଓ ପ୍ରେରଣାରେ ଏ ଅଞ୍ଚଳର ବହୁ ତରୁଣ ଲେଖକ ଉଦ୍‌ବୁଦ୍ଧ ହୋଇଥିଲେ । ବହୁ ତରୁଣ ମେହେର ପ୍ରଦୀପରେ ଲେଖାଲେଖି କରୁଥିଲେ । ଶରତ ନାରାୟଣ ବେହେରା, ଶୈଳେଶ ଚନ୍ଦ୍ର ପଟ୍ଟନାୟକ, ଶୀଳାଦିତ୍ୟ, ହରିଶଙ୍କର ବଡ଼ପଣ୍ଡା, କୁମରମଣି ଚୌଧୁରି, ଯୋଗେଶ ଚନ୍ଦ୍ର ପଣ୍ଡା, ଶରତ କୁମାର ଷଡ଼ଙ୍ଗୀ, ଲାଇଲି ଦତ୍ତ, ଅମ୍ବିକା ଚରଣ ପଣ୍ଡା, ଶ୍ରୀରାମ ପାଣିଗ୍ରାହୀ, ରମେଶ ଧଳ ଆଦିଙ୍କ ନାଁ ମୋର ମନେ ପଡୁଛି । ଏମାନଙ୍କ ମଧ୍ୟରୁ ଅନେକ ଆଜି ପ୍ରତିଷ୍ଠିତ ଲେଖକ । ସେ କାଳର ନାହୁଲୁ ମାହୁଲୁ ଲେଖାଗୁଡ଼ିକୁ 'ମେହେର ପ୍ରଦୀପ' କୋଲେଇ କାଖେଇ ବହୁ ତରୁଣ ଲେଖକଙ୍କୁ ତାର ମମତାମୟ ବାତ୍ସଲ୍ୟ ପ୍ରଦାନ କରିଥିଲା । ଆମ ବେଳର କଲେଜ ଜୀବନରେ ମେହେର ପ୍ରଦୀପର ଦାନକୁ ଭୁଲି ହେବନାହିଁ ।

ଆମ ବେଳେ 'ସୀମା ଆନ୍ଦୋଳନ' ହୋଇଥିଲା । କଟକ, ପୁରୀ ଓ ସମ୍ବଲପୁରରେ ଏହାର ତୀବ୍ରତା ଥିଲା । ସୁନୀଲ, ବେଙ୍ଗପାଣିଆ ଭଳି ଲୋକେ ଶହିଦ ହୋଇଥିଲେ ।

ଅଧ୍ୟକ୍ଷ ମାନସିଂ ସୀମା ଆନ୍ଦୋଳନ ବେଳେ ଅଧ୍ୟକ୍ଷ ପଦର ଗରିମାକୁ ରକ୍ଷା କରିଥିଲେ । ପ୍ରଶାସନର ଅଧିକାର ଓ ପ୍ରବୃତ୍ତିକୁ ମୁହାଁମୁହିଁ ଜବାବ ଦେଇଥିଲେ । ତାଙ୍କର ନିର୍ଭିକତା ଓ ପଦବୀପ୍ରତି ବେଖାତିର ଭାବକୁ ସମ୍ବଲପୁର ବାସୀ ସ୍ୱାଗତ କରିଥିଲେ । ଆଦର୍ଶ ପ୍ରତି ତାଙ୍କ ନିଷ୍ଠା ଯୋଗୁଁ ସେ ପରବର୍ତ୍ତୀ ଜୀବନରେ ଅନେକ ଅସୁବିଧାର ସମ୍ମୁଖୀନ ହୋଇଥିଲେ ।

ମାନସିଂ ବହୁଦୂରକୁ ଦେଖି ପାରୁଥିଲେ । ମୋ ଜୀବନରେ ତାଙ୍କ ଦୂରଦୃଷ୍ଟି ପ୍ରତିଘଟଣାରେ କଠୋର ସତ୍ୟରୂପେ ରୂପ ନେଲା ।



## ୧୪. ମେଘ ରଡ଼ିଲେ ରୁଗୁଡ଼ା ଫୁଟେ

ମୋ ଜୀବନରେ କବି ମାୟାଧର ମାନସିଂଙ୍କ ପାଇଁ ପ୍ରଶସ୍ତ ଜାଗାଟିଏ ଅଛି । ଠିକ୍ ବାଟରେ ଥୋଇ ଦେବାପାଇଁ ମୋତେ ହାତଧରି କଢ଼େଇ ନେଇଛନ୍ତି । ଆମ ଗାଁକୁ ଯିବାକୁ ସେ ମନକଲେ । ତାଙ୍କୁ ବଳଦ ଗାଡ଼ିରେ ଲମ୍ବଦୁମୁରି ଜମାଦାର ପାଲି ଦେଇ ପିତାପାଲିକୁ ନେଇଥିଲି । ଗାଁକୁ ଭଲ ପାଉଥିଲେ ସେ । ସାରା ସମ୍ବଲପୁରକୁ ଭଲ ପାଉଥିଲେ । ତାଙ୍କ ବେଳର ତମାମ ସମ୍ବଲପୁରକୁ "ତରୁଣ ସମ୍ବଲପୁର"-ବୋଲି ଡାକୁଥିଲେ । ତାଙ୍କ ଧାରଣାର ପ୍ରତିଫଳନ କଟକ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସର ମୁଖପତ୍ର 'କିଶଳୟ'ରେ

ପ୍ରକାଶିତ ହୋଇଥିଲା ।

ମାୟାଧର ମାନସିଂ କବିଟିଏ । କବି ସବୁ ଯୁଗରେ ଯଶ କାଙ୍ଗାଳ । କବି ହୋଇ ଜିଅନ୍ତା । କବି ହୋଇ ମରନ୍ତା ପୁଣି କବି ହୋଇ ଅନ୍ୟ ଜନ୍ମରେ ଫେରି ଆସନ୍ତା । ଏଇ ଇଚ୍ଛାଟି ମାନସିଂ ନିଜ କବିତାରେ ଥୋଇ ଯାଇଛନ୍ତି । "ପୁଣି ଯଦି ଆସେ, କେବେ ଏଇ ଧରଣୀରେ, ହେ ପରମ, ଏ ମାଗୁଣି, ତବ ପାଦତଳେ, ବୀଣା ପୁଣି ନିଜ ହସ୍ତେ ଦେବ, ମୋ ପାଣିରେ । ସ୍ଥାନ ଏକ ଦେବ ମୋତେ ବିଶ୍ୱ କବି ଦଳେ । ମାଗେନାହିଁ ନିଜ ମୁକ୍ତି ସନ୍ତୋଷ ବିଳାସ ହେ କବି କରାଅ ମତେ କବି ଜନ୍ମେ ଜନ୍ମେ ।" କବି ମାନସିଂ କେବଳ କବି ନଥିଲେ ଥିଲେ ଭଲ ଶିକ୍ଷକ, ଶିକ୍ଷାବିତ୍, ଜ୍ଞାନୀ, ଉଚ୍ଚପଦାଧିକାରୀ । ସ୍ନେହରେ ସଦା ଓଦାଥିଲା ତାଙ୍କ ଅନ୍ତର । ଦେଖିବାକୁ ଯେମିତି ସୁନ୍ଦର । ତାଙ୍କର କଥା ବି ସେମିତି ମଧୁର । ୧୯୭୩ କୁମାର ପୂର୍ଣ୍ଣମୀ ଦିନ ସେ ସଂସାରରୁ ବିଦାୟ ନେଲେ ।

ଜନମ ହୋଇଥିଲେ ପୁରୀ ଜିଲ୍ଲାର ପାରିକୁଦସ୍ଥ ନନ୍ଦଲା ଗ୍ରାମରେ । ପାଟଣାରୁ ଇଂରାଜିରେ ଏମ୍.ଏ । କାଳିଦାସ ଓ ସେକ୍ସପିଅରଙ୍କ ଉପରେ ଗବେଷଣା କରି ଲଣ୍ଡନର ଡ଼ରହାମ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ କରିଥିଲେ । ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ବହୁ ଉଚ୍ଚ ପଦବୀରେ ରହି ଅବସର ନେଇଥିଲେ । ଶିକ୍ଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ନିଷ୍ଠା ଯୋଗୁଁ ଭାରତ ସରକାର ୧୯୬୭ରେ ତାଙ୍କୁ ପଦ୍ମଶ୍ରୀରେ ସମ୍ମାନିତ କଲେ । ବାର ବରଷରୁ ଲେଖା ଲେଖି ଆରମ୍ଭ କଲେ । କୋଡ଼ିଏ ବରଷ ହେବା ବେଳକୁ "ସେଇ ସହକାର ତଳେ, ମୋ ପ୍ରିୟାର କର କଙ୍କଣ ଭିଡ଼ିଥିଲା ମୋର ଗଳେ...." ତାଙ୍କୁ ପରିଚିତ କରାଇଦେଲା । ଧୂପ, ହେମ ଶସ୍ୟଭଳି ଉଚ୍ଛଳ ପ୍ରେମ କବିତା ତାଙ୍କୁ ଯଶ ଓ ସମ୍ମାନ ଆଣି ଦେଇଥିଲା । ପ୍ରବନ୍ଧ, ସମାଲୋଚନା, ଭ୍ରମଣ କାହାଣୀ, ଉପନ୍ୟାସ, ଜ୍ଞାନକୋଷ ଓ ଅନୁବାଦରେ ହାତଦେଇ ସଫଳତା ପାଇଛନ୍ତି । ତାଙ୍କର ଲେଖା ସଞ୍ଚତ ଓ ଶାଣିତ । ତାଙ୍କର ରସବୋଧ ଓ ରୂପପ୍ରାଣତା ପାଠକର ଭିତରକୁ ଛୁଏଁ । ତାଙ୍କ ଜାତୀୟତା ଭିନ୍ନ ଧରଣର ।

"ବାହାରେ ନିପୁଣତମ ହୋଇ ଆଧୁନିକ ରହି ମଧ୍ୟ ଭାରତୀୟ ପ୍ରାଚୀନ ଯାଜ୍ଞିକ ।"

ମାନସିଂଙ୍କ ଆଲୋଚନା ସବୁ ପାଣ୍ଡିତ୍ୟପୂର୍ଣ୍ଣ । । କାବ୍ୟିକରସରେ ରସାଣିତ । ସୁସ୍ଥ ଚିନ୍ତାରେ ଗଭୀର ଓ ମନକୁ ଛୁଇଁବା ଭଳି ଶାଣିତ, ସଂଜତ ଓ ଶୁଭଙ୍କର । ଇଂରାଜୀ ଭାଷାରେ ତାଙ୍କର ଦଖଲଥିଲା । ତାଙ୍କ **History of Oriya Literature** ବହିର ଆରମ୍ଭ କଲେ ଛାଡ଼ି ହୁଏନା । କବିତା ପଢ଼ିବା ଭଳି ଲାଗେ ।

ଏ ଆଲୋଚକ କବି ମାନସିଂଙ୍କ ଜଣେ ଛାତ୍ର । ୧୯୫୫ରୁ ପଢ଼ା ଶେଷ ହେବା ପର୍ଯ୍ୟନ୍ତ ତାଙ୍କ ସ୍ନେହ ପାଇବାର ଭାଜନ ହୋଇ ପାରିଥିଲା । ଗଙ୍ଗାଧର ମେହେର କଲେଜର ଅଧକ୍ଷ ଭାବରେ ସେ ବହୁ ଛାତ୍ରଙ୍କର ନିବିଡ଼ ସଂପର୍କରେ ଆସିଥିଲେ । ସେଇ ନିବିଡ଼ତାର ନିବିଡ଼ ରୂପକୁ ସେ ତାଙ୍କର ନାନା ଆଲୋଚନାରେ ମୁଖର କରି ପାରିଥିଲେ । ସଖ୍ୟ ଓ

ସାମାଜିକତା ଲାଭ କରିବାକୁ ଆପଣାର ଗୌରବ ମନେ କରୁଥିଲେ। ସମ୍ବଲପୁର ମଧ୍ୟ ଡ଼ଃ. ମାୟାଧର ମାନସିଂଙ୍କ ପାଇଁ ସଦାସର୍ବଦା ଗର୍ବ ଅନୁଭବ କରୁଥିବ। ଏବକାର ବୃଣାଳ ମେହେର କଲେଜ ତାଙ୍କୁ ମନେ ରଖୁ ବା ନରଖୁ। ଆମ ବେଳର ସଭିଏଁ ଗଣ୍ଠିର ଧନ ରୂପେ ସାଇତିବେ।

ମୋ ଗାଁରେ ମାନସିଂଙ୍କର ପାଦଧୂଳି ପଡ଼ିଥିଲା। ସେ ଗାଁ ଆଉ ନାହିଁକି ମାନସିଂ ଆଉ ନାହାନ୍ତି। ତାଙ୍କର ବିଶାଳ ମାନବିକତା ଆମକୁ ପ୍ରେରଣା ଦେଉ। ତାଙ୍କର ବାଣୀ ଆମ ଭିତରେ ଜୀବନ୍ୟାସ ହେଉ। ତାଙ୍କ କାବ୍ୟିକ ମନୋଭୂମିରେ ଆମେ ତାଙ୍କୁ ଖୋଜିବାର ଆକୁଳତା ବଢୁ। ଆମର ଅନୁଭବ ଭିତରେ ସେ ସଦା ସଜୀବ ହୋଇ ଚାଲିଥାନ୍ତୁ। ସଖ୍ୟ ଲାଳସୀ ଜଣେ କବିର ଏ ଧାଡ଼ି ଗୁଡ଼ିକ ପଢ଼ନ୍ତୁ।

"ମନେହୁଏ କାହାରେ ମୁଁ ଖୋଜୁଛି, ଅନ୍ତରେ ବହୁଜନ୍ମେ ବହୁ ଲୋକେ ଅନାଦି କାଳରୁ କଳକଣ୍ଠେ ଧାଇଁଛି। ତେଣୁ ସହସ୍ର ଶାଖାରେ ଏ କଣ, କେହି କିନ୍ତୁ ଶ୍ୟାମଳ କଲାନାହିଁ ଚିରମରୁ। ସୀମା ଡେଇଁ ଡେଇଁ ଅସୀମକୁ ଛୁଇଁବାର ଇଚ୍ଛା କେତେ ପ୍ରବଳ। ଜୀବନକୁ ଭଲ ପାଇବାର ଆଲୋକ ବଳୟ ଭିତରକୁ ଧସେଇ ପଶିବାରେ ବି ବ୍ୟାକୁଳତା। ମରଣ ସେଇଠି କେତେ ନଗଣ୍ୟ ସତେ! "ମୃତ୍ୟୁନିକି ଭଲ ରୂପଦେଖି ଆଲୋକର" ମେଘରଡ଼ା। ତାଙ୍କ ଡ଼ାକରେ କଣଥିଲା କେଜାଣି ଆମେ ମାଟିଚିରି ଡୁଗୁଡ଼ା ସମ ଫୁଟି ଉଠିଲୁ ସତେ!



## ୧୫. ଟୋପାକ ବନିଗଲା ମୋତି

ଦିନ ଗୋଟାଏରେ ଡ଼ାକବାଲା ଆସେ। ଶେଷ ପଉଷର ଖରା। ପଢ଼ା ଚାଲିଥାଏ। ଚାରି ପିରିୟଡ଼ ପରେ ରିସେସ୍। ମୁଁ ଅଷ୍ଟମରେ ପଢୁଥାଏ। ଘରୁ କି ବାହାରୁ ମୋର ବରାବର ଚିଠି ଆସେ। ଏଣୁ ଡାକବାଲାର ଆସିବା ବାଟକୁ ମୁଁ ଅନେଇଥାଏଁ। ଡାକବାଲା ଚିଠିପତ୍ର ସବୁ ପ୍ରଧାନ ଶିକ୍ଷକଙ୍କ ଟେବୁଲ ଉପରେ ଥୁଏ। ଆମେ ତାକୁ ମନା କରିଥାଉଁ। ଆମ ଚିଠି ଆମକୁ ଦେବାକୁ। ବେଳେ ବେଳେ ଗଞ୍ଜାମିଆ ପାଖରେ ଚା' ବି ପିଏଇ ଥାଉଁ। ହେଲେ ସେ ଆମ କଥା ରଖେ ନାହିଁ। ଝିଅମାନଙ୍କ ନାଆଁରେ କୁଆଡ଼େ ଯାବରଜାତିଆ ଚିଠିସବୁ ଆସେ। ସେ ସବୁକୁ ତନଖିବା ପାଇଁ ପ୍ରଧାନ ଶିକ୍ଷକଙ୍କ କଡ଼ା ହୁକୁମ। ଚିଠି ସବୁ ତାଙ୍କ ଟେବୁଲ ଉପରେ ଥୁଆ ହେବ। ତାଙ୍କଠୁ ପାଇବା ବାଲାଙ୍କ ପାଖକୁ ଯାଏ। ନାରାଣ ଡ଼ାକ ଆଣି ଆମ କ୍ଲାସର ଶିକ୍ଷକଙ୍କୁ ଦେଲା। ଶିକ୍ଷକ ପଚାରିଲେ 'ମଙ୍ଗଳୁ' କିଏ? ଅପରାଧୀ ଭଳି ଠିଆ ହେଲି। ସେ ପାଖକୁ ଡାକିଲେ। ତାଙ୍କ ଆଖିରେ ବିସ୍ମୟ!

ମୋତେ ଭାରି ଅଡୁଆ ଲାଗିଲା। ମନେ ମନେ ଭାବିଲି କଣ ହେଲାକି? ମୁଁ ତାଙ୍କ

ଚ଼ଉକି ପାଖକୁ ପହଞ୍ଚିବା ପୂର୍ବରୁ ସେ ଖଣ୍ଡେ ପତ୍ରିକାର ଠିକଣା ଲେଖାଥିବା କାଗଜଟି ଫାଡ଼ି ପକେଇଲେ । ସାର୍ କହିଲେ ତମ ନାଁରେ ଖଣ୍ଡେ ପତ୍ରିକା ଆସିଛି । "ଯୁଗ ଭାରତୀ" ଶିକ୍ଷକ ନିର୍ଦ୍ଦେଶ ଦେଲେ ସିଟ୍‌କୁ ଯାଅ । ପ୍ରତିକାଟି ଦେଖୁଛି ପରେ ଦେବି । ଶିକ୍ଷକଙ୍କ ସାମନାରେ ଠିଆ ହେବାକୁ ମୋତେ ଭାରି ଅଡୁଆ ଲାଗେ । ଶ୍ରେଣୀର ପ୍ରଥମ ପିଲା ହୋଇ ମଧ୍ୟ କୌଣସି ପ୍ରଶ୍ନର ଉତ୍ତର ଜାଣି ସୁଦ୍ଧା ଦଉ ନଥିଲି । କଥା କହିଲା ବେଳେ ମୋ ପାଟି ଲାଗୁଥିଲା । ତା' ଉପରେ ମୁଁ ଲାଜକୁରା ଥିଲି । ଶିକ୍ଷକଙ୍କ ସାମନାରେ ଝିଅମାନେ ବସନ୍ତି । ମୋ ପାଟି ଲାଗିବାରେ ଏମିତି ହସନ୍ତି ଯେ ମୋ ଉପରେ ଆକାଶ ଖସି ପଡ଼ିଲା ଭଳି ଲାଗେ । କିଛିକ୍ଷଣର ନୀରବତା ପରେ ଶିକ୍ଷକ କହିଲେ "ମଙ୍ଗଲୁ ।' ତମର କବିତାଟିଏ ବାହାରିଛି ।"

ମାଇନର ସ୍କୁଲରେ ପଢ଼ିବା ବେଳରୁ ଗୀତ ଲେଖୁଥିଲି । ମୋର ଗୀତଲେଖା ମୁଁ କାହାକୁ ଦେଖଉନଥିଲି । ଗୀତଖାତାକୁ ବାକ୍ସ ଭିତରେ ଲୁଚେଇ ରଖୁଥିଲି । ସହପାଠୀ ବନ୍ଧୁମାନେ ବେଳେବେଳେ ସେ ଖାତାଟି ଟାଣିନେଇ ଥଟ୍ଟା କରୁଥିଲେ । କିଏ କବି, କିଏ କୁବି ଆଉ କିଏ ବନ୍ଧାକୁବି କହି ପରିହାସ କରନ୍ତି । ବନ୍ଧୁ ଧ୍ରୁବରାଜ ନାଏକ ମୁଁ ସପ୍ତମ ପଢ଼ିଲା ବେଳେ ମୋର ଖଣ୍ଡେ ବହି ଛାପିଥିଲେ । ପିଲାବେଳର ସେ କବିତା ଗୁଡ଼ିକ ପଢ଼ିଲେ ନିଜକୁ ନିଜେ ଥଟ୍ଟା କରିବାକୁ ଇଚ୍ଛାହୁଏ ।

ମୋର କବିତାଟି ପତ୍ରିକାରେ ବାହାରିଛି । ମୋ ଦିହସାରା ଖୁସିର ଏକ ସୁଅ ତାଳୁରୁ ତଳିପା ଯାଏ, ଦଉଡ଼ି ଗଲା । ରିସେସ୍ ଛୁଟିପାଇଁ ଘଣ୍ଟା ଗର୍ଜି ଉଠିଲା । ଟେବୁଲ୍ ଉପରୁ ପତ୍ରିକାଟି ନେଇଯିବା ପାଇଁ ଶିକ୍ଷକ ନିର୍ଦ୍ଦେଶ ଦେଲେ । ସାମ୍ନାର ପିଲାମାନେ ଚିଲଝାମ୍ପି ନେଲା ପରି ଉଠାଇ ନେଲେ । ସହପାଠୀଙ୍କ ଠାରୁ କୌଣସି ମତେ ଉଦ୍ଧାର କଲି । ଲୁଚେଇ ଲୁଚେଇ କବିତାଟି ଦଶଥର ପଢ଼ିଥିବି । ଖୁସିରେ ମନ କଣ ନା କଣ ହଉଥାଏ । ନିରୋଳା ଜାଗାରେ କବିତାଟି ପଢୁଥାନ୍ତି କି!

କବିତା ବରାବର ଲେଖୁଥାଏଁ । କୌଣସି ପତ୍ରିକାକୁ କେବେ ପଠେଇ ନଥାଏଁ । ମୋର ଜଣେ ଶିକ୍ଷକ ପତ୍ରିକାରେ ଲେଖାଲେଖି କରୁଥିଲେ । ସବୁ ମେଗାଜିନ ପାଇଁ ମୁଁ ଅନେକ କବିତା ଦେଇଥିଲି । ଶିକ୍ଷକ ଜଣକ ମୋ ଲେଖା ଭିତରୁ ଗୋଟିଏ ବାଛି ପତ୍ରିକାକୁ ପଠାଇଥିଲେ । ସେ ଶିକ୍ଷକ ଥିଲେ ଉମାପଣ୍ଡା, ଏବେ ତ ସେ ଚ଼ହଳ ପକାଇଥିବା କବି!

ମୋର ପ୍ରଥମ ଛପା କବିତାର ନାଆଁ 'ଧୂମାଳ' କଲିକତାରୁ ବାହାରୁଥିବା ପତ୍ରିକା 'ଯୁଗ ଭାରତୀ'ର କୌଣସି ଏକ ସଂଖ୍ୟାରେ ପ୍ରକାଶ ପାଇଥିଲା । ନିହାତି ଛୋଟ କବିତାଟିଏ । କବିତାର କିଛି ଧାଡ଼ି ଏଠି ଦେଲେ କଞ୍ଚା ହାତର ଅସଲ ନମୁନା ପାଇହେବ ।

"ଝଡ଼ର ଦୁନିଆଁ ଏଇ ରହିବାର ଦସ୍ତଖତ ଅଛି

ଆସତେବେ ଯିବା ସାଥିହୋଇ ଧୂମାୟିତ ଦିଗ୍‌ବଳୟ ପାରେ।"

କବିତାଟି ବରାବର ପଢ଼ିବାକୁ ମନ ହେଉଥାଏ। କିମିତି ଗୋଳଗୋଳ ଅକ୍ଷରରେ ମୋ ନାଆଁ ଛପା ହୋଇଛି। ଆଜି ଛପା ଅକ୍ଷର ଦେଖିଲେ ଖୁସି ତ ଖୁସି ବରଂ ବିରକ୍ତ ଲାଗେ। ମାତ୍ର ସେ ଦିନର ପ୍ରଥମ ଛପା ଅକ୍ଷରର ମୋହ ରକତର କଣିକା କଣିକାରେ ଛପା ହୋଇ ରହିଛି। ସେ ଦିନ ପାଠପଢ଼ାରୁ ମନ ଓହରି ଆସିଲା। ଓଡ଼ିଶାରୁ କେତେ ବଡ଼ ବଡ଼ କବି ଲେଖକଙ୍କ ସାଙ୍ଗରେ ମୋ ନାଆଁ ଛପା ହୋଇଛି। ମୋ ଭିତରେ ଭିତରେ କଣଟାଏ ରଙ୍ଗୁଛିକି? ଖୁସିର ଲହରଟାଏ ଦିହସାରା ଏପଟ ସେପଟ ହେଉଛି। ମୋର ସହପାଠୀ ଓ ସହପାଠିନୀ ମାନେ ମୋ ଆଡ଼କୁ ମଝିରେ ମଝିରେ ଅନଉଥାନ୍ତି। ମୁଁ ଯେ ବିଶିଷ୍ଟ ହୋଇଗଲି, ଯୋଗ୍ୟ ହୋଇଗଲି, ଏ ପ୍ରକାର ଏକ ଦରପଚା ଧାରଣାମୋ ଭିତରେ ଚେରେଇଗଲା। ଠିକଣା ଲେଖା କାଗଜ ଖଣ୍ଡିକ ବି ସାଉଁଟି ଆଣିଲି। ସେଇ ଚିରା କାଗଜ ଖଣ୍ଡିକ ବି ମୋ ଆଦରର ଧନ ହୋଇ ସାରିଥାଏ। ଛପା କବିତାଟି କିଛିଦିନ ମୋତେ ବିଭୋର କରି ରଖିଲା। ଗୋଟାପଣେ ଆବୋରି ରଖିଲା କହିଲେ ଚଳେ।

ଛାତ୍ରାବାସକୁ ପହଞ୍ଚି କବବିତାଟି ପୁଣି ପଢ଼ିଲି। ଲୁଚେଇ ଲୁଚେଇ ପଢ଼ିଲି। ସାଙ୍ଗମାନେ ଦେଖିଲେ କଣ ଭାବିବେ। ମନ ଖୁସିରେ ଫାଟି ପଡୁଥାଏ। ସାଙ୍ଗସାଥି ମେଳରେ ମଉଜ ମଜଲିସ କରିବାକୁ ଇଚ୍ଛା ହେଉଥାଏ। ଛାତ୍ରାବାସର ଦରିଦ୍ର ଜୀବନ। ଖୁବ୍ ମପାଚୁପା ଜୀବନ। ମାସ ଅଧରୁ ହାତ ଖାଲି। ତଥାପି ପଂଝାଏ ବନ୍ଧୁଙ୍କୁ ଗଞ୍ଜାମିଆର ଜଳଖିଆ ଦୋକାନରେ ଚର୍ଚ୍ଚା କରିଥିଲି। ବାକି ହଉ ପଛେ। ମୋ ଦେହସାରା ଏକ ଉଚ୍ଚାଟ ଭାବ। କବିତାଟି ପଢ଼ି ପଢ଼ି ଶୁଣଉଥାନ୍ତିକି ଅନ୍ୟମାନଙ୍କୁ? ମୋର କବିତା ବାହାରିଛି। ଢ଼ିବି ଢ଼ିବି ପିଟେଇ ଘୋଷଣା କରନ୍ତିକି? ଛାତ୍ରାବାସରେ ସେ ଦିନର ରାତିଟା ଭୁଲିଯିବାର ନୁହେଁ। କବିତାର ଭଲମନ୍ଦ କଣ ବା ବୁଝିଥିଲି? କବିତାରୁ ଜିରାଶିରା କାଢ଼ି କି ଛେନାଗୁଡ଼ ବାହାର କରିଥିଲି? ଖାଲିଛପା ଅକ୍ଷରର ମୋହ। ମୋ ନାଁ କେମିତି ଛପା ହୋଇଛି। କେଉଁଠି ଛପା ହୋଇଛି? ଆଗରେ ନା ପଛରେ। ଓଡ଼ିଶାର ବଡ଼ ବଡ଼ କବି ମାନେ ବି ମୋର ପଛରେ ଅଛନ୍ତି। ମନେ ମନେ ଭାବିଲି ପତ୍ରିକାର ମାଳିକ, ସଂପାଦକ ବୋଲି ଧାରଣାଥିଲା କେଉଁଠି, ମୋତେ ଯଥା ସ୍ଥାନ ଦେଇଛନ୍ତି। ମୋର ନାମକୁ ଯଥାମାନ୍ୟ ଦେଇଛନ୍ତି। ଏ ପରିଣତ ବୟସରେ ସେହି ପଚାଶ ବର୍ଷ ତଳର ଅନୁଭୂତି ମନେ ପକେଇ ଭିତରେ ଭିତରେ କଣଟାଏ ଗୁରୁଣ୍ଡିଲା ପରି ଲାଗେ। ଲାଜବି ଲାଗେ। କେତେ କଞ୍ଚାଥିଲିମ! ହେଲେ ସେହି କଞ୍ଚା ଅନୁଭୂତିର ଯେଉଁ ଆମୋଦ ଥିଲା ଆଜିଏ ପାଚିଲା ଅନୁଭୂତିରେ ସେ ସଜ, ଟଟକା ଭାବ କାହିଁ? ସଚି ରାଉତରା, ସାତକଡ଼ି ହୋତା, ଜାନକୀ ମହାନ୍ତିଙ୍କ ନାଁ ମୋ ପଛରେ ଥିଲା। ଏମାନଙ୍କଠୁ ଆଗରେ ଅଛି ବୋଲି ଭାବିଥିଲି ସେ ଦିନ। ହେଲେ ଆଜି କଉ ତଳେ

ମୁଁ, କେତେ ପଛରେ ମୁଁ? ସେମାନେ କାହିଁ? ମୁଁ କାହିଁ? ହେଲେ ସେ ଦିନର ଖୁସି ଆଜିଯାଏ କେବେ କେଉଁଠି ପାଇ ପାରିନାହିଁ। କେତେ ତରଳ ଥିଲା ସେ ତରୁଣମନ। କେତେ ବିଭୋର ଥିଲା ସେ ତରୁଣ ମନ। କେତେ ବିଭୋର ଥିଲା ସେ ବେଳା। ଲହୁଣି ପରି କେତେ ମୁଲାୟମ ଥିଲା ସେ ମସୃଣ ଅନୁଭୂତି। ସାହିତ୍ୟ ଇଲାକାରେ ପ୍ରଥମ ପାଦ ଥାପିବାର ଅପରିଣତ ପ୍ରୟାସ। ମନେ ପଡ଼ିଲେ ହାତ ଯୋଡ଼ି ନତଜାନୁ ହେବାକୁ ମନ ହୁଏ ମାଁ ବାକ୍‌ଦେବୀଙ୍କ ବିପୁଳ ବିଶାଳ ଆଲୋକ ବଳୟର ଆଭାମୟ ମଣ୍ଡଳରେ!

## ୧୬. ସ୍ୱର୍ଗାଦପି

ସଞ୍ଜ ହୋଇ ସାରିଥାଏ। ରାତିର କଳା ପଣତ ଛୁଆକୁ ମାଆ ପେଟେଇଲା ପରି ଗାଆଁ ଗୋଟାକୁ ଆବୋରି  ସାରିଲାଣି। ମାଆ ପୁଅକୁ କହିଲେ ଦେହ ଖଣ୍ଡିକ କେମିତିକା କସ୍‌କସ୍ ଲାଗୁଛି। ଝାଏଁ କରୁଛି ମୁଣ୍ଡ। ଗୋଟା ଦେହ ଗୋଲେଇ ଘାଣ୍ଟି ହେଉଛି। ଏ ଜୀବନର କି ଆୟତ? ଶାଗ ଖରଡ଼ାକୁ ବେଳ କାହିଁ? ଆଜି ମୋ ପାଖରେ ଶୋଇବୁରେ ପୁଅ। ଜୀବ ଗଲାବେଳକୁ ତୋ ହାତରୁ ପାଣି ମୁନ୍ଦିଏ ପାଇଲେ ତରିଯିବି। ପୁଅ କଣ ଆଉ କରନ୍ତା? ହଁ କଲା।

ମା ଶୋଇଲେ ତାଙ୍କ ବଖରାରେ। ପୁଅ ଶୋଇଛି ପାଖରେ। ରାତି ଅନେକ ହେଲାଣି। ନିଦେଇ ପଡ଼ିଛି ପୁଅ। ଘୁଙ୍ଘୁଡ଼ି ମାରୁଛି। ଚେଁ ଚ଼ପଟ ନାହିଁ। ନିଦ ଭାଙ୍ଗି ଗଲା ପୁଅର। ବିଛଣା ଚାଦରଟା ଓଦା ଓଦା ଲାଗିଲା କିମିତି? ନିଦତ ଘାରିଛି। ଶୋଇ ପଡ଼ିଲା। ଅଧରାତି ଢ଼ଳି ସାରିଥାଏ। ପୁଣି ଚେଁ କଲା। ବିଛଣାରେ ପାଣି। ପାଣି ଗଳିଲାକି? କାହିଁ ବର୍ଷାତ ନାଇଁ। ଉପର ଚାଦରଟାକୁ ଫୋପାଡି ଦେଲା। ପୁଅ ଶୋଇ ପଡ଼ିଲା। ଘଣ୍ଟାଏ ଯାଇଛି କି ନାଇଁ। ବିଛଣାରେ ପାଣି। ରାଗିଗଲା ପୁଅ। ଧଡ଼ପଡ଼ ଉଠି ଗରଜିଲା ଘାଇଲା ବାଘପରି। କିଏ ଏମିତି ବଇରି ସାଧିବା ପରି ପାଣି ଢ଼ାଳୁଛି। ଏଇଟା ଘର ନା ଆଉ କଣ? କିଏ ଏଇ ସବୁ ହରକତ କରୁଛି?  ବୁଝିଲା ବେଳକୁ ଏହି ତମାସାର କାରିଗର ହେଉଛି ତା ମାଆ।

ପୁଅ ଭାବି ପାରିଲାନି। କଣ ହୋଇଛି ମାଆଁଙ୍କର। ମୁଣ୍ଡ ବିଗିଡ଼ି ଯାଇନିତ। ନଇଲେ ଏମିତି କରନ୍ତେ କିଆଁ? କେଡ଼େ ସୁଧାର ମଣିଷ। କେବେତ ଏମିତି କରନ୍ତି ନାହିଁ। କଉ ସୁସ୍ଥ ଲୋକ ବା ଏମିତି କରେ? ପହିଲା ପହରଟା ଯାହା ଶୋଇଛି। ତା'ପରେ ତ ଓଦା ଓଦା ବିଛଣା। ତୁହାକୁ ତୁହା କିଏ ପାଣି ଢ଼ାଳୁଛି। ଦେଖ ଦେଖ ବୋଇଲା ବେଳକୁ ନିଜ ମା। ଥିଲେ ଥିଲେ ଏମିତି ହେଲା କଣ? ଚିତ୍ତ ବିଗିଡ଼ି ଗଲାକି? ପୁଅ ବହୁ କଣ କଥା ଭାଷା ହେଲେ। ପୁଅ କହିଲା, ମା' ରେଡ଼ି ହୁଅ ହସ୍‌ପିଟାଲ ଯିବା। ଡ଼ାକ୍ତରଙ୍କୁ ଦେଖାଇବା। ତୋ' ଦେହ ଅସୁଖ ହେଲାକି, ବେଟା? ମା' ପଚାରିଲେ। ମୋର, ନୁହଁ ତମର, ପୁଅ

କହିଲା । କାହିଁ ମୋର କିଛି ହେଇନିତ । ତୁ ମୋ ପାଖରେ ଗୋଟିଏ ରାତି ଶୋଇଛୁ କି ନାହିଁ ସବୁ ଦୁଃଖ ମୋର ଉଭେଇ ଗଲାରେ, ଧନ । ଥରକୁ ଥର ପାଣି ଢ଼ାଳି ବିଛଣାକୁ ମୋର ଓଦା କରୁଥିଲ କିଆଁ? ମୁଣ୍ଡ ବିଗିଡ଼ି ଯାଇନିତ । ଶୁଏଇ ଦେଲନି ଗୋଟାରାତି । ଗୋଟିଏ ରାତି ଶୋଇ ପାରିଲୁନି ବୋଲି ରାଗୁଛୁରେ. ପୁଅ । ହେତୁକର ତୋତେ ପାଞ୍ଚ ବରଷ କରିବା ଯାଏ ମୁଁ ଜମା ଶୋଇ ପାରିନିରେ ଗୋଟିଏ ବି ରାତି । ତୋର ଗୁହମୁତକୁ ଚନ୍ଦନ କରି ତତେ ଶୁଖିଲାରେ ଶୁଆଇ ମୁଁ ଓଦାରେ ଶୋଇଛି ରେ, ମୋର ଅସର୍ପି । କାହିଁ କେବେ ଫୁଁ ତ ଫେରାଦ୍ କରିନି । ରାତିକ ନିଦ ମାରା ହେଲା ବୋଲି ତୋ'ଉପରେ ରଗ ରଗ ହୋଇନି । ମୁଁ ମା', ତୁ ପୁଅ । ମା'ର ମରମକୁ ବୁଝିବୁ ବୋଲି ତୋତେ ପରଖୁଥିଲି । ମୋର ବାଇ ଚେରେଷ୍ଟା ହୋଇନିରେ । ହସ୍‌ପିଟାଲ ଯିବାକୁ ମୋର ଲୋଡ଼ା ନାହିଁ । ଲୋଡ଼ା ମୋର, ତୋଠୁଁ ମଣିଷ ପଣିଆ ।

ପୁଅ ଆଁ ହୋଇ ରହିଗଲା । ମା'ର ମରମ ଛୁଆଁ ବକ୍ତବ୍ୟକୁ ହାର ମାନିଲା । କଟାଗଛ ଲୋଟି ପଡ଼ିଲା ପରି ମା ପାଦତଳେ ଲୋଟି ପଡ଼ିଲା । ପୁଅକୁ ଟେକି ଉଠାଇ କହିଲେ, କୋଟି ପରମାୟୁ ପା' ।

ମାଆ ଆଉ ମାଟିକୁ କେବେ କେଉଁ ମହାତ୍ମା ସ୍ୱର୍ଗାଦପି ଗରିୟସୀ କହିଥିଲେ ମୋତେ ଜଣାନାହିଁ । ସେହି ମହାନ ମଣିଷଙ୍କ ପାଖରେ ଅଧୋମୁଖ ହୋଇ ଅନ୍ତରର ଶ୍ରଦ୍ଧା ନିବେଦନ କରୁଛି ।

ମୋ ମାଁ ସାମାନ୍ୟତମ ମଣିଷଟିଏ । ଗୋରାତକ୍ ତକ୍ ଦିହ । ବାହୁରେ ଫୁଟାଇଥିଲେ ରାଧାକୃଷ୍ଣର ମୂରତି । ଲାବଣ୍ୟମୟୀ ମା' ମୋର । ମୁଁ ଖୁବ୍ ବଡ଼ ହେବାଯାଏ କ୍ଷୀର ଖାଇଛି ତାଙ୍କ ଥନରୁ । ଚାଟଶାଳୀରୁ ଫେରେ । ଧାଇଁ ଆସେ ଘରକୁ ବହିବସ୍ତାନି ଫିଙ୍ଗିଦିଏ । ଡେଇଁ ପଡ଼େ ମାଁଙ୍କ କୋଳକୁ । କିଛି ନକହି ପଣତରେ ଢ଼ାଙ୍କି ଦିଅନ୍ତି ମୋତେ । ସବୁ କାମ ଥୋଇ ଦେଇ କ୍ଷୀର ଖୁଆନ୍ତି । ବାଲ୍ୟତ ବେଳରୁ ପାଣି ଡରୁଆଟାଏ ମୁଁ । ପୋଖରିକୁ କ୍ୱଚିତ ଯାଏ ମୁଁ । ମା' ଘରେ ଗାଧୋଇ ଦିଅନ୍ତି । ସବୁଠୁ ମତେ ସ୍ନେହ କରନ୍ତି ବୋଲି ତାଙ୍କଠି ମୋର ବେଶୀ ଅଭିମାନ, ବେଶୀ ଅର୍ଦ୍ଦଳି । ମୁଁ କୁଆଡ଼େ ଏଇଲାବେଳେ ଭାରି ଦୁଷ୍ଟ । ମା'ଙ୍କୁ ବେଶୀ ହଇରାଣ କରିଛି । ତାଙ୍କୁ ଉଠ୍ ବସ୍ କରିପକେଇଛି । ମୋର ଅଝଟ ପଣ ଓ ଦୁଷ୍ଟାମିରେ ବେଳେ ବେଳେ ସେ ବିରକ୍ତ ହୁଅନ୍ତି । ହେଲେ ମୋ ଦିହରେ ହାତ ଦିଅନ୍ତି ନାହିଁ । ମୁଁ ଯାହା ମାଗିବି ଦିଅନ୍ତି ଘରେ ଥାଉ କି ନଥାଉ । କଉଠୁ ଆଣିବେ, ଆଉ ଦେବେ । ରାଶିଲଡୁ, ଖିରିସା, ମାଖନ ବିଜା, ଚାର ବିଜା, ଆରସା ଆଉ କେତେ ଚିଜ ସାଇତି ରଖିଥିଲେ ସେ । ସଭିଏଁ ଖାଇବେ ବୋଲି ଅନ୍ୟମାନଙ୍କୁ ତହିଁରୁ କିଛି କିଛି ଦେବେ ବୋଲି । ଦେଖିଲା ବେଳକୁ ସେ ସବୁ ଗାଏବ । ହସି ଦିଅନ୍ତି, ଜାଣନ୍ତି ମୋ ଛଡ଼ା ଅନ୍ୟ କିଏ କାହିଁକି ବା ନେବ?

ଥରକର କଥା । କଣ ହେଲା କେଜାଣି। ମା' ମୋତେ ରାଗିଲେ। ଟାଣ କଥା ଦିପଦ କହିଲେ। ମୁଁ କି ଛାଡ଼ିବା ଲୋକ? ଘରୁ ଗଲି। କଉଠିକି ଆଉ ଯିବି? ମାମୁଁ ଘର କୁଦୋପାଲି। ଡାକେ ବାଟ। ବାଟରେ ଛେଳିଆ ଦୁଙ୍ଗୁରି। ଗାଁ ଆଗକୁ ଶଗଡ଼ିଆ ଯୋର। ମୋ ଆଈମା ତାଙ୍କ ଘରେ କଣ କରୁଥାନ୍ତି। ସାଙ୍ଗେ ସାଙ୍ଗ୍ କହିଦେଲି ମାଙ୍କ ଦେହ ଖରାପ, ଜଲଦି ଆସ। ଏତକ କହିଛି କି ନାଈଁ କୁ ମାରିଲି। ଆଈତ ଅତର୍ଚ୍ଛା ଧାଈଁଲେ। ତାର ପଛେ ପଛେ ବଡ଼ ମାମୁଁ। ମୁଁ ଘରେ ପହଞ୍ଚି ସାରିଥାଏଁ। ମାଁକୁ କହିଲି ତୋ ମାଆକୁ ଡ଼ାକି ଆଣିଛି। ମତେ ତୁ କିମିତି ଗାଳି ଦେବୁ, ଦେଖିବା? ମା' ହସି ଦେଲେ। ତାଙ୍କ ହସ ନସରୁଣୁ ଆଈ ହାଜର। ମାମୁଁ ବି। ମା' ତାଙ୍କ କାମରେ ବ୍ୟସ୍ତ। ଆଈ କହିଲେ ତୋ' ଦେହ ବଡ଼ ଖରାପ ଅଛି ବୋଲି ପିଲାଟା କହିଲା। ମୁଁ ତ ଧାଈଁଛି। ମୋ ପିଣ୍ଡରେ ପରାଣ ରହିବ? ମା' ଆଈର ଏକମାତ୍ର ଝିଅ। ଏଣୁ ମା'ର ଭଲ ମନ୍ଦରେ ମୋ ମାମୁଁଘର ଆବୋରି ବସୁଥିଲେ। ହାଏ ମାଏ ହୋଇ ଘଡ଼େ ବସି ମୋତେ ମାଲପା ମଖେଇଲା ବେଳକୁ ଆଈ କହି ପକେଇଲେ "ବଢ଼େ ଡିଙ୍ଗର!"

ଆମ ପରିବାର ଏକ ସଂଭ୍ରାନ୍ତ ପରିବାର ହେଲେ ମଧ୍ୟ ନାନା କାରଣରୁ ଆର୍ଥିକ ଦୁର୍ଗତି ରହିଥିଲା। ଚାଷ ଉପରେ ଚଳୁଥିଲୁ। ଖେତ ଖମାରର ଧାନ ବର୍ଷକ ପାଇଁ ଅଣ୍ଟୁ ନଥିଲା। ନୂଆ ଧାନ ସିଝାଇ କୁଟିକାଟି ଖାଇବାକୁ ହୁଏ। କେବେ କଉ ଶିବେଇ ସାନ୍ତାରା ହଳହଲ ଯାଉ ପାଖେଇ ଖା' ବୋଲି ଶିଖିଥିଲା। ଆମକୁ ହଲହଲ ତପତ ଯାଉ ଭଳି ଭାତ ଖାଇବାକୁ ପଡୁଥିଲା। ମଗୁଶୀର ପହିଲା ଗୁରୁବାରରେ ମାଁ କି ଚାଉଳ ରାନ୍ଧିଥିଲେ କେଜାଣି ଉଆଭାତ ତକ ପେଜ ସତବଡ଼ ହୋଇଗଲା। ସେ ଭାତ ମୋ ପାଟିକୁ ଗଲାନାହିଁ। ମୁଁ ଉଠିଗଲି। ମୁଁ ଖାଇବିନି। ଧମକେଇଲି ଏକବାରେ। ମାଁ ଆଉ କରନ୍ତେ କଣ? କାନ୍ଦି ପକେଇଲେ। ଲୁହ ପୋଛୁ ପୋଛୁ ସକେଇ କହିଲେ "ଉଷୁନା ରାନ୍ଧିଲେ ଖାଇବୁ" ମୋ ଅଜାଙ୍କର ଦି ଭାରିଯା। ବଡ଼ଟିର ଦି ପୁଅ, ସାନ ଭାରିଯାର ଦି'ପୁଅ, ଦି'ଝିଅ। ଖୁବ୍ ବଡ଼ ପରିବାର। ଯୌଥ ପରିବାର। ନେଇ ଆଣି ଥୋଇ ନଜାଣିବାରୁ ସବୁ ଆଇବି ଅଭାବ ମାଡ଼ି ବସିଲା। ମୋ ମା' ସବୁ ବୁଝିଥିଲେ ବି ମୋତେ ଅସୁବିଧାରେ ରଖିନଥିଲେ। ମୋ ପଢ଼ା ପାଇଁ ତାଙ୍କର ସବୁ ଗହଣା ଖରଚି ଦେଇଥିଲେ। ହେଲା ନ ହେଲା ବେଳକୁ ବଈଁଶୀ ସୁନାରୀର ବାପ ପାଖରୁ ଆଣୁଥିଲେ। କନ୍ଦର୍ପ ସିଂ ମଧ୍ୟ ପିଠିର ଭାଇପରି ବାପାଙ୍କ କାମକୁ ଆଗଭର ହେଉଥିଲା।

ମୋ ମା'ମୋ ପାଇଁ ନିଜକୁ ଗୋଟାପଣେ ଶେଷ କରି ଦେଲେ। ମୁଁ ଅଧମ ତାଙ୍କ ପାଇଁ କିଛି କରି ପାରିଲିନି। ମୋ ଅଣ୍ଟା ସଳଖିଲା ବେଳକୁ ସେ ୧୯୬୩ ରେ ମୋତେ ସଦା ଛେଉଣ୍ଡ କରି ଚାଲିଗଲେ। ଭଗବତୀ ନାଁ ଥିଲା। ସତକୁ ସତ ସେ ସଦା ମୋ ପାଇଁ ଭଗବତୀ ହୋଇ ରହିଗଲେ। 'ମଙ୍ଗଲୁ' ଡାକଟି ସବୁଦିନପାଇଁ ସରିଗଲା।

ପଇସା ଥିଲେ ମା' ବାପ ଛାଡ଼ି ସବୁ ମିଳେ। ଏତ କଥାର କଥା ନୁହେଁ। ସତକଥା। ମାଁ ପରି ଟିକ ଥରେ ହରାଇଲେ ଆଉ ଜୀବନରେ ମିଳେ ନାହିଁ। ମା' ତମର ଏ ସ୍ନେହ କାଙ୍ଗାଳ ପୁତ୍ର ମୁଁ। କଲ୍ୟାଣମୟୀ ଏ ଅଧମକୁକରୁଣାକର। ଏତିକି ମାତ୍ର କହି ରଖୁଛି ମା'। ସାରଳା ଦାସ କହିଲା ଭଳି।

"ତୋହରି ପରାଏ ମାତା ସଦା ମିଳୁଥାଉ। ମୋହରି ପରାଏ ପୁତ୍ର କେବେ ତୋର ନୋହୁ"।

## ୧୭. ମୋ' ମାଁ

ମାଙ୍କୁ ସଦାବେଳେ ହଇରାଣ କରୁଥିଲି। ଏକ ମାତୁଆ ବାରବୁଲା ଅରଣା ଷଣ୍ଢର ଠାଣିରେ ସଦାବେଳେ କହିଛି, ଦେ କଣ ରଖିଚୁ ଦେ। ବାସୀ ମୁର୍‌ହି ଟୁପ୍‌ଲେ ଥୋଇ ଦିଅନ୍ତି ସେ ମୋ' ଆଗରେ। ଉଦାସ ଆଖି ତାଙ୍କର। ବୁଢ଼ୀ ଗାଇ ପରି ଶେଷ ଶାବକକୁ ଜିଭ ଲମ୍ବେଇ ଚାଟିବାର ମ୍ଳାନ ଅଭ୍ୟାସରେ ସେ କହନ୍ତି। "ଖାଇଦେ ରେ ଧନ କିଛି ନାହିଁ ଆଜି। ଲାଲ ଚା' ପଣେ ଅଛି ଯେ ନିଦା ପାଣିଚିଆ। କେତେ ବେଳୁ ଟେଁ ହୋଇ ଯାଇଥିବଣିରେ। ଭୁଭୁରା ନିଆଁରେ ଦଉଛି ତତେଇ ପିଇ ଦେଇ ଯା'।। କଉ ଠିକଣା ଅଛି କେତେବେଳେ ଲେଉଟିବୁ ତୁଇ। ରଢ଼ ନିଆଁ ପରି ଦାଉ ଦାଉ ହେଲା ଭିତରଟା। ବିଛି ଦେଲି ଟୁପଲିକ ମୁର୍‌ହି। ମନ୍ଥି ଦେଲି ରନ୍ଧା ଘରଟାକୁ ମାତିଲା ପୋଢ଼ ପରି। ୟା'କୁ ପୁଣି ଜଳଖିଆ କୁହାଯାଏ। କିଛି ନହେଲା ନାହିଁ ଗିନାଏ ଗୋରସ ଦେଇଥାନ୍ତୁ। ଶାଳ ଉଖୁଡାରୁ ଆଞ୍ଜୁଳାଏ। କଣ କହିଥାନ୍ତେ ମାଆ। ନୀରବି ଗଲେ। ଘାଇଲା ବାଘପରି ଅପସରି ଗଲି ସିନା। ପରାଜୟ ମାନିଲିନି। ବାଲୁତ ବେଳରୁ ସେଇ ଅବୋଧ ଅର୍ଦ୍ଦଳି। ଅଧାଛାଇ ଅଧାଆଲୁଅରେ ଶାନ୍ତ ନୀଳ ଉପତ୍ୟକାଟିଏ ମୋ' ମା! ଧୂସର ବନାନୀଟିଏ!!

ପାଣିଚିଆ ଡ଼ାଲିରେ କଡ଼ା ଏକ ଚୁଙ୍କ ଦେବାପରେ ଡହ ଡହ ଅନକାକୁ ଘରର ନିରାପଦ କୋଣରେ ଥୋଇଦେବା ପରି ଅଗଣାରେ ମୋର ଡହକ ବିକଳକୁ ମାଆ ଥୋଇ ଦିଅନ୍ତି। ଛାତି ତଳର ଗହୀର ସ୍ନେହସିକ୍ତ ଶୀତଳ କୋଣରେ। ଛେଳିର ଲାଞ୍ଜ ପରି ମପାଚୁପା ଜୀବନ। ଥିବା ନଥିବାର, ହସ କାନ୍ଦର, ସୁଖ ଦୁଃଖର କେଡ଼େ ପ୍ରଲୁବ୍ଧ ସଂସାର ସତେ। ଇ ହାତ ଗଣତା ଜୀବନ। ଝାଳ, ଲୁହ, ସିଙ୍ଘାଣି ପୋଛି ଶତଶତ ଥର ପିନ୍ଧା ଲୁଗା କାନିରେ ମାଆଲୋ ବାପାଲୋ କହି ଲୁହ ସମ୍ଭାଳିବାର ବିଦଳିତ ଘର କରା। ଟିକ୍ତ କ୍ଳୋରୋକୁଇନ ପରି ଚୋବେଇ ପାରି ନାହାନ୍ତି କି ଗିଳି ବି ପାରୁ ନାହାନ୍ତି। ଫିଙ୍ଗି ଦେବେ ବା କେମତି? ବନ ଦୁର୍ଗାଙ୍କ ସିନ୍ଦୂର ପରି ମାଆଙ୍କ ମଥାର ସିନ୍ଦୂର। ଦଦରା ଦର୍ପଣରେ ଦୀପ୍ତ ଦିଶୁଥାଏ।

ଉଦାସ ମେଘର ଆଢୁଆଳରେ ମ୍ଳାନ ସୂର୍ଯ୍ୟସମ। ଇଏତ ସେଇ ପୁଅ ଯାକୁ ପାଇବାକୁ।

ଓଷା ବରତ କଲି । ସାତପାଳି ମଙ୍ଗଳାକୁ ସୁମରିଲି । ତେତ୍ରିଶ କୋଟି ଦିଅଁ ଗୁହାରିଲି, ଷଠୀ ଦୁଉଛି ଙ୍କୁ ଡାକିଲି ଝିଅ ଗୋଟାକ ପରେ ବରଷ ବରଷ ବିତି ଯାଇଥିଲା । ଛ' ଘାଟରେ ନ ବୁଡ଼ଦେଇ ନଡିଆ ଛେଚିଲି । ଛ ସୁତାରେ କଉଡ଼ି ପିନ୍ଧିଲି । ମା' ମଙ୍ଗଳା ଦବ ଯଦି, ପୁଅଟିଏ ଦେବ । ଭୋକନି ଶେଷନିଙ୍କୁ ରାଇ ସେଇ ପ୍ରଭୁ ବାଳୁତ କହ୍ନାଇଙ୍କୁ ଡାକିଲି । ଓଲେଇ ଗାଇର ସମ ଆପଣାର ସବୁକୁ ଉଜାଡ଼ି ଦେଇଥିଲେ ମା । ମାଡ଼ି ମକଚି ଦେଇଥିଲେ ଆପଣାର ଛନ ଛନିଆ ସବୁଜିମା, କନକାଙ୍ଗୀ ଆଭା । ଶେଥୁଆ ଗୋଡ଼ ଦୁଇଟା ଲମ୍ବେଇ କରୁଥିଲେ ଦୁଧ ଧାଇ ସେକ ଧାଇ । ନାହିରେ ତେଲ ଦେଇ ସେକୁଥିଲେ । ଶୁଖିଲା ଭୁଇଁର ଶାଶ୍ୱତ ଉତ୍ତାପରେ ଷଠି ଦୁଉଛି କୋଟି ପରମାୟୁ ଦିଅନ୍ତୁ ବୋଲି ନେହୁରା ହେଉଥିଲେ । ଆପଣାର ମାତୃତ୍ୱର ମୌରସୀ ଅଧିକାର ଜାହିର କରୁଥିଲେ । କଅଁଳା ପୁଅର ନିର୍ବୋଧ ପାଟିରେ ଲୋଚାକୋଚା ଥନଟାକୁ ଗୁଞ୍ଜି ଦେଇ ପରମ ତୃପ୍ତିରେ କହୁଥିଲେ 'ଏଇ ମୋ ପୁଅ । ମୋତେ ପୁତ୍ ନାମକ ନରକରୁ ଉଦ୍ଧାର କରିବ । ପୁଅକୁ ଶୁଖିଲାରେ ଶୁଆଇ ନିଜେ ମୃତ ସରସର ଦଦରା କନ୍ଥାରେ ଲୋଟି ପଡୁଥିଲେ ପରମ ତୃପ୍ତିରେ କୋଟିନିଧି ପାଇବା ପରି । ନ୍ୟାୟାଧିଶ ଆସାମୀକୁ ପଚାରିବା ପରି ନିଜକୁ ପଚାରୁଥିଲେ । ଅପରାଧ ଜଡ଼ିତ ଆସାମୀ ସମ ସତ୍ୟକୁ ଲୁଚାଇବାରେ ଲାଭକଣ, ରେ ବାୟାଣୀ ।

ତୁମେ ତ ସଦାବେଳେ କହୁଥିଲ ନା ମା' ଯିଏ ଯେତେ ଉପରକୁ ଉଠେ । ସିଏ ସେତେ ବଡ଼ କଚଡ଼ା ଖାଏ । ଉପରକୁ ଯେତେ ଉଠିବୁ ସେତେ ନିଜକୁ ନିଛାଟିଆ ମଣିବୁ । ଭିଡ଼ ଭିତରେ ଗୋଠ ଭିତରେ, ସାଲୁବାଲୁ ମଣିଷଙ୍କ ମେଳରେ କଉ ସିଦ୍ଧି, କଉ ଚଉବର୍ଗ ପାଇବୁ? ତୁହି ହେବୁ, ଶୁଣା ଗପ ପରି, ନିଜେ ନିଜର ବାଧା । ତୋର ପିନାକହିଁ ତୋର ପରମ ଲକ୍ଷ୍ୟର ପ୍ରଥମ ପ୍ରତିଦ୍ୱନ୍ଦୀ ହେବ । ତୋର କଲମହିଁ ତୋର ଶାଶ୍ୱତ ମୂର୍ଚ୍ଛନାର ପ୍ରତିରୋଧ କରିବ । ପ୍ରତିଯୋଗୀର ମନ ନେଇ ପାଦ ବଢ଼େଇଲେ ସବୁଠି ଲହୁ ଲୁହାଣ ହେବୁରେ ଧନ । ସବୁ ଅଦୁଆ ଅଦୁଆ ଲାଗିବ । ଦୁନିଆଁରେ ଯାହା ଯେତେ ପରିପୁଷ୍ଟ ଓ ମାର୍ଜିତ ତାହା ସେତେ ଗ୍ରାମୀଣ, ମଫସଲୀ ଓ ଅଛୁଆଁ । ପରମ ଓ ଚରମର ଲଢ଼େଇରେ ତ ଅନିଶ୍ଚିତତାର ଜନ୍ମରେ, ଅସର୍ପି । ଭିତରର ଖାଁ ଖାଁ ନିଛାଟିଆ ଭାବକୁ ଘୋଡ଼େଇବାକୁ ତୁମିଛ ବାଘର ଖୋଳ ଲଗେଇଛରେ ପୁଅ । ତୋର ବକ୍ରିଶୀର୍ଷ ଚଟି, ଡ଼ରଡ଼ରନିଆଁ ପେଣ୍ଟ କୋଟ, ଟାଇ, ଭିତରେ କଅଁଳିଆ ପୁଅଟିଏ କୁଆଁ କୁଆଁ କରୁଛିରେ । ବିପୁଳ ଅସହାୟତାରେ ଅଣ୍ଟାଳୁଛି ମାଆଥନ । କଷି କଷି ଚିନିଚମ୍ପା ସମ ଅଙ୍ଗୁଠି ଟିପରେ ଖୋଜୁଛି ମାର ସେଇ ଅମୃତ ଟିକକ ।

ଆ' ବ' । ମୋ କୋଳରେ ବସ । ମାଲପା ପକ୍ଷେ ଜଡ଼ାତେଲ ପଦମେ ସାଉଁଳି ଦେବି । ସପଟେଇ ଦେବି । ସପଟେଇ ଦେବି ଅଲରା କେଶରାଶିକୁ । ଅଜାଡ଼ି' ଦେବି ଟିଆଡ଼ି ବନ୍ଧର ଗରିଏ କଞ୍ଚାପାଣି । ଗଙ୍ଗାର ଗଭୀତଟାରୁ ଯମୁନାର ନୀଳିମାରୁ ନିଉନ

ନୁହେଁରେ? ଆମ ଏଇ କଳା ଘୁମର ପାଣି। ଆଁଠେ ଆଁଠେ ପାଣି ଘୋ ଘୋ' ରାଣୀ ଗୀତ ପାଶୋରି ଦେଲୁଣି? ତୋର ବାଇଆ ପଣ ଅଝଟ ଅମଣିଅ ତମ୍ପ ନାଗ ସମ ଢ଼ଙ୍ଗକୁ ଶୀତଳେଇ ଦେବ। ଗୋଟାପଣେ ତତେ ବଦଳେଇ ଦେବରେ ଧନ। ଠାକୁରେ ତୋତେ କୋଟି ପରମାୟୁ ଦିଅନ୍ତୁ। ଦିଅନ୍ତୁ ଧନ ଜନ ଗୋପଲକ୍ଷ୍ମୀ। ମଣିଷ ପରି ମଣିଷଟାଏ ହରେ। ଏଇ ତ ତୋର ରଙ୍କୁଣୀ ମାଆର ଇଚ୍ଛା। ମୁଁ କଉଠି ସବୁଦିନ ଥିବି ଯେ, ତୋର ପାରିଲା ପଣକୁ ଦେଖିବି? ମାଆ ମୁଁ ମୋରି ରକତ ମାଉଁସରେ ଗଢ଼ିଛି ବୋଲି ମୋତେ ସିନା ବାଧିବ। ଅନ୍ୟ କାହାକୁ ବାଧିବ ଭାବୁଛୁ? ଆ' ମୋ କୋଳରେ ଶୋଇପଡ଼। ଥାପୁଡ଼େଇ ଥାପୁଡ଼ାଇ ନିଦେଇ ଦେବି, "ଆରେ ମଏନା ଅଏନ କରି" ଲୋରି ଗାଇ ଗାଇ।

ମନେ ପଡ଼େ, ସବୁ ମାଆମାନେ ନିଜ ନିଜ ପୁଅକୁ ଏମିତି କହନ୍ତି। ଆଲୋ ଏ ଶଇଳ, ମୋ ପୁଅ କେତେବେଳୁ ଆଇଛି। ଚା'ପୁଟା। କୁଆଡକୁ ଗଲୁ? ଜଳଖିଆ ସଜାଡ଼ି ଦେ'। ପୁଅ ମୋର ଖୁସିରେ ଗପିବ। ତୁହାଇ ତୁହାଇ ରଙ୍କୁଣୀ ମା' ମୋର କହୁଥାନ୍ତି। ସଦା ଉର୍ଦ୍ଧ୍ୱେ ଥାଇ। ଛାନି ପରିଢ଼ାରେ ଆମ ହସୁଥାଉ ତାଙ୍କ ବିପୁଳ ବିଶାଳ ମମତାର ଛିନ୍ନ ଛାଇ।

ତମେ ମୋ ପାଇଁ ସବୁକଲ ମା'। ମୁଁ ଅଧମ ତୁମପାଇଁ କିଛି କରି ପାରିଲିନି। ତମେ ମଉନରେ ସଦା ଶୁଣିବାକୁ ଭଲପାଉଥିଲ ସେହି ମହାବାଣୀ

"ସଂସାର ଏକ ଆସକ୍ତିରେ ମାଆ। ନା ଏଥିରୁ ମିଳେ ଶାନ୍ତି ନା ତୃପ୍ତି। କେବେ କଉଠି କେହି ନାମ ନ ଜଣା ଯୋଗୀ ତୁମକୁ କହିଥିଲେ। ତମେ କହୁଥିଲ ନା ମାଆ? ତମେ କେତେ ଉଦାର। କେତେ ସର୍ବସଂହା। କେତେ ଶାନ୍ତ, କେତେ ନିରାମୟ ତମେ। ମୁଁ ଅଧମ କେତେ ଭୟଙ୍କର ସତେ, ଜଙ୍ଗଲର ନିଆଁ ଭଳି ତମତମ।

କ୍ଷମାମୟୀ ଜନନୀର ଦୁଃଖର କରୁଣ ଦମ୍ଭ ମୁଁ। ସଦାତମେ ମୋତେ ବାଳୁତ ପୁଅଟେ କରିଥ' ମା' ତମର ନିଷ୍କଳୁଷ କୋଳରେ। ଏ ମଙ୍ଗଳୁକୁ ଜାଗାଟିକେ ଦିଅ।



## ୧୮. ବାପା

ତମେ କହିଥିଲ ନା ବାପା? ତମ ବାପା, ଜେଜେ ବାପା, ଗୋସ ବାପା, ଗୋସେଇଁ ବାପା, ଆଉ ଆଉ ଯେତେ ସବୁ ବାପା ସଦାବେଳେ କୁଆଡ଼େ କହୁଥିଲେ। ବାପାମାନେ ଚାଲିଯାଆନ୍ତିରେ ପୁଅ। ଆଁଆଁ କରି କୁଆଡ଼େ ନା କୁଆଡ଼େ। ତମେ ତ ମୋତେ କହିନଥିଲ ବାପା, ମୋତେ ଛାଡ଼ି ତମେ ଚାଲିଯିବ ବୋଲି। ତମେ ପରା ନ ପଚାରୁଣୁ ତମ ବାପା କହିଥିଲେ ଚାଲିଯିବିରେ ପୁଅ ବହୁଦୂରକୁ। ଗଛ ପରି ଠିଆ ହୋଇଥିବା କିଳିବିଲି

ଅନ୍ଧାରକୁ । ନାମ ନ ଜଣା କେଉଁ ମହାକ୍ଷୁଧା, ମହାପିପାସା, ମହାଶୀତ, ମହାଖରା, ମହାବରଷାର ଦୁର୍ବାର ହାଉହାଉ ଭିତରକୁ । ତମେ ଶୋଇବାବଖରାର ଜୁଳୁ ଜୁଳୁ ଅନ୍ଧାରିଆ ଦଦରା କାନ୍ଥରେ ଝୁଲୁଥିଲା ନା ସେଇ ଫଟଟା? କହୁନା ବାପା, ଝୁଲୁଥିଲା ନା? ଯେଉଁଥିରେ ନାନା ରୂପମାନ, ଛବିମାନ ପାଉଥିଲା ଶୋଭା । ଦାଁତିରି କରତରେ କରତୁଥିଲେ ଦିଜଣ ବଳୁଆ ବଳୁଆ ଲୋକ ଫୁଲିଲା ଫୁଲିଲା ବାହୁରେ ଆରଜଣକୁ । ସେ କିଏ ବାପା? ବାପା ମ? କହୁନା? ତୁମେ କିଛି ନକହି ମୋର ନୀରିହ କଞ୍ଚା ଅଖିଦିଟା ଭିତରେ ତମର ଗହୀରିଆ ପେଜୁଆ ଆଖି ଦିଟାକୁ ଏମିତି ଗେଞ୍ଜି ଦେଲଯେ ମୋର ଆଉ ପଚାରିବାର ସାହସ କୁଳେଇଲା ନାଇଁ, ବାପା । ଇସ୍ । ବିଚରାର ମୁଣ୍ଡଟାକୁ ଦି'ଫାଳ କରି ଦେଲେଣି । ରକ୍ତ ଯେ ପିଚିରି ପିଚିରି ବାହାରି ପଡୁଛି । ଦେଖ ବାପା ଏଇ ଦେଖ ତମ ଶୋଇବା ଖଟର ଉପରକୁ ଯେଉଁ ଛବିଟା ଅଛି । ଇମାଲୋ ତତଲା କଡ଼େଇରେ ଟକମକ ଟକମକ ଫୁଟୁଛି ତେଲ । ଦିଜଣ ଭେଣ୍ଟିଆ ହେବେ ନା କଣ? ବିଚରା ଲୋକଟାକୁ ସେଇ ଫୁଟିଲା ତେଲରେ ବରା ଛାଣିଲା ପରି ଉଲୁଟେଇ ପୁଲୁଟେଇ ଛାଣି ପକଉଛନ୍ତି, ବାପା । ଲୋକଟାକୁ ବାଧୁଥିବ ନା? କହୁନ ବାପା? କାହିଁକି ସେମାନେ ଲୋକଟାକୁ ଏମିତି ହନ୍ତସନ୍ତ କରୁଛନ୍ତି? ତମେ କିଛି ନ କହି ଟଣା ଟଣା ଆଖିରେ ପ୍ରତ୍ୟାଖାନ କଲାଭଳି କେମିତି ଅନେଇ ଦେଲ ଯେ, ବାପା ଛିଟିକି ପଡିଲା ଏକ ନିରୁତ୍ତର ଉତ୍ତର । ଏ ବିଶାଳ ବହଳିଆ ମେଘ ଭିତରୁ ତୀର ଭଳି ଛୁଟି ଆସିଲା ତମ ପ୍ରସାରିତ ଆଲୁଅର ଅବିଶ୍ରାନ୍ତ ଧାରା । ଯିମିତି ବୁଣିବୁ ସେମିତି ଦାଇବୁରେ, ପୁଅ । ଏତକ ତମେ ନ କହିଲେବି ସେଇ ଦୁଣିଲା ଆଲୁଅରେ ସଫା ସଫା ଦିଶିଯାଉଥିଲା ମୋ ଆଖିକୁ ।

ତମେ ସଦାବେଳେ କହୁଥିଲ ନା, ବାପା ଯୁଆଡକୁ ଗଲେ ଚଞ୍ଚଳ ଲେଉଟି ଆଇବାକୁ । କାହିଁ ଆଇଲତ ନାହିଁ । ତମ ଅଉଷଧି ମଉଷଧି, ବିଡ଼ି ଖାଡ଼ି, ଶିଶି ଓ ଚାମଚ, ସୋଢ଼ା, ଦୁବିତବଲା ଗାମୁଛା, ଛତିଶଗଡୀ ଫତେଇ ବୁଟୁକେଇ ଯାଉଥିଲ ଝିଅଘରକୁ, ସାନ ପୁଅ ପାଖକୁ, ପାଖର ସହରକୁ । ବେଳେ ବେଳେ ଶରଧାରେ । ଆଉ କେବେ ଛୋଟ ଛୋଟ ଅଭିମାନ ଭରି ଆପଣା ଆହତ ମନରେ । କାହିଁ କଉଠିକି ଗଲଯେ ଆଇଲନି ବାପା? କହିଲନି କେବେ ଫେରିବ? କଣ୍ଟ ବି ଦେଲନି? ମୁ ଆଖି ବିଛାଇ ଅନେଇ ରହିଛି ତମ ଗଲା ବାଟକୁ ଟଳଟଳ ଚିକ୍ନିଲା ଲୁହରେ । ହିମାଳୟପରି ତମର ଅଟଳ ପାରିଲା ପଣ ଓ ପୌରୁଷ ଆହତ ଚୂଡ଼ାପରି କପରି ଟଳି ପଡ଼ିଲା ହେ? କହ, ତମର ସାର୍ବଭୌମ ସିଂହାସନରୁ, ତମ ହାତଗଢ଼ା ଗୃହାଙ୍ଗନରେ, ମୁକ୍ତ ମେଖଳାରେ ପଦ୍ମ ତୋଳା ନାଗପରି ତମର ଝୁଲିଲା ଝୁଲିଲା ଠାଣି । ତମ ଯନ୍ତ୍ରଣାକ୍ଲିଷ୍ଟ ହାଡୁଆ ହାଡୁଆ ଶୀର୍ଣ୍ଣ ଦେହର ପୈତୃକ ତାତିରୁ ମୋତେ ବଞ୍ଚିତ କଲା କିଏ, ବାପା? ତମେ କଉଠି କଣ ପାଇଲେ ତ୍ରିନାଥ ମେଳାର ଗରିବ

ବ୍ରାହ୍ମଣପରି ଗାମୁଛା କାନିରେ ବୁଚୁକେଇ କେତେ ଶରଧାରେ ଦେଉଥିଲ ଆଣି । ଗୁହାରି, ଜୁହାରି କହୁଥିଲ, ବୁଢ଼ା ଅବଧାନେ ଲର୍‌ରା ପିଲାଟି ମୋର । ଭାତ ଖାଇ ହାତ ଧୋଇ ଜାଣେନା, ଆଜ୍ଞା, ସମ୍ଭାଳିବ ମଣିଷ କରିବ । ମେଘ ଦୁଲୁଦୁଲୁ ପରେ ବରକୋଳିଆ ଟୋପା ଝାଡ଼ିଦେଇ ମେଘଲଦା ଆକାଶ ଯେମିତି ଫରଚା ଦିଶେ ତମର ଜୀର୍ଣ୍ଣ ମଳିନ ମୁହଁ ସେମିତି ତାରା ଝଲମଲ । ଚୂଟି ମୂଷାପରି ମା' କେତେକର ଆଳୁଗୁଚି ମାଳୁକୁଚି ସାଇତିଥିଲେ, ତମେ ପରା କୁଆଡ଼େ ରଖିଥୋଇ ଦେଉ ନଥିଲ କାହା ଅଣ୍ଟିରେ ସମର୍ପି ଦେବାପାଇଁ । ବିଚିତ୍ର ତମର ଦାତା ପଣିଆ । ଜୀବନର ଚଉକତି ମରୁବାଲିର ଧୂଉ ଧୂଉ ଘେରି ରହିଥିଲେ ବି ତମର ଅନ୍ତର ଭିତରେ ସଦା ବିରାଜୁଥିଲା ଛନଛନିଆ ପତ୍ରର ସବୁଜ ଆଭା । ସେଇ ଶାଶ୍ୱତ ଆଭା ମୋତେ ଦେଲନାହିଁ ଯେ ବାପା? ଜମିବାଡ଼ି, ଘରଦ୍ୱାର, ଗଛମାଛ, ଡିହ ବଗିଚା, ସୁନା,ରୂପା, ବାସନ କୁସନ, ଧନ ଜନ ଗୋପଲକ୍ଷ୍ମୀ ଏ ସବୁତ ଦେଇଗଲ । ଏସବୁତ ଭାଇଭାଗ ପାଇଁ ଉତ୍ତର ଦାୟାଦଙ୍କ ପାଇଁ । ତମେ କହିଥିଲ ନା ବାପା ବଣ୍ଟା ନ ହେବା ଭଳି ତମର କିଛିଥିଲା । ଥିଲା କଅଁଳ ଗାଧୁଆ ବେଳର ଉଦାରତା । ଛାଇ ହଲହଲ ଆଲୁଅ ପରି ଏକ ନିଷକଳୁଷ ଅନ୍ତର । କୁଆଡ଼େ ନା କୁଆଡ଼େ ହଜି ଯାଉଥିବା ସମୟ ଭଳି ଏକ ଅଦିଗନ୍ତ ବୈରାଗୀ ଭାବ । ଟମାଟମ ନଈ ଭଳି ସ୍ନେହଭରା ମରମ । ଦିଅ ମୋତେ ସେଇ ଉଦାରତା, ସେ ପୁଣ୍ୟ ଅନ୍ତର ସ୍ନେହ ଛଳ ଛଳ ମଣିଷ ପଣିଆର ମଧୁର ମରମ ।

ପିଲାବେଳୁ ମୁଗରେ ତମର ଶରଧା ଥିଲା । ଖିରିସାପୁର ଦେଇ ପିଠାକଲେ, କିଏ ଖାଇବ? ତୁମେ ସେବା ଲୋଡୁ ନଥିଲ । ଲୋଡୁ ନଥିଲ ପରିଚର୍ଯ୍ୟା । ମୁଁ ଅଧମ ତମର ଶୋଷ ଯିବ ବୋଲି ଆଞ୍ଜୁଳାଏ ଜଳ ଟେକୁଛି । ପିତୃପକ୍ଷରେ? ଖରମରା ଘିଅ ପରଷା ମୁଗଡ଼ାଲି ତମକୁ ରୁଚୁନଥିଲା । ଏ ଦରଫୁଟା ବଗଡ଼ା ଅନ୍ନ ତମକୁ ଦେବି କେମିତି? ଏକବସ୍ତ୍ରୀ ହୋଇ ବିକୀର୍ଣ୍ଣ କେଶରେ ଦକ୍ଷିଣକୁ ମୁହଁକରି ଆଣ୍ଠୁଏ ପାଣିରେ କି ସେବା କରିବି, ବାପା? କି ତର୍ପଣ ଅର୍ପଣ କରିବି? କି ପିଣ୍ଡ ବାଢ଼ିବି ଅବଢ଼ା ଅନ୍ନରେ? ତୁମେ ସଦା ଆଭାମୟ । କଉ ଅଖଣ୍ଡ ଦୀପ ଜାଳିବି ଯେ ତୁମକୁ ଦିଶିବ । କେଉଁ ଘାଟ ଜଗି ବାଟ ଓଗାଳିବି?

କଉଠିକି ଗଲ ଯେ ଆଉ ଆଇଲନି, ବାପା । ରଥେ କହୁଛନ୍ତି ତମେ କୁଆଡ଼େ ପ୍ରେତ ହୋଇ ବୁଲୁଛ ଏଠି ସେଠି କ୍ଷୁଧା ଓ ତୃଷାରେ? ମୁଁ ବିଶ୍ୱାସ କରୁନି ବାପା ତମେ କଦାପି, କୁତ୍ରାପି ପ୍ରେତ ହୋଇ ନପାର । ତମେ ଦେବତା, ତମେ ଦେବତା!! ତମେ ଦେବତା!!!

ତମର ପ୍ରସାରିତ ହାତ ଲୟେଇ ଦିଅ ଏ ଅଧମର ଅବନତ ଶିରେ । କାରୁଣିକ ମୁଦ୍ରାରେ ସଦାଉପରୁ କରୁଣା ଢ଼ାଳୁଥାଅ, ହେ ବାପା ।



# ୧୯. ବାପାରୁ ବଳି

।। ଅଯାଚିତେ କଲ ବନ୍ଦାପନା,
ପୂଣ୍ୟକର୍ମ ବୋଲି ପୂଣ୍ୟ ତିଥି।
ପ୍ରଭାତେ ତ୍ୟାଗିଳଏଇ କ୍ଷିତି,
ଅନ୍ତିମ ସମୟେ ଅମୃତ ମରଣ।।

ସମ୍ବଲପୁରୀ ଗୀତାର ପ୍ରଣେତା କବି ବିରଞ୍ଚି ନାରାୟଣ ଧରଙ୍କ କବିତାର ଏଇ ଚାରୋଟି ଧାଡ଼ି ଏକ ଅନାଲୋଚିତ ପ୍ରତିଭାର ଅଧିକାରୀ ଶ୍ରୀବସ୍ ବିଶ୍ୱାଳଙ୍କ ପ୍ରତି ଥିଲା ଶ୍ରଦ୍ଧାଞ୍ଜଳି ।

ମା ସରସ୍ୱତି, ସାରା ଜୀବନ ତୋ'ର ସେବା କରି ଆସିଛି ମା'। ଆଉ ପାରୁନାହିଁ। ମା ତୁ ଦେଇଥିବା ସଂଗୀତର ସାଧନକୁ ତୋର ତବଲାକୁ, ଫେରେଇଦେନେ, ମା। ଏଇଆ ଥିଲା ଦୀର୍ଘ ପଚାଶ ବର୍ଷ କାଳ ତବଲା ବାଦନ କରିଥିବା ଜଣେ ନିଷ୍ଠାପର ଶିଳ୍ପୀର ଆତ୍ମଲୀନ ବାଣୀ। ପ୍ରାଣ ଯିବା ଆଗରୁ ଏତକ ଉଚ୍ଚାରଣ କରିଥିଲେ ସଂଗୀତ ସାଧକ।

ଜୀବନରେ ସେ ଅନ୍ୟ କୌଣସି ଦେବ ଦେବୀଙ୍କ ଆରାଧନା କରିଥିଲେ, ମୋତେ ଜଣା ନାହିଁ। ତାଙ୍କର ଏକମାତ୍ର ଆରାଧନାର ଦେବୀ ଥିଲେ ବାକ୍ ଦେବୀ। ସାହିତ୍ୟ, ସଙ୍ଗୀତର ପ୍ରତୀକ ମା' ସରସ୍ୱତୀ। ଔପଚାରିକ ପୂଜାରେ ସେ ବିଶ୍ୱାସ କରୁନଥିଲେ। ସାଧନା ଥିଲା କଳାଚର୍ଚ୍ଚାର ଏକମାତ୍ର ଅର୍ଚ୍ଚନା। ପ୍ରତିଦିନ ସେ ଦୁଇଘଣ୍ଟା ରିଆଜ କରୁଥିଲେ ଏକ ନିର୍ଦ୍ଦିଷ୍ଟ ରାଗର। ଏକ ନିର୍ଦ୍ଦିଷ୍ଟ ବୋଳକୁ ବାଦ୍ୟରେ ରୂପାନ୍ତରିତ କରୁଥିଲେ। ମଝିରେ ମଝିରେ ଗୌରୀବଳ୍ପି, ଖିଣ୍ଡାର ମୂଳଚାନ୍ଦ, ଦଲେଇ ପଡ଼ାର ନରସିଂ କଲାର ଯୁଟି ଯାଉଥିଲେ। ଆସରଟି ଜମି ଉଠୁଥିଲା। ଶାସ୍ତ୍ରୀୟ ସଙ୍ଗୀତର ଅନଧିଗତ ଶ୍ରୋତା ଅବଶ୍ୟ ସେ ଆସରରୁ ଆନନ୍ଦ ପାଇ ପାରୁନଥିଲେ।

ତାଙ୍କର ଦ୍ୱିତୀୟ ବାସସ୍ଥାନ ବାରଦୁମୁରୀ ଗ୍ରାମରେ ସେ ଶାସ୍ତ୍ରୀୟ ସଂଗୀତର ମନୋଜ୍ଞ ଆସରର ଆୟୋଜନ କରିଥିଲେ। ସେଇ ସମ୍ମେଳନରେ ଯୋଗ ଦେଇଥିଲେ ସ୍ୱର୍ଗତ ମହନ୍ତ ମହାରାଜ ନୀଳାମ୍ବର ଦାସ, ଅନନ୍ତରାମ ସରାଫ୍, ମକ୍ଷନଲାଲ ଚୌଧୁରୀ, ସାଧୁ ସିଂ ସର୍ଦ୍ଦାର, ଋଷି ମହାରଣା। ସତୀଶ ଚନ୍ଦ୍ର ପଟ୍ଟନାୟକ, ଚିନ୍ତାମଣି ପଶାୟତ, କଳାପିଠିଆ ପ୍ରମୁଖ ସହର ଓ ମଫସଲର ପ୍ରାୟ ଚାଲିଶ ଜଣ କଳାକାର ଓ ସଂଗୀତ ସାଧକ ଯୋଗଦେଇଥିଲେ। 'ଦରବାରୀ କାନାଡା' ରାଗରୁ ଆସର ଆରମ୍ଭ ହୋଇ 'ଦେଶ' ରାଗରେ ଶେଷ ହୋଇଥିଲା। ସାଧାରଣ ଶ୍ରୋତା ଏଥିରୁ ଆନନ୍ଦ ନେଇ ପାରିନଥିଲେ। ଶାସ୍ତ୍ରୀୟ ସଂଗୀତାନୁରାଗୀଙ୍କ ଭିତରେ ଉତ୍ସାହ ଓ ଆତ୍ମ ପ୍ରତ୍ୟୟ ଭରି ଦେଇଥିଲା ଏହି ପ୍ରଖ୍ୟାତ ଶୀଳ୍ପିମାନଙ୍କ ଗହଣରେ ଶ୍ରୀ ବିଶ୍ୱାଳ ତବଲା ବାଦନ କରି ଆପଣାର ନିପୁଣତାର ପରିଚୟ ଦେଇଥିଲେ। ତବଲା ବାଦକ ମୂଲଚାନ୍ଦଙ୍କ ସହ ସେ ମଧ୍ୟପ୍ରଦେଶରେ ଛଅ ବର୍ଷ କାଳ

ତବଲା ବାଦନ ଶିଖିଥିଲେ । 'ଗୁଆଲିଅର ଘରାନା' ସହ ତାଙ୍କର ସମ୍ପର୍କଥିଲା । ନରସିଂ କଲାର, ମଦନ ଗୁରୁ, ଗୌରୀ ବକ୍ସି ଆଦି କଲାକାର ମାନେ ତାଙ୍କ ସହ ମାସ ମାସ ଧରି ସଂଗୀତ ଚର୍ଚ୍ଚା କରୁଥିଲେ ।

ହୀରାକୁଦ ଜଳ ଭଣ୍ଡାରରେ ଅଧୁନା ନିମଜ୍ଜିତ ଉବନଇ କୂଳସ୍ଥ ପିତାପାଲିରେ ୧୯୦୩ (ଉଣେଇଶ ଶହ ତିନି ମସିହା)ରେ ତାଙ୍କର ଜନ୍ମ ହୋଇଥିଲା ଏକ କୁଳୀନ ବ୍ରାହ୍ମଣ ପରିବାରରେ । ଏକ ପ୍ରଭାବଶାଳୀ ଭୂମ୍ୟାଧିକାରୀ ଦୁର୍ଯ୍ୟୋଧନ ବିଶ୍ୱାଳଙ୍କର ସେ ଜ୍ୟେଷ୍ଠପୁଅ ଥିଲେ । ପିତୃଦତ୍ତ ନାଥିଲା ଶ୍ରୀବସ୍ତ୍ର । ଡାକ ନାଆଁଥିଲା ମାନୁ । ସରସ୍ୱତୀଙ୍କ ଭକ୍ତ ଯୁଗେ ଯୁଗେ ଲକ୍ଷ୍ମୀ ଠାକୁରାଣୀଙ୍କ ଚକ୍ଷୁଶୂଳ ହେଉଥିବାର ପ୍ରଚଳିତ ଧାରଣା ତାଙ୍କ ଜୀବନରେ ପ୍ରମାଣିତ ହୋଇଥିଲା । ସେ ମେଟ୍ରିକ ବା ଏନ୍‌ଟ୍ରାନ୍ସ ପାସ୍ କରିଥିଲେ । ରାଜା ବଖରୀ ପାଖରେ ବର୍ତ୍ତମାନର ଲେଡ଼ିଲୁଇସ୍ ବିଦ୍ୟାଳୟ ସ୍ଥାନରେ ଜିଲ୍ଲାସ୍କୁଲ କାର୍ଯ୍ୟ କରୁଥିଲା । ତେତେଲ ହଟଲି ପାଖରେ କୁଞ୍ଜେଲ ପଡ଼ାରେ ରହୁଥିଲେ । ବାହାମର ଗଙ୍ଗାଧର ପଣ୍ଡା ତାଙ୍କର ସହପାଠୀ ଥିଲେ । ଗଙ୍ଗାଧର ପଣ୍ଡା କଲେକ୍ଟୋରେଟ୍ ରେ ଚାକିରି କରୁଥିଲେ । ସେ ସମୟରେ ଜିଲ୍ଲା ସ୍କୁଲରେ ଗଣିତ ଶିକ୍ଷକ ଥିଲେ ପ୍ରଖ୍ୟାତ ରହେମତ ଅଲ୍ଲି । ସେତେବେଳେ ମେଟ୍ରିକ କୁ ଫାଷ୍ଟକ୍ଲାସ, ଦଶମକୁ ସେକେଣ୍ଡ କ୍ଲାସ ଓ ନବମକୁ ଥର୍ଡ଼କ୍ଲାସ କହୁଥିଲେ । ପିଲାକାଳରୁ ସଙ୍ଗୀତ ପ୍ରତି ତାଙ୍କର ଅନୁରାଗ ଥିବାରୁ ପରିବାରରେ ସେ ଅଯୋଗ୍ୟ (ମିସଫିଟ୍) ବୋଲି ଗୃହିତ ହୋଇଥିଲେ । ଓଡ଼ିଆ ବ୍ୟତୀତ ବଙ୍ଗଳା, ହିନ୍ଦି, ଓ ଇଂରାଜି ଭାଷାରେ ତାଙ୍କର ପ୍ରବେଶଥିଲା । ଆର୍ଥିକ ଦୁଃସ୍ଥିତିକୁ ସୁଧାରିବା ପାଇଁ ସେ କବିରାଜି, ଠିକାଦାରି, ବାହାକି ଓ ବଣିଜ ଆଦିରେ ହାତ ଦେଇ ବିଫଳ ହୋଇଥିଲେ ।

ଚରକ, ସୁଶ୍ରୁତ, ବାଗଭଟ୍ଟ ବୈଦ୍ୟଶାସ୍ତ୍ର ପଢ଼ି ଔଷଧ ତିଆରି କରୁଥିଲେ । ତାଙ୍କର ପ୍ରିୟକଳା ଯେତେବେଳେ ତେଲଲୁଣ ସଂଗ୍ରହରେ ବାଧାଦେଲା । କିଛି ଅର୍ଥ ପାଇବା ଆଶାରେ ସଂଚାରର ଆଶ୍ରୟ ନେଲେ । ରାତିରାତି ଅନିଦ୍ରା ହେବା ଯୋଗୁଁ ପେଟ ବେମାରୀ ଆରମ୍ଭ ହେଲା । ସେ ସେଇ ପେଟ ବେମାରୀରେ ପ୍ରାଣତ୍ୟାଗ କଲେ । ଏପରି ଅସୁସ୍ଥତା ଭିତରେ ବି କଳା ସାଧନାକୁ ଅବ୍ୟାହତ ରଖିଥିଲେ ।

ସ୍ୱର୍ଗତ ଶ୍ରୀବସ୍ତ୍ର ବିଶ୍ୱାଳ ଜଣେ ପୁରୋଭାଗର କଳାକାର ଥିଲେ । ତାଙ୍କ ପ୍ରତିଭାର ପ୍ରଚାର ଓ ପ୍ରସାର ପାଇଁ ପରିବେଶ ଅନୁକୂଳ ନଥିଲା । ଆର୍ଥିକ ଦୁଃସ୍ଥିତି, ଶାରୀରିକ ଅସୁସ୍ଥତା ତାଙ୍କ ପ୍ରତିଭା ବିକାଶରେ ବାଧା ଦେଇଥିଲା । ମୋତେ ସେ ବହୁକଥା ଦେଇଛନ୍ତି । ମୁଁ ତାଙ୍କୁ ଯଥା ସ୍ଥାନରେ ଥୋଇବାକୁ ସୁଯୋଗ ପାଇଲି ନାହିଁ । ତାଙ୍କ ଭଳି ବାପର ପୁଅ ହୋଇ ମୁଁ ଭାଗ୍ୟବାନ । ବାପରୁ ବଳି ଥିଲେ ସେ ମୋ ପାଇଁ । ସବୁ ବାପାଙ୍କର ପୁଅଥାନ୍ତି । ହେଲେ ସବୁ ପୁଅର ଭାଗ୍ୟରେ ଭଲ ବାପାଟିଏ ମିଳିବା ସହଜ କଥା ନୁହେଁ । ମୋ ପାଇଁ ସେତକ ସହଜଥିଲା ।



# ୨୦. ପର ପୀଡ଼ା ଜାଣେ ଯେ

ବାଳମୁକୁନ୍ଦ ଗଉଡ଼, ଭରି ଭରି ଆସୁଛି। କଣ ହେଲା? ଦେଖ ତ ବୋ ମାନୁ। ଦୁର୍ଯ୍ୟୋଧନ ଗୌନ୍ତିଆ ତାଙ୍କ ବଡ଼ ପୁଅକୁ ହୁକୁମ କଲେ। ହେବ ଆଉ କଣ। କୁଣ୍ଡାପାଲିର କେଉଁ ଲୋକ ଚିରିଗୁଣ ମୁଡାରୁ ଧାନଶୂଳେ ଚୋରିକରି ନେଉଥିଲା। ନେଇ ପାରିଲାନି। ଧାନ ଦୁଇ ମୁଠିଆ ବାନ୍ଧିଥିଲା। ଗୋଟିଏ ମୁଠିଆକୁ ଶୂଳିରେ ଟାଙ୍ଗିଛି କି ନାହିଁ ସେମିତି ଠିଆ ଠିଆ ରହିଗଲା। ଯିବ କୁଆଡ଼େ? ଚିରିଗୁଣ ମୁଡିଆଣୀ ଠାକୁରାଣୀ ଜଗିରହିଛନ୍ତି ଯେ!

ଗୌନ୍ତିଆ ଦଉଡ଼ିଲେ। ପରମେଶ୍ୱର ଝାଁକର ଦଉଡ଼ିଲେ। ଶୀତଳ ପୂଜା ସାମଗ୍ରୀ ଗଲା। ମନ୍ଦାର ଫୁଲ, ଚନ୍ଦନ, ନଡ଼ିଆ, ଧୂପ, ଦୀପ। ଠାକୁରାଣୀଙ୍କ ଆସ୍ଥାନରେ ଗୁହାରିକଲେ ସଭିଏଁ। ଲୋକଟି ବଞ୍ଚିଗଲା, ବର୍ତ୍ତିଗଲା କହିଲେ ଚଳେ। ନୂଆ ଜୀବନ ପାଇଲା। ଧାନ ଦି ମୂଠିଆ ରହିଲା। ଶୂଳି ଖଣ୍ଡକ ଧରି ଲୋକଟି ନିଜ ଘରକୁ ଗଲା। ଲଝୋ ଲଝୋ ଥରୁଥାଏ। ଚିରଗୁଣ ମୁଡାର ମାଉଳୀକୁ ଜୁହାର କଲା। ମା'ରକ୍ଷା କଲେ।

ଏପରି ଘଟଣା କେବେ ଘଟି ନଥିଲା। ଦୁର୍ଯ୍ୟୋଧନ ଗୌନ୍ତିଆ କଥାର ମଞ୍ଜିଟା ବୁଝିଲେ। ଲୋକଟି ଗରିବ। ଖାଇବାକୁ ନଥିଲା। ଅଭାବ ସ୍ୱଭାବ ନଷ୍ଟ କରେ। ତେଣୁ ଚୋରିକଲା। ଗୌନ୍ତିଆ ତାକୁ ଡକେଇଲେ। ଠସ୍‌କର ଚୌକିଦାର ଗଲା। ଧରିଆଣ ବୋଇଲେ ବାନ୍ଧି ଆଣିବାର ଲୋକ ସେ। ଲୋକଟି ଥରୁଥାଏ। ନିଆଁମୁତା ଗୌନ୍ତିଆ। ବୁଝିଛିତ କୋଳରେ ବସେଇବ। ନଇଲେ ଝୁଣି ପକେଇବ ଗୋଟାପଣେ। ନାଁ ଶୁଣିଛି ସେ ଗର୍ଭିଣୀ ଗାଇବାଟ ଛାଡ଼େ କୁଆଡ଼େ ତାକୁ।

ଦାଣ୍ଡ ଦୁଆରେ ଚକାପାରି ବସିଛନ୍ତି ଗୌନ୍ତିଆ। କଣ ହେଲା ଯେ ଖାସି ଦେଲେ। ଲୋକଟି ମୁତି ପକେଇବ ନା **କଣ? ଲାଙ୍ଗଛାଟ** ହୋଇ ଗୋଡ଼ତଳେ ପଡ଼ିଗଲା। **ଦୋଷ** ମାଫ କରିବାକୁ ନେହୁରା ହେଲା। ଲୋକଟିର ପାଟି ଫିଟିବାର ଆଗରୁ ହୁକୁମ କଲେ ଆବୋ 'ମାନୁ', ଏଲୋକକୁ ଚାରିଖଣ୍ଡି ଧାନ ଦେଇ ଦେ। ଚାଉଳ ଦିତାମ୍ଭି ଦେଇଥିବୁ। ଧାନ ସିଝାଇ ଚାଉଳ କଲା ବେଳକୁ ତାର ପିଲାଛୁଆ ଖାଇବେ କଣ? ଲୋକଟି ଗୌନ୍ତିଆଙ୍କ କଥାଶୁଣି କାବା। ଆସିଲା ବେଳକୁ ଗୋଡ଼ ଥରୁଥିଲା। ପଛକୁ ପଛକୁ ହେଉଥିଲା। ଆଉ ଏବେ ନାଚିନାଚି ଯାଉଛି। ଏଇତ ସାଆନ୍ତ ପଣ!

କୁର୍ଲାର ଗୋକୁଳ ପଣାୟତ। ବାରିକ। ପାଟପୁରୁଷାର ସେବକ। ତା ନାଆଁରେ ଓ୍ୱାରଣ୍ଟ। ପୋଲିସ୍ ଖୋଜୁଛି। କତରବଗା ଥାନାରୁ ଥାନା ବାବୁ ଆସି ଫେରିଗଲେଣି। ସମ୍ବଲପୁରରୁ ବଡ଼ ପୋଲିସ ସାହେବ ବି ଫେରିଗଲେଣି। ଗକୁଳର 'ଗ'କୁ ବି ପାଉ ନାହାନ୍ତି। କଉଠି ବି ନାହିଁ। ଗଲା କୁଆଡ଼େ ଲୋକଟା?

ବାରିକ ଲୋକ ଯଜମାନ ଗାଁକୁ ଯାଇଥିବ। ପାଳିକୁ ପାଳିଯାଏ। ଆଜି ଏଠିକି ତ କାଲି ସେଠିକି। ତା'ନାଆଁରେ ଗୁରୁତର ଅଭିଯୋଗ। ସେ କୁଆଡ଼େ ଝିଅଟିଏ ଉଧୁଳିଆ ନେଇ ଆସିଛି। ଝିଅଘର ପୋଲିସକୁ କହିଛି। ପୋଲିସ ପିଛା ଧରିଛି। ଭେଟିଲେ ପାନେ ଦେବ। ତାକୁ ପାଇଲେତ? ଦେଖ ଦେଖ ବୋଇଲା ବେଳକୁ ଗୋକୁଳ ପଣାୟତ ଦୁର୍ଯୋଧନ ଗୌନ୍ତିଆ ଘରର ମଚାତଳେ ଲୁଚିଛି। ପୋଲିସ ଧରୁ, କେମିତି ଧରିବ? ମାସ ମାସ ବିତି ବରଷ ହେଲା। ମୋଟ କଥାଟି ସବୁ ହୋଇଗଲା। ଝିଅ ଘର ସଙ୍ଗେ ଗୋକୁଳ ପଣାୟତର ମିଳାମିଶା ହେଲା। ଦିହେଁ ଘର କରି ରହିଲେ। ବାରିକ ବାପୁଡ଼ା ଦୁର୍ଯୋଧନ ଗୌନ୍ତିଆଙ୍କୁ ପାଶୋରି ଦେବ କେମିତି?

ଗୋକୁଳ ପଣାୟତ କବିଟାଏ। ଷୋଳ ପାଲା ମୁହେଁ ମୁହେଁ ଗାଇଦେବ। 'ଶବର ନୀଲା' ଲେଖିଥିଲା। ପିତାପାଲି ଗାଁର ପିଲାଏ ଶିଖିଥିଲେ। "କହଇ ଗୋକୁଳ ହୋଇଣ ଆକୁଳ" ରେ ଭଣତି ହେଉଥିଲା ଗୀତ। ହୀରାକୁଦ ଜଳଭଣ୍ଡାରରେ ଗାଆଁ ବୁଡ଼ିବା ପର୍ଯ୍ୟନ୍ତ ପଣାୟତ କବିଟି ଆମ ପରିବାର ସହ ମିଠାଭାବ ରଖିଥିଲା। ତାର କବି ପଣକୁ ପ୍ରଣାମ।

ନରସିଂହ ତିହାଡ଼ି ବଳଦପଟେ କିଣିଥିଲା। ହେଲେ ଚ଼ଲାନି ନଥିଲା। ଗାଁ ଘରର ଲୋକ। ମୁହଁର ସତଥିଲେ ଲେଖା କାଗଜକୁ କଣ ଚାଟିବ? ଦେଖ ଦେଖ ବୋଇଲା ବେଳକୁ, ଚୋରି ବଳଦ। ନରସିଂହ ତିଆଡ଼ିକୁ ବାନ୍ଧି ନେବାକୁ ପୋଲିସ ଆଇଛି। ଶାମ ତିଆଡ଼ିର ହରୋକବୋ ଦେଖେ କିଏ? ବାମ୍ଭଣ ଘର ପିଲା ଜିଅଲ ଗଲେ ଜାତିଯିବ। ମାନ ମହତ ଯିବ। ଗୁରୁ ପାଖକୁ ଧାଇଁଲା। ଦୁର୍ଯୋଧନ ଗୌନ୍ତିଆ ଗୁରୁ। ଶାମ ତିଆଡ଼ି ଗୁରୁଙ୍କ ଗୋଡ଼ତଳେ ଲାଙ୍ଗଛାଟ ହୋଇ ପଡ଼ିଗଲା।

ଗୌନ୍ତିଆ କଣ ଭାବିଲେ କେଜାଣି? ଶାମକୁ ତଳୁ ଉଠାଇ କହିଲେ। ଯାର ବଳଦ ତାକୁ ଦେଇ ଦଉ। ବାକିସବୁ ମୋ ଉପରେ ଛାଡ଼ି ଦେ। ଶାମ ତିଆଡ଼ି ପ୍ରାଣ ପାଇଲା। ଗୌନ୍ତିଆ କଣ କଲେ କେଜାଣି। ପୋଲିସ ବାଟରେ ଗଲାଯେ ଆଇଲାନି। ନିଜ ଗୁହାଳରୁ ବଳଦ ପଟେ ନରସିଂହକୁ ଦେଇ ଗୌନ୍ତିଆ କହିଲେ "ଯା, ନେ, ଚାଷ କରିବୁ।"

ପିତାପାଲି ଗାଁରେ ହୁରି ପଡ଼ିଛି। ପର୍ଶୁଧରର ଘର ଜପତି ହେବ। ସେ କୁଆଡ଼େ ସରକାରଠୁଁ ରଣ ଆଣିଛି। ସୁଝି ପାରିନାଇଁ। ପରଶୁ ବିଚରା କରିବ କଣ? ବହୁ କୁଟୁମ୍ବୀ ଲୋକ। ସଞ୍ଜକୁ ଦେଖିଲା ମାନୁର ବା ଦାଣ୍ଡ ପିଣ୍ଡାରେ ବସିଛି। ପିଲା ଦିନର ସାଙ୍ଗ। ଟା ମୁହଁ ଖୋଲିଲା "ମାନୁର ବା, ମହାଦଶାରେ ପଡ଼ିଛି ବୋ। ଏଥିରୁ ନରଖିଲେ, ଗଲି। ତୋ ଉପରେ ମୋର ଭରସା। କଥା ରଖିବୁ ଯଦି କହିବି। କଣ ହୋଇଛି, କହ? ଏତିକି ମାତ୍ର କହିଲେ ଦୁର୍ଯୋଧନ। ସେ କମ୍ କଥା କହନ୍ତି। କଥାକୁ କାମରେ ଫୁଟାଇ ଦିଅନ୍ତି। ସରକାରଠୁ ରଣ ଆଣିଥିଲି, ଦେଇ ପାରିଲି ନାହିଁ। ଘର ଜପତି ହେବ। ଏ ସଙ୍କଟରୁ ତୁହି ଏକା ରଖି ପାରିବୁ। ହଲଧର ବା'କେବେ ହେଲେ ଚ଼ଳିବ କହ? ଏତକ ଖାଲି ପଚାରିଦେଲେ

ଗୌନ୍ତିଆ "କମ୍ ସେ କମ୍ ଦୁଇଦିନ ଭିତରେ ହେଲେ ଚଳିବ"। ହଉ, ହଁ ଭରିଲା ଗଉଁଟିଆ। ହଳଧର ମା ପିଣ୍ଡାରେ ବସି ସବୁ ଶୁଣୁଥିଲେ। କହି ପକାଇଲେ

"ଘୁ ସଂଗୀତା ସଂଗୀତା' ସୁନାର ଘଣ୍ଟି ବାଜୁଥା"। ଏଇଥିପାଇଁ ଲୋକେ ସୁ ସଙ୍ଗ କରନ୍ତି। ଲୋକେ କହିଲେ ପରଶୁଧରର ଘର ଜପତି ହେଲାନାହିଁ। କଉଠୁ ଆଣିଲା କେଜାଣି। ସବୁ ଶୁଝିଦେଲା। ଏଣେ ମାନୁର ଧାନମା ଘର ଭିତରେ ଥିଲେ। ତାଙ୍କ ପେଡ଼ିରୁ ସୁନାମାଳି ନେଲାକିଏ? ଗେରସ୍ତ ବାପୁଡାଙ୍କୁ ପଚାରିବାରେ ସେ କୁଆଡ଼େ ମୁଲ କରି ହସିଦେଲେ।

ଆଉ ଥରକର କଥା ଘରପୋଡ଼ି ହେଲା। ତଲିପରା ଗୋଟାକ ଜଳି ପାଉଁଶ ହୋଇଗଲା। ପାଳ ଛୁଆଁ ଘରସବୁ। ଅଗ୍ନିକୁ ପବନ ସାହା ହେବାରୁ ଦେଖୁ ଦେଖୁ ସବୁ ଶେଷ ହୋଇଗଲା। କଉ ଦମକଳ ଥିଲା ଯେ ସେତେବେଳେ। ଗରିବ ସୁଖବାସୀ ମାନଙ୍କର ଘର। ଚୋର ପଶିଥିଲେ ଝାଡୁ ଗୋଟିକ ଛାଡିଯାଇଥାନ୍ତା। ହେଲେ ଏ ରାହୁ ନିଆଁ ପଶିଲା ଯେ ଗୋଟିଏ ବି ଚିଜ ଛାଡ଼ିଲା ନାହିଁ। ଚାରିଆଡ଼େ ହାହାକାର।

ବଡ଼ ଗୌନ୍ତିଆ ଦୁର୍ଯୋଧନ ଭାଇମାନଙ୍କୁ ହକାରିଲେ। ଏ ବିପଦ ବେଳେ ପୁଅ ପରଜାଙ୍କ ସୁଖ ଦୁଃଖ ବୁଝିବା କଥା। ଭାଇମାନେ ତାଙ୍କ ଉପରେ କହିବେ ବା କଣ? ବଡ଼ର ମୁହଁରୁ ଯାହା ଫିଟିବ, ବେଦ। ସୁନ୍ଦର ଗଉଡ଼ ହୁକୁମ ପାଇଛି ପୁରା ପୂରା ଚାଉଳ ଫିଙ୍ଗେଇ ବାଣ୍ଟିଲା। ଏପରି ମହତକାମରେ ଭାଇମାନେ ମନା କରନ୍ତେ ବା କାହିଁକି?

ଗାଁର ବଡ଼ ଗଉଁଟିଆଙ୍କୁ ଡରୁଥିଲେ। ତାଙ୍କର ସାମନ୍ତ ପଣକୁ ଖାତିର କରୁଥିଲେ। ଶାସନ ତାଙ୍କୁ ଜଣାଥିଲା। ଦୁଷ୍ଟକୁ ବାଞ୍ଛାବର, ଶିଷ୍ଟକୁ ସନାତନ ସାଉଁଳା। ଦେବି ବୋଇଲେ ଦେବେ। ମାରିବି ବୋଇଲେ ମାରିବେ। କଠୋର ମଣିଷଟାଏ। ନଡ଼ିଆଟିଏ, ଭିତରଟା ଖଲଖଲ। ବାହାରଟା ହାଡୁଆ। କଟା ସରସର।

ଯେମିତି ମଣିଷକୁ ସେମିତି ମରଣଟିଏ। ଖାଇ ପିଇ ଦାଣ୍ଡ ପିଣ୍ଡାରେ ସବୁଦିନ ପରି ବସିଥାନ୍ତି। ଦେବାନନ୍ଦ ଆଉ ଦଲୁସିଂ ସଞ୍ଚାର ପାରେ କରୁଥାନ୍ତି। ଚୁଟୁକି ଫୁଟାଇ ହାଇଟିଏ ମାଇଲେ। ଦେଖ ଦେଖ ବୋଇଲା ବେଳକୁ ଏକାପାରେ ଶେଷ। ଧର୍ମରେ ମାନୁ, କୁଥୁ, ମୁରଲି, ଅଚ୍ୟୁତା ଛାଳ ଗଁଡ଼ା ଦୁଆନ୍ ଯେତ୍‌କା। ମାନୁର ବା ସରିଗଲେ। ସତକୁ ସତ ବୈଷ୍ଣବଟିଏ ଥିଲେ। ଗାନ୍ଧୀ ମହାତ୍ମା କଣ ମିଛରେ କବି ନରସୈୟାଙ୍କ ସେଇ ଭଜନ ଗାଉଥିଲେ। "ବଇଷ୍ଣବ ଜନତୋ ତେନେ କହିଏ, ଯେ ପର ପୀଡ଼ଣ ଜାଣେ ରେ...।"

(ମୋ' ବାପାଙ୍କ ଭଉଣୀ ପୂର୍ଣ୍ଣମାସୀ ପାଢ଼ୀ ତଥ୍ୟ ଯୋଗାଇଛନ୍ତି)



## ୨୧. ଦେଖାହେଲା, ଭଲ ହେଲା

ଚିହ୍ନି ପାରୁଛନ୍ତି?

ଅଟମଟ ହେଲି।

ମଲା ଭୁଲିଗଲେ?

ଠଉରେଇ ପାରିଲିନି।

ସେ ତାଙ୍କ ମିଷ୍ଟରଙ୍କ ସହଥିଲେ। ସାଥିରେ ଥିଲା ବୋଧ ହୁଏ ତାଙ୍କ ନାତୁଣୀଟିଏ। ସହରର ଏକ ଲୁଗା ଦୋକାନରୁ ବାହାରୁଥିଲେ। ମୁଁ ଯାଉଥିଲି ଦୋକାନ ଭିତରକୁ। ମୁହାଁମୁହିଁ ହେଲୁ। ସେ କହିଲେ। ଇଏ ଅମୁକ ବାବୁ, ଜି.ଏମ୍. ରେ ମୋର ସହପାଠୀ। ସେ ନିଜେ ମୋର ପରିଚୟ ଦେଲେ। ତାଙ୍କ ମିଷ୍ଟର ହାତ ମିଲେଇଲେ। କହୁଁ କହୁଁ ମିଷ୍ଟର କହିଲେ, 'ଭୁଖା'ର ମଙ୍ଗଲୁ ବାବୁତ! ହଁ ମ ସେଇ ମଙ୍ଗଲୁ। ମଙ୍ଗଲୁ ମାନେ ତ 'ଭୁଖା'। ଖିଲଖିଲେଇ ଗଲେ ଦି'ପ୍ରାଣୀ।

ପଢ଼ା ବେଳର ବହୁକଥା ବଖାଣି ବସିଲେ ତାଙ୍କ ମିଷ୍ଟରଙ୍କ ଆଗରେ। ସେ ଲାଜ କରନ୍ତେ କଣ? ଏମିତି ଖୋଲାଖୋଲି ସବୁ ଗାଇ ବସିଲେ ଯେ ମୋର ଅବସ୍ଥା ବାର ବାଜିବା ଉପରେ। ଠିଆ ଠିଆ ଗପିବା କାହିଁକି? ଆସୁ ନାହାନ୍ତି, ଏଇ ରେସ୍ତୋରାଁକୁ। ସେଇଠି ମନଭରି ଗପିବା। ନାହିଁ କଲି। ଏକ ବିଶେଷ କାମ ପାଇଁ ମୋର ସମୟ ହୋଇ ଯାଇଥିଲା। ତାଙ୍କ ମିଷ୍ଟରଙ୍କୁ ଗୋରୁ ଆଡ଼େଇ ଆଡ଼େଇ ନେବା ଭଳି ରାସ୍ତାରେ ନେଇ ଚାଲିଲେ। ହାତ ହଲେଇ ହଲେଇ ବିଦାୟ ନେଲେ। ଦେଖା ହେଲା, ଭଲ ହେଲା। ମଙ୍ଗଲୁଟା ଜମା ବଦଳି ନାହିଁ। ଚାଳିଶ ବର୍ଷର ତଳର କଲେଜ ପିଲା ପରି। ଯେଉଁ ମଫସଲୀକୁ ସେଇ ମଫସଲୀ। ମତ୍ତହସ୍ତୀ ପରି ଦୁଇ ପରାଣୀଙ୍କ ଆଗରେ ମୁଁ ଝାଳେଇ ଯାଉଥିଲି ଯେମିତି।

ଅନେକ କିଛି ଆମକୁ ଭଲ ଲାଗୁଥିଲା। ଆମେ ଯେବେ ପିଲାଥିଲୁ। ଏବେ ସେ ସବୁକୁ ଆମ ପିଲାଏ। ଭଲ ପାଇପାରୁନାହାନ୍ତି। ଯୁଗକୁ ଯୁଗ ଯେଉଁ ମତ।

ଚମ୍‌କାର ଝିଅଟିଏ। ବନ ଝରଣା ପରି ସଦା ଚଞ୍ଚଳ। ଆକାଶ ପରି ବିଶାଳ। ସମୁଦ୍ର ପରି ଗଭୀର। ଫୁଟାଫୁଲ ପରି ଛନଛନ। ମୁଁ ତାଙ୍କ ନାଁରେ କବିତାଟିଏ ଲେଖିଥିଲି ୧୯୫୭ରେ। "ଅଗ୍ରଦୂତ"ର ପ୍ରଥମ ସଂଖ୍ୟାରେ ପ୍ରକାଶ ପାଇଥିଲା। ବାଲେଶ୍ୱରରୁ ବାହାରୁଥିଲା ସେଇ ପତ୍ରିକାଟି। ସେଇ କବିତାର କିଛିଧାଡ଼ି।

ପାଇଜାମା ଚିରିଲାଣି, ଫାଇନାଲ ପାଖେଇ ଆସିଲା।
ଆସୁଛି ଗେଟିରେ ପୁଣି 'ଫନ୍‌ଟୁସ' କିବା ଭାଲୋବାସା
ହାତରେ ପଇସା ନାହିଁ, ଏ ମାସର ଫିଜ୍ ବାକିଅଛି
ସପନ ମୋ' ଭାଜିଯାଏ, ମରିଯାଏ କେତେ ସଜଆଶା।

## ମଂଗଳୁ ଚରଣ ବିଶ୍ୱାଳ

କଲେଜ ଜୀବନରେ ବହୁ ଘଟଣା ଘଟିଥାଏ। ତହିଁରୁ କେଇଟା ମଲା ପର୍ଯ୍ୟନ୍ତ ଜୀଇଁ ରହିଥାଏ। ଆମ ବେଳର ଜି.ଏମ୍. କଲେଜ ଇଂରାଜୀ ଅକ୍ଷର ଟି ପରି ଥିଲା। ଥରେ କଣ ହେଲା ନା ବାରଣ୍ଡାର କଡ଼େ କଡ଼େ ଯାଉଥିଲି ମୁଁ। ହାତରେ ଟ୍ୟୁଟରିଆଲ ଖାତା ଆଉ କିଛି ବହି। ଅଧ୍ୟାପକ କମନରୁମ କତିକି ଝିଅମାନଙ୍କ କମନ୍‌ରୁମ୍। ଝିଅମାନଙ୍କ କମନରୁମ୍ ପାଖକୁ ଯାଇଛି କି ନାହିଁ। କେହି ଜଣେ ଏମିତି ପଛରୁ ଠେଳି ଦେଲା ଯେ ମୁଁ ରୁମ୍ ଭିତରେ ପଡ଼ିବି ପଡ଼ିବି ହେଲି। ସମ୍ଭାଳି ନେଲି ନିଜକୁ। ପଂଝାଏ ଝିଅ ବସିଥାନ୍ତି। ଠୋ'ଠୋ' ହସରେ ଫାଟି ପଡ଼ିଲେ ଯେମିତି। ମୋ ଅବସ୍ଥା କହିଲେ ନସରେ। ଗୋଟାପଣେ ବତୁରି ଗଲି। ଦେଖ ଦେଖ ବଇଲା ବେଳକୁ ସେଇ ଉଦଣ୍ଡୀ ଝିଅଟି! ଅଣ୍ଡିରା ଚଣ୍ଡୀଟାଏ ନା କଣ। ଅନେକ କିଛି କହି ଥାନ୍ତି। କହିଲି ଆଉ କେତେବେଳେ?

ଆଉଥରକର କଥା। କଣ ହେଲା ଯେ ମୁଁ ଘରକୁ ଯାଇଥିଲି। ଫେରିବା ବେଳେ ଡ଼େରି ହେଲା। ରିକ୍ସାରେ ଆସୁଥିଲି କଲେଜକୁ। ଏବେ ଡ଼େରି ହେଲେ କୈଫତ୍ ଦେବାକୁ ପଡ଼ିବ ନାହିଁ। ଆମ ବେଳେ ଡ଼େରି ହେଲେ ମଲୁ। ସାରଙ୍କ ଆଗରେ ମୁହଁ ଦେଖେଇବା କେମିତି? କଲେଜ ଗଲାବେଳକୁ ଉଠାଣି। ତହିଁରେ ରିକ୍ସାବାଲାଟି ଦରବୁଢ଼ାଟିଏ ଦଉଡ଼ ଦଉଡ଼ ବୋଲି ଯେତେ ହାଙ୍କିଲେ ବି ତେଲିଘଣାର ବଳଦ ପରି ପାହାରେ ପାହାରେ ଯାଉଛି। ରିକ୍ସାଟି ଚର୍ଚ୍ଚ ପାଖକୁ ହୋଇଛି କି ନାହିଁ। ଝିଅଟିଏ ଖପ୍‌କିନା ଡ଼େଇଁ ପଡ଼ିଲା ରିକ୍ସା ଉପରକୁ। ମତେ ଖସରେଇ ଜାଗା କରିନେଲା ଆପଣାଛାଏଁ। ସେତେବେଳେ ସେ ଝିଅ ସହ ମୋର ପରିଚୟ ହୋଇ ନଥିଲା। ବସିଲା ତ ବସିଲା। ହସିଲା ଏମିତି ଯେ ମୁଁ ଯେମିତି ଝିଅ ହୋଇ ପଡ଼ିଲି ଆଉ ସେ ପୁଅ। ପହିଲୁ ଲାଜକୁରା ସ୍ୱଭାବ ମୋର। ଏବେ ଆଉ କଉ ଅଲାଜୁକ ହୋଇ ପାରିଲିଯେ! ରିକ୍ସାଟି କଷ୍ଟେମଷ୍ଟେ ପହଞ୍ଚିଲା କଲେଜକୁ। ରିକ୍ସାବାଲା ହାତରେ ନୋଟ ଖଣ୍ଡେ ଧରେଇ ଦେଇ ମୋତେ ଧମକାଇଲା ଭଳି ଝିଅଟି ଆଦେଶ କଲା "ଯାଉନ, ଅନେଇଛ କଣ?" କଦମି ଘୋଡ଼ା ପରି ପଶିଗଲା କଲେଜ ଭିତରକୁ। ମୁଁ ଆଁ କରି ଅନେଇ ରହିଲି ସେଇ ଘୋଡ଼ା ଗମନୀର ଚାଲିକୁ।

ଅଦ୍ଭୁତ ସେ ଝିଅ। ପିଲାଙ୍କ ଗହଣରେ ଫୁଟ୍‌ବଲ ଖେଳେ। ଯାଉଥିବ ଯାଉଥିବ କଉ ପୁଅ କାନ୍ଧରେ ହାତପିଟି ହସିଦେବ। ତାକୁ ନେଇ ନାନା ଚର୍ଚ୍ଚା ହର ଜବାନ ପରା। ଭଲରେ ମନ୍ଦରେ, ସୁଖରେ ଦୁଃଖରେ ସବୁରେ ସେ ସମାନ। ଉଦ୍ଧତ ଉଦାର। ଯେମିତି ଧୂର୍ତ୍ତ ସେମିତି ଦିଲ୍‌ଦାର। ପୁଅ ସହିତ ପୁଅ। ଝିଅ ସହିତ ଝିଅ। ବାହାରେ ଚିତ୍ରାଙ୍ଗଦା, ଭିତରେ ବସୁଲା ମାଆଟିଏ। ନାହିଁ କରୁଥିଲି। ହେଲେ ବଳେଇ ଟାଣିନେଲେ ରେସ୍ତୋରାଁକୁ ତାଙ୍କର ମିଷ୍ଟର। ଗପିଲାବେଳେ କଲେଜ ଜୀବନର ବହୁ ସ୍ମୃତି ଓହ୍ଲାଇ ଆସୁଥିଲା। ସେ ବଖାଣି ଚାଲିଥିଲେ ତାଙ୍କ ମିଷ୍ଟରଙ୍କ ଆଗରେ। ନାନାକଥା, ନାନା ଘଟଣା। ଦୁର୍ଘଟଣାବି। ଆମବେଳେ ଝିଅମାନେ ସେତେ ଆଗକୁ ଆସି ନଥିଲେ। ଏବେ ଯେମିତି ସବୁ ସ୍ଥିତିରେ

ଝିଅମାନେ ଆଗଭର। ଝିଅମାନଙ୍କୁ ଡ଼ାକରା ଦେଇ ଡ଼: ମାନସିଂ ତାଙ୍କ **Maxims to girls** ରେ ଲେଖିଥିଲେ

**" Kick that marriage that demands a dowry on your account."**

ମୁଁ ଆଚମ୍ଭିତ ହେବାର ସୀମା ଟପିଗଲା ଯେତେବେଳେ ଭଦ୍ରମହିଳା ଗାଇଗଲେ ମୋର କବିତାର କେଇ ଧାଡ଼ି। " ଏମ୍.ଓ ଟା ମୋ ଆସିନାହି ଏ ମାସର ଫିଜ୍ ବାକିଅଛି। ଏ ମାସର ରାଶିଫଳ ଭଲନାହିଁ ଆସନ୍ତା କାଲିରେ, ତୁମର ସପନ ଦେଖି ସବୁ ମୋର ଯାଇଛି ବିଗିଡ଼ି। ଆଘାତ ଦିଅନା ଆଉ କଳାବତୀ ଚ଼ପଳ ଚାଲିରେ।" ଅଦ୍ଭୁତ ତାଙ୍କ ସ୍ମରଣ ଶକ୍ତି। ମୁଁ ଜମା ମନେ ରଖିପାରେ ନାହିଁ। ଏଇ ମୋର ଦୁର୍ବଳତା। ମନଟି ମୋର ସ୍ଲେଟ୍‌ପରି। ବାରବାର ମେଟେଇ ହୋଇଯାଏ। ଷୋହଳ ବୟସରେ ଯେମିତିଥିଲେ। ଏବେ ଷାଠିଏରେ ସେ ସେମିତି। ଶୁଆରଙ୍ଗୀ ଶାଢ଼ୀରେ ବେଶ୍ ମାନୁଥିଲେ। ଦ୍ୱାଦଶୀର ଜହ୍ନ ଫାଳେ ଯେମିତି। ଜୀବନକୁ ଜୀବନ ପରି ଜୀଇଁଥିବା ମହନୀୟ ମହିଳାଟିଏ ମୋର ହଜିଲା ଦିନକୁ ମଫସଲୀ ହାଟରେ ପରିବା ପରି ଟଟକା କରି ପକେଇଲେ ସେ। "ଦେହ ଆଉ ମନେତଳେ କିଣିବାର ଥିଲେ ବି ଶକତି ତମକୁ କିଣିବା ପାଇଁ ନାହିଁ କିଛି ଅୟି କଳାବତି!" ତାଙ୍କ ସାନ ନାତୁଣୀ ଆମ କଥା ଶୁଣି ହସିଦେଲା ଫାଳେ ହସ।

ଜୀବନ ସାରା ଲାଜେଇ ଜାଣି ନଥିବା ମହିଳାଟି ଲାଜେଇ ଗଲେ ଗୋଟାପଣେ ଯେମିତି। ମୋର ଅନ୍ତର ଭିତରୁ ଶୁଭୁଥିଲା। "ମାଆ ବୋଲି ଡ଼ାକନ୍ତିକି?"



## ୨୨. ହମଲୋଗ ହୀରାଖଣ୍ଡ କେ ଭୁତ୍

ହମ୍‌ଲୋଗ ହୀରାଖଣ୍ଡ କେ ଭୂତ୍।୦।
ଗଣତନ୍ତ୍ର ନହିଁ ଷଡ଼ଯନ୍ତ୍ର ହେ।
ଚୋରୋକା ଯେ ମହାମନ୍ତ୍ର ହେ।
ଛୋଡ଼ୋ ତୋ ନ ମିଲେ ଛୁଟ୍
ହମଲୋଗ୍ ହୀରାଖଣ୍ଡ କେ ଭୂତ୍।୧।
ମହତାବ ନହିଁ ମହାତାପ ହେ
ନରତନଧାରୀ ମହାଶାପ ହେ
ବାତ୍ ବୋଲେ ବଡା ଝୁଟ
ହମଲୋଗ ହୀରାଖଣ୍ଡକେ ଭୂତ।୨।

ଏ ଥିଲା ହୀରାକୁଦ ବନ୍ଧ ବନ୍ଦ ଆନ୍ଦୋଳନ ବେଳର ଏକ ଗୀତ। ଗୀତଟିକୁ ଲେଖିଥିଲେ ରମ୍ପେଲା ମାଇନର ସ୍କୁଲର ଶିକ୍ଷକ କମଲୁ ମ୍ୱାଷ୍ଟ୍ରେ। ପୂରା ନାଁ କମଳ

ଲୋଚନ ମିଶ୍ର। ଗୀତଟିକୁ ଗାଉଥିଲେ ଦେବଦତ୍ତ ପତି। ବିହେଁ ଆଉ ନାହାନ୍ତି। ଆଉ ପାରିରେ।

୧୯୪୭ ବେଳକୁ ହୀରାକୁଦ ବହୁମୁଖୀ ଯୋଜନାର ସବୁ ପ୍ରକାର ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥିଲା। ହୀରାକୁଦଠାରେ ବନ୍ଧ ନିର୍ମାଣ ହେବ। ସେ ପଟେ ବାର ପାହାଡ଼। ଏପଟେ ଗଡ଼ପାଟି। ନିର୍ମାଣରେ ଖର୍ଚ୍ଚ କମ ହେବ। ମହାନଦୀରେ ଇବନଦୀ ମିଶିଥିଲା ସାପଲହରା ଗାଁ ପାଖରେ। ଏ ବନ୍ଧ ଫଳରେ ମହାନଦୀ ଓ ଇବନଦୀର ଅବବାହିକାରେ ଥିବା ହଜାର ହଜାର ଗାଆଁ ପାଣିରେ ବୁଡ଼ିଯିବ। ବନ୍ଧ ତିଆରିର ଭଲ ଓ ମନ୍ଦ ଦୁଇ ଦିଗକୁ ନେଇ ନାନା କଥା ଚର୍ଚ୍ଚା ଚାଲିଥାଏ। ପ୍ରଥମ ପଞ୍ଚବାର୍ଷିକ ଯୋଜନା ଭିତରେ ଏ ବହୁମୁଖୀ ଯୋଜନା ମଞ୍ଜୁରି ପାଇଲା। ଓଡ଼ିଶା ତଥା ଭାରତ ସରକାର ହୀରାକୁଦ ବନ୍ଧର ନିର୍ମାଣ ଦାୟିତ୍ୱ ନେଲେ। ଭାରତର ପ୍ରଧାନମନ୍ତ୍ରୀ ଥାନ୍ତି ଜବାହାରଲାଲ ନେହେରୁ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ହରେକୃଷ୍ଣ ମହତାବ। ହଜାର ହଜାର ଗାଆଁ ବୁଡ଼ିଯିବ। ଏଣୁ ତାର ବାସିନ୍ଦା ମାନେ ଆତଙ୍କିତ ହୋଇ ପଡ଼ିଲେ। ନିଜର ଭିଟାମାଟିକୁ ସଦା ସର୍ବଦା ନିମନ୍ତେ ଛାଡ଼ି ସ୍ଥାନାନ୍ତରିତ ହେବାର ଆତଙ୍କ ପ୍ରାୟ ସମସ୍ତଙ୍କ ମନକୁ ଘାରିଲା। ଏହି ବାସିନ୍ଦାଙ୍କ ଭିତରୁ କିଛି ଆଗୁଆ ଲୋକ ବନ୍ଧ ନିର୍ମାଣ ବନ୍ଦ କରିବାକୁ ଆନ୍ଦୋଳନ କଲେ। ପ୍ରାୟ ସାତ ଆଠ ବର୍ଷ ଆନ୍ଦୋଳନ ଚାଲିଲା। ଏଇ ଆନ୍ଦୋଳନକୁ ଆପଣାର ପ୍ରାଥମିକ କ୍ଷେତ୍ରରୂପେ ନେତୃତ୍ୱ ନେବାର ସୁଯୋଗ ପାଇଥିଲେ ପ୍ରସନ୍ନ କୁମାର ପଣ୍ଡା, ଶ୍ରଦ୍ଧାକର ସୂପକାର ଓ ସୁଶ୍ରୀ ସୈରିନ୍ଦ୍ରୀ ନାୟକ। ଏ ଅଞ୍ଚଳର କେନ୍ଦ୍ରସ୍ଥଳ ଥିଲା ଇବ ନଈ କୂଳସ୍ଥ ରମେଲା ଓ କୁର୍ଲା। ମହାନଦୀ ଅବବାହିକାରେ ଜଣାଶୁଣା ଗାଁ ଥିଲା ମୁରା, ରମ୍ପାଲୁଗା ଆଦି।

ପାଣିରେ ବୁଡ଼ି ଯାଇଥିବା ଗାଁ ଗୁଡ଼ିକର ମାଟିଥିଲା ଉର୍ବର। ପ୍ରଚୁର ଫସଲ ହେଉଥିଲା। ଖର୍ଚ୍ଚ ତୁଳନାରେ ଉତ୍ପାଦନ ଆଶାତୀତ ଭାବେ ବେଶୀ ହେଉଥିଲା। ଫଳରେ ଚାଷିମାନଙ୍କର ଆର୍ଥିକ ଅବସ୍ଥା ଭଲଥିଲା। ଏ ବୁଡ଼ି ଅଞ୍ଚଳର ସବୁ ପରିବାର ସମ୍ପନ୍ନ ଅବସ୍ଥାରେ ଥିଲେ। ଗୋଟିଏ ମାର୍ଜିତ ସଂସ୍କୃତିଥିଲା ଏ ଅଞ୍ଚଳର। ପଶ୍ଚିମ ଓଡ଼ିଶାର ହୃତପିଣ୍ଡ ବୋଲି ଲୋକେ କହୁଥିଲେ। ଅନାଦି କାଳରୁ ବସବାସ କରି ଆସିଥିବା ଏ ଅଞ୍ଚଳର ଲୋକେ ନିଜର ଭିଟାମାଟି ଛାଡ଼ିବାକୁ ପ୍ରସ୍ତୁତ ନଥିଲେ। ଅତି ଅଳ୍ପ କ୍ଷତିପୂରଣ ଦେଇ ଲୋକଙ୍କୁ ସ୍ଥାନାନ୍ତର କରିବା ଚକ୍ରାନ୍ତ କଲେ ହାକିମମାନେ। ଲୋକଙ୍କୁ ଜବରଦସ୍ତ ତଡ଼ିଲେ। ଥଇଥାନ କରିବାର କିଛି ଯୋଜନା ନଥିଲା। ଜଙ୍ଗଲମାନଙ୍କୁ ନିଧଡ଼କ କାଟି କେମ୍ପମାନ ବସାଇଲେ। ସେଇ କେମ୍ପ ମାନଙ୍କୁ ଥିଲା ପରିବାରର ଲୋକେ ପ୍ରାୟ ଗଲେ ନାହିଁ। ଅଳ୍ପଜମି ଥିବା ଲୋକ ଓ ସୁଖବାସୀ ମାନେହିଁ ଗଲେ। ସୁଖବାସୀମାନେ ସୁଖ ପାଆନ୍ତେ କଣ ଦୁଃଖକୁ ହିଁ ବରିନେଲେ। କୌଣସି ଯୁଗର କୃଷକମାନେ ସଂଗଠିତ ନୁହନ୍ତି। ଚାଷିମାତ୍ରେ ହିଂସୁକ। ଜଣେ ଚାଷି ତା ପଡ଼ୋଶୀ ଚାଷିର ଉନ୍ନତି ଚାହେଁନାହିଁ। ଭାରି ଆତ୍ମକୈନ୍ଦ୍ରିକ ଏମାନେ। ମେନ୍ ଅଫ୍ ସେମ୍

ଟ୍ରେଡ଼ ନେଭର ଏଗ୍ରିସ୍ ଭଳି । ସମପେକ୍ଷା ଲୋକ ପଟନ୍ତି ନାହିଁ । ସରକାରୀ ହାକିମମାନେ **Divide and Rule** ନୀତିରେ ଲୋକଙ୍କ ଭିତରେ ଫାଟ ସୃଷ୍ଟିକଲେ । ଗୋରା ଶାସନ ବେଳେ ଏଇ ନୀତି ବେଶ୍ କାଟୁ କରିଥିଲା । ସ୍ୱାଧିନତା ପ୍ରାପ୍ତିରେ ଆମ ସାବ୍‌ନା ସାହେବମାନେ ନୀରିହ ଦେଶବାସୀଙ୍କ ଉପକାର କରନ୍ତେ କଣ ପ୍ରତି ଗାଁର କିଛି କିଛି ନିମକ୍‌ହାରାମ୍ ମାନଙ୍କୁ ଧରି କାମ ଗୁଛି ନେଲେ । ଯେନତେନ ପ୍ରକାରେଣ ଲୋକଙ୍କୁ କହି କିଛି କିଛି ଗୁଞ୍ଜିଦେଇ ଗାଁରୁ ତଡ଼ିଲେ । ଏଠାକାର ଲୋକ ନିଜମାଟିରେ ବିଦେଶୀ ହୋଇ ଖୌଜଡ଼ଭିଲ୍ ଭଳି ମୃରବିମାନେ ମାମୁଲି ମଣିଷ ହୋଇଗଲେ । ସବୁଠୁ ବିଡ଼ମ୍ବନା ଏଇଟା ଯେ ଏ ଯାଏଁ ଅନେକ କ୍ଷତି ପୂରଣ ପାଇ ନାହାନ୍ତି । ଆଉ ପାରିକି ଗଲେଣି ସେମାନେ । ନିଜ ରକତ ଭିତରେ ସେଇ କରୁଣ ବିଡ଼ମ୍ବନାର ଶିକାର ହୋଇ "ଠାନ ଛାଡ଼୍‌ଲେ । ପରାନ ଛାଡ଼ସିର" ଜୀବନ୍ତ ଅନୁଭବ ସାଇତି ଯାଇଛନ୍ତି ।

ହୀରାକୁଦ ବନ୍ଧ ଦେଶର ଉପକାର କଲାକି ଅପକାର କଲା । ଝିଣ୍ଟିକା ମାରି ବଣି ପୋଷିଲା । କି ମାଛ ଚେଲରେ ମାଛ ଭାଜିଲା ଏକ ବିବାଦୀୟ କଥା । ତର୍କର କଥା । ଯୁକ୍ତି ଓ ଯୋଜନାର କଥା । ନିଶ୍ଚିତ ଏକ ସତ କଥା ଯେ ପଶ୍ଚିମ ଓଡ଼ିଶାର ଏକ ନଦୀ ସମୃଦ୍ଧ ଅଞ୍ଚଳ ପାଣିରେ ବୁଡ଼ିଗଲା । ହୀରାକୁଦ ଅମୂଲ୍ୟ ହୀରାକୁ ମୂଲ୍ୟହୀନ କରିଦେଲା । ଏକ ସମୃଦ୍ଧ ଓ ସମ୍ପନ୍ନ ଅର୍ଥନୀତିର ମେରୁହାଡ଼ ଭାଙ୍ଗିଦେଲା । ଗୋଟାଏ ସଂସ୍କୃତିଥିଲା ଏ ଅଞ୍ଚଳର । ରେମାଞ୍ଚକର ରୁଚିଥିଲା । କୁଳୀନ କଳାଥିଲା । ଖାଲି କିଛି ଅଞ୍ଚଳ, କିଛି ଜାଗା ବୁଡ଼ି ନାହିଁ । ଗୋଟାଏ ସଂସ୍କୃତିର ଅକାଳ ମୃତ୍ୟୁ ହେଲା । ତାହା କଦାପି କୁତ୍ରାପି ନାହିଁ । କେବେ ଆଉ ଫେରି ପାଇବା ନାହିଁ । ହୀରାକୁଦ ବହୁମୁଖୀ ବନ୍ଧ ଯୋଜନା ଯେତେ ସୁଫଳ ଦେଲେ ମଧ ଦିନେ ନା ଦିନେ ଏ ଜାତି ଅନୁଭବ କରିବ । ହୀରାକୁଦ ବନ୍ଧ ଭଳି ବ୍ୟୟ ବହୁଳଓ ଘାତକ ଯୋଜନା ଦେଶକୁ କେବଳ ବିକଳାଙ୍ଗ କରିବ । ବୃଶାଳ କରିବ ନାହିଁ ।

ଏ ସ୍ମୃତି ଚାରଣକାରୀ ହୀରାକୁଦ ବନ୍ଧ ଯୋଜନାର ପ୍ରକ୍ରିୟାକରଣ କାଳରେ ମାଇନର ସ୍କୁଲର ଜଣେ ଛାତ୍ର । ଜନ୍ମମାଟିର ସ୍ୱାଦ ଚାଖିଛି । ବାସଚ୍ୟୁତ ହେବାର କଷଣ ପାଇଛି । ଏକ ସମ୍ପନ୍ନ ପରିବାର କିପରି ତଳି ତଳାନ୍ତ ହୁଏ ତାହା ଅନୁଭବ କରିଛି । ସେଇ ଲୁହଭିଜା ସ୍ମୃତିକୁ ସାଇତି ରଖିବା ଜାଣିଛି । ଏ ଅନୁଭବରେ ପ୍ରବଣତା ଅପେକ୍ଷା ହକିକତର ମାତ୍ରା ବେଶୀ ।

ଏପରି ଗାଁ ନାହିଁ । ଯାହା ପାଖରେ ନାଳ ବା ନଇଟିଏ ନାହିଁ । ସେ ପାଣିକୁ ଭସେଇ ନଦେଇ ଛୋଟଛୋଟ ଯୋଜନାରେ ଉପରକୁ ଉଠେଇ ଆଣିଥିଲେ ଆଜି ଆମର ପରିବେଶରେ ଏତେ ଅଧୋଗତି ହୋଇ ନଥାନ୍ତା । ଝରଣାର ପାଣି ମାଟିକୁ ଶ୍ୟାମଳ କରିବା ସହିତ ଲୋକଙ୍କ ଜୀବନକୁ ପରିପୁଷ୍ଟ କରିଥାନ୍ତା । ଏସତ୍‌ବୁଦ୍ଧି ଆମ ପ୍ରଶାସନର ଦିବ୍ୟବୁଦ୍ଧିରେ ସ୍ଥାନ ପାଇଲେ ବହୁ ସମସ୍ୟାର ସମାଧାନ ହୋଇଯିବ ।

ଆମ ଗାଁ ପିତାପାଲି ଥିଲା ଇବ ନଈ କୂଳରେ। ଏବେ ପାଣିଭିତରେ। ଆମ ଗାଁ ମାଟିରେ **AIR STRIP** ଟି ରହିଛି। ମୋ ବାଲୁତ ବେଳରେ ହରାଇଛି ଗାଁକୁ। ତାକୁ ଖାଲି ସ୍ମୃତିରେ ଚଉତି ଚାଉତି ସାଇତି ରଖିବା କଥା। ଯେତେବେଳେ ଗାଁ କଥାମାନେ ପଡ଼େ। ସେତେବେଳେ ମନେ ପଡ଼ଯାଏ ଦେବଦତ୍ତ ପତିଙ୍କ କଣ୍ଠର ସେଇ ବଜ୍ରଘୋଷ।

"ହମଲୋଗ୍ ହୀରାଖଣ୍ଡକେ ଭୂତ।"



## ୨୩. ବସ୍ତାନି ଭିତରେ ପାରା

ଅଗଷ୍ଟ ୧୫ ଉଣେଇଶ ଶହ ଶତଚାଳିଶ। ଚଉଦ ତାରିଖ ରାତି ବାରଟାରୁ ଆମେ ଉଠିଥାଉ। ଠିକ୍ ବାରଟା ବେଳକୁ ହଷ୍ଟେଲର ଘଣ୍ଟା ବାଜିଲା। ନିଦ ମଳମଳ ଆଖିରେ ଆଖିରେ ଆମେ ଖେଳ ପଡ଼ିଆକୁ ବାହାରି ପଡ଼ିଲୁ। ଆମ ମନମୋହନ ମି.ଇ. ସ୍କୁଲର ବିଶାଳ ପଡ଼ିଆ। ଉତ୍ତରରୁ ଦକ୍ଷିଣକୁ ଲମ୍ବି ଯାଇଛି। ଉତ୍ତର ପଟରେ ସ୍କୁଲ ଘର। ଦକ୍ଷିଣ ପଟରେ ଆମ୍ବ ବଗିଚା। ପୂର୍ବ ଦିଗରେ ଛାତ୍ରାବାସ। ପଶ୍ଚିମ ପଟକୁ ରାଜରାସ୍ତା। ସମ୍ବଲପୁର ଝାରସୁଗୁଡ଼ା ରୋଡ଼। ଯାହାକୁ ଯେମିତି ସୁବିଧା ନିତ୍ୟକର୍ମ ସାରିଦେଲୁ। ଆମ ସ୍କୁଲରେ ସ୍କାଉଟ ଥିଲା। ଏଣୁ ମାଟିଆ ଖାଖି ପୋଷାକରେ ଆମେ ଫିଟ୍‌ଫାଟ୍ ବାହାରି ପଡ଼ିଲୁ। ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘରେ ମିଶିଥାଉ। ନନ୍ଦନ ବାଜପେୟୀ ବୋଲି ଜଣେ ଯୁବକ ସଞ୍ଜ ଓ ସକାଳେ ଡ୍ରିଲ ଶିଖାଉଥିଲେ। ଆରାମ, ଦକ୍ଷ। ବଲି ଆରମ, ସାବଧାନ ହାକୁଥିଲେ। ହାକେଣି ସବୁ ପ୍ରାୟ ହିନ୍ଦିରେ। ଏବେ ବି ଝାରସୁଗୁଡ଼ା ଜିଲ୍ଲାରେ ହିନ୍ଦିର ଯୋରଦାର ପ୍ରଭାବ ରହିଛି।

ସକାଳ ୪ଟା ହେବାକୁ କିଛି ସମୟ ବାକିଥାଏ। ଆକାଶରେ ମେଘଥିଲେ ବି ବର୍ଷା ନଥାଏ। ଅଗଷ୍ଟ ମାସରେ ବର୍ଷା ହେବା କଥା। ମାତ୍ର ସେଦିନ ପାଗ ଶୁଖିଲାଥିଲା। ଶିକ୍ଷକ ଭବାନୀଶଙ୍କର ପଣ୍ଡା ମାଡ଼ି ଆସିଲେ। ସେତେବେଳେ ସେ ଯୁବକ। ସୁନ୍ଦର ଚେହେରା, ଗୋରା ଚକଚକ ଦିହ କୁଞ୍ଚକୁଞ୍ଚିଆ ବାଳ। ସେଥିଲେ ଆମର ଖେଳ ଶିକ୍ଷକ। ଆମ ଡ୍ରଇଂ କ୍ଲାସବି ନେଉଥିଲେ। ଗୀତ ଲେଖୁଥିଲେ। କବିତାଏ ନିଶ୍ଚୟ। ମାଇନର ସ୍କୁଲପଢ଼ା ପରେ ତାଙ୍କସହ ମୋର ଦେଖା ହୋଇନାହିଁ। ଟାମ୍ପରସରା ଗ୍ରାମର ଲୋକଥିଲେ। ଶୁଣିଲି ସେ ଭବାନିପାଟଣାରେ ବସବାସ କଲେ। ଲରମ୍ଭା ପାଖରେ ଛନ୍ଦପାଲି ର ବାସୁଦେବ ମଣ୍ଡଳି, ହିନ୍ଦି ଶିକ୍ଷକ ନାମଜଦ ସିଂ ଚାରପାଲି ବରପାଲିର ଦେବଦତ୍ତ ପତି, ଭୁର୍କାମୁଣ୍ଡାର ସଦାଶିବ ପାଢ଼ୀ ଆମକୁ ପ୍ରସ୍ତୁତ କରି ରଖିଥାନ୍ତି। ସୁରୁଯ ଉଇଁବା ଆଗରୁ ଆମେ ଧାଡ଼ି ବାନ୍ଧି ରାସ୍ତା ଉପରକୁ ଉଠି ସାରିଥାଉଁ। ପ୍ରଭାତ ଫେରିର ଶୋଭାଯାତ୍ରା ଆସିଲେ ସାମିଲ ହେବୁ। ଝାରସୁଗୁଡ଼ା ପୁରୁଣା ବସ୍ତିରୁ ପ୍ରଭାତ ଫେରି ଆସୁଥିଲା।

ସରବାହାଲ ପର୍ଯ୍ୟନ୍ତ ପ୍ରାୟ ତିନିକିଲୋମିଟର ରାସ୍ତା ପରିକ୍ରମା କରି ପ୍ରଭାତ ଫେରି ସାରିଲୁ । ରାମଧୁନ୍ ଝଣ୍ଡା ଉଁଚା ରହେ ହମାରା, ବନ୍ଦେ ମାତରମ୍, ଆବାଜରେ ଫାଟିପଡୁଥିଲା ଗଗନ ପବନ। ଆମ ଶିକ୍ଷକ ଭବାନି ଶଙ୍କର ପଣ୍ଡା ପ୍ରଥମ ସ୍ୱାଧୀନତା ପ୍ରାପ୍ତି ମହୋତ୍ସବ ପାଇଁ ଲେଖିଥିଲେ ଏକ ଗୀତ, ଛପା ହୋଇଥିଲା ଝାରସୁଗୁଡ଼ାର ପ୍ରଭାତ ପ୍ରେସ୍‌ରେ। ସେ ଗୀତର ପ୍ରଥମ ଦୁଇଧାଡ଼ି ହେଲା:

॥ 'ଅପସୃତ ଆଜି ଭାରତ ବକ୍ଷୁ ପରାଧୀନତାର ତିମିର ଧ୍ୱାନ୍ତ।
ଗଗନେ ଭୁବନେ ଖେଳଇ ଆଜି ସ୍ୱାଧୀନତା ରବି କିରଣ କାନ୍ତ" ॥

ସାରା ସହର କୋଳାହଳରେ ଫାଟି ପଡୁଥିଲା। ପଚାଶ ବର୍ଷର ସ୍ୱାଧୀନତା ଭୋଗ କଲୁଣି। ହେଲେ ସେହି ପ୍ରଥମ ଉତ୍ସବର ଉଦ୍ଦାମତାର ତାତି ରକତରୁ ଯାଇନି। ଝଣ୍ଡା ଚଉକରେ ପତାକା ଉତ୍ତୋଳନ ହୋଇଥିଲା। କବି ସୂର୍ଯ୍ୟନାରାୟଣ ପାଢୀଙ୍କ ଭାଷଣ ମୁଁ ଶୁଣିଛି। ଶୁକଦେବ ନାଇ ମଙ୍ଗଳ ବଜାରର ବିହାରିଲାଲ ତନ୍ତୀ, ଶ୍ରୀ ମଙ୍ଗଳ ଅଗସ୍ତି ଭଳି ଦେଶପ୍ରେମୀ ମାନଙ୍କ ଗାନ୍ଧୀ ଟୋପି ଯେମିତି ସଫେଦ ଥିଲା, ସେମାନଙ୍କ ଅନ୍ତର ମଧ୍ୟ ସେଭଳି ସ୍ୱଚ୍ଛଥିଲା। ଶିବ୍‌ଜୀ ନଥୁ ବୋଲି ଜଣେ ବଦାନ୍ୟ ଦେଶଭକ୍ତ ତମାମ ଝାରସୁଗୁଡ଼ା ବାସୀଙ୍କୁ ମିଠେଇ ବାଣ୍ଟିଥିଲେ। ଆମେ ସାରା ସହର ବୁଲି ଥକି ଯାଇଥିଲୁ। ଆମ ଛାତ୍ରାବାସକୁ ପହଞ୍ଚିବା ସଙ୍ଗେ ସଙ୍ଗେ ଆମକୁ ପେଟଭରି ଖାଇବାକୁ ଦେଇଥିଲେ। 'ଏତେ ବଡ଼ ବଡ଼ ଲଡୁ!! କେତେ ଖାଇବୁ, ଖା'। "ଭୁଖେ ସୁଆଦ ବୟସେ ସୁନ୍ଦର" କଥାଟି ସତ ହୋଇଗଲା। ସତେତେବେଳେ ଝାରସୁଗୁଡ଼ା ସହରଟି ଛୋଟଥିଲା। ତାଳ ମେଳେଇ ନଥିଲା ଏବେକାର ଭଳି। ଗୋଟିଏ ମାତ୍ର ସିନେମାଘର ଥିଲା। କୁମାର ଟକିଜ୍। ମଙ୍ଗଳ ବଜାରରେ ଥିଲା। ଧଡଡ଼ି ଘର ଖଣ୍ଡେ। ପିଲାଙ୍କ ପାଇଁ ସେ ରାତିରେ ସୋ ଦୁଇଟି ଫ୍ରିଥିଲା। ଆମେ ମାଡ଼ି ଯାଇଥିଲୁ ସନ୍ଧ୍ୟା ଆଗରୁ। ମୋର ଯେତେଦୂର ମନେପଡ଼େ। "ନଦିଆ କି ପାର" ବୋଲି ଛବିଟାଏ ପଡ଼ିଥିଲା। ଦିଲିପ କୁମାର ଅଭିନୟ କରିଥିଲେ। ଗୋଟିଏ ପ୍ରୋଜେକ୍ଟର ଥିଲା। ଏଣୁ ପ୍ରତି ରିଲ୍ ସରିବାପରେ ଆଲୁଅ ଚ଼ହଳି ଯାଉଥିଲା। ଏହି ସମୟତକ ଟକିଜରେ ଦେଖଣା ହାରିଏ ହୁଇସିଲ ମାରୁଥିଲେ। ଚିନାବାଦାମ ବିକାଳି ମାନେ ତାଙ୍କ କୋରସ ଆରମ୍ଭ କରିଦେଉଥିଲେ। ଦାମୀ ଦର୍ଶକଙ୍କ ପାଇଁ ଚଉକିଥିଲା। ଗାନ୍ଧୀ କିଲାସର ଦେଖଣା ହାରୀଙ୍କ ପାଇଁ ତଳଟାହିଁ ଯଥେଷ୍ଟଥିଲା। ଚାରଣା ଟିକଟରେ କେଉଁ ରାଜ ଚଉକି ହେବ ଯେ! ସେ ଦିନ ସେ ସ୍ମୃତି ଆଜି ବି ତାଜା ଅଛି ମନରେ।

ସ୍ୱାଧୀନତା ସଂଗ୍ରାମକୁ ଝାରସୁଗୁଡ଼ାର ଦାନ ଅନେକ। କୃତଜ୍ଞ ଝାରସୁଗୁଡ଼ା ବାସୀ ସେମାନଙ୍କ ମନରେ ସେଇ ସଂଗ୍ରାମୀଙ୍କୁ ସାଇତିଥିବେ ନିଶ୍ଚୟ।

ଝାରସୁଗୁଡ଼ାର ମନମୋହନ ମି.ଇ. ସ୍କୁଲରେ ଚାରିବର୍ଷ ରହଣି ମୋର। ସେଇ ସମୟ ଭିତରେ ଭାରତ ସ୍ୱାଧୀନ ହେଲା। ଆମେ ସ୍ୱାଧୀନ ହେଲୁ କି ନହେଲୁ ଚର୍ଚ୍ଚାର

ବିଷୟ। ସେ ଦିନର ଉଦ୍ଦାମତା ମୋର ନବୀନ ରକ୍ତରେ ତରଙ୍ଗେଇ ଯାଉଥିଲା। ସେ ଜୀବନ୍ତ ଅନୁଭବ ଏବେବି ତାଜା।

ମୁଁ ମୋର ବସ୍ତାନିରେ ଭରି ରଖିଥିଲି ସେ ସ୍ୱାଧୀନତା କେତେ ସରାଗରେ, କେତେ ଆଦରରେ, କେତେ ଉତ୍ସାହରେ। ମୋତେ ଧରାଇଦେଇଥିଲେ ମୋର ପୂର୍ବଜ ସଂଗ୍ରାମୀମାନେ, ଜବାନମାନେ, କିଷାନ ମାନେ। ସୁରେନ୍ଦ୍ର ସାଏ, ଚାଖି ଖୁଣ୍ଟିଆ, ଝାନ୍ସିରାଣୀ ଲକ୍ଷ୍ମୀବାଈ, ଭଳି ସହିଦ ମାନେ, ଗାନ୍ଧୀ, ନେହେରୁ, ସୁଭାଷ ଭଳି ମହାତ୍ମାମାନେ। ଆମେ ବୋଧହୁଏ ସେଇ ଦୁର୍ଲଭ ସ୍ୱାଧୀନତାକୁ ସହଜରେ ପାଇଗଲୁ ମାଗଣାରେ। ଲୁହ ଲହୁ କିଛି ଦେଲୁ ନାହିଁ। ସାଇତି ବି ଜାଣିଲୁନାହିଁ। ଯଦି ସାଇତିଥାନ୍ତୁ ଆମ ଆଦମିର ରକତରେ ଜୀବିତ ନିଶ୍ୱାସରେ, ବଳିଷ୍ଠ ବିଶ୍ୱାସରେ ଆମ ସ୍ୱାଧୀନତା ଆମ ବସ୍ତାନିରୁ ଯାଇ ନଥାନ୍ତା ପାରା ଉଡ଼ି ପଳେଇବା ଭଳି। ଆଜି ଆମେ ସେଇ ଦୁର୍ଲଭ ସ୍ୱାଧୀନତାକୁ ଖୋଜୁଛୁ। ହେଲେ ମିଳୁଛି କୋଉଠି? କୁଲିର କଲିଜାରେ, ଖାଦାନର ଖଟିଖିଆ ଖଟଣିରେ, ମଜ୍‌ଦୁର୍‌ର ମରମରେ, ଶ୍ରମଜୀବୀଙ୍କର ଝାଳରେ, କୃଷକର କର୍ଷଣରେ ମେଘର ବର୍ଷଣରେ ଖୋଜିଲେବି ମିଳୁନି। କେମିତି କଉଠି ଆମ ହାତରୁ ଖସି ପଡ଼ିଲା ଯେ ପାଇବି ପାଇବି ବୋଲି ଯେତେ ଅଣ୍ଡାଳିଲେ ବି ମିଳୁନି।

ସେଇ ପାଇଥିବା ସ୍ୱରାଜକୁ ଭୁଜାଲିରେ ଭୁଷି ଦେଇଛୁ। ରକ୍ତାକ୍ତ କରି ଦେଇଛୁ। ସେ ଆମ ରକ୍ତରେ ଦରମରା। ତାକୁ ଆମ ରକ୍ତ ଭିତରୁ ଉଠାଇ ଆଣି ମଲମ ଲଗାଇବାକୁ ହେବ। ଆମ କଲମର କ୍ରିମ୍‌ରେ ତାର ପଚା ଘା' ଧୋଇବାକୁ ହେବ। ସେଥିପାଇଁ ଲୋଡ଼ା ଆମର ଯତ୍ନ। ଆମରି ଆନ୍ତରିକତା। ଆସନ୍ତୁ ଆମ ପିଲାବେଳେ ବସ୍ତାନିରେ ଭରି ଆଣିଥିବା ସେଇ ପିଲାଟିପରି କଅଁଳ ସ୍ୱାଧୀନତାର ପାରାକୁ ଖୋଜିବା। ତାର କଟା ଡେଣାକୁ ଯୋଡ଼ିବା। କାଶ୍ମୀରରୁ କନ୍ୟାକୁମାରୀ, ଗୋଆରୁ ଗୌହାଟି ଯାଏ ବୁଣିଦେବା ଫି, ଭାରତୀୟର ଧମନିରେ ଧାନ ବୁଣିଲା ପରି। ଶିକ୍ଷକ ଭବାନିଶଙ୍କର ପଣ୍ଡାଙ୍କର ସେଇ ଜୟଗୀତିର ଶେଷ ଦୁଇଧାଡ଼ି ଏଇଠି ଥୋଇବାର ଲୋଭ ଛାଡ଼ି ପାରୁନି।

ସ୍ୱାଧୀନ ଭାରତ ମୁକ୍ତ ଭାବୋଚ୍ଛ୍ୱାସେ ନବୀନ ସ୍ୱାଧୀନ ଛନ୍ଦେ।
ସ୍ୱାଧୀନ କବିର ସ୍ୱାଧୀନ ଲେଖନୀ ମହିମା ତୋହରି ବନ୍ଦେ।



## ୨୪. ପଗଡ଼ି ତଳର ପାଗଳାମି

୧୯୬୧ ବେଳକୁ ମୁଁ ପ୍ରାୟ ପ୍ରତି ସୋମବାର କଲିକତା ଯାଏ। ସୋମବାର ରାତିରେ ଯାଏ। ମଙ୍ଗଳବାର ରାତିରେ ଫେରେଁ। ମାତ୍ର ଗୋଟିଏ ଦିନର ରହଣି। କଲିକତାର କେନିଙ୍ଗ ଷ୍ଟ୍ରିଟ୍‌ରେ ଥିବା 'ସନ୍ତୋଷ ଭବନ'ରେ ଆମର ଆସର ବସୁଥିଲା। ସେଇଠି ଆମେ 'ରିସରେକସ୍‌ସନ' ନାମକ ଏକ ପତ୍ରିକା ପାଇଁ କାମ କରୁଥିଲୁ। ପତ୍ରିକାର ହିନ୍ଦୀ, ବଙ୍ଗଳା,

ଓଡ଼ିଆ ଓ ଇଂରାଜୀରେ ଲେଖାସବୁ ଅନୁଦିତ ହୋଇ ପ୍ରକାଶିତ ହେଉଥିଲା। ଯେଉଁ ଲେଖା ଗ୍ରହଣ କରାହେବ ଏଇ ଚାରୋଟି ଭାଷାରେ ତାକୁ ଅନୁଦିତ କରାହେବ।

ଥରକର କଥା। କମ୍ରେଡ଼ ପ୍ରସନ୍ନ କୁମାର ପଣ୍ଡା ସେଇ ସନ୍ତୋଷ ଭବନରେ ରହିଥାନ୍ତି। ତାଙ୍କ ସହ ଦେଖାହେଲା। ସେଇଠି ତାଙ୍କ ସହ ମୋର ପ୍ରଥମ ପରିଚୟ। ଆମେ ଗପୁଥାଉ। କେହି ଜଣେ ଲୋକ ତାଙ୍କୁ ଭେଟିଲେ। ସେ ଲୋକଟି କହୁ କହୁ କଥା ପ୍ରସଙ୍ଗରେ କହି ପକାଇଲେ। "ମିଷ୍ଟର ପଣ୍ଡା ଆପଣଙ୍କ ଅଞ୍ଚଳଟି ବିଶେଷ ଅନଗ୍ରସର। ତାପାଇଁ କିଛି କରନ୍ତୁ"। କଣ ହେଲା କେଜାଣି କମ୍ରେଡ଼ ପଣ୍ଡା ବୋମା ଫୁଟିଲା ପରି ଗର୍ଜି କହିଲେ "ଆପଣଙ୍କ ପଗଡ଼ି ତଳର ଅଞ୍ଚଳଠାରୁ କମ ନିଶ୍ଚୟ।" ଲୋକଟି ଏକା ଥରକେ ଚୁପ୍ ସକ୍ ଲାଗିଲା ପରି। ପ୍ରସନ୍ନ ପଣ୍ଡା ଆଉ ନାହାନ୍ତି। ତାଙ୍କ ରାଜନୀତିର କେନ୍ଦ୍ର ବିନ୍ଦୁଥିଲା ନିଜ ଅଞ୍ଚଳର ବିକାଶ। ସେଇ କମନୀୟ କମ୍ରେଡ଼ଙ୍କୁ ମୋର ଲାଲ୍ ସଲାମ।

ଦିନଥିଲା ସାରା ବସୁଧାକୁ କୁଟୁମ୍ବ ବୋଲି ବିଚାର କରା ଯାଉଥିଲା। ଏ ବିଚାରରେ ଉଦାରତା ଥିଲା। ଉତ୍କଟ ଦେଶପ୍ରେମ ନଥିଲା। ଏବେ ଛୋଟଛୋଟ ଭୂଖଣ୍ଡର ନୂଆ ନୂଆ ଦେଶପ୍ରେମ ମଣିଷର ରକତରେ ଇଞ୍ଜେକ୍ସନ ଫୋଡ଼ିବା ପରି ଫୋଡ଼ି ଦଉଛି।

ନିଜ ପ୍ରତି ପ୍ରେମ, ନିଜ ଘର, ପରିବାର ପ୍ରତି ପ୍ରେମ, ନିଜ ଗାଁ, ଗାଁରୁ ଅଞ୍ଚଳ, ଅଞ୍ଚଳରୁ ଜିଲ୍ଲା, ଜିଲ୍ଲାରୁ ପ୍ରଦେଶ, ପ୍ରଦେଶରୁ ଏକ ଭୂଖଣ୍ଡ, ସବା ଶେଷରେ ସାରାଦେଶ ପାଇଁ ପ୍ରେମ। ଇଏ ଏକରୁ ଅନେକ ଯାଏଁ ଗୋଟାଏ ପ୍ରିତି ଜାଗି ଉଠେ। ଏଇ ପ୍ରିତିର ସ୍ଥିତି ସ୍ଥାପକତା ରହିଛି। ଏଇ ପ୍ରିତିରୁ ଜନମେ ଜାତୀୟତା, ଏଇ ଜାତୀୟତା ଏକ ପୋକ। ଘୁଣ ଖାଇବା ପରି ମଣିଷର ବିବେକକୁ କୋରି କୋରି ଖାଇଥାଏ। ଚମଡ଼ାର ରଙ୍ଗକୁ ନେଇ ଦେଶ। ଧର୍ମକୁ ନେଇ ଦେଶ। ରାଜନୈତିକ ଚିନ୍ତାକୁ ନେଇ ଦେଶ। ଭାଷାକୁ ନେଇ ଦେଶ। ନାନା ଆଳରେ ଦେଶମାନ, ଜାତିମାନ, ସମ୍ପ୍ରଦାୟମାନ ଭୂଖଣ୍ଡମାନ ଗଢ଼ିଉଠି ସେଇ ସନାତନ "ବସୁଧୈବ କୁଟୁମ୍ବକମ୍" ଉପରେ କୁଠାର ଘାତ କରୁଛି। ଛୋଟଛୋଟ କଥାର ପ୍ରବଣତା ଜନ୍ମୁଛି। ମଣିଷର ରକତ ତାତୁଛି। ଆପଣାର ଭାଇ ବିରାଦରଙ୍କୁ ଭୂଜାଲିରେ ଭୁଷିବାକୁ ଉଷୁକାଉଛି।

ପି' ମଣିଷ କିଛି ଋଣ ଲାଗିଥାଏ। ମା' ଜନମ ଦେଇଥାଏ ସୁଝିବାକୁ ହେବ ତା' ରକତର ଋଣ। ଜନମ ପରେ ଯେଉଁ ମାଟିରେ ପ୍ରଥମ ପାଦ ଥୋଇଲେ ସେଇ ମାଟିର ଋଣ। ଯେଉଁ ସମାଜ ଆମ ପାଇଁ ନାନା ସୁଯୋଗ ଥୋଇଲା। ସେ ମଣିଷ ହେବାରେ ସହାୟତା କଲା। ସେଇ ସାମାଜିକ ଋଣ। ଯେଉଁ ଧରମ ଆମ ଚେତନାକୁ ଧରି ରଖିଛି ସେଇ ଧାର୍ମିକ ଋଣ। ସର୍ବୋପରି ଯେଉଁ ସଂସ୍କୃତି ଆମର ବ୍ୟକ୍ତିସତ୍ତା ଉତ୍ତୋଳିତ କରି ରଖିବାରେ ସଦାସର୍ବଦା ସାହାଯ୍ୟ କରି ଆସିଛି ତାର ଋଣ। ଏତେ ଋଣର ବୋଝ ଆମ ଉପରେ। ସେଇ ଋଣ ସୁଝିବାକୁ ହେବ। ନିଜ ପାଇଁତ ଆମେ ନାନା କାମ କରୁଛୁ।

ନିଜଛଡ଼ା ଅନ୍ୟପାଇଁ ଆମେ ଯଦି କିଛି କରିପାରିବା। ସେଇଥିରେ ସୁଝା ହେବ ସେ ଋଣ ସବୁ। ଏଇ ଋଣ ସୁଝିବାର ପ୍ରବୃତ୍ତି ଭିତରେ ରହିଛି ଏକ ପ୍ରକାର ଶ୍ରଦ୍ଧା, ଯାହାକୁ ଦେଶପ୍ରେମ କୁହାଯାଇପାରେ। ଧରନ୍ତୁ ଆପଣଙ୍କୁ ଗିଲାସେ ଦୁଧ ପିଇବାକୁ ଦିଆଗଲା। ଆପଣ ପାଖରେ ବସିଥିବା ସାନନାତିକୁ ଢ଼ୋକେ ପ୍ରଥମେ ପିଆଇ ଦିଅନ୍ତି। ଏଥିରେ ଯେଉଁ ଶ୍ରଦ୍ଧା ଟିକକ ଅଛି। ତାହା ପ୍ରେମ। ଆପଣାର ସୁଖକୁ ଅନ୍ୟକୁ ନ ବାଣ୍ଟି ନିଜେ ସବୁଟାକୁ ଏକାକି ଗିଳି ଦେବାରେ ଯେଉଁ ସୁଖ ମିଳେ ତହିଁରେ ଆଉ ଯାହାଥାଉ କି ନଥାଉ ପ୍ରେମ ବା ଶ୍ରଦ୍ଧା ନଥାଏ। ଦେବାରେ ନେବା ଲୋକର ଉପକାର ଠାରୁ ଦେବା ଲୋକର ଉପକାର ବେଶୀ ହୁଏ। ନିଜପାଇଁ କେବଳ ନିଜପାଇଁ ସବୁକିଛି କଲେ, ନିଜ ଛଡ଼ା କାହାରିର କିଛି ଉପକାର ହୁଏ ନାହିଁ। କେବଳ ନିଜପାଇଁ ସବୁ କରିବା ଲୋକକୁ ଆତ୍ମକାମୀ କହନ୍ତି। ଆତ୍ମକାମୀ ଦୁନିଆକୁ ଗୋଟାପଣେ ଗିଳି ପକାଏ। ତା ମନ ଭିତରେ ମଇଳା ଠୁଳ କରି ରଖେ। ଝାଡୁ ଘର ସଫା କରେ। ଅନ୍ୟକୁ ବାଣ୍ଟିବା କାମଟି ଝାଡୁପରି କାମକରେ ମନର ମଇଳାକୁ ସଫା କରିଦିଏ। କଥାଟି ଶୁଣିବାକୁ ସହଜ। କରିବା ବଡ଼ କଠିନ। ମନକୁ ସଦା ସଫା ରଖିବାକୁ ହେଲେ ଅନ୍ୟକୁ ବାଣ୍ଟିବାକୁ ହେବ। ବାଣ୍ଟ ଜାଣିଲେ ଗୋଳିଆ ମନ ସଫା ହୁଏ। ମୋର ବୋଲି କିଛି ନରହିଲେ ସବୁ ଅଦୁଆ ଆପେ ଆପେ କଟିଯାଏ। ମୁଁ, ମୋର ଘର, ମୋର ସଂସାର, ମୋର ଦେଶ, ଏଇସବୁ 'ମୋରମୋର' ଏପରି ଏକ ପୋକ ଯାହା କୋରି କୋରି ଖାଇଯାଏ ମଣିଷକୁ। ଆଜି ଜଣେ ଅନ୍ୟର ଏତେ ନିକଟତର ହୋଇ ଯାଇଛି ଯେ ନିଜର ସ୍ଥିତିର ସୀମା ସରହଦ ବାରି ପାରେରି ଦେଇ ପାରିବ ନାହିଁ। ଅସୀମକୁ ମଣିଷ ଛୁଇଁବି ଛୁଇଁବି ହେବା ବେଳକୁ ସୀମା ବାରିବା ମୂଢ଼ତା ହେବ ନାହିଁକି? ଯେଉଁ ମହାତ୍ମା 'ବସୁଧୈବ କୁଟୁମ୍ବକମ୍'ର କଥା କହିଥିଲେ ସେ ଏବେ ଆମ ସୀମା ବିବାଦର କଥା ଶୁଣିଲେ ହସିବେ ନା କାନ୍ଦିବେ ଜାଣିପାରି ନଥାନ୍ତେ। ଆମ କଲେଜ ପଢ଼ା ବେଳେ ସୀମା ଆନ୍ଦୋଳନ ଘଟିଥିଲା। ଓଡ଼ିଶାର କିଛି ଅଞ୍ଚଳ ମଧ୍ୟପ୍ରଦେଶରେ, ବଙ୍ଗଳାରେ, ଆନ୍ଧ୍ରରେ ଓ ବିହାର ପ୍ରଦେଶରେ ଏ ଯାଏଁ ରହିଯାଇଛି। ସୀମା କମିଶନ ତାଙ୍କ ନିଷ୍ପତ୍ତିରେ ଓଡ଼ିଶା ପ୍ରତି ନ୍ୟାୟ ନଦେଲେ। ସୀମା ବାରିଦବା ପାଇଁ କମିଶନଟିଏ ବସିଥିଲା। ଅଦୁଆକୁ କିଛି କାଳଟାଳି ଦେବାପାଇଁ କମିଶନଟିଏ ବସାଇବା ଏକ ସହଜ ବାଟ। ଅନ୍ତତଃ କିଛି କାଳ ଲୋକଙ୍କୁ ଭୁରୁଡେଇ ହବ। ସୀମା କମିଶନର ରିପୋର୍ଟ ବାହାରିଲା। ଓଡ଼ିଶାର ବହୁ ଇଲାକା ରହିଗଲା ପଡ଼ୋଶୀ ପ୍ରଦେଶ ମାନଙ୍କରେ। ଓଡ଼ିଶାର ଲୋକେ ମାତିଲେ। କାହିଁକି କେଜାଣି କଲେଜ ପିଲାଏ ଆଗ ମାତିଲେ। ପ୍ରତିବାଦ ସଭାମାନ ହେଲା। ସମ୍ବଲପୁର, କଟକ, ପୁରୀ ଆଦି ସହରରେ ଏହାର ତୀବ୍ରତା ଦେଖାଗଲା। ଆମ ପ୍ରିନ୍ସପାଲ ଥିଲେ ଡ଼ଃ ମାୟାଧର ମାନସିଂ। କବିଲୋକ। ବେଶୀ ସଚେତନ। କେମିତି ଗୋଟାଏ ପ୍ରବଣତା ଘାରିଲା। କିଛିଦିନ କଲେଜ ବନ୍ଦହେଲା। ପିଲାଙ୍କ ପଟରେ ଯୁକ୍ତି ବାଢ଼ିଲେ ଅଧ୍ୟକ୍ଷ

ମାନସିଂ। ପୋଲିସ ପଶି ପାରିଲାନି କଲେଜ ହତାକୁ। ଆଦିକାଳରୁ ପ୍ରଶାସନ ସବୁ ଯୁଗରେ ଲୋକଙ୍କୁ ଫୁଲ ଶୁଙ୍ଘେଇ ମେଣ୍ଢା କରିବାର ଅଭ୍ୟାସ ରଖିଛି। ଆମ ଅମଳରେ ନ କରିବ କାହିଁକି? କବି ମାନସିଂଙ୍କୁ ତାଙ୍କ ପ୍ରବଣତା ପାଇଁ ଦାମ ଦେବାକୁ ପଡ଼ିଲା ନିଷକଳୁଷ ସରକାରୀ ସେବାରେ କଷ୍ଟ ଭୋଗିଲେ।

ଏଇ ସୀମା ଆନ୍ଦୋଳନ ଜନିତ ଅସନ୍ତୋଷରେ ସୁନୀଲ, ବେଙ୍ଗ ପଣିଆ ଆଦି ସହିଦ ହେଲେ। ଏଇ ଆଲୋଚକ ସେଇ ଅମର ସହୀଦ ମାନଙ୍କୁ କିଛି ସ୍ମୃତି ତର୍ପଣ କରିଥିଲା।

"ସୀମାର ସୀମାନ୍ତ ଡ଼େଇଁ ଛୁଇଁଗଲ ସାହସର ସୀମା, ସମୟର ଛିନ୍ନ ପତ୍ରେ ଲେଖିଗଲ ନିର୍ଭୁଲ ମହିମା" କଦାପି କୁତ୍ରାପି ସୀମା ଆମ ପାଇଁ ସମସ୍ୟା ନହେଉ। ଏକ ମାର୍ଜିତ ଦେଶପ୍ରେମ ପ୍ରଭୁ ସାଆନ୍ତେ ଆମକୁ ଦିଅନ୍ତୁ। କମ୍ରେଡ଼ ପ୍ରସନ୍ନ ପଣ୍ଡା କୌଣସି ଅଞ୍ଚଳର ନଥିଲେ। ତାଙ୍କ ଭିତରେ ଗଜୁରିଥିବା ଦେଶ ପ୍ରେମରେ 'ବସୁଧୈବ କୁଟୁମ୍ବକମ୍'ର ମଞ୍ଜି ରହିଥିଲା। ଜିନ୍ଦାବାଦ୍, କମ୍ରେଡ଼ ପଣ୍ଡା!

## ୨୫. ନାଗାଧିରାଜ

ଦିନେ ବାପାଙ୍କୁ ପଚାରିଲି ବାପା, "ବାରପାହାଡ଼' କେଉଁଠି ଆଛି?" ବାପା କଣ କରୁଥିଲେ କେଜାଣି କହିଲେ "ତୋ ମାଆକୁ ପଚାର, ସେତ ସବୁ ଜିନିଷ କଉଠି ନା କଉଠି ଥୋଇଦିଏ।" ମାଆ ଚିହିଁକି ଉଠିବା ଆଗରୁ ଖବର ବ୍ୟାପି ଯାଇଥାଏ। ହିମାଳୟ ପାହାଡ଼ଟା ଆମ ହାତମୁଠାକୁ ଆସିଗଲା। ତାହାହେଲେ ଆମ ବାର ପାହଡ଼ଟା ଗଲା କୁଆଡ଼େ?

ହିମାଳୟ ଭାରତୀୟ ମହାଜାତିର ସଦାଜାଗ୍ରତ ପ୍ରହରୀ। ହିମାଳୟର ଅନେକ ଗିରିଶୃଙ୍ଗ ରହିଛି। ସେ ଗୁଡିକ ମଧ୍ୟରେ ଗୌରୀଶଙ୍କର ବା ଏଭାରେଷ୍ଟ ଅନ୍ୟତମ। ଉଚ୍ଚତା ଅଣତିରିଶ ହଜାର ଅଠେଇଶ (୨୯୦୨୮) ଫୁଟ୍। ପୃଥିବୀ ପୃଷ୍ଠରେ ଉଚ୍ଚତମ ସ୍ଥାନ। ଏହାର ଉପରେ ପାଦ ଥାପିବାକୁ ମଣିଷ ବହୁବାର ଚେଷ୍ଟା କରିଛି। ବିଫଳ ବି ହୋଇଛି। ସଫଳ ବି। ଏବେ କୁଆଡ଼େ ଏଭରେଷ୍ଟର ଉଚ୍ଚତା ବଢ଼ିଯାଇଛି!

୧୯୨୧ ମେ ମାସ ଅଠର ତାରିଖରେ ପ୍ରଥମ ଅଭିଯାନ ଆରମ୍ଭ ହୋଇଥିଲା। କର୍ଣ୍ଣେଲ ବେରୀ ଏହାର ମୁଖ୍ୟଥିଲେ। ୧୯୨୨ ମାର୍ଚ୍ଚ ମାସରେ ୨ୟ ଅଭିଯାନ ଆରମ୍ଭ ହେଲା। ଏହାର ନେତାଥିଲେ ଜେନେରାଳ ବ୍ରୁସ। ଆଗୁଆ ହେଲେ ୧୯୨୪ରେ। ତୃତୀୟ ଅଭିଯାନରେ ଅଠେଇଶ ହଜାର ଫୁଟ୍ ପର୍ଯ୍ୟନ୍ତ ଉଠିଥିଲେ। ୧୯୩୩ରେ ୪ର୍ଥ ଯାତ୍ରା ଆରମ୍ଭ କରି ରୁଟଲେଜ ଅଠେଇଶ ହଜାର ଏକଶହ ଫୁଟ୍ ପର୍ଯ୍ୟନ୍ତ ଉଠିଥିଲେ। ୧୯୩୭ରେ ଦୁଇଟି ଉଡ଼ାଜାହଜ ଏଭରେଷ୍ଟ ଶୃଙ୍ଗର ଛବି ବିଭିନ୍ନ ଦିଗରୁ ଉଠେଇଲା। ୧୯୩୬ରେ ପୁଣି ରୁଟ୍‌ଲେଜ ପଞ୍ଚମ ଅଭିଯାନ ଆରମ୍ଭ କଲେ। ୧୯୩୮ରେ ଟିଲମେନ ଚେଷ୍ଟା କରି

ବିଫଳ ହେଲେ। ୧୯୫୨ର ବସନ୍ତ କାଳରେ ସୁଇଜରଲେଣ୍ଡ ଅଧିବାସୀ ଡ଼କ୍ଟର ଚିଭାଲିଙ୍କ ନେତୃତ୍ୱରେ ଏକଦଳ ଏଭାରେଷ୍ଟ ଆରୋହଣ କଲେ। ମାତ୍ର ବିଫଳ ହେଲେ। ୧୯୫୨ର ଶରତ କାଳରେ ଚିଭାଲିଙ୍କ ପୁଣି ଯାତ୍ରା ଆରମ୍ଭ କଲେ। ଏହାଙ୍କ ଦଳ ୨୮ ହଜାର ଦୁଇଶହ ଚଉଦଫୁଟ ଉପରକୁ ଉଠିଲେ।

ଅନ୍ତିମ ଅଭିଯାନ ଆରମ୍ଭ ହେଲା। ୧୯୫୨ ମାର୍ଚ୍ଚ ଦଶ ତାରିଖରେ ବ୍ରିଟିଶ ରୟେଲ ରାଏଫଲ ବାହିନୀର କର୍ଣ୍ଣେଲ ହଣ୍ଟ ନେତୃତ୍ୱ ନେଲେ। ଏଇ ଦଳରେ ଶେରପା ଟେନଜିଂ ଓ ଏଡ଼ମଣ୍ଡ ହିଲାରି ଏଭରେଷ୍ଟ ଉପରେ ପାଦ ପକାଇ ସାରା ଜଗତକୁ ଚ଼ମକାଇ ଦେଲେ। ଏମାନଙ୍କ ବିଜୟ ଆମଭଳି ତରୁଣ ମାନଙ୍କୁ ଆମୋଦିତ କରିଦେଲା।

ଆମବେଳେ ଉଦ୍ଭାବନ ଓ ଆବିଷ୍କାରର ଚ଼ମକପ୍ରଦ କାହାଣୀ ସବୁ ପାଠ୍ୟରେ ଥିଲା। ଅଚ଼ିହ୍ନାକୁ ଚିହ୍ନିବା, ଅଦେଖାକୁ ଦେଖିବା ଅଜଣାକୁ ଜାଣିବାର ଏକ ଆଦିମ ଉକ୍ରଣ୍ଠା ମଣିଷର ଏକ ଅଭ୍ୟାସ। ସମୁଦ୍ରର ଅତଳ ତଳକୁ ଛୁଇଁବାର ପ୍ରୟାସରେ କ୍ଲାନ୍ତି ଆସିନାହିଁ। ମହାଶୂନ୍ୟକୁ ଭେଦ କରିବାର ଚେଷ୍ଟାରୁ ବିରତ ହୋଇ ନାଇଁ ମଣିଷ। ଯେଉଁମାନେ ନିଜ ଜୀବନକୁ ଖରଚ଼କରି ଆମ ପାଇଁ ସେଇ ଅଜଣାକୁ ଜାଣିବାର ପରିଚ଼ୟ ଆମ ପଖରେ ଥୋଇ ଯାଇଛନ୍ତି, ନିଶ୍ଚିତ ସେମାନେ ଆମର ନମସ୍ୟ। ସେମାନଙ୍କ ଦୁଃସାହସ ବିରାମହୀନ ପ୍ରଚେଷ୍ଟା ଆମକୁ ସଦାତାଙ୍କ ଆଗରେ ନତଜାନୁକରି ରଖିବ।

ତରୁଣ ବୟସରେ ଟେନଜିଂଓ ହିଲାରିଙ୍କ ବିଜୟ ମୋ ମନରେ ଗଭୀର ରେଖାପାତ କରିଥିଲା। ସଫଳତା ଆ' କହିଲେ ଆସେ ନାହିଁ। ତାକୁ ଭିଡ଼ି ଆଣିବାକୁ ହୁଏ। ମାଇନର ସ୍କୁଲରେ ମୋର ଜଣେ ଇଂରାଜି ଶିକ୍ଷକ ଥିଲେ। ପରପିଙ୍ଗସନ ତାଙ୍କ ନାଆଁ। ଝାରସୁଗୁଡ଼ା କକ୍ସ କଲୋନିରେ ରହୁଥିଲେ। ତାଙ୍କ କହିଥିବା କଥା କେତୋଟି ଧାଡ଼ି  ମୋ ପୁରୁଣା ଖାତାରୁ ତଳେ ଥୋଇଛି।

**"To day I feel I am a tree that stirs and may feed what makes one stir so it is the heroic deed".**

ଆଜି ଅନୁଭବ କରୁଛି। ତରୁଣ ବୟସରେ ବୀରତ୍ୱର କାହାଣୀ ଦୁଃସାହସର କାହାଣୀ କଞ୍ଚା ହାଡ଼ରେ ମଞ୍ଜ ତିଆରି କରେ। ଜୀବନକୁ ଜୀଇଁବାରେ ଦମ୍ଭଆଣେ। ସାହସ ଦିଏ। ଧୈର୍ଯ୍ୟକୁ ଦୃଢ଼ କରେ "ଶୈଳାଧିରାଜ ତନୟା ନ ଯଯୌ ନ ତସ୍ଥୌ" ଭଳି କରିବି  କି ନ କରିବି ଦ୍ୱିଧାରେ ବୁଡ଼ାଇ ରଖେ ନାହିଁ। ଇଂରାଜି ବାକ୍ୟଟି ମନେ ପଡ଼ିଯାଉଛି। **"The best substitute for experience is being sixteen."** ସତରେ ତାରୁଣ୍ୟର ତୁଳନା ନାହିଁ।

ମୋର ସବା ସାନ ନାତୁଣୀକୁ କଦଳିଟିଏ ଧରେଇ ଦେଇ ପଚାରିଲି 'କିଲୋ ଛଡ଼େଇ ଜାଣିଛୁ'? ସେ କହିଲା ହଁ! ପୁଣି ପଚାରିଲି "ଖାଇ ଜାଣିଛୁ ନା ନାହିଁ?" ସେ ହସି

ଦେଇ କହିଲା "ଜାଣିଛି ଯେ ଖାଇବା କେମିତି ବନ୍ଦ କରାଯାଏ ଜାଣିନି।"

ତା କଥା ଶୁଣି ଖୁସିରେ ଝୁମି ଗଲି। ଆମ ବାର ପାହାଡ଼ଟା ମୋ' ହାତ ମୁଠାକୁ ଆସିଗଲା। ମୋ ମାଁ କୁଆଡ଼େ ମୋ ନାତୁଣୀ ଭିତରେ ଥୋଇ ଯାଇଥିଲେ।



## ୨୬. ଚାରି ମାଆର ପୁଅ

ବସ୍ତି ବାହାରର ପଡ଼ା। ଘର ବାରଣ୍ଡାରେ ଦୁଲା ଖଟଟାଏ। ଛିଣ୍ଡା କନ୍ଥା ଖଣ୍ଡେ। ଆଖିବୁଜି ଶୋଇଥିଲେ ମାଆ। ପଚାରି ପଚାରି ପଶିଗଲି ମନାକଲେ ଅନେକ। ପାଣ ସାହିଏ। କାହିଁକି ଯିବେ? ପଇଡା ମାରା ହେବ ଯାହା। ଆପଣ ଗଲେ କଉ ଜୀବନ ଦାନ କରି ପକେଇବେ ଯେ। କାହାରି କଥା ଶୁଣିଲି ନାହିଁ।। ଭିତରେ ହଁ ଭରି ରହିଛି। କାହାରି ନାହିଁକୁ ଶୁଣୁଛି କିଏ? ଅଚିହ୍ନା ଝିଅ। ବୋହୂ ପଂଝାଏ। ମୋତେ ଦେଖି ଆଡ଼େଇ ହେଲେ। ମାଁଙ୍କ ଆଗରେ ଛିଡ଼ା ହେଲି। ହାତ ପାପୁଲିରେ କପାଳକୁ ଆଉଁସି ଦେଲି। ମୋ ହାତ ପରଶ ପାଇ ଆଖି ଖୋଲିଲେ। ମଟମଟ ଦେଖୁଥାନ୍ତି। ମୁଁ ତାଙ୍କ ମୁହଁକୁ ଅନେଇଲି। ବାଳୁତ ବେଳରେ ସେ ମୋତେ ଲୁଗା ଘୋଡ଼େଇ ତାଙ୍କ ଥନକୁ ମୋ ମୁହଁକୁ ଗୁଞ୍ଜି ଦେଇଥିଲେ। ମୁଁ ତାଙ୍କ ଥନରୁ ଅମୃତ ଚାଟିଛି। ମୋର ଏ ଦେହ ସେ ଅମୃତ ଟିକକରେ ଗଢ଼ା। ତାଙ୍କ ଚିପିରା ଲଟଲଟ ଆଖି ଯେମିତି ମୋତେ ଖୋଜୁଥିଲା। ପାଣି ମୁନ୍ଦିଏ ମାଗିଲି ତୁଳସୀ ପତ୍ର କେଇଟା ଧରିଥିଲି। ତୁଳସୀ ପତ୍ରର ପାଣି ମୁନ୍ଦିଏ ତାଙ୍କ ଦରମେଲା ପାଟିରେ ଦେଲି। ନାକୁ ମାତ୍ର ପବନ ଯା'ଆସ କରୁଥିଲା। ପରାଣ ଟିକକ ମୋତେ ଟାକିଥିଲା ଯେମିତି। ପାଣି ବୁନ୍ଦାକ ପାଟିରେ ପଡ଼ିଲା ପରେ ଆଖିବୁଜି ଦେଲେ। ଆଉ କେବେ ନଖୋଲିବା ପାଇଁ। ନୂଆଁ ଲୁଗା ଖଣ୍ଡେ ଘୋଡ଼ାଇ ଦେଲି। ଏକ ଚାପା କାନ୍ଦଣା ଆରମ୍ଭ ହୋଇଗଲା। ମନକୁମନ ଗୁହାରି କଲି ହେ ଠାକୁର ମୋ ମା'କୁ ମହାକ୍ଷୁଧା, ମହାଶୋଷ, ମହାନଗ୍ନତାରୁ ରକ୍ଷାକର। ହାତ ଯୋଡ଼ିଲି ଆଉ ଥରେ। ମୋ ଆଖିର ଲୁହ ଜକେଇ ଆସୁଥିଲା। ଚଷମାକୁ ପୋଛି ପୋଛି ବାହାରି ଆସିଲି। ତାଙ୍କ ପରିବାରର ଲୋକେ ବୁଝି ପାରିଲେନି ମୋର ଏ ଆଗମନ ତାଙ୍କ ପ୍ରତି ମୋର ଶ୍ରଦ୍ଧାର କାରଣ। କେମିତି ଜାଣିବେ ବା ସେମାନେ? ସେ କେବେ କାହାକୁ କହି ନାହାନ୍ତି ଏ ରହସ୍ୟ? ମୁଁ ବା କେମିତି କହନ୍ତି କାହାକୁ? ମା' କେବେ ତା ମମତାର ମୂଲ୍ୟ ମାଗେନା। କାହିଁକି କହନ୍ତି, ସେ ମା'ର ତୁଳନା ନାହିଁ। ଏଇଥି ପାଇଁ ମା ସବୁ ଯୁଗରେ, ସବୁ ସ୍ଥାନ, କାଳ, ପାତ୍ରରେ ଅତୁଳନୀୟ। ପଇସା ଦେଲେ ଏ ଦୁନିଆଁରେ ସବୁମିଳେ, ମା' ମିଳେନା। ମା''ର ଜାତି ଥାଏନା, ଧର୍ମ ଥାଏନା, ବର୍ଣ୍ଣ ଥାଏନା, ସାନବଡ଼ ଥାଏ ନା। ମାଁର ପରିଚୟ ଖାଲି ମାଁ। ପଶୁ ହଉକି ମଣିଷ ହଉ କୀଟ ହେଉକି ପତଙ୍ଗ ହେଉ ମାଁ ହଁ ମାଁ। ଜଗତରେ ତାର

ତୁଳନା ନାହିଁ।

ସେ ଥିଲେ ମୋର ଏକ ମା'। ଚାରୋଟି ମା'ରେ ଜଣେ। ମାଇକିନା ଜଣେ। ମହାନ ମାଆଟିଏ। ଖଟି ଖାଆନ୍ତି। ଠକି ଖାଇବା ଜାଣି ନଥିଲେ କେବେ। ମୋ ଜନମ କଲା ମାଆ। ମୋତେ ତୁହାଇ ତୁହାଇ ବହୁବାର କହିଛନ୍ତି। ତୁ ଚାରି ମା'ର ପୁଅରେ ବେଟା। ମୁଁ ସିନା ଜନମ ଦେଇଛି। ସେମାନେ ତିନିଜଣ ତତେ କ୍ଷୀର ଖୁଏଇ ଜୀବନ ଦାନ ଦେଇଛନ୍ତି। କେବେ ପର କରିବୁନି ସେମାନଙ୍କୁ ସେମାନଙ୍କ ମା'ଗଣ ଶୁଝିବୁ।

ମୁଁ ଜନମ ହେଲି ମାଙ୍କୁ ବାତ ଧଇଲା। କଟୁ ବାବାଜୀ ଆମ ବଇଦ। କଟୁ ବାବାଜୀ କୁମ୍ଭପଟିଆ ସାଧୁ ଜଣେ। ଯାହା କହନ୍ତି ଫଳିଯାଏ। ସତ୍ୟବଚ଼ନ। ସେ କୁଆଡ଼େ କହିଲେ ମାଆକୁ ବଞ୍ଚେଇବାକୁ ହେଲେ ପୁଅଟାକୁ ଅନ୍ୟର କ୍ଷୀର ଖୁଆଇବାକୁ ହେବ। ମାଆଥନକୁ କ୍ଷୀର ଶୋଷିଲେ ମାଆର ହାନି ହେବ। ଏଣୁଏଥକୁ କିଛି ଉପାୟକର।

ଭାଳେଣି ପଡ଼ିଲା। କଥା ଦୁର୍ଯ୍ୟୋଧନ ଗୌନ୍ତିଆ କାନକୁ ଗଲା। ଛତିଶ ପାଟକର ଗାଁ ଏଗାଁରେ ମା'ର ଅଭାବ ହେବ? ପରଶୁଧର ଶୁଣିଲା। ଧାଇଁଲା ପଡ଼ାକୁ ପଡ଼ା। ଗୌନ୍ତିଆ ତାକୁ କେତେ ବିପଦରୁ ରଖିଛି। ସେ ତାକୁ ଏ ଅସୁବିଧାରେ ପିଠିରେ ପଡ଼ିବ ନାହିଁ?

ପରଶୁଧର ଗୌନ୍ତିଆଙ୍କୁ କହିଲା "ମାନୁର ବା', ତୋ ନାତି ପାଇଁ ଜଣେ କଣ ପଣେ ମାଆ ଠିକ୍ କରି ଆସିଛି। ସକାଳେ ଜଣେ, ସଞ୍ଜକୁ ଜଣେ। ମଧ୍ୟାହ୍ନକୁ ଆଉ ଜଣେ ଆସି ଆସି କ୍ଷୀର ଖୋଇବେ। ପାଣ ପଡ଼ାର ବାଇଗିନୀ। କୁଦୋପାଲିର ନୀଳପଧାନର ଭାରିଯା। ଆଉ ଭୂୟାଁ ଘରର ନୂଆଁ ବୋହୂଟିଏ। ସଭିଙ୍କର ମାସକର ଛୁଆ, କଞ୍ଚା ପିଲାଟି। ଥରେ ପିଏଇ ଦେଲେ ଆମ ନାତି ବଞ୍ଚିଯିବ। ଆଉ ସେଇ ମା ମାନଙ୍କର ଛୁଆ ମାନେବି।

ଗୌନ୍ତିଆ ଖୁସିରେ ଫାଟି ପଡ଼ିଲେ। ଯାହା ଚାହିଁବେ ଦେବା। ସେ କଥା କହିବାକୁ କଣ ଛାଡ଼ନ୍ତି? ଶୁଣିବୁ ବାଇଗିନୀ କଣ କହିଲା। କଣ କହିଲା? ପ୍ରଶ୍ନକଲେ ଦୁର୍ଯ୍ୟୋଧନ। ମା କ୍ଷୀର ଦେବ ମଣିଷ ଛୁଆକୁ ବଞ୍ଚେଇବାକୁ। ସେ କ୍ଷୀରର ଦାମ ନେବ? ସେ କ୍ଷୀରର ଦାମ କିଏ ଦେଇପାରେ? ରାମ୍‌ବଲ, ଦେବା ନେବାର ନାଁ ଧରନାଇଁ। ବଡ଼ ଗୌନ୍ତିଆଙ୍କୁ କହିବ ମୁଁ ଆସି ରୋଜ ପିଏଇ ଦେଇ ଆସୁଥିବି।

ଏଇମିତି ଏଇ ତିନି ମାଆ ବରଷେ କାଳ କ୍ଷୀର ଖୁଏଇଛନ୍ତି। ମୋ'ଦେହର ରକତ ମାଉଁସ ଗଢ଼ିଛନ୍ତି। ମୋର ବ୍ରତ ବେଳେ ଏଇ ତିନିମାଆ ପାଖରୁ ମୋତେ ମୁକୁଳେଇଥିଲେ। ସେତେବେଳେ ଯାଇ ମୁଁ ଜାଣିଲି ଏମାନେ ବି ମୋର ମାଆ। ଦୁଇଜଣ ମା'ଙ୍କର ପାଦଛୁଇଁ ପୁଅର କର୍ତ୍ତବ୍ୟ କରିବାର ସୁଯୋଗ ପାଇନଥିଲି। କେମିତି ପୁଅ ମୁଁ ସତେ? ମୋ ମାଆମାନଙ୍କର ସେବା କରିବାର ସୁଯୋଗ ପାଇଲି ନାହିଁ କେବେ? ମୋର ଜନମକଲା ମାଆ ମୋତେ ଛେଉଣ୍ଡ କରି ୧୯୬୩ରେ ଚାଲିଗଲେ। ଆଉ ଦୁଇ ମାବି ତାଙ୍କ ଆଗରୁ ସଂସାର

ଛାଡ଼ିଲେ । ଶେଷ ମାଆଟି ତାଙ୍କ ପାଦ ଛୁଇଁବାର ସୁଯୋଗ ଦେଲେ । କୋଟି କୋଟି ପ୍ରଣାମ ସେଇ ମାଆ ମାନଙ୍କୁ ।

ମୋର ଶେଷ ମାଆଁଙ୍କ ଦଶାହଦିନ ମୁଁ ମୁଣ୍ଡ ଲଣ୍ଡା କରି ଘରକୁ ଫେରିଲି । ଗାଧୁଆ ତୁଠରେ ମାଙ୍କୁ ପାଣି ଦି ଆଞ୍ଜୁଳା ଦେଲି । ହଳଦି ପାଣିରେ ଗୋଡ଼ ଧୋଇବାକୁ ଆମ ଘୁଶ୍ରୀଙ୍କୁ କହିବାରୁ ସେ କାବା ହୋଇଗଲେ । ସେ ପଚାରିଲେ "କଣ ହେଲା"? ଉତ୍ତର ଦେଲି, "ମା ଚାଲିଗଲେ ।" ସେ କହିଲେ ମାତ କେବେଠୁଁ ଗଲେଣି । ତାଙ୍କୁ ସବୁ ବୁଝେଇ ଦେଲି । ମୋର ଚାରୋଟି ମାଆ । ସେ କୁଆଡ଼େ ପାଣ! ମୁଁ କହିଲି ମା'ର ଜାତି ଥାଏ ନା । ମାଆ ମାନେ ମାଆ ।



## ୨୭. ଆଈଙ୍କ ପେଡ଼ି

ବସିଥିଲେ ସେ ଖଳାରେ । ବେଶ ଲିପା ପୋଛା, ସଫା ସୁତୁରା ଖଳା । ଚାରିଆଡ଼େ ଧାନର ଖରି । ଦୁଇଟି ଖରିର ଫାଙ୍କରେ କବାଟ ଫାଳିଆ ଧାରେ ଖରା ଦଉଡ଼ି ଯାଉଛି । ସେଇ ସଂକୀର୍ଣ୍ଣ ଖରାର ସମାନ୍ତରାଳ କ୍ଷେତ୍ର ଭିତରେ ସେ ବସିଥିଲେ । ଚକ ଚକିଆ ଆଦ୍ୟ ପଉଷର ପାଣ୍ଡୁର ଖରା । ମୁକୁଳା ପିଠିରେ ଲାଉ ହୋଇଥିଲା ଯେମିତି । ଲୋଚାକୋଚା ପାଚିଲା ଦେହ ଉପରେ ଖରାର ଉଷୁମ ପରଶ । ବେଶ୍ ଆରାମ ଲାଗୁଥିବ ବୋଧହୁଏ । ଖଳାର ଚାରିପାଖରେ ନାନାଜାତିର ଛୋଟ ଛୋଟ ଗଛ । ମାୟା, ବଢ଼ିଅଳ, ଆମ୍ବ, ଗମ୍ଭାରି, କାଜୁ, କରଞ୍ଜ, କପା, ଜଡ଼ା, ବେଙ୍ଗାଟି ଓ ନିର୍ଗୁଣ୍ଡିର ବାଡ଼ା ସେମାନେ । ଯେପରି ଆଈଙ୍କ ସତର୍କ ପ୍ରହରୀ । ସୀମାର ସୀମାନ୍ତ ଅଞ୍ଚଳକୁ ସୁରକ୍ଷା କରିବାକୁ ଆଈଙ୍କର ନିର୍ଦ୍ଦେଶକୁ ଟାକି ବସିଛନ୍ତି । ସବୁ ଗଛ ମୂଳରେ ମଦା କରା ହୋଇଛି । ସେ ବିଚରାମାନେ ଆଈଙ୍କର ବିରାଟକାୟ ଗଡୁର ସାପ୍ତାହିକ ରସଦ ପାଆନ୍ତି ପର୍ଯ୍ୟାୟକ୍ରମେ ।

ଆଦ୍ୟ ପଉଷର ଶାନ୍ତ ଶୀତଳ ସକାଳ । ଗୋଡ଼ି ମାଟି ମିଶା ଗଦାଏ ଅଳିଆରୁ ଧାନ ବାଛୁଥିଲେ । ଦଦରା କନାର ପୁଟୁଳା ଟିଏ ଅଳିଆ ଉପରେ ଘଷି ଦେଉଥିଲେ । ଧାନ ପୁଟୁଳାରେ ଲଟକି ଯାଉଥିଲା । ଧାନକୁ କୁଲାରେ ଝାଡ଼ି ଦଉଥିଲେ । ଭୌତିକ ମିଶ୍ରଣକୁ ଅଲଗା କରିବାର ପ୍ରାଚୀନ ବୈଜ୍ଞାନିକ ପଦ୍ଧତି । ପାଠସିନା ପଢ଼ିନଥିଲେ କିଛି କିନ୍ତୁ ଜୀବନର ବହୁ କଥା ଜାଣିଥିଲେ । ତାଙ୍କ କୌଶଳକୁ ବିଜ୍ଞାନ ବି ହାର ମାନିବ । ମୁଁ ଦଣ୍ଡବତ କଲି । ସେ ଚିହ୍ନି ପାରିଲେନି, ବୟସର ବୋଝ ତାଙ୍କ ଆଖିକୁ ମଳିନ କରିଦେଇଥିଲା । ସେ ମୋତେ ତାଳୁରୁ ତଳିପା ଯାଏ ଅନେଇଲେ । ତାଙ୍କ ପେଜୁଆ ଆଖି ମୋରି ଭିତରେ ମୋତେ ଖୋଜିବାର ଚେଷ୍ଟାକରୁଥିଲା । "ଆଈ ମୁଁ "ମଙ୍ଗଳୁ" ନିଜକୁ ନିଜେ ଚିହ୍ନେଇଲି । ଆରେ ପୁଅ, ତତେ ମୁଁ ଚିହ୍ନି ପାରୁନାହିଁ । ନମରି ଯାହା ରହିଛି । ଏବେ ଆଉ ନଜର

ପାଉନି। ବସ ବସ କହି ଉଚ୍ଛୁଳି ପଡ଼ିଲେ। ସଭିଏଁ ଭଲତ? କୁଶଳ ପଚାରିଲେ ଜଣଜଣ କରି। ଯା'ଘରକୁ ଯା ଲୁଗାପଟା ବଦଳେଇ ଥୟହେଇ ବସିବୁ। ମାମୁଁତ ଘରେ ନାହିଁ। ମାଇଁମାନେ ଘରେ ଅଛନ୍ତି। ଶୁଭୁ ନଶୁଭୁ ଡ଼ାକ ପକାଇଲେ। "ଆଲୋ ଏ ଉଜଳ ତୋ ବଡ଼ ଭଣଜା ଆଇଛି"। କଉଠିଥିଲେ କେଜାଣି ବଡ଼ମାଇଁ ପାଛୋଟି ନେଲେ।

ମାମୁଁ ଘର ମଥୁରାପୁର। ମାମୁଁ ଘରେ ମୋ ପିଲାକାଳ କଟିଛି। ବାର ବରଷ ରହିଛି। ମା'ନାହାନ୍ତି। ଆଇର ଗୋଟିଏ ବୋଲି ଝିଅ, ମୋର ମା। ମୋତେ ଦେଖିଲେ ଆଇଙ୍କ ଆଖି ଲୁହରେ ଟଳଟଳ ହୁଏ। କୋହ ଉଚ୍ଛୁଳେ। ମା' ମନେ ପଡ଼ନ୍ତି। କଣ୍ଠ ଥରି ଉଠେ। ସେ କାନ୍ଦି ପାରନ୍ତି ନାହିଁ। ତାଙ୍କ ଆଖିରୁ ଲୁହ ଝରିବା ମୁଁ ଦେଖିନାହିଁ। ନିଜକୁ ସମ୍ଭାଳି କଅଁଳ ମା ମନକୁ ଚାପି ଦିଅନ୍ତି। ଲୁହ ଗଡ଼େଇ କାନ୍ଦିଲେ କଣ ଖାଲି କାନ୍ଦିହୁଏ? ଆଖି ଆଗରେ ଗେରସ୍ତ, ସାନପୁଅ, କେତେ ନାତି ନାତୁଣୀଙ୍କୁ ଯମ ସାଉଁଟି ନେଇଛି। ଏକମାତ୍ର ଝିଅକୁ ଯମ ସାଉଁଟି ନେଇଛି। ଏକମାତ୍ର ଝିଅକୁ ଯମ ଛାଡ଼ିଲା ନାହିଁ। ଯମର ମାଡ଼ ଯେ ସହିଛି। ତାକୁ ଆଉ କଉ ମାଡ଼ ବାଧିବ ଯେ! କର୍ମ କଠୋର ମଣିଷଟିଏ, ନିର୍ଲିପ୍ତ ନିର୍ବିକାର। ତୁଚ୍ଛାଟାରେ ବସି ଚଳିବାକୁ ଭଲ ପାଆନ୍ତି ନାହିଁ। କିଛି ନା କିଛି କାମ କରୁଥିବେ। ବସିବାଠାରୁ କିଛି କରିବାକୁ ଭଲ ପାଆନ୍ତି। ତାଙ୍କ ଗାଉଁଲି ପରିଭାଷା ହେଲା ଜୀବନ ମାନେ କାମ। କର୍ମପ୍ରବଣତାର ମୂର୍ତ୍ତିମତୀ ରୂପଥିଲେ ସେ।

ତାଙ୍କର ମାତ୍ର ଚାରେଟି ନାତି ନାତୁଣୀ। ମୋର ଅର୍ଦ୍ଦଳି ସବୁଠୁ ବେଶୀ। ମୁଁ ତାଙ୍କରି ଆଗରେ ଏଡ଼େଟୁ ଏତୁଟିଏ ହୋଇଛି। ତାଙ୍କଠୁ କିଛି ପାଇବାର ସୌଭାଗ୍ୟ ଖୁବ୍ କମ୍ ଲୋକ ପାଆନ୍ତି। ଆମକୁ ସେ ପିଲାବେଳେ ଗୋଟିଏ ତମ୍ବା ଇଂରାଜି ପଇସା ଦିଅନ୍ତି ଅତି ବେଶୀରେ। ବରଂ ଅନ୍ୟମାନେ ଦେଇଥିବା ଖଜା ଖିଆରୁ କିଛି କିଛି ସଞ୍ଚିବା ପାଇଁ ସେ ଆମକୁ ଜଳିଆ, ପିଉଳର ମାଛଭଳି ମନିପର୍ସ ଦେଉଥିଲେ। ତାଙ୍କୁ ପଇସା ମାଗିଲେ। ସେ ବରାବର କହନ୍ତି। "ମୋ ହାତେ ପଣତେ କଣ ଅଛି ଯେ ଦେବି? କଉଠୁ ପାଇବି? ତୋ ବଡ଼ ମାମୁଁତ ସବୁ ଭଲମନ୍ଦ ବୁଝୁଛି। ଦିହର ଜର ଦେବନାହିଁ। ଘରର ସଭିଏଁ 'କଟକଟୀ' କହନ୍ତି।

ପିଲାବେଳେ ଆମେ ତାଙ୍କଠି ପଇସା ରଖୁଥିଲୁ। ସେ ସାଇତି ଦେବାକୁ ଆମକୁ ଭୁରଚଉଥିଲେ। ମଝିରେ ମଝିରେ ଆମ ପଇସା ମାଗୁଁ। ସେ କହନ୍ତି। ତମ ପଇସା ଗୋପପୁରରେ କୃଷ୍ଣ ବଢ଼ିବା ପରି ବଢୁଛି। ଏଇନେ ନେଲେ କଉଠି ହଜେଇ ଦେବ। ବେଳେ ବେଳେ ଅଝଟ ହେଉଁ। ବୁଢ଼ୀତ ଭାରୀ କାଠ। ସାଇତା ଆବୁଦୁ ଜାବୁଦୁ ଖାଦ୍ୟରୁ କିଛି ଦେଇ ଆମଠୁ ସେ ଆତ୍ମରକ୍ଷା କରନ୍ତି। ହେଲେ ପଇସା ଝଡ଼େ ନାହିଁ।

ସପ୍ତାଶ୍ଚର୍ଯ୍ୟ ଭିତରେ ମୋ ଆଇଙ୍କ ପେଡ଼ିଥିଲା ଅନ୍ୟତମ। ମାମୁଁ ଘରକୁ ଗଲେ ମୋ ଆଇଙ୍କ ପେଡ଼ି ମୋ ଆଖିକୁ ଆଗ ଦିଶେ। ଆଇ କହନ୍ତି ତାଙ୍କ ମା'ଖିଣ୍ଡା ହାଟରୁ କିଣିଥିଲେ।

ବାଉଁଶ ପାଟିଆରେ ତିଆରି। ଝିଅ ପଠିଆଣି ପାଇଁ ସାଇତିଥିଲେ। ପେଡ଼ିରେ ଲୁହୁରା ତାଲାଟିଏ ପଡ଼ିଥାଏ। ତାଲାର ଚାବିଟି ଆଇଙ୍କ ବେକର ପୋହଲା ମାଳରେ ଲାଗିଥାଏ। ପେଡ଼ି ଉପରେ ଆଇଙ୍କ ପହରାଦାର ନଜର ରହିଥାଏ। ମୋ ପାଇଁ ପେଡ଼ିଟି ଥିଲା ଭାନୁମତୀର କୁହୁକ।

ଚାରିକୋଡ଼ି ବୟସର ଆୟୁକୁ ଭୋଗକରି ଆଇ ସଂସାରର ମାୟା ବନ୍ଧନ କାଟି ଚାଲିଗଲେ। ଦଶାହ କର୍ମପାଇଁ ଘରଦୁଆର ସଫା ସୁତୁରା କରାଗଲା। ଆଇଙ୍କ ଜୀର୍ଣ୍ଣ ପେଡ଼ିଟାକୁ ଗାଈ ଗୁହାଳ କାନ୍ଥରେ କିଏ ଆଣି ଥୋଇଦେଲା। ମାଇଁଙ୍କ ଯୁକ୍ତି ଶାଶୁଙ୍କ ପେଡ଼ିରେ ଥିବ ବା କଣ? ତେଳିଆ ଛିଣ୍ଡା ଲୁଗା କେଇଖଣ୍ଡ। ପୁଞ୍ଜିଏ ଶିମ୍ଭ ମଞ୍ଜି କି ଶାମୁକା ଖୋଳକି ତୁଳସୀ ମାଳ କେଇଟାଥିବ। ନ ହେଲେ ପୁରୀରୁ ଅଣା ତିଲକ କେଇଖଣ୍ଡ କି ଯାଉଁଳି ଜଗନ୍ନାଥ ଫଟୋଟାଏ। ଆଜୀବନ ବୁଢ଼ୀ ଖଟି ଖଟି ମରିଛି। ଅଣେ ପଣେ କିଏ ଦେବ ଯେ ରଖିଥିବ।। ଦଶାହରେ ବନ୍ଧୁ ବାନ୍ଧବ ରୁଣ୍ଡ ହେଲେ। ଚ଼ରଚା ଚାଲିଲା। କିଏ କହିଲା ବୁଢ଼ୀ ଖାଣ୍ଟି ମଣିଷ। କାହାରି ମନରେ ଦୁଃଖ ଦେଇନାହିଁ। ସେଥିପାଇଁ ବୈଶାଖ ପୂର୍ଣ୍ଣମାସରେ ମରିଛି। "ଆଉ କିଏ କହିଲା ମାଘର କନକନି ଶୀତରେ ବୁଢ଼ୀ ଦଣଘନା ବିରି ପିଠଉ ଫେଣି ପକାଏ। ପୁଇନ ମାଉସୀ କହୁଁ କହୁଁ କହିଦେଲା "ପଟର ଦୁଇମାଳ ଥୋଇଦିଅ ମୋ ନନା ପାଖରେ ଚକୁଣି ଟିପି ଗଦା କରିଦେବ।" କାମିକା ମଣିଷ। କବାର ବୁଟାକୁ ଛନକୁ ଥାଏ।

ଏକ ଦଶାହ ଦିନର ଦାନଧରମ ଚାଲିଥାଏ। ପ୍ରଥମ ଦଶଦାନ, ଗୋ, ଭୂମି, ସୁବର୍ଣ୍ଣ, କର୍ଣ୍ଣଲଗ୍ନା। ପ୍ରଥମ ପଞ୍ଚଦାନ। ଷୋଳହ ପାଥ, ଚଉଷଠି ଭୂରି, ଏମିତି ଏମିତି କେତେ ଦାନ। ମୁଁ ତାଙ୍କ ଝିଅ ନାତି ହୋଇଥିବାରୁ ଦୀପଦାନକୁ ଭାଜନ। କହୁଁ କହୁଁ କହିଲି ଦୀପୀଦାନ ଦିଅକି ନଦିଅ ମୋ ଆଇଙ୍କ ସେ ପେଡ଼ି ଖଣ୍ଡକ ଦେବ। ମୋ କଥାରେ ମାଇଁ ହସିଲେ। ଯଦୁର ମା' ପାନିବୁଢ଼ୀ ଗୋହାଳ କାନ୍ଥରେ ଥୋଇ ଦେଇଥିଲା। ଅଛି କି ନାହିଁ କେଜାଣି। ଉଇଖିଆ ପେଡ଼ିଟାକୁ ଆଣିଲା। ତଳପଟର ବାଉଁଶ ପାଟିଆ ସବୁ ଡ଼ିଆଁଟରି ଦେଇଥିଲେ। ଥାକଥାକ କଟରା ଲୁଗା ଭିତରେ ଯତନେ ଥୁଆ ପିତଳ ମାଛଟିଏ ଓଜନିଆ ଲାଗିଲା। ସବୁ ସାଉଁଟି ସଭିଙ୍କ ସାମନାକୁ ନେଲି। ମାଛଟି ଛୋଟ କୁନି ବାକ୍ସଟିଏ। ମାଛପେଟକୁ ଫିଟେଇଛି କି ନାହିଁ ଦେଖଦେଖ ବୋଇଲା ବେଳକୁ ମହାରାଣୀ ଭିକ୍ଟୋରିଆ ଅମଳର କଳଦା ରୁପାର ମୁଦ୍ରା କେତୋଟି। ଆଉ ଚାରୋଟି ସୁନା ମୋହର। ଛଞ୍ଚାଣ ଝାମ୍ପି ନେବାପରି ମାମୁଁ ଝାମ୍ପି ନେଇଗଲେ। ଉଇଖିଆ ପେଡ଼ିଟାକୁ ସାଉଁଟିନେଲେ କାଳେ ଆଉ କଣଥିବ? ଟଙ୍କା ଅସର୍ଫି ଏବେ ହଜାର ହଜାର ହେବ। ଆଇକୁ ମନେ ପକାଇଲି। ସେଇ ଶାନ୍ତ ଶୀତଳ ପଉଷ ସକାଳର ଧାନ ବାଛୁଥିବା ଆଇଙ୍କ ଛବିଟି ମୋ ଆଖିରେ ଝଲସି ଉଠିଲା। ଆଜିର ଏ ଆର୍ଥିକ ଦୁର୍ଦ୍ଦିନରେ ମୋ ଆଇ ଆମ ଘରେ ଜନ୍ମ ନିଅନ୍ତେ କି?



## ୨୮. ପୁଇନ ମାଉସୀ

ସେ ବସ ବୋଇଲେ ମୁଁ ବସିବି। ଉଠ୍ ବୋଇଲେ ଉଠିବି। ମୁଁ ଯେମିତି ତା ସର୍କସର ବାଘ। ମୋର ସବୁ ଅଝଟ ପଣକୁ ଦୁଷ୍ଟାମିକୁ ମାଉସୀ ସହିଛି। ହାତ ଦେଇନି ମୋ ଦେହରେ। ମଣିଷକୁ ମଣେଇବାର ବାହାଦୁରି ଅଛି ତାର। ସାକୁଲେଇ ପାକୁଲେଇ ଭୁରୁଡେଇ ଦେବ ଅନେକ କଥାରେ। ଏଇଟା ଦେବି, ସେଇଟା ଦେବି, ଚାରବିଜା ଖଜାଦେବି କହିକହି କେଣନା କଣ ଚଖେଇ ଦେବ। ନାହିଁ ନାହିଁ କରି ମୁଁ କାଖରୁ ଖସି ଯାଉଥିବି। ସେ ବଳେଇ ଧରୁଥିବ। ବଳେଇ ବଳେଇ ଭାତ ଖୁଆଉଥିବ। ମୁଁ ଥୁଥୁ କରୁଥିବି। ସେ ମୋତେ ଖୁଆଉଥିବ। କହୁଥିବ ଖାଇଦେରେ। ଯେ ଆଗ ଖାଇବ ତାର ଗାଇ କଅଁଳେଇବ। ହାକିମ ହେବ, ହୁକୁମ କରିବ। ଏମିତି କେତେ କଣ ଗାଇଯାଏ। ମାଉସୀକୁ ତା ସ୍ନେହପାଇଁ ମୋର ଭାରିଡ଼ର। କଣ ଖାଲି ବାଲୁତ ବେଳରେ? ଏବେ ଡ଼ରେ, ସଦା ଡରୁଥିବି।

ଅନେକ ଦିନରୁ ମାଉସୀ ଘରକୁ ଯାଇ ନଥିଲି। ମାଉସୀର କଳା ମଚ଼ ମଚ ମୁଣ୍ଡ ବାଳ ଝୋଟ ହେଲାଣି। ବେଲାରି ପାନ ମଚ଼ମଚ଼ ପାଟିଟାବି ପାକୁଆ ହେଲାଣି। ତା'ର ସ୍ନିଗ୍ଧ ବରତନୁ ପଚା ଆମ୍ବପରି ଲୋଚାକୋଚା। ବଢ଼ିଲା ବୟସରେ ବି ମନଟା ତାର ପିଲାଳିଆ। ବଲର ବଲର ଭାବ। ନୀରିହ ବାଳିକାଟିଏ। ଚିହ୍ନା ହଉକି ଅଚିହ୍ନା ହେଉ ଗୋଟାପଣେ ଆପଣାର କରିନିଏ। ଆନକୁ ଆପଣାର କରିବାର ଗୋଟାଏ ଅଦ୍ଭୁତ ବ୍ୟକ୍ତିତ୍ୱ ଅଛି ତାର। ତାର ଲୁହ ଛଳଛଳ ଆଖିରେ ମଣିଷ ପଣିଆଁ ଛମଛମ କରୁଥାଏ।

ଅନେକ ବର୍ଷ ପରେ ମାଉସୀକୁ ଦେଖିଲି। ମୋତେ ଦେଖି ସେ ତା' ସଂସାରକୁ ଭୁଲିଗଲା ଯେମିତି। ପହିଲି ଆଷାଢ଼ର ନୂଆଁ ମେଘ ଶୁଖିଲା ମାଟି ଉପରେ ଯେମିତି ଫାଟି ପଡ଼େ। ଖୁସିରେ ଫାଟି ପଡିଲେ ସିଏ। ପିଲାଛୁଆ ଘରର ଭଲମନ୍ଦ ହାନିଲାଭ କୁଶଳ ଜିଜ୍ଞାସା କଲେ। ପିତାପାଲି ଗଁଉଟିଆ ଘରର ପୁଅଟୁ। ପିତୁ ପିତାର ନାଆଁ ରଖିବୁରେ। ଭଗନାନୀଟାକି ଧରମ କରମ କରିଥିଲା ଯେ ତୋ' ଭଳିଆ ପୁଅ ପାଇଲା। ବିଚାରି କେତେ କଷ୍ଟରେ ତତେ ପାଠ ପଢ଼େଇଥିଲା। ସୁଖର ଦିନକୁ ଆଖି ବୁଜିଦେଲା। କହୁଁ କହୁଁ ସକେଇ ସକେଇ ଅସରାଏ କାନ୍ଦି ପକେଇଲା। ମାଉସୀ ମୋ ନାକ କାନ୍ଦୁରୀ। କଥାରେ କଥାରେ ଆଖି ସଲସଲ କରି ପକାଏ। ଶଇଲଟା ଆମର କିମିତି ଅଛି? ଧମକେଇଲା ଭଳି କହିଲେ। ଛେଉଣ୍ଡ ଛୁଆ ସେ। ବାପ ସୁଖ ପାଇନି। ମା' ବୁଢ଼ୁରୀ ରାଇଜର ଗୁହମୁତ ଖୁଏଇ ବଢ଼ କରିଛି। ଆଖାଶାଖା ଥିଲା ବା କିଏ? ତୋ ଝିଅ ପ୍ରତିମା କେତୁଟିଏ ହେଲାଣି। ତୋ ନାନ୍ଦଲୁ ମାନ୍ଦୁଲୁ ଛୁଆଙ୍କୁ ଦେଖନ୍ତିରେ। ଆଖି ପୁଟି ଯାଉଛି ଦେଖିବାକୁ। ଆଉ ବଳ ନାଇଁରେ। କଉଠିକି ଯିବି ବୋଇଲେ ଗୋଡ଼ ବାନ୍ଧି ହେଉଛି। କେଇଦିନ ବା ଆଉ ମୋର? କେବେ କଣ କାର କରିଥିଲି ଯେ ପେଟରେ ସିନା ପଥର

ପଡ଼ିଲାରେ, ପୁଅ। ହେଲେ ତମମାନଙ୍କୁ କୋଳେଇ କାଖେଇ ସେ ପୀଡ଼ା ଭୁଲିଯାଇଛିରେ। ତମେ ମାନେ ମୋର କୋଟିନିଧି, ମାଣିକ, ମୋର ଗଣ୍ଠିଧନ। ତମ ଆଗରେ ଦିନ ସରିଯାଉ। ତମେମାନେ ମୋର ତିରିଥ ବରତ, ଧନ ଦଉଲତ। ବଦ୍ରିକା ଯିବା କି କାରଣେ? ତମଠି ମୋର ସକଳ ତୀର୍ଥ। ତତେ ଦେଖି ସବୁ ଭୁଲିଗଲିରେ, ପୁଅ"। ଏଇମିତି ଏଇମିତି କେତେ କଣ ବାହୁନି ବସିଲେ।

"ମୋର ଆଉ ସୋର ରହୁନାହିଁରେ, ପୁଅ। ବାଉରୀ ହୋଇ ଗଲିଣି ଯେମିତି। ଯଉ କଥାରେ ଲାଗିଛି ଲାଗିଛି। କେତେ ବାଟରୁ ଆଇଛୁ, ଥକି ପଡ଼ିଥିବୁ। ଥୟ ଧରି ବସ। ମୁଁ ଜଳଖିଆ ପଠଉଛି। ଆଲୋ ପାର, ବାହାର ଚୁଲିରେ ଚା' ପଶେ ଫୁଟା। ମୁଁ ତ ଚା' ଖାଏଁ ନାହିଁ ରେ ପୁଅ। ମୁଁ କା ଘରକୁ ଯାଇଥିଲି ଯେ ମନେ ପଡୁନି। ବଇଠି ଗିନାରେ ଗିନେ ଚା' ଦେଲା। ପିଉ ପିଉ ଅଧଗିନା ପିଇଦେଲି। ଦେଖ ଦେଖ ବୋଇଲା ବେଳକୁ କିଏ ଦେଖେ ମୋର ଦଶା? ଡହକ ବିକଳ ହୋଇ ଜୀବନ ଛାଡ଼ି ଯିବା ଉପରେ। ସେଇ ଦିନୁ ଛି' କରି ଛାଡ଼ିଦେଲି। ହେଲେ ଚା' ଟିକିଏ, ଚିନି ପଶେ ସବୁବେଳେ ଥାଏ। ବାପ ଅଜା ଅମଳର ଥିଲା ଘର ଏ। ଧନଗଲା ବୋଲି କଣ ପଣଯିବ? ବେଳ ଅବେଳରେ କିଏ ପଶି ଆସିଲେ ମୁହଁ ଓଦା କରିଯିବ। କିଛି ନଥିଲେ ପାଣି ମୁନ୍ଦିଏ ତ ପିଇବ।

କେଇଗୋଟା ଆରିସା। ଶାଳ ଉଖୁଡ଼ା ଥୋଇଦେଲେ ମାଉସୀ। ମହମହ ବାସୁଥାଏ। କୁଆଣି ଗୋଲମରିଚ୍ ପଡ଼ିଛି। ଗୁଆ ଘିଅ ମିଶିଛି। ଖଣ୍ଡ ଖଣ୍ଡ ନଡ଼ିଆ ଗୁଡ଼ରେ ସିଝି ଲାଲ ହୋଇ ଯାଇଛି। ରାଶି ସରସର ଆରିସା ଏଠି କୋଉ ଗୁଡ଼ିଆ ଘର ଅଛି ଯେ ଖଜା ମିଠେଇ ଆଣିବି? ହେଲେ ଏ ଗୁଡ଼ିକ ଦିହକୁ ଲୋକସାନ କରେନି। ଏତକ ଖାଇ ସାରିଛି କି ନାଇଁ ଚା' ଆସିଗଲା। ଚା' ନ ସୁରୁଣ୍ଡୁ ମାଉସୀ କହିଲେ ଆରେ ପୁଅ ବେଳ ହେଲାଣି, ଯା ଗାଧୋଇ ଆସିବୁ। ପୁର୍ନି ବନ୍ଧର କଳା ଭୁମର ପାଣି। ଗିନାଏ ତେଲ ଥୋଇଦେଲା ପାର। ଗୁଡ଼ାଖୁ ଘଷୁ କିରେ? ମୁଁ ନାହିଁ କଲି। ଠିକ୍ କରିଛୁ। ମୁଁ ନିଉଛୁଣି ଏ ଗୁଡାଖୁ ଆଉ ପାନ ଛାଡ଼ି ପାରୁନି। ମଲାବେଳେ ବି ନେଇକରି ଯିବି ସାଥିରେ। ମୁଁ ହସିଲି। ଗାଧୋଇ ସାରି ଘରେ ପହଞ୍ଚିବା ବେଳକୁ ପିଢ଼ା ପଡ଼ିଛି।

ଚନ୍ଦନ ପିଢ଼ି, ଦରପଣ ପାନିଆଁ। ଲୋଟାଏ ପାଣିଥୁଆ। ଭାଗବତ ପେଟିଲାଟା ବି ଥୁଆ। କହିଲି ଏ ସବୁ କଣ ହେବ? ମାଉସୀ ଧମକେଇଲେ। କିରେ ପଚାରୁଛୁ କଣ? ବ୍ରାହ୍ମଣ ଘରର ପୁଅଟୁ ଚନ୍ଦନ ମାଖିବୁନି? ଅଧିଏ ଗାଇବୁନି? "କାକସ୍ନାନ ଗଧ ଭୋଜନ କୁକୁର ଧାଉଡ଼ିର" ଚାକିରିଆ ଜୀବନ। ମାହାଣା ମାନେ ଜଗନ୍ନାଥଙ୍କୁ ବର୍ଷକଥରେ ଚିତ୍ରିବା ପରି କପାଳରେ ଛାତିରେ ବାହୁରେ ଚିତା ମାରିଲି। ସୀଉଁତିଆ ପାରି ମୁଣ୍ଡ କୁଣ୍ଡାଇଲି। ନିଜକୁ ନିଜେ ଦେଖି ହସିଲି। ମୋ ଏ ବେଶକୁ ଚୁଟିଟାଏ ଲୋଡ଼ା।

ପିଢ଼ା ପଡ଼ିଲା। ମଉସାଙ୍କ ସହ ବସିଲି। ନୋଟାଏ ନୋଟାଏ ପାଣି। ମୋଟା ମୋଟା

କଂସାଥାଳିରେ ମିହିଁ ଅରୁଆ ଅନ୍ନ। ଘିଅ ପରଝା ଭଜା ମୁଗ ଡ଼ାଲି। ମହି ଆମ୍ବିଳ। ଲାଲ ଖଡ଼ା ଶାଗ ଖରଡ଼ା। ପତରେ ପତରେ ଭଜା। ଯେତେ ଖାଇବୁ ଖା। ମାଉସୀଙ୍କ ଚ଼ରଚାରେ ତ ପେଟ ପୂରିଗଲା। ଖାଇବି କଣ? ପିଲାବେଳର ଦିନ ଗୁଡ଼ିକ ଓହ୍ଲାଇ ଆସିଲା। ମାଉସୀ ବଳେଇ ବଳେଇ ପେଟ ଭରି ଖୁଏଇଲେ। ମାଉସୀ ତାଙ୍କର ମଗର ମୁହିଁ ପିତଳ ପାନ ଡ଼ବାରୁ ପାନ ଭାଙ୍ଗିଲେ। ଶହକେ ସୁପାରି, ହଜାର୍‌କେ ପାନ।ତାଙ୍କ ବେଲାରି ପାନରୁ ଖିଲେ ଖାଇବାକୁ ଯାଚିଲେ। ମୁଁ ନାଇଁ କଲି। ପାନ ବିଡ଼ି ଗୁଡ଼ାଖୁ ଗଞ୍ଜେଇକୁ ଅମଳ ନକରି ଠିକ୍ କରିଛୁ। ହେଲେ  ପାନରେ ଦୋଷ ନାହିଁ। ମୁଖ ଶୁଦ୍ଧିଏ। ଦିଅଁଙ୍କ ଭୋଗ। କଥା ରଖି ଖିଲେ ଖାଇ ଦେଲିଯେ କଳ କାଟିଲା।

ଖିଆ ପିଆ ପରେ ଢ଼ବା ଘରେ ଆରାମ କଲି। ଉପର ଓଳି ଯିବାକୁ ଅଳି କଲି। ହଇରେ ତୋ' ମାଉସୀ ମରିଗଲା ଯେ ସକାଳେ ଆସି ସଞ୍ଜକୁ ବାହୁଡ଼ି ଯିବୁ? ଏମିତି ଧମକେଇଲେ ଯେ ଯିବି କଣ ଚୁନି ରହିଲି।

ସଞ୍ଜ ନ ହେଉଣୁ ଚୂଡ଼ା ଆଉ ଗୋରସର ଖିରି ନଡ଼ିଆ କୁରା ପଡ଼ିଛି। କର୍ପୂର ବାସନା ଆସୁଛି। ସକାଳର ଖିଆ ହଜମ ହୋଇନି, ତା'ଉପରେ ଏସବୁ। ଆମ ଭାଗ୍ୟରେ ଏସବୁ କାହିଁ ମାଉସୀ? ତଲାବିରା ଚୁରାଗୁରର ନାଁ ଅଛି। ସଞ୍ଜକୁ ମୁଗମଡ଼ା କରିଥାଏ ମାଉସୀ। ଖିରିସା ପୁର। ଘିଅରେ ଛଣା। ମାଉସୀଙ୍କ ଚରଚା, ଠାରୁ ଆଦର ଶରଧା ଆହୁରି ମିଠା। ବଢ଼ିଲା ନଈ ଭଳି ସଦା ସ୍ନେହ ଛଳଛଳ। ଅନ୍ୟକୁ ଆପଣାର କରିବାର କଳା ମାଉସୀକୁ ଏକା ଜଣା। ମାଉସୀଙ୍କ ସ୍ନେହର ଋଣ ସୁଝିବାକୁ ଠାକୁରେ ସଦା ଦଣ୍ଡ ଦେଉଥାନ୍ତୁ। ମୋ ମାଉସୀଙ୍କ ଭଳି ରଙ୍କୁଣୀ ମଣିଷ ଆଜି କାହିଁ?



## ୨୯.   ସତିଆ ମା'ର ଦୁଲା

।।ମଙ୍ଗଳଂ ମଧୁସୂଦନଂ  ମଙ୍ଗଳଂ ଗରୁଡ଼ଧ୍ୱଜଃ।।

ଉଲୁ ଉଲୁ, ଉଲୁ ଉଲୁ। ପଂଝାଏ ମାଇକିନା ହୁଳହୁଳିଟାଏ ଦେଲେ। ଆରେ ଶଙ୍ଖୁଆ ଶଙ୍ଖ ଫୁକ୍‌ରେ। ଶଙ୍ଖ ଫୁକ୍।

ବଜା ବଜ, ମୁହୁରି ଫୁଁକ୍। ନାର ଘିଡ଼ି ଘିଡ଼ି, ନାର ଘିଡ଼ି ଘିଡ଼ି ନାର।

ଝିଅ ଘର କରି ଖାଉ। ନାଇଁ କାଁଦରେ ମା' ପଏନକାନ। ନାଇଁ କାନ୍ଦ।

ପରର ପୁଅକୁ ପରର ଝିଅ। ସଂସାରର ଖେଳ ଇଏ। ଅବିହାଡ଼ୀ ଝିଅମାନେ ଘେରିଗଲେ ଦୁଲାର ଚଉକଟି। ସେମାନଙ୍କ ଦାବି ସାଙ୍ଗଛଡ଼ାନି। ବର ପକ୍ଷକୁ କିଛି ଦେବାକୁ ହୁଏ। ଆରେ ଭରିଆମାନେ ବୁହ; ଭାରବୁହ, ଆଗକୁ ଆଗକୁ ବଢ଼। ଛୁଆପିଲା ମାଇକିନା ମରଦ। ଦେଖଣାହାରିଏ ବିଦା କରିବାକୁ ଗାଲସେକି ବିଦା କଲେ। ବୁଢ଼ା

ବୁଢ଼ୀମାନେ କହିଲେ "ଆଲୋ ଦୁଲାରୀ ପହିଲେ ଡେବିରି ଗୋଡ଼ ଦୁଲାରେ ଥୋ। ଭୁଜୁନି ଗୋଡ଼ ଥୋ' ନାଇଁ। କାଚ଼ ସିନ୍ଦୂର ବଜର ହେଉ। ଅହି ସୁଲକ୍ଷଣୀ ହ'। ଦୁଲା ବୁହରେ ପିଲେ। ଦୁଲିହୁଲି। ଉଲୁଉଲୁ ଉଲୁଉଲୁ ମହୁରୀର ସେଇ ସ୍ୱର ରେ ଗୀତ ଓ ଲୟ ଥିଲା

॥ ଆମ ପତର କହାଳିଆ କି ଜାମ ପତର କାହାଳିଆ

ବଢ଼େଇ ଉଢ଼େଇ ରଖିଥିଲୁଁ କିଏ ନେଉଅଛି ମାହାଳିଆ ହୋ॥

ବାପ ମା ଆଖି ଛଳ ଛଳ। ଫି' ବରଷ ଦଶ ବାରଟା ଝିଅ ବିଦାହେବେ। ଦଶ ବାର ବୋହୂ ଗାଁକୁ ଆସିବେ। ଭୋଜିଭାତ, ବନ୍ଧୁ ଚର୍ଚ୍ଚା ଦିଆ ନିଆରେ ନାନା ରୁଚି, ନାନା ପରିବର୍ତ୍ତନ ହେଲାଣି। ହେଲେ ସତିଆ ମାର ଦୁଲାଟି ଯେମିତି କି ସେମିତି।

ଏହି ଦୁଲାରେ ବସି ବାଳିଆ ଗୌନ୍ତିଆ ଓ ସୁଗ୍ରୀ ଗୌନ୍ତିଆଙ୍କ ଭାରିଜାମାନେ ବୋହୂ ହୋଇ ଆସିଥିଲେ। ତାଙ୍କ ଚାରି ପୁଅର ଚାରିବହୁ ଏହି ଦୁଲାରେ ବସି ଆସିଥିଲେ। ସେମାନେ ସବୁ ଗଲେଣି ଦେ'ହୁମ ହେଲେଣି। ଏ ଗାଁର ନାତୁଣୀ ବୋହୂ କେତେ ଯେ ପଣ ନାତୁଣୀ ବୋହୂ ଏ ଦୁଲାରେ ବସି ଶାଶୁଘର ଆସିଛନ୍ତି। ତାର ହିସାବ ରଖିବ କଏ? ଗାଁର ଭୀମବୁଢ଼ା ଗ୍ରାମ ଦେବତା ଓ ଜୁନା ବନ୍ଧର ଯେମତି ନାଁ ଅଛି। ସତିଆ ମାଁର ଦୁଲାର ସେମିତି ଗୋଟିଏ ନାଆଁ ଅଛି। ଗୌରବ ଅଛି। ଟେକ ଅଛି। ସତିଆ ମା' ଦୁଲାରେ ଯେ ବୋହୂ ହୋଇଆସେ। ତାର ବିଧବା ଯୋଗ ନଥାଏ। ଅଳିତା ସିନ୍ଦୂର ଦାଉ ଦାଉ ହୋଇ ଝଟକୁଥାଏ। ଘଇତା ଆଗରେ ମଶାଣିକୁ ଯାଏ। ସେଇଥି ପାଇଁ ଝିଅ ପଠିଆଣି ବେଳେ ସତିଆ ମା ଦୁଲାର ଫୁରୁସତ ନାଇଁ। ଏଇ ଆଖପାଖ ଖଣ୍ଡ ମଣ୍ଡଳରେ ସତିଆ ମାଁ ଦୁଲାର କଥା କିଏ ନଜାଣେ?

ସତିଆ ମାର ଗୋଟାଏ ଅବିଗୁଣ ଅଛି। ଥରୁଟିଏ ଲଗ୍ନରେ ଦି'ଟି ବାହାଘର ପଡ଼ିଲା ଦି'ଘରଯାକ ଥିଲାବାଲା। ଏକଶୀ ବାଇଶୀ। ଆଖ ପାଖରେ ଓଜନ ଅଛି। ଧରାଧରି, ଧମକା ଧମକି ବାହାର ଭିତରର କେତେ ଚାପ ସତିଆ ମା' ଉପରକୁ ଆସିଲା। ହେଲେ କଣ ହେବ? ସତିଆ ମା' କଥାରେ ଅଟଳ। ତାର ସେ ଗୋଟିଏ କଥା। ଯାହାକୁ ଆଗ କଥା ଦେଇଛି ସେ ନବ ତାର ଦୁଲା। ଦୁଲାଟିକୁ ଯଦି ନିହାତି ଦରକାର ମନେ କରନ୍ତି ଅପର ପକ୍ଷ ତେବେ ସେମାନେ ଲଗ୍ନ ବଦଳାନ୍ତୁ। ପଇସା ଯଚା ହେଲା। ବାହା ରୁଷାଣି ହେଲା, ବାଣ ଫୁଟିଲା। ପଡ଼ା ଗର୍ଜିଉଠିଲା। ସତିଆ ମା' ହାଙ୍କିଲା ହଇରେ, ହଇରେ ହାଟୁଆ ତଳେଇତ, କହାକୁ ପଇସା ଦେଖେଉଛୁ ଯେ। ରଖିଥା ତୋ' ପଇସା। ମୁଁ ଗରୀବ ହୋଇପାରେଁ, ମୋ ଦୁଲାକୁ ବଜାର ଭାଉରେ ଭଡ଼ାଟିଆ କରିଦେବୁ? ଭାରି ଦେନା ବାଲା ତୁ। ତୋ' ମାଇପୋକୁ ତୋ ଝିଅକୁ ଭଡ଼ା ଦେଇ ପାରିବୁକିରେ? ଏ ଦୁଲା ହୁହେଁ ମୋ ଝିଅ। ମୋ ଘରର ମର୍ଯ୍ୟାଦା, ବୋହୂ। ଗାଁର ଶୀରି। ଏ ଦୁଲାକୁ ଭଡ଼ା ଦେଇ ପେଟ ପୋଷିବି ମୁଁ? ଧିକ୍ ସେ ପେଟ ପୋଷାକୁ, ଧିକ୍ ସେ ରୋଜଗାରକୁ? ସେମିତି ପଇସାକୁ

ଥୁ'। ଦେଖ କହି ଦେଉଛି, ମୋ ଆଗରେ ଆଉ କେବେ ପଇସା ପଇସା ନା ଧରିବୁନି। ଜାଣିଥା ତୋ ଜିଭ ଉପାଡ଼ି ଦେବି।"

ଜାଣିଛୁ ମୁଁ ସତିଆ ମା'ଟି!!

ସତିଆ ମା ଭାରି ଖରକହି। ମୁହଁଟି ଟାଣ ଭିତରଟା ଏକବାରେ ନରମ। ଗୋଟାପଣେ ନଡ଼ିଆ ଟିଏ। ବାହାରକୁ କଟା ସରସର। ହାଡୁଆ ହାଡୁଆ। ଭିତରେ ପାଣି ଖଳଖଳ, ସରସିଆ। କହିବତ ମୁହଁ ଦେଖିବ ନାହିଁ। ପରଝି ଦେବ ଭଲକରି। ଯଦି ବୁଝିଛି ଜୀବନ ଦେଇଦେବ। ଗଜା ବୟସରେ ଯମର ମାଡ଼ ସହିଛି। ଆଉ କଉ ମାଡ଼କୁ ଡ଼ର ଯେ! କିମିତି ଚଳୁଛି। କିମିତି ଖାଉଛି? କେହି ଜାଣନ୍ତିନି। ଧାର ଉଧାର ଜାତକରେ ନାହିଁ। ଥିବତ ଖାଇବ, ନଥିଲେ ପେଟରେ ଓଦା କନା ଦେଇ ରହିବ।

ସତିଆ ମା' ଦୁଲା ଏ ଆଖପାଖ ଖଣ୍ଡ ମଣ୍ଡଳରେ ବେଶ ଜଣାଶୁଣା। ଶିଶୁ କାଠରେ ତିଆରି। ଚାରୋଟି ମଗର ମୁହୀ ଖୁରା, ଚାରିଫୁଟ୍ ଲମ୍ବ ଓ ଅଢ଼େଇ ଫୁଟ୍ ଓସାର। କୁନ୍ଦିଲା କୁନ୍ଦିଲା କାଠର ଖୁରା। ଜମି ଦାରିଆ ଗଢ଼ଣ। ବହୁକାଳରୁ ବହୁଥର ବ୍ୟବହୃତ ହୋଇ ଏବେ ମଳିନ ଓ ଜୀର୍ଣ୍ଣ।। ସମ୍ବଲପୁରୀ ସପଟାପର କନାରେ ସଜା ହୋଇଛି। ଏ ଜିପ କାର ଯୁଗରେ ବି ଦୁଲାର ଆଭିଜାତ୍ୟ ରହିଛି। ଏ ଦୁଲାରେ ଝିଅ ଗଲେକି ବୋହୂ ଆସିଲେ ଲୋକେ ବଡ଼ଲୋକି ବୋଲି ଗର୍ବ କରୁଥିଲେ। ଖାନ୍‌ଦାନି ଅନୁଭବ କରୁଥିଲେ।

ସତିଆ ମା' ଦୁଲାସହ ନାନା ଘଟଣା, ଦୁର୍ଘଟଣା, ଜଡ଼ିତ। ଏକ ଇତିହାସ ଅଛି। ଲୋକ ମୁହଁରେ ନାନା ଗପ, କିଏ କେତେ ବଖାଣେ ବନେଇ ବୁନେଇ ଫୁଲେଇ ଫେଣେଇ। ଗାଧୁଆ ତୁଠରେ ମାଇପିଙ୍କ ମେଳରେ ନାନା ଚରଚା ଚାଲେ। ସବୁ ଜିନିଷ ପୁରୁଣା ହେଲେ ତା ଭାଉ ବଢ଼ିଯାଏ? ଇତିହାସ ତା ପାଇଁ ଜାଗା ସାଇତି ରଖେ।

ଆଉ ଥରକର କଥା। ଚିତ୍ର ନିର୍ମାତା ଏକ ପୁରୁଣା ପାଲିଙ୍କି ଲୋଡ଼ିଲେ। ପୁରୁଣା ଢ଼ଙ୍ଗରେ ଦୁଲାଟିଏ ତିଆରି କରି ପାରିଥାନ୍ତେ। କେହିଜଣେ ସତିଆ ମା' ଦୁଲାର ସୂଚନା ଦେଲା। ଭଦ୍ରଲୋକ ସତିଆ ମା ପାଖରେ ହାଜର। ସତିଆ ମା ଦେଖା ଦେଲେନି। କବାଟ ଆଡୁଆଳରେ କଥା ଭାଷା ହେଲେ। ଦୁଲାଟିକୁ ନିଜ ଆଖିରେ ଦେଖି ତାଙ୍କ ଦରକାରକୁ ଖାପ ଖାଇବ ଜାଣିଲେ। ସତିଆ ମାଙ୍କ ଅବସ୍ଥା ଦେଖି ଦୁଲାଟିକୁ କିଣିବାକୁ ଚାହିଁଲେ। ସତିଆ ମା' ଯାହାସବୁ କହିଲେ ତାର ମର୍ମ ହେଲା। ସତିଆ ମା ଗରିବ ସତ। ବେପାରୀ ନୁହେଁ ତା ଦୁଲାଟି ତାର ଝିଅ। ନିର୍ଜିବ କାଠ, କନାରେ ତିଆରି ସିନା ତାର ଜୀବନ ଅଛି। ଗାଁ ଘରର ଗୋଟାଏ ଟେକ। ଚଳଣିର ବାହକ। ଚେତନାର ରୂପ ରୂପଟିଏ। ବିଳାସର ଭାଜନଟିଏ। କିଛି ସୁଖ ପାଇଁ ଗୋଟାଏ ବିଶ୍ୱାସର ମୂଲ୍ୟବୋଧର ତଣ୍ଟିଚିପି ପାରିବି ନାହିଁ ମୁଁ। ପୁରୁଣା ଲୋକର ଏ ପବିତ୍ର ଚିଜକୁ ପଣ୍ୟ କରିବି କିପରି? ଚିତ୍ର ନିର୍ମାତାଙ୍କ ଅନ୍ତରରେ ଏକ ନବୀନ ଶ୍ରଦ୍ଧାର ଉତ୍ତେଜନା ଠୁଳ ହେଲା ଯେମିତି ସତିଆ ମା'ଠୁ ବିଦାୟ

ନେବା ବେଳେ ସେ ଅନୁଭବ କରୁଥିଲେ ଏବେବି ଏ ମାଟିରେ ଖାଣ୍ଟି ମଣିଷ ଅଛନ୍ତି।

ସତିଆ ମା' ନାହାନ୍ତି। ତାଙ୍କ ଦୁଲା ବି ନାହିଁ। ହେଲେ ବି ସତିଆ ମା' ଦୁଲାର ଟେକେପଣ ଏବେ ପିତାପାଲି ଗାଁରେ ଆଲୋଚିତ ହୁଏ। ଝିଅ ବିଦାବେଳେ ବୁଢ଼ୀ ବୁଢ଼ୀ ମାନେ ହୁଳହୁଳି ଦେଇ କହନ୍ତି ସତିଆ ମା' ଦୁଲାରେ ଯାଲୋ ଦୁଲାରୀ। ବଜର ହେଉ ତୋ' କାଚ। ଅଳିତା ସିନ୍ଦୁର ଝଟକୁ ଥାଉଲୋ। ପିନ୍ଧି ଥା' ସଧବାର ସାଜୋ।



# ୩୦. ସାନ ତିଆଡ଼ି

ରାମ ନାମ ସତ୍ୟହେ ହରିର ନାମ ସତ୍ୟହେ॥

ରାମ ନାମ ସତ୍ୟ ହେ ହରିର ନାମ ସତ୍ୟ ହେ॥

ରାମ ନାମ ସତ୍ୟ ହେ

ହରିର ନାମ ସତ୍ୟ ହେ॥ କେହି କହିଲେନ ନି। ଗାଁ ଦାଣ୍ଡରେ ଖଇ କଉଡ଼ି ବୁଣା ହେଲାନାହିଁ। ପୁଅ, ଝିଅ, ନାତି, ନାତୁଣୀ ଭିତରୁ କେହି ଭାଗବତରୁ ଅଧିଏ ଗାଇଲେନି। ଗଙ୍ଗାଜଳ ନ'ହେଲା ନାଇଁ ତୁଳସୀ ପାଣି ମୁନ୍ଦିଏ ମୁହଁରେ ପକେଇ ଥାନ୍ତେ? ଦୀପଟିଏ ଜାଳି ଦିଅଁ ଦେବତାଙ୍କୁ ଯୁହାରି ଥାନ୍ତେ? ଯାହି ତାହି କରି ମଢ଼ାଟାକୁ ଉଠାଗଲା। କଷ୍ଟେମଷ୍ଟେ ଦି ପୁଅ କାଖେଇ ନେଲେ। ଭାଇ ବିରାଦର ଭିତରୁ କେହି ବି ସାଙ୍ଗରେ ଗଲେ ନାହିଁ। କଉଠି ଥିଲା ବଇଁଶିଟା ମଢ଼ା ପଛେ ପଛେ ଗଲା। ଗାଇ ପଛେ ପଛେ ବାଛୁରୀ ଯିବାପରି। ସାଢ଼େ ତିନି ହାତ ଲମ୍ବ ଓ ହାତେ ଓସାରର ଗାତ ଭିତରେ ସାନ ତିଆଡ଼ି ସବୁଦିନ ପାଇଁ ଶୋଇଗଲେ। ଗାଁ ମଶାଣିର ମା ମାଟି କାହାକୁ କେବେ ଅନାଦର କରିଛି? ମରଣ କାଳେ ପ୍ରାଣୀର ଭଲ ମନ୍ଦ ଜାଣି ପାରନ୍ତି ପରା ଏ ଲୋକେ। ସଜ କିରିଆ କରୁଛି କିଏ? ନ'ଏ ବସି ଦଶରେ ଖପରା ପିଟିଦେଲା ବଡ଼ପୁଅ। ମିରିକିତିଆ ଅଶୁଦ୍ଧିରୁ ନିଖାର ହେଲା ପରିବାରଟି। ଯେଣତେଣ ପ୍ରକାରେଣ କୁଆଁଇ ଭଣଜାରେ ଖିଆପିଆ ଦିଆନିଆ ପଟିଗଲା। କଣ କରିଥିଲା କେଜାଣି ସେ କୁଆଡ଼େ ପ୍ରେତ ବି ହୋଇ ପାରିଲାନି। ବ୍ରହ୍ମଭୂତ ହୋଇ ମଞ୍ଚରେ ଏକପାଦ ତ ଆର ପାଦଟି ସ୍ୱର୍ଗରେ ଥାପିବି ଥାପିବି ହେଉଛି ପରା। ଲୋକ ମଲେ ସେ କୁଆଡ଼େ ପ୍ରେତ ପାଲଟିଯାଏ। ପ୍ରେତର ସ୍ୱରୂପଟି ବଡ଼ ବିଚିତ୍ର।

ଛୁଞ୍ଚି ପରି ମୁହଁ। ପାଣି ଟାଙ୍କି ପରି ପେଟ। ଭରୁଥା କେମିତି ଭରିବୁ? ସେଇତି ପାଇଁ ଆକାଶ ଘଟରୁ ଅହରହ ଥପଥପ କ୍ଷୀର ନୀର ପଡୁଥାଏ ପ୍ରେତ ମୁହଁରେ। ତିନୋଟି କେନ୍ଦୁ କାଠର ବଇଠିରେ ଥାଏ କ୍ଷୀର ନୀର ଘଟ। ଘର ଭିତରେ ଜଳୁଥାଏ ଅଖଣ୍ଡ ଦୀପ। ତରଳ ପାନୀୟ ସବୁ ସଜଡା ହୁଏ ପ୍ରେତ ପାଇଁ। ଭଙ୍ଗା ଖପରାର ଦରସିଝା ଅନ୍ନ ଭୁଞ୍ଜେ ପ୍ରେତ ମଶାଣିର ନିର୍ଜନତାରେ, ନିରୋଳାରେ। କୁଆଡେ ବା କୁଆଡ଼େ ଥିବା ତତଲା ସେ ବୈତରଣୀ

ନଇ ପାରିହେଲେ ଯାଇ ପ୍ରେତରୁ ମୁକ୍ତି। ଗାଈ ଲାଞ୍ଜରେ ପାରି ହେବାକୁ ହୁଏ। ସେଥିପାଇଁ ଗୋଦାନ। ତତଲା ବାଲିରେ ଚାଲିବାକୁ ପଣ୍ଡେଇ। ମହାଖରା, ମହାବରଷା, ମହାଶୀତରୁ ରକ୍ଷା ପାଇବାକୁ ଛତାଦାନ କରେ ପୁଅ। ପଞ୍ଚଦାନ, ଦଶଦାନ, ଷୋହଳ ପାଥେୟ ଚଉଷଠି ଭୁରି ଭୋଜନକୁ ଯୋଗ କାହିଁ ସାନ ଟିଆଡ଼ିର? ଠ' ଠ' କରି ଟିଆଡ଼ିର ମିରିକିଟିଆ ସମାପନ କଲେ ପରିବାରର ଲୋକେ। ସର୍ବରସ ପ୍ରତିଷ୍ଠେ ମା'ତୁ ଜନମ ଦେଇଥିଲୁ। ତୁହି କୋଳେଇ ନେଲୁ ତୋର ସାନ ଟିଆଡ଼ିକୁ। ଲୋକେ କହିଲେ ବିଚରା ଚାଲିଗଲା। ଗୋଟାଏ ଯୁଗ ସରିଗଲା। ବିଶ୍ୱାସଟିଏ ହଜିଗଲା। ମୂଲ୍ୟବୋଧଟିଏ ଖାଲି ରହିଗଲା, ଘରର କି ବାହାରର କେହି ଲୁହ ଟୋପାଏ ବି ଢ଼ାଳିଲେନି। ଗାଧୁଆ ଘାଟରେ କଲାଝିମ ପାଣିକୁ ଦୁଇଭାଗ କରି ମଇଁଷି ବୁଡ଼ଟିଏ ପକଉ ପକଉ ସଟିଆ ମା କହିଲା, ମୁଠା ହାଟଟାକୁ ତ ଜୀବନ ସାରା ମେଲା କଲା ନାହିଁ। କଣ ନେଇ କରିଗଲା? ଘରେ ଧନଦରବ ଠେସି ଦେଇଛି। ଓଳିଆ ଓଳିଆ ଧାନ ସଢୁଛି ବାରି ପଟରେ। କେବେ କାହାକୁ ପଣେ ଦେଇଛି? ମଲାବେଳକୁ ମୁହଁରେ ମୁଷାମାଟି ବି ପଡ଼ିଲାନି। ଦେଇଥିଲେ ପାଇ। ପଡ଼ିଆ ଭୁଇଁରେ କଉ ଗୋଧନ ଚରଇ ଯେ? ଭାନି ବୁଢ଼ୀ ସଟିଆ ମା' ମୁହଁରୁ କଥା ଛଡ଼େଇ ଆଣି ବଖାଣିଲା। ପାର ହୋଇଗଲା ବିଚରା। କେତେଦିନ ଆଉ ଜୀଇଁଥାନ୍ତା। ଚାରିକୋଡ଼ି କି ପାଞ୍ଚକୋଡ଼ି ଖରା ବରଷା ସହିଲା। ଥିଲା ଥିଲା ରଟକରି ମଲା। ଦିନେବି ଘାଣ୍ଟି ସାଉଁଟି ହେଇନାହିଁ। ଏମିତି ମରଣ ସାଧୁ ମହାତ୍ମା ମାନଙ୍କୁ ବି ସହଜରେ ମିଳେ ନାହିଁ। ଗରିଆକୁ ଗବଗବ ପାଣିରେ ବୁଡ଼ଉ ବୁଡ଼ଉ ସଟିଆ ମା ଭାନି କଥା ଉପରେ ମାଡ଼ିବସି କହିଲା "ମରନ୍ତା ନାଇଁ? ଦେହରୁ ଜରଟିକେ ଦେଇଥାନ୍ତା କେବେ କାହକୁ ଭଲା? ଯିବୁଖାଲି, ଶୁଖା ରହିଯିବ ନଈବାଲି। ଶୁନ୍ୟକୁ ଶୂନ୍ୟ ଯିବ ମିଶି। ଗୋପୀ ପଡ଼ିବେ ତଳେ ଖସି। ଜୀଇଁଥିବା ଯାଏ ଦେଇଥା କି ଖାଇଥା। ଆଖି ବୁଜିଲେ ସବୁଶେଷ। ପୁଅ ହେଉକି ମାଇପୋ ହେଉ ଯିଏ ଖାଇଲେ, ଠେଣ୍ଟୁ। କାହାରି ମୁହଁର ଆହା ପଦୁଟିଏ ପାଇଲା? କୁଟୁମ୍ବର ଲୋକେ ହାଏ କଲୁଁ ବୋଲି କହିଲେ। ଆଉମାନେ କାହିଁକି ବା ସକସକ ହୁଅନ୍ତେ? ଧନ୍ୟ ଧନ୍ୟରେ ସାନ ଟିଆଡ଼ି। କଉ ଲଗନରେ ତୋ ବାପ ମାଆ ତୋତେ ଜନମ କରିଥିଲେ କେଜାଣି? ଦେ'ପଦଯିକୁ ବି ପାଶୋରି ଦେଲୁ। ପଏନକାନ ଦରଚିପା ପଣତ କାନିଟାକୁ ମେଲାଛାତି ଉପରେ ଗୁରୋଉ ଗୁରୋଉ କହିଲା "ଆଲୋ କଉ ଧରମ କରମ କରିଥିଲା କେଜାଣି ଏମିତିକା ମହମହ ପଞ୍ଚକରେ ମରନ୍ତା? ମାସ ଭିତରେ ପୁଣି କାରତିକ ମାସ। କେତେ ପୁଣ୍ୟ କଲେ ଯାଇ ଗଙ୍ଗାପ୍ରାପ୍ତି।

ସାନ ଟିଆଡ଼ି ବୁଢ଼ା ମଲାବୋଲି ଗଛର ପତରଟିଏ ବି ହଲିଲାନି। କାହା ମୁହଁରୁ ଆହା ପଦଟିଏ ବାହାରିଥାନ୍ତା ଭଲା? ଛତିଶ ପାଟକର ଏଡ଼େ ବଡ଼ ରାହୁ ପରି ଗାଁ ରେ କେହିହେଲେ ଚୁଚୁଟିଏ କରିଥାନ୍ତେ। ତମକୁ ମିଛ, ଆମକୁ ସତ ଦେଖ ଦେଖ ବୋଇଲା

ବେଳକୁ ବଇଁଶୀ ଜୁନ୍‌ହା ବନ୍ଧର ଏକଲା ଘାଟର ଅଣ୍ଟାକ ପାଣିରେ ଠିଆ ହୋଇ କଣ ସବୁ ଭୁଟୁରୁ ଭୁଟୁର ହେଉଛି। ସାନ ତିଆଡ଼ି କକା କଉଠିକି ଗଲେ ଯେ ଆଉ ଆଇଲନି। କଉ ଦୂରକୁ? ଗଛପରି ଠିଆ ହୋଇଥିବା ବିଲିବିଲି ଅନ୍ଧାରକୁ। ନାମ ନଜଣା ମହାଶୀତ, ମହାଖରା, ମହାକ୍ଷୁଧା, ମହାପିପାସାକୁ ଚାଲିଗଲା ଜଳୁକୁଳୁ ଅନ୍ଧାରିଆ ଅନ୍ଧାରିଆ ଦଦରା କାନ୍ଥରେ ତମର ଝୁଲୁଥିଲା ନା ସେଇ ଫଟାଟା ଯଉଥିରେ ଦାଢୁଆ ଦାଢୁଆ କରତରେ କରତୁଥିଲେ ଦିଜଣ ଭେଣ୍ଡିଆ କାହାକୁ କେଜାଣି? ଇମାଃ ଇମାଃ ଟକମକ ଫୁଟୁଥିବା ତେଲ କଢ଼େଇରେ ବରା ଛାଣିଲା ପରି ଛାଣି ପକଉଥିଲେ ଲୋକଟାକୁ ଉଲୁଟେଇ ପୁଲୁଟେଇ। ମୋତେ ଲାଗିଲା କାଳେ ତମକୁ ଏପରି କଷ୍ଟ ଦେଉଛନ୍ତି ଏମାନେ? ନିରେଖି ଦେଖିଲି ତମେ ନୁହଁ। ଆନ କେଉଁଜନ। ଏ ଦଣ୍ଡର ତୁମେ ଭାଜନ ନୁହଁ, କକା। ମୁଁ ଜାଣେ ଆଉ କେହି ଜାଣୁ କି ନଜାଣୁ ଅନ୍ୟର କଷ୍ଟ ଆଉ କାହାକୁ ବାଧିବ କକା? ଭଲମନ୍ଦରେ ପଛ ପଟେ ଆଉ ଉଭା ହେବ କିଏ? କା' ପୁଅ ପାଠ ପଢ଼ି ପାରୁନି ଲୁଚେଇ ତା ପାଖକୁ ପାଠ ଖରଚ ପଠେଇବ କିଏ? ବର ବାହୁଡ଼ି ଯାଉଛି। ମଙ୍ଗୁଳା ଝିଅର ବାପ ପାଖକୁ କେତେ କଣ ପଠେଇ ଗାଁର ଇଜ୍ଜତ ରଖିବ କିଏ? ହେଲା ନ ହେଲାବେଳକୁ ଅଣେ ପଣେ ଦବାକୁ ଆଉ ଅଛି କିଏ? ତମର ପଇସାରେ ଏ କଙ୍ଗାଳ ବଇଁଶୀ ହୋଇଗଲା ଧର୍ମଦାତା। ଆଉ ତମେ ସମସ୍ତଙ୍କ ମରମ ଛୁଆଁ ଦରଜକୁ ବୁଝି ହୋଇଗଲ କଞ୍ଜୁସ। ତମେ ଗଲା ଦିନୁ ସାନ ତିଆଡ଼ି କକା ମୋତେ ବଡ଼ ନିସାଖା ଲାଗୁଛି ହେ। ମୋ ତମାମ ଦେହରୁ କିଏ ଯେମିତି ଶକତି ତକ ଶୋଷି ଶୋଷି ନେଇ ଯାଉଛି। ସବୁଦିନ ଭଳି ସତିଆ ମା' ରାନ୍ଧୁଣୀ ଗାଧୁଆ ବେଳକୁ ଘାଟକୁ ଆଇଲା। ଫଟକା ଫୁଟିଲା ପରି ଡ଼୍ରୋ କରି କହି ପକାଇଲା। "ହଇରେ ବଇଁଶୀ କା' ପାଇଁ ଅଣ୍ଟାକ ପାଣିରେ ତର୍ପଣ କରୁଛୁ? କାଖରୁ ଗରିଆ ଗୋଟାକ ରଖୁ ରଖୁ କହିଲା, ତୋରତ ବାପ ବଞ୍ଚିଛି। ବାପ ଥିଲା ପୁଅର ଏ କି ରକମର ତର୍ପଣରେ?" "ଆଲୋ ସାନ ତିଆଡ଼ି କକା ପାଇଁ ଆଞ୍ଜୁଳାଏ ପାଣି ଟେକି ଦଉଛି", ବଇଁଶୀ ବଖାଣିଲା।

ସାନ ତିଆଡ଼ି ପାଇଁ! ସତିଆ ମା' ଆଚମ୍ବିତ ହେଲା। ମଲା ମଲା ସାନ ତିଆଡ଼ି ପାଇଁ ଏତେ ଭକତି, ଏତେ ଦରଦ ତୋର? ତୁ ଜାଣିନୁ ଲୋ ଆଇ, ସାନ ତିଆଡ଼ି କକା ଦେବତାଟିଏ। ଏବର ଲୋକେ କେମିତି ବୁଝି ପାରିବେ ତାଙ୍କୁ ଏ ଯୁଗରେ? ଯେଉଁ ଯୁଗରେ ପାଞ୍ଚ ଟଙ୍କାର ଉପକାର ପାଇଁ ପଚାଶ ଟଙ୍କାର ଫଟୋ ଉଠାହୁଏ। ନିଜେ ନିଜର ପୁରୁଷାର୍ଥ ବଖାଣୁ ଥିବା ଯୁଗରେ ନିଜ ପାଇଁ ନିଜେ ଢୋଲ ପିଟୁଥିବା ଯୁଗରେ ସାନ ତିଆଡ଼ି କକା ପରି ମହାତ୍ମାର ଜାଗା କାହିଁ?

ସାନ ତିଆଡ଼ି ବିଚରା ଚାହିଁନଥିଲା ନିଜର ବାନା ଉଡୁ। କକା ପରି କୁବେରଟିଏ ମୋ ପଛରେ ନଥିଲେ ମୁଁ କିଏ ଆଉ ଦାନ ଧରମ କିଏ? ସାନ ତିଆଡ଼ି କକା ଧରମରୁ

ପିତାପାଲି ଗାଁରୁ କେବେ କେହି ଗୋଡ଼ କାଢ଼ି ଅନ୍ୟ କା ଆଗରେ ହାତ ପାତି ନାହିଁ। ମନେପକା ତୋ ପରୁହାଁ ବୋହୂଟା ପିଲାଟି ହେବା ବେଳକୁ ତତେ ଯେଉଁ ପଇସା ଦେଇଥିଲି। ସେଇଟା କିଏ ଦେଇଥିଲା ଜାଣୁ?

"କିଏ?" ପ୍ରଶ୍ନ କଲା ସତିଆ ମା।

"ସାନ ତିଆଡ଼ି କକା" ତୁଠ ପଥର ଉପରେ ଲଥ କରି ବସି ପଡ଼ିଲା ସତିଆ ମା! କ'ଣ କହିଲୁ? କ'ଣ କହିଲୁରେ ବଇଁଶୀ, ଆଉ ଥରେ କହତ!॥



# ୩୧. ପାନ ପତରକୁ ଗୁଆ

ତମେ ସିନା ତମ ପୁଅକୁ ରଖିପାରିବ। ସେମାନେ ତାଙ୍କ ଝିଅକୁ ପାରିଲେ ତ। ଗାଁ ଛାଡ଼ିବା ଆଗରୁ କାମଟି ପଟେଇ ଦେବାକଥା। ପୁଅ ପଢୁଛି। ଉମର କେତେ? କୋଡ଼ିଏ ହେଉଚି। ଝିଅର ପନ୍ଦର ପୂରିନଥିବ ବୋଧହୁଏ? ଏବେଠୁ ବାହା କରିଦେଇ ପୁଅର ଜୀବନକୁ ନଷ୍ଟ କରିଦେବି କେମିତି? "ଆମ ବାହାବେଳେ ଆମେବିତ ସେଇ ବୟସର ଥିଲେ। ତମକୁ ଅଠର ତ ମୋତେ ସତର। ଆମ ବେଳର କଥା ଅଲଗା। ଆମ ବେଳେ ପୁଅ ଝିଅର ବାହାଘର ହଉନଥିଲା। ବାହାଘର ହେଉଥିଲା ଖାନଦାନିର, ବଂଶ ମର୍ଯ୍ୟାଦାର, ପରମ୍ପରାର, ବାପା, ମାଆ ମାନଙ୍କର ପାରିଲା ପଣର। ଯଥା ରାବଣସ୍ୟ ମନ୍ଦୋଦରୀ କି ନଳସ୍ୟ ଦମୟନ୍ତୀର ପ୍ରସଙ୍ଗ କାହିଁ ନଥିଲା। ବର କନିଆଁ କୁ ପଚାରେ କିଏ? ମୋତେ ଦେଖି ତୁମେ ବାହା ହୋଇଥିଲ ନା, ତୁମକୁ ଦେଖି ମୁଁ? କଣାକୁ କାଣୀ, କୁଜାକୁ କୁଜୀ ଯେମିତି ଖଞ୍ଜୁଥିଲା ଦଇବ। ବିଲେଇ ଆଖି ବୁଜି କ୍ଷୀର ପିଇବା ପରି ପୁଅ ଝିଅ ଆଖି ବୁଜି ମାନି ଯାଉଥିଲେ।

ଧାନ ଓଲିଆ ସହିତ ଓଲିଆର, ଚାଉଳପୁରା ସହିତ ଚାଉଳପୁରାର, ବିଲବାଡ଼ି ସହିତ ବିଲବାଡ଼ିର, ସାମନ୍ତ ପଣ ସହ ସାମନ୍ତପଣର ଗଉଁଟି ସହିତ ଗଉଁଟିର ବାହାଘର ହଉଥିଲା। କିଏ ନାଇଁ କରୁଛି ଯେ। ଆମ ବରଯାତ୍ରି ଦଳ ତମ ସେଠି ଏଠୁ ନେଇ ଭୋଜିଭାତ ଖାଇ ଆଆନ୍ତେ? କଉ କଥାରେ ଅମେଳ ହେଲା କେଜାଣି। ଶଶୁର କହିଲେ କଣନା ତୁମ କୁଦୋପାଲି ତିଆଡ଼ି ଘରର ଟୋପାଏ ପାଣି ଛୁଇଁବି ନାହିଁ। ପିତାପାଲି ଗଉଁଟିଆ ଘରର ଗୋଟାଏ ନାକଟେକ ଅଛିତ।

ଏଇଥିଲା ମୋ ବାପା ମାଙ୍କ ଭିତରେ କଥାକଟା କଟିର ଏକ ବାଂମୟ ରୂପ। ମୁଁ ଘରେ ନଥାଏ। ରହିଥାଏ ହଷ୍ଟେଲରେ। ମୋର ବଡ଼ ଭଉଣୀ ଘରୁ ବିଦା ହୋଇ ଯାଇ ସାରିଥାନ୍ତି। ସାନ ଭାଇଟି ସାନଥାଏ। ମୋ ବାପ ମାଙ୍କ ଭିତରେ ମୁଁ କେବେ କୌଣସି ରକମର ଅମେଳର ସୂଚନା ପାଇନଥିଲି। ଛୁଟିରେ ଆସି ଜାଣିଲି ସେ ଦୁହେଁ କିଛି ନା

କିଛି ଆଳ କରି ବରାବର ମୁହଁ ଫୁଲା ଫୁଲିରେ ଚ଼ଲୁଛନ୍ତି । କଥା କଟାକଟିରେ ଲାଗିଛନ୍ତି । ଗୋଟାଏ ରଗରଗ ଭାବ ଦିହିଙ୍କ ଭିତରେ ଜମି ଉଠିଛି । ମା' ଚୁପ୍‌ଚାପ ମଣିଷ । ବାପା ଭଟର ଭଟର ହେଲେବି ମାଙ୍କ ଉପରେ କେବେ ରାଗନ୍ତି ନାହିଁ । ସେ ଦୁହେଁ ରଷା ଫୁଲା ହେବାର ଅନ୍ତତଃ ଦେଖିନାହିଁ ।

ବାପା ଚାହୁଁଥିଲେ, ପୁଅ ପଢୁଛି । ଭଲ ପଢୁଛି ଯେତିକି ଦୂର ଯାଉଛି, ଯାଉ । ତାକୁ ମଝିରେ ଅଟକେଇ ଦେବା ବୁଡ଼ବକର କାମ ହେବ । ମା'ଙ୍କ ମତଲବ ତାଙ୍କ ବାପଘରେ କିଏ ଅଛି? ଦି ଭାଇରେ ଗୋଟିଏ ଝିଅ । ତିଆଡ଼ି ଘର ଝିଅ ବିଶ୍ୱାଳ ବଂଶକୁ ସୁଝେ । ମୋ ଆଈ ତିଆଡ଼ି ଘରର ଝିଅ, ମାବି । ବୋହୁଟି ତିଆଡ଼ି ଘରର ଝିଅ ହେଲେ ବି କ୍ଷତି କଣ? ବାପ ଘରର ଧନ ଦରବ ଆଉ କିଏ ନେବ କିଆଁ? ଭାଇର ଝିଅକୁ ବୋହୂ କରି ଆଣିଲେ ସବୁ ଅଡୁଆ ତୁଟିଯିବ । ଯଉଠୁ ହେଲେ ଆଣିବାକୁ ହେବ । ବାହା ହେବ । ବାହୁଅ ହେବନାଇଁ ପୁଅ । ଏଥିପାଇଁ ବାପମାଙ୍କ ଭିତରେ ଟଣା ଓଟରା ଲାଗିଥିଲା । ଶେଷରେ ବାପାଙ୍କର ନାଇଁ ନାଇଁକୁ ମାଙ୍କ ହଟା ଏମିତି ଦବାଇ ଦେଲା ଯେ ବାପା କିଛି ଉପାୟ ନପାଇ ଯୁକ୍ତି ବାଢ଼ି ବସିଲେ ଦକ୍ଷିଣେ ମାତୁଳ କନ୍ୟା ।

ଏବେ ବାପ ମା'ଚୁପ୍ । ମାଙ୍କ ଖୁସି, ବାରି ହେଉଥିଲା ତାଙ୍କ ଘର ସଜଡ଼ାରୁ । ନାକର ନଥ ମାଜିଲେ ଜାଣିବ ମାଇପିଙ୍କ ଖୁସି । ଘରର ନୂଆ ବୋହୂଟିଏ ଆଣିବାର ଶାଶୁର ସକସକ ଦେଖେ କିଏ? ଆମ ଗାଁ ଜାତି ପ୍ରଧାନ ଭଟର ବା' ସଦା କହେ ବୋହୂ ଆସିଲେ ରାହୁ ଆସେ । କିଏ ଗୀତରେ କହନ୍ତି, 'ସାବୁନି ଦିହକୁ ବାସନ୍ତି ପାଟ ଲୋ, ଭରା କଳସୀକୁ ବୋହୂ । ଘରକୁ ବୋହୂ ଆଣିବାରେ ବାପାମାଙ୍କର ସଉକ ଥାଏ । ଅନାଗତକୁ ସୁଆଗତ କରିବାର ଏ ବୁନିଆଦି ପରମ୍ପରାକୁ ନ ମାନିବ ବା କିଏ?

ପିତା ଶାସ୍ତ୍ରଂ । ବାପା ଚାହାନ୍ତି ପାଠ । ମାତା ବିତ୍ତଂ । ମାଆ ଲୋଡ଼ନ୍ତି ଧନ । କନ୍ୟା ବରୟତି ରୂପଂ । ଝିଅଟି ଚାହେଁ ବାଞ୍ଛିତ ପୁରୁଷଟି ରୂପବନ୍ତ ଥାଉ । ବର କାହିଁକି ଚାହିଁବ ନାଇଁ ତା ଭାରୀଯାଟି ରୂପବତୀ ଥାଉ । ମିଷ୍ଟାନଂ ଇତରେ ଜନାଃ । ବାକି ଲୋକେ ଚାହାନ୍ତି ଖିଆ ପିଆଟେ ହେଉ । ମିଠେଇ, ମାଲ୍‌ପୁଆର ମେହେଫିଲ୍ ମସ୍‌ଗୁଲ୍ ହେଉ । ଏଇ ହେଲା ବିବାହର ପାରମ୍ପରିକ ଦୃଷ୍ଟିକୋଣ । ଆଉ ଥୋକେ କହନ୍ତି ଜମିନ ଯୋରୁ ଆଉର ଜନାନା ଭାଗ୍ୟରେ ଥିଲେ ମିଳେ । ସୁନା ଓ କନ୍ୟା ସୁନା କପାଳର କଥା । ମୋ କପାଳରେ ଏଇ ତିନିଟା ଏକା ସାଥିରେ ଥିଲା । ଭାଗ୍ୟ ସଳଖ ଥିଲା ନା କିଏ ଜାଣେ?

ଖରାଛୁଟିରେ ଘରକୁ ଫେରୁଥାଏଁ । ଦମା ଖଡ଼ିଆ ଖଳା ପାଖରେ ଦେଖାହେଲା ଠସ୍‌କର ସହିତ । ଗାଁ ଚଉକିଆ ଠସ୍‌କର । ସାଙ୍ଗରେ କିଛିବାଟ ସାଙ୍ଗ ହୋଇ ଆଇଲୁ । କୁହ୍ନାବନ୍ଧ କଳାଜାମ ପାଣିରେ ଝଁପେଇ ହଉଁ ହଉଁ କହି ପକେଇଲା, ଏଥର 'ଷୁଲେହି ପାର୍ ମାଇଲୁ ଗା ପିଲା' । ତା କଥାର ଗହୀରକୁ ଛୁଇଁବି ଛୁଇଁବି ହେବା ବେଳକୁ ସତିଆକୁ

ଭେଟିଲି । ସେବି ଗାଧୋଇ ଆସୁଥିଲା! ମୋତେ ଦେଖି କହିଲା ଇଟା ଘନାଥି ପଡ଼ଲୁ ବଲୁତ, ପିଲା । ମୁଁ ଜମା ବୁଝି ପାରୁନଥାଏ । ଏମାନଙ୍କ ଏ ଲାକ୍ଷଣିକ ବ୍ୟଞ୍ଜନା । ଗାଁ ମୁଣ୍ଡକୁ ପହଞ୍ଚିବି କି ନ ପହଞ୍ଚିବି ହେବା ବେଳକୁ ଭଉଁରୀ ବୁଢ଼ୀ ହସି ଦେଇ କହିଲା, ଥିଲା ଥିଲା ତୋ'ର ବୁଆ ମାନୁ ବନେ ଟୁକେଲଟେ ଲକଠକାଲା, ବବା ।

ମୁଁ ବୁଝି ପାରୁ ନଥାଏଁ ଏମାନଙ୍କର କଥାର ମଞ୍ଜିଟି କଉଠି? ଘରେ ପହଞ୍ଚି ଦେଖିଲି ଘରଟିର ରୂପ ବଦଳି ଯାଇଛି । ମାଙ୍କର ଖୁସି ଆକାଶ ଛୁଇଁଛି । ବାପା ଅଥଚ ଖୁବ୍ ଶାନ୍ତ । ସମାହିତି ଜଣା ପଡୁଥାନ୍ତି । ତାଙ୍କ ପ୍ରଗଲ୍‌ଭତା, ଉଚ୍ଚାଟ ଭାବ ଆଗଭଳି ନାହିଁ । ଝଡ଼ ପରର ଆକାଶ ଭଳି  ମଉନ ଓ ଅମଳୀନ । ଖୁସିର ଏକ ନୀରିହ ପ୍ରଲେପ ଆମ ବିପୁଳ ପରିବେଶକୁ ମହମହ କରି ସାରିଥାଏ । ମା' କହିଲେ ଶୁଖି ଯାଇଛୁ । ସବୁ ମାଙ୍କ ଆଖିରେ ପୁଅଟି କୁଆଡ଼େ ଶୁଖି ଯାଉଥାଏ । ସେ ପୁଣି ଆଦେଶ ଦେଲେ ମାଲପା ଲଗା । ଟିଆଡ଼ି ବନ୍ଧରୁ ଗାଧେଇ ଆସିବୁ ।। ପୋଖରୀକୁ ଜୀବନରେ ଯାଇଛି ଯେ ଆଜି ଯିବି ତୁ ମୋତେ ତୋ ହାତରେ ଗାଧୋଇ ଦେଉନୁ? ମୁଁ ଜମା ଯିବି ନାହିଁ । ଏଇ ବାଡ଼ି ପଟେ ଗାଧୋଇବି ।

ସବୁଦିନର ଅବୁଝାଟିଏ । ମା' କହିଲେ । ଏବେ ତୁ ବଡ଼ ହେଲୁଣି । ମୁଁ କେବେ ଚ ସାନ ନଥିଲି, ହସି ଦେଇ କହିଲି । ତୋର ଘର ବସିବ । ହାତକୁ ଦି ହାତ ହେବୁ । ଆମଘର କଉଠି ଉଡୁଛି ଯେ ବସିବ । ଜବାବ ଦେଲି । ମା ତାଙ୍କ ଗୋରୀ ହସ ଟିକକ ଚତୁର୍ଦ୍ଦଶୀର ଜହ୍ନ ପରି ଫୁଟେଇ କହିଲେ । ସବୁ ଦିନର ବେଢ଼ାଟିଏ । ଠିକ୍ ସେତେବେଳକୁ ପଡ଼ିଶା ଘର ଲେଢ଼ୀବୁଢ଼ୀ ଦରଖିଆ ଅଇଁଠା ହାତଟି ଟେକି ଟେକି କହିଲା ବହରିଆ ଭେଲିଖଣ୍ଡେ ଦେଲୁ ଭାତ ଗଣ୍ଡେ ରହି ଯାଇଛି ଗୁଡ଼ ଖଣ୍ଡକ ଆଉ ହାତରେ ପାଇଛି କି ନାହିଁ ଲେଢ଼ି ବୁଢ଼ୀ ଢଗଟିଏ ମେଲିଲା । "ଆଲୋ ପାନ ପତରକୁ ଗୁଆ, ନୂଆ ବୋହୂଟିଏ ଆଇଲା ଆଇଲା ଭିତରେ ଶୁଆକି ବାହାରେ ଶୁଆ ।"



## ୩୨. ଯଉ ତୁଠ ପାଣି କାଉକୁ ପିତା

ସବୁ ଛୁଟିରେ ପହିଲେ ଘରକୁ ଆସେଁ । ଘରକୁ ଆଇଲେ ମାମୁଁ ଘରକୁ ଯାଏଁ । ବାଲୁତ ବେଳରୁ ଏଇଆଥିଲା ମୋର ଧରାବନ୍ଧା ଅଭ୍ୟାସ । ବଣରେ ବାଘ ଯେମିତି, ମାମୁଁଘର ଗାଁରେ ମୁଁ ସେମିତି । ଡ଼ର କାହାକୁ? ଭୟ କେଉଁଠି? ଗୋଟା ଗାଆଁର ଭଣଜା ମୁଁ । ସଭିଏଁ ସିନିହରେ ପୋତି ଦିଅନ୍ତି । ଯା' ଘରକୁ ଯିବୁ ଆଦର, ସାଙ୍ଗର ଅଭାବ ନାହିଁ । ପ୍ରଥମରେ ବସ୍ତିଟା ଥିଲା ଇବ ନଈକୂଳକୁ ଲାଗି । ଥରକର କଥା । କି ରାହୁ ଟୁଡାଟାଏ ଆଇଲା ଯେ ଘର ଦୁଆର ବିଲ, ବାଡ଼ି ଭସେଇ ନେଲା । ମାମୁଁଘର ଉଠି ଆସିଲା ସିଁଆମାଳର ଢ଼ିପକୁ, ସିଁଆଁ ବନ୍ଧ ପାଖକୁ । ସିଁଆ ବନ୍ଧର ପାଣି ମହି ପାଣି ପରି ଗୋଳିଆ ।

ପୁଣି କଣ ହେଲା କେଜାଣି ମାମୁଁ ଘର ଉଠି ଆସିଲେ ଗାଁ ମଝିକୁ। ଲଇଖନ ପଧାନ, କର୍ଣ୍ଣା ପଧାନ, ଗରିବ ପଧାନ ବାପ କି ହେଲାଯେ ସେମାନେ ସବୁଡ଼ିହ ବାଡ଼ି ବିକି କଉଠିକି ପଳେଇଲେ। ମାଇଁମାନେ ତାଙ୍କ ହାତ ପାଣ୍ଠିରୁ ସେଇ ଜମି ବାଡ଼ିତକ କିଣିଲେ। ହାତ ଖରଚ ପାଇଁ ରଖିଥିଲେ। ଡ଼ମଣା ଲାଞ୍ଜ ପରି ସେଇପଇସା କୁଆଡ଼େ କଉଠି ବଢୁଥିଲା। ପୁଅ ନାତି ଭୋଗ କରିବେ ବୋଲି ଜମିବାଡ଼ି କିଣିଲେ। କାହାପାଇଁ କିଣିଥିଲା କିଏ? ହେଲେ ଭୋଗ କଲାବେଳକୁ ଆଉ କିଏ? ବିଚିତ୍ର ଏ ସଂସାର!

ମାମୁଁଘର ସାମନାରେ ଦେବାର୍ଚ୍ଚନ କେଉଟର ଘର। ମୋଠୁ ବରଷେ ଦି ବରଷେ ବଡ଼, ସାଙ୍ଗଟାଏ। ଦେବାର୍ଚ୍ଚନର ମାଁ ମନ୍ଦାର ମାଉସୀ। ମୋତେ ଦେଖିଲେ ଉଛୁଳି ପଡ଼େ। ଭାରି ସୁଖ ପାଏ ମୋତେ। ମଲାଯାଏ ଆମ ଘରକୁ ଆସୁଥିଲା। ଭଲସାହାପଟ ହଉଥିଲା। ସୁଖ ଦୁଃଖକୁ ଆବୋରି ରଖୁଥିଲା। ଆମଘରେ ବଡ଼ିପକା ଅଛି, ଆସିବ। ଧାନ ସିଝାଇବ, ମୁଗ ଭାଜିବ ଦଳି ଦେବ ପାଛୋଡ଼ି ଭଜା ମୁଗଡ଼ାଲି ସଜାଡ଼ି ଥୋଇଦେବ। ମୁଢ଼ି ନାର୍ଗ ଧାନ ବଳକାଇବ। ଧାନ କୁଟି ମୁଢ଼ି ଭାଜି ଥୋଇଦେବ। ଆଖୁ ପେଡ଼ା ଅଛି। ଘନା ଶାଳରେ ଉଖୁଡ଼ା ପାଗ ଲାଗି ଲିଆ ଭାଜି ଥୋଇଦେବ। ଶାଳ ଉଖୁଡ଼ା ଖାଉଥା କେତେ ଖାଇବୁ। ମନ୍ଦାର ମାଉସୀ ମଫସଲୀ ମୁରୁଖ ମାଇକିନାଟିଏ, ପାଠ ପଢ଼ି ନଥିଲା। ହେଲେ ପାଠୋଇ ଝିଅଙ୍କଠାରୁ ଶହେ ଗୁଣ ଭଲତା ଭିତରଟା। ମଣିଷ ପଣିଆରେ ଠେସି ହୋଇଥିଲା।

ମାମୁଁଘରେ ଗାଆଁରେ ମୁଁ ଏକାକାର ହୋଇ ଯାଇଥିଲି। ସେ ଗାଁର ଗଛ, ଲତା, ପାଣି, ପବନ, ନଇନାଳ, ବିଲ ବଣ ସବୁତକ ମୋର ଆପଣାର ଥିଲେ। ସଭିଏଁ ଯେମିତି ମୋତେ ଆଦରି ନେଇଥିଲେ। ମୁଁ ବି ସେମିତି ମୋ ଭିତରେ ସେ ସବୁକୁ ଯତନରେ ଥୋଇଛି। କଉଁଠୁ କେବେ ଅନାଦର ପାଇନାହିଁ। ଏକ ଅନାବିଳ ସ୍ୱାଭାବିକତା ଛାଇ ଯାଇଥାଏ ସବୁଠି।

ଶେଷ ଛୁଟିରେ ଶେଷଥର ପାଇଁ ଗଲି ମାମୁଁଘରକୁ। ସେଇ ଗାଁଆଁଥିଲା। ସେଇ ଲୋକଥିଲେ। ହେଲେ ମୋତେ ଯେମିତି କେମିତି କେମିତି ଲାଗିଲା। ସବୁ ଯେମିତି କି ସେମିତିଥିଲା। ଗାଆଁ ଛାଡ଼ି ସ୍ଥାନାନ୍ତର ଯିବାର ଏକ ବିମର୍ଷ ଭାବ ଛାଇ ଯାଇଥିଲା। ଚେହେରାରେ ଜନମମାଟିକୁ ସବୁଦିନ ପାଇଁ ଛାଡ଼ିବାର ବାଧ ବାଧକତା ଭିତରେ ଭିତରେ ଘୁଣ ଖାଇବା ପରି କୋରି କୋରି ଖାଇ ଯାଉଥିଲା। ଲୋକେ ତାଙ୍କ ନିତି ଦିନିଆଁ କାମ ପୂର୍ବପରି କରୁଥିଲେ। ବିଲକୁ ହଳ ନଉଥିଲେ। ବେଉସାରେ ପାଣି ମଡ଼ଉଥିଲେ। ଧାନ ବୁଣୁଥିଲେ। ଧାନ ଅମଳ କରୁଥିଲେ। ପିଲାଏ ପାଠ ପଢ଼ି ଯାଉଥିଲେ। ମେଳା ମଉଛବ ହଉଥିଲା। ପୁନିଅଁ ପରବ ପାଳୁଥିଲେ। ଆଗେ ଯେମିତି ହଉଥିଲା। ହେଲେ ସେ ସବୁ କରଣିରେ ଶରଧା ନଥିଲା। ନଥିଲା ମଜ୍ଜି ଯିବାର ସଜୀବତା। ଅନାଗ୍ରହର ଏକ କଳାଛାଇ

ବାରି ହଉଥିଲା ସଭିଙ୍କ ଚେହେରାରେ। ହୀରାକୁଦ ବନ୍ଧ ପାଣି ମାଡ଼ି ଆସିବ। ଲୋକେ ଗାଁ ଛାଡ଼ି ପଳେଇବେ। ହଣା ହବାକୁ ଥିବା ଛେଳିର ଭୟାତୁର ଭାବ ସଭିଙ୍କର ସେମିତି ଏକ ଆତଙ୍କିତ ଅବସ୍ଥା। ଯିବେ ନିଶ୍ଚିତ। ଆଜି ଯିବେ କି କାଲି ଯିବେ ଜଣା ନାହିଁ। କିନ୍ତୁ ଯିବେ, ନିଶ୍ଚିତ ଯିବେ। ନିଶ୍ଚିତ ଅନିଶ୍ଚିତତାର ଯିବି କି ନ ଯିବିର ଦ୍ୱନ୍ଦଟାଏ ଧରି ରଖିଥିଲା ସଭିଙ୍କୁ। ସଭିଁଏ ମୋତେ ସଙ୍ଖୁଳିଲେ। ଆଦର ଦେଲେ। କୁଣିଆ କଲେ। ଭଲମନ୍ଦ ଖାଇବାକୁ ଦେଲେ। କଥାବାର୍ତ୍ତାରେ ଅନ୍ତରଟାକୁ ଫିଟାଇ ମୁକୁଳା କରିଦେଲେ ଯେମିତି। ହେଲେ କଥାରେ କାର୍ଯ୍ୟରେ ଭିତରୁ ଠେଲି ଠେଲି ଆସୁଥିବା ରୁଦ୍ଧ ରୂପଟିଏ ଫୁଟି ଉଠୁଥିଲା। କରୁଣ ମୂର୍ଚ୍ଛନାଟିଏ ପରିବେଶକୁ କରୁଣତର କରି ପକଉଥିଲା। ମୋ ମାମୁଁଘର ଗାଁର ସନାତନ ମହିମା ଯେପରି ବାହୁନି ଉଠୁଥିଲା ନଇ ସେ ପାରିର ବିବର୍ଣ୍ଣ ଚଢ଼େଇଟିଏ ପରି।

ଜମି ବୁଡ଼ିବ, ଘର ବୁଡ଼ିବ। ବାଡ଼ି ପଟର ସଜନା ଗଛ ବୁଡ଼ିବ। ସଜନା ଗଛ ଛିନ୍ନ ଛାଇବି ବୁଡ଼ିଯିବ। ଆମ୍ବ ଜାମ୍ବୁ ପିଜୁଳି ପଣସ ଗଛବି ବୁଡ଼ିଯିବ। ଶଗଡ଼ିଆ ଯୋର ଗାଁ ସବୁଜ ମୁହାଣ ବୁଡ଼ିଯିବ। ହନୁମାନ ମହାପ୍ରୁ ବୁଡ଼ିବେ। ବୁଡ଼ିବ ମହୁଆତଳ, ଗାଁ ଦାଣ୍ଡ, ଭାନୀବୁଢ଼ୀର ବନ୍ଧ। ଖଞ୍ଜଣୀ କରତାଳ, ଝାଞ୍ଜ ମୃଦଙ୍ଗ ମାନ ବୁଡ଼ିବେ। ସେ ସବୁର ବାହାକ ମାନେ ବୁଡ଼ିବେ। ଦେଖଣା ହାରିଏ ବୁଡ଼ିବେ। ସକାଳେ ଗୋରୁଫିଟା ହେବନି କି ସଞ୍ଜକୁ ଗୋଠ ଫେରିବନି। ଚିହିରୁ ମଝିଆ କି ଭୁକୁଲା କେଉଟ ନଈକୁ ଯିବେନି ଜାଲ ପକେଇବାକୁ। ଦେବାର୍ଚ୍ଚନ ଝାଁକର କି ବଇଁଶିଧର ନଥିବେ। ନିର୍ଦ୍ଧୁମ ତାତିରେ ଇବ ନଈର ତତଲା ବାଲି ପାରି ହେବ କିଏ? ବାଲି ସାରା ଚାଲି ଚାଲି ଯାଇଥିବା ବଇଁଶୀଧରର ପାଦରେ ଫୋଟକା ଫୁଟି ଯାଇଥିବ। କା' ଜିଭରେ ହାଡ଼ ଅଛି ଟମାଟମ ଭରା ନଇ ପାରି ହେବାକୁ? ପରମା ପ୍ରଧାନ ଯାତରା ପାର ଛିଣ୍ଡେଇବା ପାଇଁ ଆଣ୍ଠୁପାରି ଦି ହାତିଆ ଖୋଳକୁ ପିଟିବାର ଉଦ୍ଦାମତା ମିଳିବ ଅବା କାହିଁ? ଗାଁ ସୁଆଙ୍ଗରେ ଅଚ୍ୟୁତ ପ୍ରଧାନର ଛଟା। ଟେଙ୍ଗ୍‌ଟି ବାଡ଼ିଧରି, ନୀଳ ପ୍ରଧାନର ଦୁଆରି ଡ଼ାକ। ଶୁଭଦ୍ରା ହରଣର ଧନୁର୍ଜୟୀ ଧନୁର୍ଜୟୀ ବୋଲି କିଏ ଡ଼ାକୁଛି ର ଶେଷ ସ୍ୱର କାହୁଁ ମିଳିବ? ପାହାନ୍ତିଆ ପହରର ଧାନକୁଟା ଛନ୍ଦ ପୁଣି ସବୁଦିନ ପାଇଁ ସରିଯିବ। ଭଏଁରୀ ବୁଢ଼ୀର ଗାଳି। ସାଗର ତିଆଡ଼ିର ପରଭାତି ପାହାନ୍ତି ପବନରେ ଆଉ ମିଶିବନି। ବାଳୁତ ବିଧବା ପଏନକାନର ସକାଳ ବାହୁନା "ହାତୀ ହୋ" ପାହାଁତିଆ କୁକୁଡ଼ାର କଁକ୍‌ରେ କଁକ୍‌ରେ କଁକ ମିଳିବ ଆଉ କାହୁଁ? ଜାତିର ରଜା ପରମେଶ୍ୱର ତିଆଡ଼ିର ଛତିଶ ଗଡୀ ଫତେଇ ସୀତା ମାଉସୀର କଅଁଳ କଥା ସାତ ସପନ ହେବ। ଚିହିରୁ ମଝିଆର ଝୁରି ବାନା ପଧାନର ପାଲିଆ ଧରା। ଧର ଘର ମାଇଁ ଗଉଡ଼ର ମାଆଙ୍କ ସେଲୁହା ପକା ଆମ୍ବିଳ, ଶୁଖା ନିମ୍ବ ଫୁଲ ଭଜା, ମୋ' ପିଲା ବେଳକୁ ତାଜା କରିପକାଏ। ଭାର ମାଉସୀର ଚକୁଳି ପୀଠା ମୋ ବାଳୁତ ବେଳକୁ ଟଟକା କରିଦିଏ।

କାଲି ପରିଲାଗେ। କୁର୍ଲା ସ୍କୁଲରୁ ସକାଳ ପଢ଼ା ସାରି ଫେରୁ। ଇବ ନଈ ପଠାରେ କଳା ମୁଗର ଫସଲ। ଫେରିବା ବାଟରେ ଗଛରୁ ଗଛ ଖେଡ଼ ଖେଡ଼ ତୁଳୁ। ଅଁଟେ ଅଁଟେ ହେଲେ ପଥର ଦୁଇଟି ଖୋଜୁଁ। ଶୁଖିଲା ଛୁରଛୁରିଆ ଇଟାରେ ପଥର ଘଷି ନିଆଁ ଲଗାଉଁ। ମୁଗ ଝୁରୁଁ। ଖାଇ ଖାଇ ଘରକୁ ଫେରୁ। ସମୟ ଯେ ଆମକୁ ପଛ କରି କେମିତି କେମିତି ଆଗକୁ ଆଗକୁ ଚାଲିଯାଏ। ଜାଣି ପାରୁନା। ଶଗଡ଼ିଆ ଯୋର ଓ ଇବ ନଈର ମୁହାଣରେ ଥିଲା ମୋ ମାମୁଁ ଘର ଗାଁ। ଶୋଭା, ଶିରି ଓ ସମ୍ପଦରେ ସମ୍ପନ୍ନ ଏକ ଗାଆଁ। ଲୋକେ ଧନୀ ନ ଥିଲେ କି ଗରିବ। 'ଅପନା ହାତ ଜଗନ୍ନାଥ' ପରି ନିଜ ହାତରେ ନିଜ ଭାଗ୍ୟ ଗଢ଼ିଥିଲେ। ସତରେ ଶସ୍ୟରେ ଯେମିତି ସବୁଜ। ସଂସ୍କୃତିରେ ସେମିତି ସତେଜ। ମଣିଷ ପଣିଆର ଖଣିଟାଏ। ଏବେ ସେ ଗାଁ ନାହିଁ। ନାଁଟି ମାତ୍ର ଅଛି। ହେଇ କୁଦୋପାଲି। ପାଣିରେ ଶୁଖିଲା ଶୁଖିଲା ନାଆଁଟିଏ। ମାମୁଁ ଘରକୁ ଯିବି କେମିତି? ସେଠି ଏବେ ପାଣି ଖାଲି ପାଣି, ଯଉ ପାଣି କାଉକୁ ପିତା।



## ୩୩. କାଠିଆ କଦଳି କଷିରେ ପାଚେ

ମାମୁଁ ଘର ଆଇ ପାଖରେ ମୋର ସବୁ ଅରଦଳି। ନାଆଁ ଯେମିତି ମାଳା। ଗଳାରେ ସେମିତି ପୋହଳା ଓ ତୁଳସୀର ଗେଛେ ମାଳା। ନାଆଁ ହେତୁରୁ ହେଉକି ନ ହେଉ ଯଅଁରାର ମାଢ଼ରୁ ନିଶ୍ଚୟ। ଗଜା ବୟସରୁ ଗେରସ୍ତକୁ ହରେଇଛି। ଅଧା ବୟସରେ ସାନ ପୁଅ ଓ ଶେଷ ବୟସରେ ଏକମାତ୍ର ଝିଅକୁ। ନିରଳସ ମଣିଷଟିଏ। କାମ ଖାଲି କାମ। ଯେତେ ବେଳେ ଦେଖିବ କିଛି ନା କିଛି କରୁଥିବ। ବୋହୂମାନେ ଅନାବନା ଶାଗ କେରାଏ ଥୋଇଦେଲେ, ବୁଢ଼ୀ ଶାଗ କେରାକ ବାଛିଦେବ। ଧୋଇ ଦେଇ ରଖିଦେବ। ଧାନ ସରସର ଅରୁଆ ଚାଉଳ ମାଣେ ଦି'ମାଣ ଥୋଇ ଦେଇ କହିବେ। ବାଛି ଦିଅ, ଗୋ ବୁଢ଼ୀ। ବୁଢ଼ୀ ପିନ୍ଧା ଲୁଗା କାନିକୁ ଗଣ୍ଠିଲି କରିବ। ଚାଉଳ ଉପରେ ଘଷିବ ଲୁଗାକୁ। ଧାନ ଲୁଗାରେ ଲଟକି ଆସିବ। ଧାନକୁ ଝାଡ଼ିଦେବ। ଏଇମିତି ଥରକୁ ଥର କରି ଚାଉଳରୁ ଧାନ ଅଲାଗା କରିବ। ସଫା ଚାଉଳ ପଶେ ପାଇ ବୋହୂମାନେ ଖୁସ୍। ସାନବୋହୂ ମାଖନ ବିଜା ଆଞ୍ଜୁଳାଏ ଆଣି ଥୋଇଦେବେ। କହିବେ ଆଗୋ ବୁଢ଼ୀ ପାରିବ ଯଦି ଛଡ଼େଇ ଦେବ। ଭଣଜା ଭାଣିଜୀ ଦଶରାକୁ ଆଇଲେ ଖଜା କରିଦେଲେ ଖାଇବେ। ଗୋଟାକ ପରେ ଗୋଟାକ ଛଡ଼େଇ ଛାଡ଼େଇ ବୁଢ଼ୀ ଥୋଇଦେବ। ବଡ଼ି ପକାକୁ ବିରି ଦଳି ଥୋଇଦେବ। ଯଁତା ଖଣ୍ଡିକ ପାଖକୁ ନେଇଦେଲେ ହେଲା। ଖରା ବେଳେ ଦି ପହରଟି ବଡ଼। ପଲସା ପତ୍ର ଡାଲିଏ ଥୋଇଦେଲେ ମାଳମାଳ ଗୁନ୍ଥିଦେବ। ଖରାରେ ଶୁଖେଇ ରଖିଥିଲେ ପୁନେଇଁ ପରବକୁ ଚଢ଼ଉଟି ଟିପି ହେବ। ଏଇମିତି ଆଲୁକୁଚି, ମାଲୁକୁଚି କେତେ କାମ। ଆଖି

ପିଛୁଡ଼ାକେ ଯେଉଁ କାମ ଦେବ କରି ଥୋଇଦେବ। ଚର୍ତୁମାସ୍ୟାରେ ନିଆଁ ପହଟେଇବ ବୋଲି ଛାଲି ସାଇତିଥିବ। ସକାଳ ପହରୁ ଉଠିବ ଯେ ସଞ୍ଜ ଯାଏ କାମରେ ଲାଗିଥିବ। ତା ସାଙ୍ଗର ବୁଢ଼ୀମାନେ କହନ୍ତି। କାବୁ ମାକୁ ପାରି ହେଲାନାହିଁ। ଦିନକୁ ଦିନ ଧାଙ୍ଗରୀ ହଉଛି। କିଛି ନକହି ହସି ଦିଏ ହସ ଫାଳେ। ସେଇ ହସ ମନର କଥାକହେ।

ଘର କାମରେ ପୋଖତ। ହାଡ଼ କେଇ ଖଣ୍ଡର ଦିହ। ଖାଇବ ଯେମିତି କରିବ ସେମିତି। ସଅଁ ସଅଁ କଂସାଏ ପଖାଳ ଥରକେ ଢ଼ୋକିଦେବ। ମିଠା ସିଠା ବାରୁଛି କେଉଁଠି? ଭୁଖେ ସୁଆଦ ବୟସେ ସୁନ୍ଦର ବୋଲି କହେ। କାମ କରିବାକୁ ଅମଙ୍ଗ ହେଉଥିବା ନାତି ନାତୁଣୀଙ୍କୁ ବୁଢ଼ୀ ଜାଙ୍ଗଳ ଖାଇ ବୋଲି କହେ।

ଖରାଛୁଟି ହୋଇଥାଏ ମାମୁଁଘରେ ଯାଇ ପହଞ୍ଚିଲି। ଆଈ ଟାଁକୋ ସବୁକୁ ପିଟୁଥାଏ। ଆମ୍ବ ଟାଁକୋର କୋଇଲି ବାହାର କରୁଥାଏ। ଠାପରା ଆମ୍ବୁଲ କରିବାକୁ ତା'ର ଏ ଆୟୋଜନ। ମୋତେ ଦେଖି ସଲଖି ବସିଲା। ମୁଁ ପାଖକୁ ଗଲାରୁ ପଛକୁ ଘୁଞ୍ଚିଗଲା। ଆଗେ ଦେଖିଲାକ୍ଷଣି ମୋତେ ପାଖକୁ ଭିଡ଼ିନିଏ ମୋ ଧନ, ମୋ ଅସର୍ଫି ମୋ ରଙ୍କୁଣୀ ରତନ କହି ଚୁମା ଚୁମାରେ ପୋତି ପକାଏ। ତା ଉଛୁଳା ସ୍ନେହରେ ଗୋଟାପଣେ ବତୁରାଇ ପକାଉଥିଲା ମୋତେ। ସେଦିନ ଦେଖିଲି ଆଈଠାରେ ଏକ ନୂଆ ଢ଼ଙ୍ଗ। ନୂଆ କୁଣିଆ ଆଇଲେ ଲୋକେ ଯେମିତି ହୁଅନ୍ତି। ତା ଭିତରେ ସାମାନ୍ୟ ସଙ୍କୁଚିତ ହୋଇ ଯାଉଥିଲା। କଇଁଛ ତା ହାତ ଗୋଡ଼କୁ ଖୋଳପା ଭିତରେ ପୂରେଇ ଯେମିତି ପଶିଯାଏ।

ମୋତେ ଦେଖି ସେମିତି ତା ଭିତରେ ସଁକରି ଯାଉଥିଲା। ମୁଁ କାବା ହେଲି। ମୋ ଆଈକୁ ପିଲାଦିନୁ ଦେଖି ଆସିଛି। କଣ ହେଲା? ଆଜି ଏ ଭିନ୍ନ ଭାବ। ପଚାରିଲି କଣ ହେଲା କି ଆଈ? ଦିଅ ଅସୁଖ କଲକି? କାଳେ ଜ୍ୱର ଫର ହଉଥିବ ଭାବି ହାତ ପିଠିରେ ମାରିବି ମାରିବି ହେବାବେଳକୁ ଆଈ ସାମାନ୍ୟ ଆଡ଼େଇ ଯାଇ ଛୁଅଁ ଦେଲେନି। ମୁଁ ଯେମିତି ତାଙ୍କ ଦେଢ଼ସୁର। ଆଈ ପାଟିକଲା। ଆଲୋ ଉଜଳ, କଉଠିକୁ ଗଲୁକି। ଇ ଅଯୋଧାଟି ଠକା ବେଳକୁ ଘରେ ନଥିବ। ବିରଝିଲା ବୁଢ଼ୀ। ବାବୁ ଆଇଛି। ବଡ଼ମାମୁଁ କାହିଁଯେ। ଥିବ ଥିବ ଠକା ବେଳକୁ କଉଠିକି ପଳେଇବ। ସବୁ ଦିନର ଗାଳି ଖିଆଟେ।

ମାଇଁମାନେ ଆସିଲେ। ପାଣିଗଡୁ ଥୋଇଲେ। ଆସନ ଯାଚିଲେ ବସିବାକୁ। ମୁଁ ଆଗରୁ ଆଈ ସାମନାରେ ଲଥକରି ବସି ସାରିଥାଏ। ମାଇଁମାନଙ୍କୁ ପ୍ରଣାମ କଲି। ସେମାନେ ଓଢ଼ଣା ମୁହଁ ଉପରକୁ ଭିଡ଼ି ଆଣିଲେ। ପଚାରିଲି ଶଇଳ କାହିଁ? ସେମାନେ ସବୁ ଲୁଗାକାନି ଚାପି ହସିଲେ। ମୋତେ କେମିତିଆ ଲାଗିଲା। ଏଇଟି ସେଇ ମାମୁଁଘର ଯେଉଁଠି ମୋର ଷାଠିଏ ଷଣ୍ଢର ବଳ। ଘରଟାକୁ ଗୋଟାପଣେ ମାତିଲା ପୋଢ଼ ପରି ମନ୍ଥି ଦେଉଥିଲି। ବାଛ ବିଚାର ନଥିଲା। ମନକୁ ଯାହା ଆସିଲା କରୁଥିଲି। ଏ କଣ? ଆଜି ସେଇଠି ମୁଁ ଜଣେ ଅଚିହ୍ନା ଆଗନ୍ତୁକ। କୁଣିଆଟିଏ। ମାନ୍ୟଗଣ୍ୟ ବନ୍ଧୁଟାଏ। ମାମୁଁ ଆସିଲେ ପାଦ ଛୁଇଁଲି। ସେବି ମୋତେ ଗୋଟାଏ ଅଦ୍ଭୁତ ମାନ୍ୟଦେଲେ। ମୁଁ ଆଗପରି ତାଙ୍କର ଭଣଜା

ନୁହେଁ । ନୂଆଁ ବନ୍ଧୁଟାଏ । ତାଙ୍କ ଲମ୍ବା ଲମ୍ବା ହାତର ହାତ ସାଉଁଳା ଯେଉଁ ପିଠି ପାଇବାକୁ ଟାକିଥିଲା । ଯାହାଙ୍କଠୁ ସାବାସି ପାଇବାକୁ ଏ ମନ ସକସକ ହେଉଥିଲା । ତାଙ୍କଠି ଏକ ଶୁଖିଲା ଔପଚାରିକତା ଦେଖି କାହିଁକି କେଜାଣି ମୋ ମନଟା ପାଣିଚିଆ ଲାଗିଲା । ମୁଁ ଆଚମ୍ବିତ ହେଲି । ମାମୁ କଣ ହେଉଛି ତମର? ମୁଁ ତ ତମକୁ ଆଗଭଳି ଦେଖୁନି । ମେଘ ବରଷା ପରି ସରସର ଆଦର । ଚଇତି ବାଆ ପରି ଖୋଲାଖୋଲି ଭାବ କାହିଁ? ସେ ହସିଲେ କିଛି କହିଲେନି । ଗାଁର ଆଉ ଆଉ ମାନେ ବି ମୋତେ ନିଠେଇ ନିଠେଇ ଅନେଇଲେ ଯେମିତି ମୋତେ ଆଗରୁ କେହି ଦେଖି ନାହାନ୍ତି । ପ୍ରଥମ ଥର ନୂଆ କରି ଦେଖୁଛନ୍ତି । ଗାଁର ଭୁଆସୁଣୀମାନେ ଗାଧୁଆ ତୁଠରୁ ଫେରିବା ବେଳେ ମୋତେ ଦେଖି କୁହାକୁହି ହେଲେ ଏଇ ତ ସେଇ ପିଲା? କେହି କେହି ଖୋଲି କହୁନଥିଲେ । ମୋରି ଭିତରେ ଆଉ କାହାକୁ ଯେମିତି ଖୋଜୁଥିଲେ । ମୋତେ ଭାରି ଅଡୁଆ ଅଡୁଆ ଲାଗୁଥିଲା ।

ଖରାମାସ ସଞ୍ଜ ହେଲା । ଶାଗ ଖରଡ଼ା ଆଉ ଆଚାରରେ ସକାଳର ପଖାଳ ଖାଇବା କଥା । ଏ କଅଣ! ଛଅ ତିଅଣ ନଭଜା । ଯାହା ଦେଲେ ଖାଇବା ଲୋକ ମୁଁ । ବାଛ ବିଚାର ନାହିଁ । ଏମିତି ପରଷଣା ହେଲା ଯେ ଯେମିତି ଜୁଆଁଇ ପୁଅ ପ୍ରଥମ କରି ଶଶୁର ଘରକୁ ଆସିଛି ।

ବିଛଣା ସଜଡ଼ା ହେଲା । ଗପସପ ହେଲା । ସେ ଗପରେ ବୁଢ଼ୀ ଅସୁରୁଣୀ ନଥିଲା । ସେ ଅସୁରୁଣୀ ତାଳକାଠି କରୁନଥିଲା । "ମୁଇଁ ମୁଇଁ ବୁଢ଼ୀ ରାକ୍‌ସେନ, ମୋର ସିଂ ଗୁଜା ଗୁଜା, ଗୁଟେ ସିଂହେ ପର୍ବତ ଟାଳେଁ । ଆର ସିଂହେ ଗୁଜା ।" କହୁନଥିବା ଅଗନା ଅଗନି ବନସ୍ତ ଭିତରେ ନିବୁଜ ଉଆସଟିଏ । ତାରି ଭିତରେ ରାଜଜେମା ଟାକି ରହିଥିଲା କାହାକୁ? କେତେବେଳେ ଆସିବ ତାର ରାଜକୁମାର ପକ୍ଷୀ ରାଜଘୋଡ଼ାରେ ହଉକି ମନ ପବନ କଠଉରେ ହଉ ।

ଆଇକୁ କହିଲି । ଆଜି ତୋ' ପାଖରେ ଶୋଇବି । ଶଇଳକୁ ଡ଼ାକ ସେ ବି ଶୋଇବ । ସେ ପୁଅର ଝିଅ ନାତୁଣୀ, ମୁଁ ଝିଅର ପୁଅ ନାତି । ବାଳୁତ ବେଳରୁ ଏପାଖ ସେପାଖ ଆମେ ଆମର ପିଲାବେଳ କଟେଇଛୁ । ତୋ' ପଣତ କାନି ଆମର ସରଗ । ତୋ'ଛଡ଼ା କିଏ ଦେବ ସେ ସୁଖ ସେ ଆଦର । ପାକୁଆ ହସଟେ ହସିଲେ ଆଇ । ତମ ଯୋଡ଼ି ଦେଖି ଏ ଆଖି ବୁଜି ଦେଲେରେ ଧନ ମୋର ଦଶି ତୀର୍ଥ ଦେଖା ହୋଇଯିବ । ଜୀବନ ସାର୍ଥକ ହେବ । ଚ଼ଉବର୍ଗ ମିଳିଯିବ ମୋତେ ।

ଏବେ ବୁଝିଲି କଥାର ମଞ୍ଜି କଉଠି? ଏଇଥି ପାଇଁ ମୋ ବାପାଙ୍କ ମାନ ଅଭିମାନ । କଥା କଟାକଟି । ସତିଆ ଅଜାର ଟାପରା, ଠସ୍‌କର ଚ଼ଉକିଆର ପୂର୍ବାନୁମାନ ।

ମାମୁଁଘରୁ ଫେରିଲି । କାନ୍ଥରେ ଫଟ୍‌ପଟା ଦେବାକୁ ସାହି ଝିଏ ରୁଣ୍ଡ ହେଲେଣି । କିଏ ଜାଣିଥିଲା । କାଠିଆ କଦଳୀ କଷିରେ ପାଚେ?



# ୩୪. ନାକଜାନି ଗୁନାଦିଅ

ମୋ' ବାପାଙ୍କୁ ଯେତେବେଳେ ତିନିବରଷ। ତାଙ୍କମାଆ କୁଆଡ଼େ ତାଙ୍କୁ ଛେଉଣ୍ଡ କରି ଆଖି ବୁଜିଦେଲେ। ପୁଅ ଦୁଇଟା ଅଛନ୍ତି। ଆଉ ବାହା ହେବିନାହିଁ। ଅଜା କହିଲେ। ପିଲାବେଳୁ ବାପାଙ୍କ କଥା ମାନୁଥିଲେ ବୋଲି ନାଆଁ ରଖିଥିଲେ ମାନୁ। ମା'ଛେଉଣ୍ଡ ସାନ ପିଲା। ସଦା କୁନ୍ଥଉଥାଏ ବୋଲି ସଭିଁଏ ଡାକୁଥିଲେ କୁଥୁ। ବାଲିଆ ଓ ସୁଗ୍ରୀବର ଦୁଇଭାଇ ଅଡୁଆରେ ପଡ଼ିଲେ। ଯୁଆନ ପୁଅ। ସମିଆ କଟିବ କେମିତି? ସାଙ୍ଗସାଥି ପାଖ ପଡ଼ିଶା ଲୋକେ ମନେଇଲେ ବୁଝେଇଲେ। ବାଲୁତ ପୁଅ ଦୁଇଟା ପାଇଁ କଦଳୀ ମୁଣ୍ଡା ଓ ଚିରଗୁଣି ମୁଣ୍ଡା ବୋଲି ଦୁଇଭାଗ ଜମିକୁ ପିଲା ଦୁଇଟିର ନାଆଁରେ ଲେଖିଦେଲେ। ଶେଷକୁ ଅଜା ହଁ କଲେ। ପୁଣି ବାହା ହେଲେ। ପଛ ଭାରିଯାର ଦୁଇପୁଅ, ଦୁଇ ଝିଅ। ବଡ଼ ପୁଅ ମାନୁ ପାଇଲେ କଦଳୀ ମୁଣ୍ଡା। ସାତ ଏକରର ବଡ଼ କ୍ଷେତ। ପଧାନପାଲି ପଟୁ ନାଳଟିଏ ଆସି କ୍ଷେତରେ ମୁହଁ ଖୋଳିଛି। ଅସରାଏ ବରଷାରେ କ୍ଷେତଟି ଟପାଟପ। ଖରଡ଼ି ବୁଣିବୁ ଯଦି ଧାନ କମେଇବୁ। ବାପାଙ୍କ ସାବତ ମା କୁଆଡ଼େ ମାଆଠୁ ବଳି ଥିଲେ। ସଂସାର ବଇରାଗୀ ଅଜାଙ୍କୁ ସମ୍ଭାଳିଥିଲେ।

ଅଜାଙ୍କର ଚାରିଭାଇ। ଯୌଥ ପରିବାରଟିଏ। ପରିବାରର ଚଉଷଠି ଜଣ। ୧୯୪୪ ପର୍ଯ୍ୟନ୍ତ ଏକ ଅନ୍ନରେଥିଲେ। ପରେ ଅଜାମାନେ ଭାଗ ହେଲେ। ଅଜା ଚାରିପୁଅଙ୍କୁ ଭାଗ କରିଦେଲେ। ସେ ଭଲଭାବରେ ବୁଝିଲେ। ବଡ଼ ପରିବାରର ଝାମେଲା ବେଶୀ। ଏଣୁ ଛୋଟ ଛୋଟ ପରିବାର ହେଲେ ଆପଣା ରୁଚିରେ ମୁଠେ ଫୁଟେଇ ଚଳିବେ। ଆପଣା ଭଲମନ୍ଦ ବୁଝିବେ ଓ ଶିଖିବେ।

ଆମ ପରିବାରରେ ମୋ'ବାପା ମା, ଆମେ ତିନିଭାଇ ଭଉଣୀ। ବଡ଼ ଭଉଣୀ ମୋଠୁ ଦଶବର୍ଷର ବଡ଼। ମୋ ସାନଭାଇ ମୋଠୁ ଦଶବର୍ଷର ସାନ। ମୁଁ ମେଟ୍ରିକ ପାସ୍‌କଲା ବେଳକୁ ସେ ଚତୁର୍ଥରେ। ମା'ଘର ସମ୍ଭାଳୁଥିଲେ। ବାପା କଳାକାର ଲୋକ। ମାମୁଁ ଘର ଆମ ହେଲା ନହେଲାକୁ ଶିରାବଣର ମେଘ ପରି ଆମ ପରିବାରକୁ ଆବୋରି ରଖୁଥିଲେ। ପରିବାର ପୋଷିବାକୁ ବାପା ନାନା ଧନ୍ଦା ଧଇଲେ।

ତାଙ୍କ ଭାଗରେ ବାପା ଗୁଡ଼ାଏ ଜମି ପାଇଥିଲେ। କମାଣିରେ ଢ଼ିଲା। କେତେବେଳେ କେଉଁ ମିଜାଜ। ହେଲା ହେଲା ନହେଲା ନାଇଁ। ହେଲେ ମାଆ ସମ୍ଭାଳି ନିଅନ୍ତି। ବାପା ସଦା କହୁଥିଲେ "ବରଂ ବ୍ୟାଘ୍ରଂ ଗଜାଦି ସେବିତଂ ନ ବନ୍ଧୁଜନେ ଧନହୀନ ଜୀବନମ୍" ବଣରେ ବାଘଭାଲୁ ସହ ବରଂ ରହିହେବ ହେଲେ ବନ୍ଧୁ ବାନ୍ଧବଙ୍କ ଭିତରେ ଗରିବ ହୋଇ ରହି ହେବ ନାହିଁ। ପିଠିର ଭାଇ ଗଁଠିର ସୁନା ଯେମିତି। ଭଗାରିବି ସେମିତି। ଏଣୁ ବାପାଙ୍କୁ ନାନା କଷ୍ଟ ସହିବାକୁ ପଡ଼ିଛି। ଅଭାବ ଅସୁବିଧାରେ ବାପାଙ୍କୁ ସହାୟ କରିଥିଲେ

କର୍ନ୍ଦପ ଭୂୟାଁ, ବଇଁଶୀ ସୁନାରୀର ବାପା ଆଉ ମଗମୁଣ୍ଡା । ମଗମୁଣ୍ଡା ଆମ କଦଳୀ ମୁଣ୍ଡାକୁ ଭାଗଚାଷ କରି ମୋର ପଢ଼ା ଖର୍ଚ୍ଚ ଯୋଗାଉଥିଲେ ।

ଆମ ପରିବାରର ମଜଭୁତ ମେରୁଦଣ୍ଡ ଥିଲେ ମୋର ବଡ଼ ଭଉଣୀ ତରୁଲତା । ଆମର ଆର୍ଥିକ ଦୁର୍ଦ୍ଦିନରେ ସେ କଠୋର ପରିଶ୍ରମ କରି ଘର ଚଲାଉଥିଲେ । ଦୋକାନ ବିକୁଥିଲେ । ଘରକୁ କେମିତି ଦି'ପଇସା ଆସିବ, ସେଇ ଚିନ୍ତାରେ ବୁଡ଼ି ଯାଉଥିଲେ ।

ବାହା ହେବା ପାଇଁ ବାପାଙ୍କର ଭଉଣୀ ଓ ମୋର ଭଉଣୀ ଯୋଗ୍ୟ ହୋଇ ସାରିଥିଲେ । ସେମାନଙ୍କୁ ଘରୁ ବିଦା କରିବାର ଭାର ବାପାଙ୍କର । ଏଣୁ ବଡ଼ ବୋଝଟାଏ ଥିଲା ତାଙ୍କ ମୁଣ୍ଡ ଉପରେ । ମୋର ବଡ଼ ଭଉଣୀ ନଅଟି କାଛ ପିନ୍ଧିଥିଲେ । ଆଗ କାଛ ପିନ୍ଧାଣି ଚଳୁଥିଲା । ରଥ ଦୁତିଆକୁ ବରଘର ନୂଆ ଲୁଗା ଖଜା ମିଠେଇ ଧରି କାଛ ପିନ୍ଧେଇ ଆସୁଥିଲେ । କନିଆ ଘର ସେମାନଙ୍କୁ ଭଲ ସତ୍କାର କରି ପଠଉଥିଲେ । ଆଗେ ପିଲାବେଳରୁ ବାହାଘର ଠିକ୍‌ଠାକ ହେଉଥିଲା । ଏ ବ୍ୟବସ୍ଥାରେ ଦୋଷ ବି ଥିଲା । ଗୁଣ ବିଥିଲା, ମୋର ବାପା ଏ ବ୍ୟବସ୍ଥାର ଘୋର ବିଦ୍ରୋହୀଥିଲେ ମୋ ନାନି ନଅଟି କାଛ ପିନ୍ଧିଥିଲା । ତଥାପି ବାପା ଏ ସମ୍ପର୍କକୁ ଅସ୍ୱିକାର କଲେ । ତାଙ୍କ ଯୁକ୍ତି ମୂରୁଖ ପିଲାକୁ ସେ ଝିଅ ଦେବେ ନାହିଁ ।

ଝିଅ ଓ ଭଉଣୀର ଗୋଟିଏ ଦିନରେ ବାହା କରିବେ । ଏହା ବାପାଙ୍କ ଜିଦ୍ । ଲଗ୍ନ ଠିକ୍ ହେଲା । ଗୋଟିଏ ଘରୁ ଦିଟି ଝିଅ ବିଦା ହୋଇଯିବେ । ଆଗେ ଭଉଣୀ ବିଦା ହୋଇଯିବ ତାପରେ ଝିଅ । ଭଉଣୀର ଶ୍ୱଶୁର ଚାରିଓଳି ଖିଆପିଆ ସମ୍ଭାଳିବାକୁ ଆଦେଶଦେଲେ ବାପା ହଁ କଲେ । ବାଟବସା ଭୋଜିଠୁଁ ଆରମ୍ଭ କରି ବିଦାହେବା ଦିନର ବାଟ ଭୋଜି ପର୍ଯ୍ୟନ୍ତ ସବୁ ଖର୍ଚ୍ଚ ସମ୍ଭାଳିଲେ । ସେ ସମୟଟି ଆମ ପରିବାର ପାଇଁ ଘୋର କଷ୍ଟର ସମୟ । ଆର୍ଥିକ ଦୁର୍ଦ୍ଦିନର ସମୟ । ମୋର ବଡ଼ ଭଉଣୀ ଆମ ଘରର ମାଲିକ ଥିଲେ । ଆମ ଘରକୁ ଚ଼ଳେଇ ନବାର ତାଙ୍କର ଭୂମିକା ସ୍ମରଣୀୟ । ଆମ ଅଣ୍ଟା ସଲଖେଇବାକୁ ତାଙ୍କ ନିପୁଣତାକୁ ପ୍ରଶଂସା କରିବାକୁ ହେବ । ସେ ଝିଅ ହୋଇ ଆମ ଘରେ ଜନମ ହୋଇଥିଲେ ବି ବାପାଙ୍କ ଆଖିରେ ପୁଅଟିଏ ଥିଲେ । ଏବେ ଆମେ ଦି ଭାଇ ତାଙ୍କୁ ବଡ଼ ଭଉଣୀ ରୂପେ ନୁହେଁ ବଡ଼ଭାଇର ମର୍ଯ୍ୟାଦା ଦଉଛୁଁ । ଏ ଜନମରେ ତାଙ୍କ ଋଣ ଶୁଝିହେବ ନାହିଁ ।

ବାପାଙ୍କର କେବଳ ଏକମାତ୍ର ଝିଅ ନଥିଲେ । ଜଣେ କଳାକାରର ପ୍ରଥମା କନ୍ୟା ସନ୍ତାନ ସେ ।ତାର ନିପୁଣତା ସୁନା ପରଖିଲା ପରି କଷଟି ପଥରରେ ପରଖା ସରିଥିଲା । ସେଇ ପରୀକ୍ଷିତ ନିପୁଣତା ମୋର ବଡ଼ଭଉଣୀକୁ ତାର ପରବର୍ତ୍ତୀ ସାଂସାରିକ ଜୀବନରେ ଅଧୋମୁଖ କରାଇ ପାରିନାହିଁ । ବଂଶ ମର୍ଯ୍ୟାଦାକୁ ରକ୍ଷାକରି ଦୁଇ କୂଳର ଗୌରବ ବଢ଼ାଇ ଦୁହିତା ଅର୍ଥର ସାର୍ଥକତା ପ୍ରତିବାଦନ କରି ପାରିଛି ।

ପାଠ ବେଶୀ ପଢ଼ିନଥିଲେ ମୋର ବଡ଼ ଭଉଣୀ। ହେଲେ ହିସାବ କିତାପରେ ପୋଖତ ଥିଲେ। ସେ ମୁହେଁ ମୁହେଁ ହିସାବ ରଖି ପାରୁଥିଲେ। ଏବେ କାଗଜ କଲମରେ ବି ସେତକ କରିବା ସହଜ ନୁହେଁ। ଘର ଚଲାଇବାରେ ଧୁରନ୍ଧର ଥିଲେ ସେ। ଆମେ ଦି ଭାଇ ତାକୁ ଡରୁ। ଭକ୍ତି କରୁ। ବାଲୁତ ବେଳରୁ ସେ ଆମକୁ କେବେ ତାର ସ୍ନେହ ଅଜାଡ଼ି ଦେବାରେ ହେଳା କରିନାହିଁ। ସେ ଆମର ଲକ୍ଷ୍ମୀ, ସରସ୍ୱତୀ ଓ ଦୁର୍ଗା। ଲକ୍ଷ୍ମୀ ରୂପରେ ଆମକୁ ଖାଇବାର ଯୋଗାଡ଼ କରିଦେଇଛି। ସରସ୍ୱତୀ ରୂପରେ ଆମକୁ ବିଦ୍ୟାଦାନ କରାଇଛି। ଦୁର୍ଗାରୂପରେ ଆମକୁ ରକ୍ଷା କରିଛି। ମୋଟ କଥାରେ ତରୁଲତା ରୂପେ ସେ ଆମକୁ ଆବୋରି ଏମିତି ଲଟେଇ ଯାଇଛି ଯେ ଆମେ ତାର ପରମ ସ୍ନେହରୁ ସକଳ ସୁଖ ସୁବିଧା ଲାଭ କରିପାରିଛୁ।

ମୋ ବଡ଼ ଭଉଣୀର ବାହାଘର ବେଳେ ମୁଁ ସାନଥାଏଁ। ପ୍ରାଥମିକ ଶ୍ରେଣୀ ଛାତ୍ର। ହେଲେ ସେ ବାହାଘରର ସ୍ମୃତି ଏବେବି ମୋ ମନରେ ସତେଜ ଅଛି।

ପିତାପାଲି ଗଉଁତିଆ ଘରର ପ୍ରଥମ ନାତୁଣୀର ବାହାଘର। ବାଜା ବାଜିଲା ଯୋଡ଼ି ନାଗରା ବାଜିଲା। ଘୋଡାରେ ଆସିଲା ବର। କାନ୍ଧରେ ଶୁଭ ଫଟଫଟା। ମଙ୍ଗଳ ଖାନିରେ ଶୋଭା ପାଇଲା ଗାଆଁ ଦାଣ୍ଡ। କୁଣିଆ ମଇତରରେ ଫାଟି ପଡ଼ିଲା ଘର। ଖଣ୍ଡ ମଣ୍ଡଳ ଦୁଲୁକିଲା। ଗାଆଁ ଉଠୁଛି ପଡୁଛି। ଭୋଜିଭାତ ଦିଆନିଆର ହିସାବ ନାହିଁ। ସାରା ଗାଁର ବାହାଘରଏ। ପରିବେଶରେ ଉଚ୍ଚାଟର ଭାବ। ମନରେ ଭରା ଉଲ୍ଲାସ।

ବାପାଙ୍କ ଆଖିରେ ଲୁହ। ମା'ଙ୍କର ହୋସ ନାହିଁ। ମୂଳରୁ ନାକ କାନ୍ଦୁରୀଟାଏ ମା। ଏଣେ ଝିଅ ବିଦାହୋଇ ଯାଉଛି। ସେ ପୁଣି ମେଲାଣି ନେବ। ସତିଆ ମା'ଦୁଲାରେ ବସିବ ଝିଅ। ଖାଆଁ ଖାଆଁ ଘଉଡେଇ ଦେବ ଘର। ମା' ହାତରୁ ପାଇଟି ଛଡେଇ ନବାକୁ କିଏ ଥିବ ଆଉ? କେବେ କିଛି ମାଗି ନାହିଁ ବାପାଙ୍କୁ। କଣ ମାଗିବ? ତାର ତ ସବୁ। କେବେ କିଛି ମାଗିଥାନ୍ତା ହେଲେ, କହିଥାନ୍ତା

"ଥାଳି ଦୁଇବୁନ୍ଦା ଘିଅ
ବାପା ଗୋ ମୁଇଁ ତୁମର ଗେଲେହି ଝିଅ
ନାକ ଜାନି ଗୁନା ଦିଅ।



## ୩୫. ଆଖିର କଜଳ ସମିଆଠାର

ବଟା ପୀଠଉ ପରି ଗୋରୀ ଝିଅଟାଏ। ମାଆ ଆଖିରେ ଟୋପି ଚନ୍ଦନ। ଯାଉଁଳି ଜହ୍ନର ଫାଳେ ଯେମିତି। ସରଗର ତରାଟିଏ। ଅପସରା କହିଲେ ଚଳିବ। ରୂପରେ ରୂପବତୀ, ରସରେ ରସବତୀ। ସୁଖ ପସରାଟିଏ। ବାପା ଡାକୁଥିଲେ ପଦ୍ମରାଗମଣି।

ଖାଲୁତ ବେଳରୁ ତା'ର ଭାଇ ନଥିଲେ। ନୋହିଲେ ଡାକିଥାନ୍ତେ ଗାଆଁର ଗୋରୀ। ସୁନା ଗଉରୀ। ଭାଉଜ ଥାନ୍ତେନା ଶରଧାରେ ଡାକନ୍ତେ ଛାଇ–ଛଟକୀ। ସାନ ଭଉଣୀଟା ସଦା କହୁଥିଲା ଫୁଲେଇ, କୁଜୀ ବିଲେଇ। ମାମୁଁଥରେ କହିଥିଲେ ଭାଣିଜୀଟି ମୋର ମହମହ ମଲ୍ଲୀ। ମାଇଁ କହିଥିଲେ ଚ଼ହଟ ଚ଼ଂପା। ଅଜାମାନେ କହୁଥିଲେ ଛଇଲୀ। ଆଈ କହୁଥିଲା ଜାଙ୍ଗଲଖାଇ। କିଏ କହୁଥିଲା ମଦ–ଅଲସୀ ମାନିବ ବୋହିଲେ ଭରା କଳସୀ। ଯିଏ ଯାହା କହୁ, ସେ ସତରେ ମାଖନଗୁରୀ।

ସତକୁ ସତ କୋଟିଏରେ ଗୋଟିଏ ଥିଲାସେ। ରାକାରାତି ପରି ସଫା। କଅଁଳ କଥା ପରି ମୁଲାୟାମ। ଦୀପର ଗୋରୀ ଶିଖାଟିଏ ଯେମିତି। ସକାଳର କଅଁଳ ଖରା। ଇନ୍ଦ୍ରଧନୁର ଗାଢ଼ ରଙ୍ଗିମାଟିଏ ସତେ! ତେଜର ଲହରୀଟାଏ। ଚ଼ମକର ଭଉଁରୀଟାଏ। ବାସ୍ନାଭରା ଦମକାଏ ପବନ। ତାକୁ ଦେଖିଦେଲେ ଲାଗେ ଆଦ୍ୟ ମୌସୁମୀର ମତ୍ତ ମୟୂରୀଟାଏ। ଅଧାଗୁଆ ଗଜଲର ଅଧେ। କଲ୍ୟାଣୀ ରାଗଟାଏ। ଲଳିତ ଲତାଟିଏ। ବଇରାଗୀର ନବୀନ ଅନୁରାଗଟିଏ। ତାକୁ ଦେଖିଦେଲେ ଏମିତି ଲାଗେ କେଶ ବାନ୍ଧୁଛି କୋଣାରକର ଶୀଳା ନାୟିକାଟିଏ। ରସର ଅର୍ନ୍ତଲୀନ ଫଲଗୁର ଫୁଆରାଟିଏ। ରକ୍ତରେ କ୍ରମେ କ୍ରମେ ଆହୁରିରୁ ଆହୁରି ବଢୁଥିବା ନିଶା ଯେମିତି। ତା' ଆଗରେ ସକାଳ ଯେମିତି ମିଠା ସଞ୍ଜବି। ରାତି ଯେମିତି ମିଠା ଅରାତି ବି। କେମିତି ଗଢ଼ିଲା ସେ ଦଇବ। ଦେଖିଲେ ବଇଦ ଡାକିବାକୁ ହୁଏ। ତା' ଆଗରେ ଜହ୍ନବି ଝାଉଁଳି ଯାଏ। ତରାମାନେ ଟରାଟରା ହୁଅନ୍ତି। ମୟୂରକଣ୍ଠୀ ମେଘ ଓହ୍ଲାଇ ଆସେ ତା' କେଶକୁ। ଆଖିରେ କଜଳ ନାଇଲେ ରାତି ଆସିଯାଏ। ହସିଲେ ହିନା ଫୁଟେ। ଗାଇଲେ ଗୋମତୀ ବି ଅଟକିଯାଏ। ତା' କନକାଙ୍ଗୀ ବାହୁ ଲତା ପାଲଟିଯାଏ ବେଢ଼ିଦେଲେ। ଚ଼ିତ୍ରିତ ଦିଗନ୍ତେ ଜ୍ୟୋତି ରେଖାଟିଏ। ମୁଗ୍ଧା ମଞ୍ଜରୀର ଲାଜୁକି ଲାଜଟିଏ। ପ୍ରଥମ ମେଘର ଗନ୍ଧଟିଏ ସତେ! ଶାମୁକାର ଶ୍ୟାମଳ ଅନ୍ଧକାରରେ ସେ ମୁକ୍ତା ବିନ୍ଦୁଟିଏ। ତା' ଆଖିରେ ଆକାଶ ତନ୍ମୟ। ସ୍ନାୟୁରେ ମାଟିର ଉଲ୍ଲାସ। ହର୍ଷର ନବୀନ ପୁଲକଟିଏ। ତା' ଦେହର ପ୍ରତିବିମ୍ବେ ବୁଡ଼ିଯାଏ ପରମହଂସ। ସନ୍ଧ୍ୟାସ୍ୱର୍ଣ୍ଣ ଶାଖାର ଶିଖରରେ ଶାନ୍ତ ବାଦଳ ଖଣ୍ଡେ। ଶ୍ୟାମଳୀ ଖେତର ଉଛୁଳା ଯଉବନଟାଏ। ଲାଜକୁଳୀ ଝରଣାଟାଏ। ବୋହୂହବ ଓଦାଓଦା ଆଖି ବତୁରାଇ। ନିଜକୁ ଖୁଁମୁଥିବା କାଠହଣା ଚ଼ଢ଼େଇଟିଏ ଯେପରି! କସ୍ତୁରୀ ମୃଗର ସମ ପାରେ ନାହିଁ ଜାଣି ଆପଣାର ନାଭି ଗର୍ଭ ଗନ୍ଧ। ବାହୁରେ ବଳୟ ନାସାରେ ବସୁଣୀ କରେ କନକର କଙ୍କଣ। ଝିମିରି ଝିମିରି ମେଘର ଛିଟାରେ ଭିଜା ଭିଜା ଅଙ୍ଗବାସ। ସୂର୍ଯ୍ୟର ଶେଷ ରଶ୍ମିରେ ଗାଧୋଉଥିବା ରକ୍ତପଦ୍ମର କଢ଼ଟାଏ ଯେମିତି। ଜୀବିତ ନିଶ୍ୱାସଟିଏ! କୋଟିକମ ଭରା କୋମାର୍ଯ୍ୟର ରୂପଟିଏ। ରୂପର ପାଦପେ ଦରଫୁଟା କଦମ୍ବଟିଏ। ସାଇତା ଚ଼ିଜର ଭଳି ଜୀବନ୍ତ ଲୋଭଟିଏ! ଚ଼ନ୍ଦନର ଛରା ସତେ! ଛମ୍ ଛମ୍ ନାଚର ନଗ୍ନ ଅନୁପ୍ରାସ।

ମନର ନିକୁଞ୍ଜେ ସଦା ଉଭା ଶ୍ରୀ ରାଧାଟିଏ କି! ଗାଢ଼ନୀଳେ ସୁଗଭୀର ସାଗର ଭଳି ମମତାଟିଏ। ଗୋଧୂଳିର ଚିତାରେ ନିହତ ପିଙ୍ଗଳବର୍ଣ୍ଣା ଶିଖାଟିଏ। କଦମ୍ବର ଦଦରା ଛାଇରେ କାନନମାଳିନୀ ବସୁନ୍ଧରାଟିଏ। ଛାୟାଘନେ ଉନ୍ମନା ହରିଣୀଟାଏ। ଚଉପଦୀ ଭଳି ଆପ୍ଲୁତ ଓ ଆମ୍ଲୀନ ଧାଡ଼ିଏ କବିତା। ଲଜ୍ଜାନତ ଆଖିରେ ନିବେଦିତ ପ୍ରାଣର ଆଇନା ଖଣ୍ଡେ। ଶ୍ରୀ ଅଙ୍ଗ ମାଜଣା ବେଳେ କନକ ଚମ୍ପାର ଦିହ ଦୋହଲିଯାଏ। ଗୌରୀ ବାହୁବଳୟରେ କବଳିତ ମୋ ମନର ରାଜପୁତ୍ର ସ୍ୱପ୍ନାବିଷ୍ଟ। ଶାସ୍ତ୍ରୀୟ ନୃତ୍ୟର ଅଦ୍ଭୁତ ମୁଦ୍ରାଟିଏ ଯେମିତି। ବନାନୀର ସେ ପାରିରେ ଅସ୍ତରାଗ ପରି। ସାଇଦା'ଣ୍ଡେ ଛମ୍ ଛମ୍ ଜୋଛନାର ନାଚ଼ଟିଏ। ଦୃକ୍‌ପାତେ ଭିତରକୁ ଦିଗମ୍ବର କରୁଥିବା ଏକ ପ୍ରସାରିତ କାମନା। ଆଦି ପୁରୁଷ ଓ ଆଦିମ ନାରୀ ପାଖାପାଖି ହଉଥିବା ବେଳର ବେପରୁଆ ବେପଥୁ। ଉଦ୍ଭ୍ରାନ୍ତ ଆଷାଢ଼ଟିଏ ଦେଖିବା ଲୋକର ଶିରାରେ ଶିରାରେ। ତୁମକୁ ଦେଖିଲେ ନୂତନବସନ୍ତ ଆସେ ଝୁଣି ଝୁଣି ମଲା ହାଡ଼। ନିତ୍ୟ ବିରହରେ ରାଇକୁ କହ୍ନାଇ ଝୁରିବାର ବୈଷ୍ଣବୀୟ ଡାକଟିଏ ଅବା! ବାଞ୍ଛିତ କାମନାର ସ୍ଥିର ତରଙ୍ଗଟିଏ। କୋଣାର୍କ ଶୀଳାନଟୀ ସମ ବୟସର ବୋଝ ବୋହି ଭାରି ଗହଣାରେ ପୁରାତନ ହେବାପାଇଁ ଡାକଟିଏ! ତାକୁ ଦେଖିଲେ ମନହୁଏ କୁନି କୁନି ପକ୍ଷୀ ହୋଇ ଅନେକ ଗାଇବାକୁ ଡ଼େଣା ଝପଟାଇ। ତା'ର ଟଣା ଟଣା ଭ୍ରୁରୁ ଅନେକ କହୁଥିବ ନା ମୋ'କଥା? ତାକୁ ଦେଖିଲେ ଉତ୍ତେଜିତ କାମନାର ନଈ ଜଳ ଚିକ୍‌ଚିକ୍ କରେ। ଅଭିମନ୍ୟୁ ଉତ୍ତରା କଣ୍ଠରେ ଗାଇବାକୁ ତାରୁଣ୍ୟର ଚ଼ଉପଦୀ ମନହୁଏ ସେ ଝିଅକୁ ଦେଖିଲେ। କଉଠୁ ପାଇଲା ସତେ ସେ ଝିଅ ଏପରି ଏକ ସଂହତ ଓ ସଞ୍ଚିତ ଲାବଣ୍ୟ? ଛଳଛଳ ନଈପରି ତା' ଅନୂଢ଼ା ହସ। ଅତୁଳନୀୟ କୋମଳତାରେ ଉଚ୍ଚାଟ ବସନ୍ତ ଆସେ ଲୁଚି ଲୁଚି ତା' କୁଞ୍ଜ ସନ୍ଧିରେ। ଭୁଜଙ୍ଗ ବେଣୀରେ ତା'ର ଘୁଞ୍ଚିଯାଏ ସମୟର ଅପରାଧୀ ମୁହଁ। ଜବା କୁସୁମର ବାଂମୟ ସକାଳଟାଏ ଯେମିତି। ଋତୁ ଉନ୍ମନା ମୌସୁମୀର କନକ ରେଖାଟିଏ। ନିଷ୍ପାପ ଚେତନାର କୋମଳତାଟିଏ! ଦକ୍ଷ ବିନ୍ଧାଣୀର ନିପୁଣ କଳାର କାରୁକାର୍ଯ୍ୟଟିଏ। ମୋ ପ୍ରେମର ପ୍ରଥମ ଯୋଜନ ଗନ୍ଧା। ଗଦଗଦ ମହକର ମହମହଟିଏ। ମଉନୀ ନଈର ଜହ୍ନର ଝିକିମିକି ଭଳି! ଛଳ ଛଳ ପାହାନ୍ତିରେ ତାରାପରି ଏକ ବର୍ଣ୍ଣାଢ଼୍ୟ ମହିମାର ପ୍ରଲେପଟିଏ। ସୁନା ଖଡ଼ିକାର ଲତାପରି ଦେହ। କଅଁଳ ଖରାରେ ଅଙ୍ଗ ପକାଳିବାର ସୁଖଟାଏ ଯେମିତି! ଗୁଡ୍‌ଭେଲି ଆମ୍ବର ଦରପଚା ଲେଟିଟାଏ!

ହୁମୁ ହୁମୁ ଝୁମୁ ଝୁମୁ ହେଲେଣି ସେଆଡ଼େ ସାଇଝିଏ। ସିଏ ଯଉଠିକି ବିଜେ କରେ, ତମକୁ ମିଛ ମୋତେ ସତ, ହେ ସାଧୁଜନମାନେ ନୂଆ ସୁଅର ଫେଣପରି ବିଳୋଲ ହସର ଝରଣା ଝରି ଝରି ଯାଏ। ସେ ମହିମଣ୍ଡନା ମୋ ପୁର ମଣ୍ଡିବେ କି? ଭାବନାରେ ଝଲସି ଉଠଇ ତାରା। ସେ ଆସନ୍ତା କି ଫୁଲେ ଫୁଲେ ମହକୁଥାନ୍ତା ମୋ ଘର ବାହାର? ସେ ଯଉଦିନ କନକ ସିନାନ କରିଥିବ, ନୂଆ ମେଘ ଘୋଟି ଆସିଥିବ। ମାଟି

ହୋଇଥିବ ରଜସ୍ୱଳା । ତାକୁ ଦେଖିଲେ ମୋ' ହାଡ଼େ ହାଡ଼େ ତାତି । କଡ଼ କଡ଼ି ଜର । ତାକୁ ପାଖରେ ବସେଇ ତାମ୍ବୁଳ ସେବନକୁ କେବେ ଯୋଗ ହେବ? ତାକୁ ଦେଖିଲେ ଗଦାଗଦା ଦୁଃଖ ମେଘ ଫାଟିବା ପରି ଅପସରିଯାନ୍ତି । ତା' ଲଳିତ ଚିବୁକର ବର୍ଣ୍ଣାଢ଼୍ୟ ଜାଇ ହଇରାଣ କରୁଥିଲା ସତେ!

ଏତେ ରୂପ ଏତେ ଠାଣି ସେ ଝିଅର ଥିଲାଯେ ମୁଁ ତାକୁ ପିଲାବେଳୁ ଦେଖି ଆସୁଥିଲେ ବି ନୂଆ ନୂଆ ଲାଗିଲା ସେଦିନ । ଯେଉଁଦିନ ମାଆ ପଚାରିଲେ "ଟୁକୀକୁ ମନ ପାଇଲାକି ନାଇଁରେ?" ମୁଁ ସିଧା ସିଧା ହଁ ନକହି ମୁଣ୍ଡ ଆଉଁଷି ଅଧୋବଦନରେ ଠିଆ ହେଲି । କଉଠିଥିଲା କେଜାଣି ଝିଟିପିଟି ସତ୍‌ସତ୍ କଲା ।



## ୩୬. ଅନ୍ୟ ଏକ ବିଷ୍ଣୁଶର୍ମା

ସାକ୍ଷରତା କଥା ଉଠିଲେ ଆମ ଗାଁ ପିତାପାଲିର ଭକ୍ତ ଗୁରୁ କଥା ମନେ ପଡ଼ିଯାଏ । ଯାହା କହିବାକୁ ଯାଉଛି । ତାର ସମୟଥିଲା ୧୯୪୦ ରୁ ୧୯୫୦ ଭିତରେ । ମୋ ପିଲା ବେଳର କଥା । ଗୋକୁଳ ପଶାୟତ ଗାଁର ବାରିକ । ଆମ ଗାଁ ତାର ଯଜମାନ ଗାଁ । ସପ୍ତାହକୁ ଥରେ ଆସେ । ଗୋକୁଳ କବିଟାଏ 'ଶବର ଲୀଳା' ସୁଆଙ୍ଗ ଲେଖିଥିଲା । ଆମ ଗାଁ ପିଲାଏ ସେ ସୁଆଙ୍ଗ ଶିଖିବାକୁ ମନକଲେ । ଶିଖିବାକୁ ଯାହାଙ୍କ ଆଗ୍ରହ ସେମାନେ ସବୁ ମହା ମୂରୁଖ । ଅଡୁଆ ହେଲା କଣ କରାଯିବ? ଅକ୍ଷର ଶିଖିଲେ ସିନା ନିଜ ନିଜର ଗୀତ ପଇଟେଇ ହେବ । ଶୁଣି ଶୁଣି ମନେ କରିବ ବା କେତେ?

ଭକ୍ତ ତିଆଡ଼ି, ଗରିବ ବ୍ରାହ୍ମଣ ଜଣେ । ବେଶୀ ପାଠ ପଢ଼ି ନାହାନ୍ତି । ପାଖ ସ୍କୁଲରୁ ପ୍ରାଥମିକ ଶେଷ କରିଛନ୍ତି । କୌଣସି ଅନୁଷ୍ଠାନରେ ଶିକ୍ଷକତା କରିନାହାନ୍ତି । ହେଲେ ଗାଁ ଗୋଟାକର ଗୁରୁ । ଭକ୍ତ ଗୁରୁ କହିଲେ ଖଣ୍ଡ ମଣ୍ଡଳରେ ସମସ୍ତେ ଜାଣନ୍ତି । ଦୁଇମାସ ଭିତରେ ଭାଗବତ ପଢ଼ାଇ ଦେବାର ଅଦ୍ଭୁତ କୌଶଳଟିଏ ଜଣା ତାଙ୍କୁ । ପିଲା ହେଉକି ବୁଢ଼ା, ଯିଏ ଆଇଲା ତାଙ୍କ ପାଖକୁ ଚ଼ର ଚ଼ର ଲେଖି ପାରିବ । ଟପୋ ଟପୋ ପଢ଼ି ପାରିବ, ଭାଗବତ ହଉକି ପୁରାଣ ।

କିନ୍ତୁ ଲୋଡ଼ା ନାହିଁ ବହି ସିଲଟ, ଚକଖଡ଼ି କି କଲାପଟା ତାଲିମ କି ତେଲ । କିଛି ଦରକାର ନାହିଁ । ଖାଲି ଦରକାର ଖୋଲା ଜାଗାଟିଏ । ବଡ଼ ପିଣ୍ଡାଟାଏ ହେଲେ ହେଲା । ଭକ୍ତ ଗୁରୁ ପାଖରେ ଥିବା ମାଖନ ଗଉଡ଼ର ପିଣ୍ଡାକୁ ବେଶୀ ବ୍ୟବହାର କରୁଥିଲେ । ଯେତିକି ଏକାଠି ହୋଇ ପାରିଲେ, ପଟାଖଣ୍ଡେ ମିଳୁଛି ଭଲ ନହେଲେ ତଳତ ଅଛି ତହିଁରେ ଇଟାଗୁଣ୍ଡ ହଉକି ସରୁବାଲି ହେଉ ଲେପିଦେଲେ ହେଲା । ସରୁ କାଠିରେ

ଲେଖିବୁ । ବର୍ଣ୍ଣ ପରିଚୟ । ହଜାରେ ଭିତରେ ହିସାବ କିତାବ । ହରଣ ଗୁଣନ ଯୋଗ ବିୟୋଗ । ନିଧଡ଼କ ଭାଗବତ ପଢ଼ି ପାରିଲେ, ପଢ଼ା ଶେଷ । ଦୁଇମାସ ଯଥେଷ୍ଟ । ଏ ପାଠରୁ ସାର୍ଟିଫିକେଟ ମିଳେନା । ଗୁରୁ ଖାଲି ହଁ କହିଲେ ହେଲା ।

ମୁଣ୍ଡଳା କାଟି ବର୍ଣ୍ଣ ଶିଖିଲେ ହେଲା । ମାତ୍ରା ଲଗାଇବ କ'ରେ ବାଡ଼ି, କା କରେ ଚିଟାକି କ ପୁଡ଼ିଆ କୋ । କ ଚାରିଅଙ୍କକୁ ଏମିତି ଏମିତି ମାତ୍ରା ଶିଖିବୁ । ତାପରେ ଯୁକ୍ତାକ୍ଷର । ସଂଖ୍ୟା ଗଣା । ତେନ୍ତୁଳି ମଞ୍ଜି ପୁଳାଏ ହେଲେ ଗଣା ଆରମ୍ଭ । କାଠି ବିଡ଼ାରୁ କେତେରୁ କେତେ ଯୋଗ ବିୟୋଗ । ତା'ପରେ ହରଣ ଗୁଣନ ଶେଷକୁ ପଣକିଆ ପଚିଶ ଖନ୍ଦା ଘୋଷି ପାରିଲେ ବାଘନଥା । ଏଇଥିଲା ତାଙ୍କ ପାଠ ପଢ଼େଇବାର ଧାରା । ଶିଖିବା ଲୋକର ସମୟକୁ ଜଗିପାଠ । ଶୀତ ମାସରେ ବଡ଼ ରାତି । କେତେ ଶୋଇବୁ? କଡ଼ ଲେଉଟାଇ ଲେଉଟାଇ ରାତି ପାହେନା । ଏଣୁ ସଞ୍ଜକୁ ଦି ଘଡ଼ି ଠୁଳ ହେବାରେ କିଛି କ୍ଷତି ନାଇଁ । ଖରା ମାସରେ ଦିପହରଟା ଗୋଟାଏ ଦିନ । ଖାଇ ପିଇ ଦଣ୍ଡେ ଶୋଇଲେ ଆଉ କଣ କରିବୁ? ଗାଁ ଖୁଲିରେ ବାଘ ପରି ଖରା ଗରଜୁଥିବ । ଏଣୁ ଦି' ଘଡ଼ିଏ ବସିଯା । ବସିବାଠାରୁ ଖାସିବା ନ୍ୟାୟରେ ଦି' ଅକ୍ଷର ଶିଖ । ଏଣୁ ଶୀତ ହେଉକି ଖରା ହେଉ ଭକ୍ତ ଗୁରୁଙ୍କ ଗୋଠରେ ଗୋଠେ ଲୋକ । ବରଷାର ହାଉ ହାଉ ଭିତରେ ଲୋକଟ ବିଲରେ । କାମ କମାଣିର ସମୟ । ପାଠକୁ ପଚାରେ କିଏ? ଏଣୁ ଶୀତ ଓ ଖରାରେ ତାଙ୍କ ମଫସଲି ମେହେଫିଲରେ ଅନେକ ଭୀଡ଼ ।

ଅପାଠୁଆକୁ ପାଠ ଶିଖେଇବାର ଚମତ୍କାର କୌଶଳଟିଏ ଜଣାଥିଲା ତାଙ୍କୁ । ପାଠ ବେଳେ କାହା ମୁହଁ ଦେଖନ୍ତି ନାହିଁ । ମାରିଆ ମଣ୍ଟେସରୀଙ୍କୁ ଜାଣିନଥିଲେ ସେ । ଫ୍ରୋବେଲ କିଏ ଆଉ ଭକ୍ତ ଗୁରୁ କିଏ? ଜନଡ୍ୟୁଇଙ୍କ କଥା ତାଙ୍କ କାନରେ ବାଜିବାର ସୁଯୋଗ ବି ନାହିଁ । ଶିକ୍ଷା ସଂସ୍କାରକ ମାନଙ୍କ ନାଁ ବି ସେ ଶୁଣି ନଥିଲେ । ଯଦିବା ଜାଣିଥିବେ ବିଷ୍ଣୁ ଶର୍ମାଙ୍କୁ । ଅମର କୋଷ ବରାବର ପଢୁଥିଲେ । ଏଣୁ ସଂସ୍କୃତ କିଛି କିଛି ଜାଣିଥିଲେ ।

ଭକ୍ତ ଗୁରୁ ଅଦ୍ଭୁତ ଲୋକଟିଏ । ନ ହେଲା ବେଳକୁ ଭିକ ମାଗି ବରଂ ପେଟ ପୋଷିବେ । କୁଟୁମ୍ବକୁ ଆହାର ଦେବେ । ହେଲେ ପାଠ ବିକି କାହାଠୁ ପାହୁଲାଟିଏ ନବାର ମୁଁ ଜାଣିନାହିଁ । ବିଡ଼ମ୍ବନା ଆଜି ତାଙ୍କ ଭଳି ଲୋକ ନାହାନ୍ତି । ଯଦି ବା କଉଠିଥିବେ ସେମାନଙ୍କୁ ଆମେ ଲୋଡୁନାହୁଁ । ଆଜି ଭାରତରେ ଏ ଟୁ ଜେଡ଼୍ ସବୁ ଅଛି ଖାଲି ନିଷ୍ଠା ଟିକକ ନାହିଁ ବୋଲି ସବୁ ଅଭିଯାନ ମାଣିକ ଗଉଦୁଣୀର ଦହି ଖାଇବା ପରେ ହିଁ ଶେଷ ହୋଇ ଯାଇଛି । ବିଚାରୀ ମାଣିକ ମଣିମାଙ୍କ ମୁଦି ପାଉଛି କେଉଠି?

ଏବେ ଜାତୀୟ ରାଜ୍ୟ ଜିଲ୍ଲାସ୍ତରରୁ ତୃଣମୂଳ ପର୍ଯ୍ୟନ୍ତ ସାକ୍ଷରତା ଅଭିଯାନ ଚାଲିଛି । ସରକାରୀ ବେସରକାରୀ ସାହେବ ଦଏବ ସକଳେ ମାତିଛନ୍ତି । ଅଭିଯାନଟି କିନ୍ତୁ ଆଗକୁ ବଢୁନାହିଁ । ଯେଉଁଠି ଆରମ୍ଭ ହେଉଛି ସେଇଠିହିଁ ଗଙ୍ଗାଧର ମେହେରଙ୍କ 'ତିତୁ' ପରିଗମନ

ବିସ୍ମରି ଯାଉଛି। କୁଆଡେ ପ୍ରଚୁର ଅର୍ଥ ସରୁଛି। ଅନର୍ଥ ବି ବଢୁଛି। ଥୋକେ ମଉଜ ମଜଲିସ କଲାବେଳକୁ ଆଉ ଥୋକେଙ୍କର ମୁଣ୍ଡ ଦୁଃଖ ଆରମ୍ଭ ହୋଇ ଯାଉଛି। ମୋଟାମୋଟି ସଭିଏଁ ଗୋଟିଏ ମତ ଦଉଛନ୍ତି ଯେ ସାକ୍ଷରତା ସଫଳ ହେଉନାହିଁ।

ମୂଳକଥା ସାକ୍ଷରତା ଏକ ସାମାଜିକ କାମ। କାରଖାନରୁ କମାଣି ଆଶା କରିବା ଭଳି ଏଠୁ କିଛି ଆଶା କରି ବସିଲେ ସବୁ ଚେଷ୍ଟା ଫସର ଫାଟିଯିବ। ସାକ୍ଷରତା ଦୁଇଜଣଙ୍କର କାମ। ଜଣେ ପଢ଼ିବ ଆଉ ଜଣେ ପଢ଼େଇବ। ମାତ୍ର ସଚରାଚର ଏ ଆଲୋଚକ ଦେଖି ଆସୁଛି। ସାକ୍ଷରତା କାର୍ଯ୍ୟକ୍ରମଟି ଶିଖିବା ଓ ଶିଖେଇବବା ଦି ଜଣଙ୍କୁ ଛାଡ଼ି ଚାଲିଛି। ଏ ଦି ଜଣଙ୍କର ମଝିଲୋକ ମାନଙ୍କର ହରବର କହିଲେ ନ ସରେ। ଭଲ କୋଠା ତୋଳା ହଉଛି। ବିମାନରେ ଧାଁ ଧପଡ଼ ଚାଲିଛି। ଫେକ୍ସରେ ଶୂନ୍ୟ ବାର୍ତ୍ତାମାନ ସଞ୍ଚରି ଯାଉଛି। ସୁନ୍ଦର କଲମ, ଫାଇଲ, ବେଶ, ଭୋଜିଭାତ, ରାଇଜବୁଲା, ବହି ଲେଖା, ବହିଦେଖା କର୍ମଶାଳା ଗୋଷ୍ଠି ଆଲୋଚନା ଭଳି କଥାମାନ ହଉଛି ମୂଳ ଦିଜଣଙ୍କର ମଙ୍ଗଳ କାମନା କରି, ହରିବୋଲ ହୁଳହୁଳି ପଡୁଛି। ଗଣ ମାଧ୍ୟମ ଗରଜୁଛି। ଆନନ୍ଦେ ଏକ ବାର କରି ପଥ ପ୍ରାନ୍ତ ନାଟକ, ଗୀତ, କବିତା ଆସରରେ ଜନତାଙ୍କୁ ସଚେତନ କରାଉଛି। ଆଉ କାର କଣ ହେଉଛି ସହଜେ କହିହେବ ନାହିଁ। କିନ୍ତୁ ମୂଳ ଦି'ଜଣଙ୍କର କିଛି ହଉନାହିଁ। ସେ ଦୁହେଁ ଯେିସାକୁ ତେିସା ରହି ଯାଇଛନ୍ତି।

ଦି'ମାସ ତଳର କଥା ଯୁବକ ଜଣେ ଆକସ୍ମିକ ଡାକିଲେ। ସାକ୍ଷରତା କାର୍ଯ୍ୟକମଟିଏ ହଉଛି, ଆସିବେ। ଗଲି, ଯାହା ଦେଖିଲି ନ କହିଲେ ଭଲ। ଯୁବକ ଜଣକ ମୋତେ ଭାଲୁ ଧରେଇ ଆଉ ଜଣକ ସହ କୁଆଡ଼େ ଅନ୍ତର୍ଧ୍ୟାନ ହୋଇଗଲେ। କଉଠିକି ଗଲେ ଯେ ରୁକୁଣା ରଥ ପରି ଲେଉଟିଲେ ନାହିଁ। ଏ ଅଧମ କିଛି କଉତୁକ କରି ସେଠୁ ଆତ୍ମରକ୍ଷା କଲା। ବଣ ଭୋଜିର ଧୁମ୍‌ଧାମଟିଏ ହେଲା। ସେଠି ଯାହା ଲୋକଥିଲେ କେହି ଶିଖିବା କି ଶିଖେଇବା ଲୋକ ନଥିଲେ। କୁଆଡ଼େ ତାଲିମଦାତା ମାନେ ଥିଲେ ସେମାନେ।

ମୂଳରୁ ମୁଁ ଗାଉଁଲି ଲୋକ। ଲୋକଙ୍କ ଆଗରେ ମରିବା ଯାଏଁ ରହିବି। ମୋର ଲୋକଙ୍କୁ ଡ଼ର। ତାଙ୍କୁ ଭଣ୍ଡିବା ଭଳି କିଛି କାମ କରିବା ମୋ ଦେଇ ହେବନାହିଁ। ଯାହା କହିବି ତାକୁ କାମରେ ନ କଲାଯାଏ ତ୍ରାହିନାହିଁ।

ନିରକ୍ଷର ମାନେ ସାକ୍ଷର ହୁଅନ୍ତୁ। ଏଥକୁ ନାଇଁ କରିବ କିଏ? ଏହା ଏକ ଜନ ହିତକର କାମ। ଏଥିରୁ ଆଉ କିଛି ଆଶା କରିବା ବୁଦ୍‌ବକି ହେବ। ଆଉ କଉଠି ଦି'ପଇସା ଖଟାଇଲେ ଲାଭଟାଏ ଚଟ୍‌କିନା ବାରି ହୋଇଯାଏ। ଏଥିରେ କିନ୍ତୁ ଓଲଟା। ଲାଭତ ହେବନି କ୍ଷତି ହିଁ ହେବ। ଏ କାମ ପାଇଁ ଶ୍ରଦ୍ଧାଥିବା କଥା। ପ୍ରଥମେ ଶ୍ରଦ୍ଧା କଲେ ଦୁତିଅରେ ନିଷ୍ଠା ଆସିବ। ଦୁର୍ଦ୍ଦିନରେ ହେଲିକେପ୍ଟରରୁ ଫୁଡ୍‌ପେକେଟ୍ ଫୋପାଡ଼ିଲା ଭଳି ସାକ୍ଷରତା କାର୍ଯ୍ୟକ୍ରମଟି ବୁଣା ଚାଲିଛି ଶ୍ରଦ୍ଧାହୀନ ଭାବେ। ଏଣୁ ସୁଫଳ ଗୁଜୁରି ପାରୁନି।

ମୋର ଏକମାତ୍ର ଛୋଟ ପରାମର୍ଶଟିଏ ଅଛି। ଆଗଭଳି ସାକ୍ଷରତା କାର୍ଯ୍ୟକ୍ରମକୁ ବୁଢ଼ାଙ୍କ ଠାରୁ ଆରମ୍ଭ ନକରି ପିଲାଙ୍କ ଠାରୁ ଆରମ୍ଭ କରାଯାଉ। ସର୍ବ ପ୍ରଥମେ ଆମେ ପ୍ରଥମ ଶ୍ରେଣୀକୁ ନେବା। ପିଲାଏ ଆମ ଯୋଜନାର କେନ୍ଦ୍ରବିନ୍ଦୁ ହୁଅନ୍ତୁ। ପଲ୍ସ ପୋଲିଓ ଭଳି ଆମେ ଆମ ଦେଶର ସବୁ ପିଲାଙ୍କୁ ପ୍ରଥମ ଶ୍ରେଣୀର ଶିକ୍ଷା ଦେବା। ତା' ଆରବର୍ଷ ୨ୟ ଶ୍ରେଣୀ। ଏମିତି ୫ମ ପର୍ଯ୍ୟନ୍ତ କାର୍ଯ୍ୟକ୍ରମକୁ ଆଗେଇ ନେବା। ତାପରେ ପରଖିବା ଆମେ ଭଲ କରୁଛୁ ନା ଭୁଲ। ପିଲାଙ୍କୁ ମୂଳରୁ ଅବହେଳା କରି ତାଙ୍କୁ ନିରକ୍ଷର ବୁଢ଼ା କରିବା କାହିଁକି? ପରେ ଲଣ୍ଠନ ଜାଳି "ତାରେ ନାନା ତାରେ ନାନା" ଗାଇବାର ଅଭିନୟ କରିବା କାହିଁକି?

ସାକ୍ଷରତା ନା ଶୁଣିଲେ ସତରେ ଆମ ଗାଁ ଭକ୍ତ ଗୁରୁଙ୍କ କଥା ମନେପଡ଼ି ଯାଏ। ଆଜି ପିତାପାଲି ଗାଁର ଭକ୍ତ ଗୁରୁ ଥାନ୍ତେ କି!!!



## ୩୭. ବାଣ ଆଣିଛୁ ବାରୁଦ ନାହିଁ

ଶେଷ ବଇଶାଖର ଖରା। ତଳ ତାତି ଉପର ତାତି। ଘରେ କୁଣିଆଙ୍କ ଭୀଡ଼। ଘରସାରା ଉଛୁଳା ଭୀଡ଼। ହେଲେ ଶୁଖିଲା ଶୁଖିଲା ଦିଶୁଥିଲା ଆମ ଗାଁ। ଲଗାତାର ଜରରୁ ଉଠିଥିବା ରୋଗୀପରି। ଗଉଁତିଆ ଘରର ବଡ଼ନାତିର ବାହାଘର। ଗାଁଆ ଉଠୁଥାନ୍ତା ପଡୁଥାନ୍ତା। ହେଲେ କାହାରି ମୁହଁରେ ତେଜ ନାହିଁ। ଖରା ପାଇଁ ନୁହେ। ବରଷକ ପରେ ଲୋକେ ଗାଁ ଛାଡ଼ିବେ। ହୀରାକୁଦ ପାଣିରେ ବୁଡ଼ିଯିବ ଗାଁ। କିଏ କଉଠିକି ଯିବ ଜଣାନାହିଁ। ଜନମମାଟି ସଦାପାଇଁ ଛାଡ଼ି ଯିବାର ଅସ୍ପଷ୍ଟ ଆତଙ୍କ ଛାଇ ଯାଉଥିଲା ସବୁରି ମୁହଁରେ!

ବାପାଙ୍କର ହରବର କହିଲେ ନସରେ। ମାଆଙ୍କର ତର ନାହିଁ। ଏକେ ପୁଅର ବାହା କରୁଛନ୍ତି ଦୁଇରେ ସେ ଯଉଁଠି ଚାହୁଁଥିଲେ ସେଇଠି ବାହାଘର ହଉଛି। ଜିତି ଯାଇଛନ୍ତି ସେ। ଲଢ଼େଇ ଜିତିବାର ଉଲ୍ଲାସଟିଏ ଅସ୍ଥିର ତରଙ୍ଗଭଳି ମାଡ଼ି ମାଡ଼ି ଆସୁଥାଏ ତାଙ୍କ ମୁହଁରେ। ପରିବାରର ଝିଅମାନେ ଆଗରୁ ଶାଶୁଘରୁ ଆସିଗଲେ। ଡ଼ାଳମଡୁଆ କାମ ସରିଛି। ଝୁଲି ବନ୍ଧା ସରିଛି। ଭୋଜିଭାତ ପାଇଁ ଜାତି ପ୍ରଧାନ, ବଳରାମ ତିଅଡ଼ି ଆୟୋଜନରେ ଲାଗି ପଡ଼ିଛନ୍ତି। ସେ କାଳରେ କଉ ଟେଣ୍ଟ ହାଉସ ଥିଲା ଯେ!

ସଞ୍ଜକୁ ବରଯାତ୍ରୀ ଯିବେ। ଡାକେବାଟ। ଘୋଡ଼ା ଆସିଲା। ପିତାପାଲି ଗାଁରେ ଷାଠିଏ ଘର ବଜନିଆ ବସ୍ତି। ବାରସାର ବଜା ଯିବ। ବରାତ ବାହାରିବା ଆଗରୁ ଗାଁ ଦାଣ୍ଡରେ ପାରେ ବାଜିବା କଥା। ଅଏଁଠା ମୁହୁରୀ ଫୁଙ୍କିଲା। ବାଜା ବାଜିଛି କି ନାଇଁ ଦୁଲୁକିଲା ଗାଁ। ମୁହୁରୀର ସମୁହ ଲହରଟିଏ ଭରିଦେଲା ରକତରେ ନୂଆ ଉନ୍ମାଦନା

'ଗିଜଣି ଗିଜଣି ନାର ଗିଜଣି।' ବାଜାରେ ଗଜଗଜେଇ ଗଲା ଗାଁ। ଢ଼ୋଲ ନିସାନ, ତାସା, ମୁହୁରୀର ଗୋଟାଏ ଭିନ୍ନ ରକମର ମିଠାସ୍ ଥାଏ। ରୋମାଞ୍ଚଥାଏ। ଉନ୍ମାଦିତ କରିପାରିବାର ଦମ୍ଭଥାଏ। ଅଏଁଠାର ମୁହୁରୀ ଆଉ ମହରଗୁର ଢ଼ୋଲ ପିଟା ନାଇଁ ଦେଖିବାର ଲୋକତ ଘଡ଼େ ଦେଖିବ। ବେଶ ମୁହେଁ ତୋରଣ ମଙ୍ଗଳ କଳସୀ ଥୋଇଲେ ବାଟମୁହେଁ। ବରକୁ ବିଦାକଲେ ମାଇପିଏ! ମାଁ, ଆଈ ଓ ଆଉ ଆଉ ମାନେ ବରର ଗାଲ ସେକିଲେ। ହୁଳହୁଳି ଦେଲେ ମାଇପିମାନେ "ମଙ୍ଗଳଂ ମଧୁସୁଦନଂ ମଙ୍ଗଳଂ ଗରୁଡ଼ ଧ୍ୱଜଃ" କହି କହି କୁଳ ପୁରୋହିତ ଦୀନବନ୍ଧୁ ମିଶ୍ର ଫୁଲ ଦୁବ ଚାଉଳ ବରଷା କଲେ। ମଙ୍ଗଳକାର୍ଯ୍ୟଟି ଶୁଭରେ ସରୁ। ଅମୃତ ବେଳାରେ ବରଯାଉ ଓ ଶୁଭବେଳାରେ ବୋହୂ ଆସୁ। ବରଯାତ୍ରୀର ଲମ୍ୱା ପଟୁଆର ଏ ଗାଁରୁ ସେ ଗାଁକୁ ଲାଗିଗଲା। ବାଜା ବାଜିଲା, ବାଣ ଫୁଟିଲା, ରୋଷଣିରେ ଝଲ ମଲେଇ ଗଲା ଗାଁ ଦାଣ୍ଡ।

ବର ଉତୁରିଲା ଘୋଡ଼ାରୁ। ବରକୁ ବରଣି କରି ଘରକୁ ନେଲେ। ବେଦୀରେ ବାହା କାମ ଚାଲିଲା। ଉଭୟ କୂଳର ପୁରୋହିତ ରଡ଼ିବା ଆରମ୍ଭ କଲେ। କିଏ କେତେ ଜାଣିଛି। ଶୁଣେଇ ଘୋଷା ଶ୍ଳୋକ ସବୁକୁ ରଟିଲେ। ବରଯାତ୍ରୀଏ ଖିଆ ପିଆରେ ମାତିଲେ। ଖାଇସାରି ବାହୁଡ଼ି ଆସିଲେ ବରଯାତ୍ରୀ ମାନେ। ବାହା ସରୁସରୁ ରାତ୍ରିଶେଷ। ସକାଳୁ ସକାଳୁ ଝିଅ ବିଦାହେବ। ଦୁଲା ସଜ ହୋଇଥିଲା। ସତିଆ ମା'ର ଦୁଲା। ଦୁଲା ବୋହିଲେ ଚାରିଜଣ। ବର ଫେରିଲା ଘୋଡ଼ାରେ। ସାଙ୍ଗ ଛଡ଼ାଣି ଦେଲାକି ନ ଦେଲା ବରକୁ ପଚାର।

ସବାରିଟି ଘର ମୁହଁକୁ ପହଁଚିବା ବେଳକୁ ସାହି ଝିଅମାନେ ହାଜର। ଭରା କଳସୀରେ ଆମ୍ବଡ଼ାଳ। ତା'ଉପରେ ଶ୍ରୀଫଳ। ପୁଅବୋହୂକୁ ଗାଳ ସେକି ଘରକୁ ନେଲେ। ଆଉଥରେ ଦୁଲୁକି ଉଠିଲା ବାଜା। ବନ୍ଦାପନାର ବେଳ ଯାଉଛି ବୋଲି ପୁରୋହିତ ଆକଟ କଲେ। ବନ୍ଦାପନାରେ ବସିଲେ ପୁଅବୋହୂ। ଜୁଆ ଖେଳେଇଲେ। ଝିଅ ଯାବୁଡ଼ି ଧଇଲା କଉଡ଼ି। ପୁଅ ଫିଟେଇଲା। ଫିଟେଇ ପାରିଲାନି। ଏଥୁ ଆଈମାନେ, ବହୁମାନେ ବୋହୂକୁ ଶିଖାଇଲେ "କହିଲେ କଣ ମାଗୁଛୁ, ମାଗ। ଗୁଲୁଗୁଲିଆ ବୋହୂଟି କିଛି ମାଗି ପାରିଲାନି ଲାଜରେ। ବର କହିଲା ତେନ୍ତୁଳି ଛାଟ ଦେବିରେ ଦେବି ମା' ଘର ଯିବୁ ଛାଟେ ଛାଟ। ବାଳିକା ବଧୂଟି ହସିବ କଣ ଲାଜରେ ସଢ଼ିଯାଉଥାଏ। ବୋହୂଟି ପ୍ରଥମ କରି ପିଣ୍ଡଦେଲା ପିତୃ ପୁରୁଷଙ୍କୁ। କୂଳ ବୋହୂର ମର୍ଯ୍ୟାଦା ପାଇଲା। କୁଆଁରୀ ଝିଅଟିଏ ସତରେ ଗୋଟାଏ ବଂଶକ ଗୋଟାଏ ଖାନଦାନିର ମର୍ଯ୍ୟାଦାକୁ ଗଣ୍ଠିକରି ରଖିଲା। କେବେ କଉଁଠି ହଜେଇ [illegible]ଦେବ ବୋଲି। କଉଠି ଥିଲା କେଜାଣି ସତିଆ ମା' ତଗଟାଏ ମେଳିଦେଲା।

"କୂଅକୁ ନପାଏ କୂଅ ଦଉଡ଼ିଲୋ
ନଈକୁ ନପାଏ କାତ

ତୋ ପୁଅ ପାଇଲା ସୁନାନାକୀ ବୋହୂ
ଆମକୁ ଦେ' ଭୋଜିଭାତ।"

ଧନ୍ୟ କହିବା ମନୁ ମହାରାଜଙ୍କୁ!

ମନୁ ସ୍ମୃତିରେ ବାହାଘରର କେତେକ ସାମାଜିକ ବିଧାନ ରହିଛି। ସେ ବିଧାନ ଗୁଡ଼ିକର ସର୍ବକାଳୀନ ମର୍ଯ୍ୟାଦା ରହିଛି। କାଳକ୍ରମେ ଲୋକେ ତାକୁ ଔପଚାରିକତାରେ ରଖି ତା'ର ଭାଉ କମେଇ ଦିଅନ୍ତି। ବାହାଘର ବେଳେ ଆମ ବାହା ମାନଙ୍କରେ "ଗୋଡ଼ ଧୁଆନି" ପ୍ରସଙ୍ଗଟିଏ ଆସେ। ଏହାର ମୂଳକଥା ହେଲା। ବଡ଼ ଜୁଆଇଁ ଶଶୁରଙ୍କ ବାକି ଝିଅମାନଙ୍କର ମଧ ଅଧିକାରୀ ଅଟନ୍ତି। ବଡ଼ ଝିଅକୁ ସେ ପାଇସାରିଛନ୍ତି। ଏଣୁ ତା'ପର ଝିଅକୁ ଅନ୍ୟକୁ ଦେବାପାଇଁ ବଡ଼ଝିଅ ଓ ଜୁଆଇଁଙ୍କ ସମ୍ମତି ଲୋଡ଼ାଯାଏ। ସାମାଜିକ ବିଧାନରେ ଏହା ଏକ ଉତ୍ତମ ବ୍ୟବସ୍ଥା।

ଶଳାବିଧା କଥାଟାଏ ଉଠେ। ସାନଭାଇ ବାହା ବେଦୀରେ ବରକୁ ବିଧାମାରେ। ବର ଶଳାକୁ କିଛି ଦେଇ ଆପ୍ୟାୟିତ କରେ। ଏ ବିଧାନରେ ସାନ ଶଳାର ଦାୟିତ୍ୱ ବହନ କରିବାକୁ ଜୁଆଇଁ ପ୍ରସ୍ତୁତ ରହିବା ଦରକାର। ଏ କଥାଟି କାଳକ୍ରମେ ଔପଚାରିକତାରେ ପରିଣତ ହୋଇଛି। ବାହାଘର ବେଳେ ବେଦୀରେ ହୋମହୁଏ। କନ୍ୟା ଖଇ ଅଞ୍ଜୁଳି ହୋମାଗ୍ନିରେ ପକାଏ। ଏହାକୁ ଲଜ୍ଜା ହୋମ ବୋଲି ପୁରୋହିତ କହନ୍ତି, ଏ ବିଧାନର ମୂଳକଥା ହେଲା କୁମାରୀ କନ୍ୟାଟିଏ ତା ଜୀବନରେ ପ୍ରଥମ କରି ଲଜ୍ଜା ଛାଡ଼ିବ। ଆପଣାକୁ ଗୋଟାପଣେ ଅନାବରଣ କରିଦେବ। ତାର କୁଣ୍ଠିତ କୁମାରୀତ୍ୱକୁ ସଦା ସର୍ବଦା ପାଇଁ ସମର୍ପି ଦେବ ଏକ ପୁରୁଷକୁ। ଖଇ ଉଞ୍ଜୁଳାଟିତା କୁମାରୀତ୍ୱର ପ୍ରତୀକ। ଲଜ୍ଜାର ପ୍ରତୀକ। ନାରୀତ୍ୱର ପ୍ରତୀକ। ବଧୂଭାବେ ଜୀବନରେ ଏକମାତ୍ର ପୁରୁଷକୁ ସମର୍ପି ଦେବାର ବ୍ରତଟାଏ। ଏଣୁ ଲୋକେ କହିଥାନ୍ତି ତୋ'ର ଲାଜ ମହତକୁ ପୋଡ଼ାଇ ଖାଇଲୁକି? ପ୍ରକୃତରେ ନୂଆ ବୋହୂଟି ତା'ର ଲାଜକୁ ପୋଡ଼େଇ ଦିଏ ହୋମରେ। 'ସ୍ୱାହା' କରିଦିଏ ତା'ର ସାଇତି ରଖିଥିବା ଅଚଖା କୁମାରୀତ୍ୱକୁ। ଆମ ବୈଦିକ ବିବାହ ପଦ୍ଧତିରେ ଯେଉଁ ବିଧାନ ମାନ ଅଛି। ସେ ଗୁଡ଼ିକ ଖାଲି ଆଚାର ନୁହେଁ। ବୈଜ୍ଞାନିକ ସିଦ୍ଧାନ୍ତରେ ଭରପୁର। ଆମେ ଆମର ପ୍ରତ୍ୟହିକ ଜୀବନରେ ସେ ଗୁଡ଼ିକର ଉପଯୋଗୀତାକୁ ପରଖିବାର ବେଳ ପାଉନାହୁଁ। ଆଧୁନିକ ଜୀବନର ବ୍ୟସ୍ତତା ଓ ବିଶୃଙ୍ଖଳା ଆମକୁ ସେ ସବୁର ମୂଲ୍ୟ ନିର୍ଦ୍ଧାରଣ କରିବାକୁ ପ୍ରଚୋଦିତ କରିପାରୁନାହିଁ।

ବନ୍ଦାପନା ସରିଲା ଗାମୁଛା କାନିରେ ବନ୍ଧା ନଡ଼ିଆ ଖଣ୍ଡିକ ଖାଇଦେବି ବୋଲି ଫିଟାଇଲି। ମୋର ପୁଇନ ମାଉସୀ ବର ଦୋଳଗୋବିନ୍ଦ ବିଶ୍ୱାଳ ମଉସା କହିଲେ, " ବେଡ଼ା କଉଠିକାର। ଖା'ନାରେ ପୁଅ। କାନିରେ ଗଣ୍ଠେଇରଖ ଚଉଠି ରାତିରେ ମୋ ମା'କୁ ଖୁଆଇବୁ"।

ବାଜା ବାଜିଲା। ବାଣ ଫୁଟିଲା। ଶଂଖ ଶୁଭିଲା। ଗରଜିଲା ଗାଁ। ଏତେ ଗରଜନ, ଏତେ କୋଳାହଳ, ଏତେ କଚ୍‌ରକାଚ୍‌ର, ଏତେ ହୋ ହଲ୍ଲା ଶବ୍ଦର ମହାଘୋଷ ଭିତରେ ସବୁକିଛି ଉଠିଲା ଆଉ ପଡ଼ିଲା। ହେଲେ ଶାନ୍ତ ନିଥର ଅଶ୍ଳୀଳ ଅନ୍ଧକାର ଭିତରେ ବୋହୂଟି ପାଇଲା ତାର ବାଞ୍ଛିତକୁ। ଚୁପ୍‌ଚାପ୍। ଏକାନ୍ତରେ ଏକାକାର ହୋଇଗଲା ଦୁଇମନ, ଦୁଇପ୍ରାଣ, ଦୁଇ ଦେହ ଓ ଦୁଇଟି ଯଉବନ। ଚମତ୍କାର ଚମର ବିବାହ-ବ୍ୟବସ୍ଥା ମନୁ ମହାମନା!

ବଜାର ଘୋଷ ମଉଳିଲା ବେଳକୁ ମୋର ଗଇଁ ଆସି ଶୁଣେଇ ଦେଲେ "ମଙ୍ଗଳୁ ମେଟ୍ରିକ ପାସ୍ କରିଛି।" ପାସ୍ କରିବାର ଖୁସି ବାହାଘର ଖୁସିଠୁ ବଳିପଡ଼ିଲା। ବାଳିକା ବଧୂଟି ହାତେ ଲମ୍ବର ଓଢ଼ଣା ଭିତରେ ଗାଇବି ଗାଇବି ହେଉଥିଲା ଯେମିତି!

"　　ବାଟର ଝୁମ୍‌ଝୁମି ଟାଇ
ମୁ ମାମୁଁ ଝିଅ, ତୁ ମୋ ଭାଇ
ସତେ ଦଇବ ଦେଲା ଯୁଟାଇ!"



## ୩୮. ପିଠଉ ବଟାରୁ ପରଖ ନବୁ

"ବୋହୂ ପରିମଳ କେମିତି ଜାଣିବୁ, ଶାଶୁ ଗୋଡ଼ ଯେବେ ଘଷି" ଅଏଁଠୁ ନାଥର ଭାରୀଯା ଲସ ବୁଢ଼ୀ କୁଜି ଅସରପା ପରି ଦାଣ୍ଡ ପିଣ୍ଡାରେ ବସିଥିବ। ନୂଆ ଭୁଆସୁଣୀ ମାନେ ପୋଖରିକୁ ଗାଧୋଇ ଯାଉଥିବା ବେଳେ ବୁଢ଼ୀ ଏମିତି ବାତୁଳି ମାନ ମାରିବ ଯେ ନୂଆ ବୋହୂମାନେ ହାତେ ଲମ୍ବର ଓଢ଼ଣା ଭିତରେ କେତେବେଳେ ଖିଲି ଖିଲେଇ ଯିବେ ତ ଆଉ କେତେବେଳେ ସେ ଟାପରାର ଛେନାଗୁଡ଼ କିଛି ବୁଝି ନପାରି କଣେଇ ଅନେଇ ଦେବେ।

କାହିଁକି କେଜାଣି ଆମର ବଂଶକୁ ପକାଘର ସୁଝେ ନାଇଁ। ସେଇ ଘରକୁ ଯିଏ ଯିବ ସିଏ ଭରିବ। ସେଇଠି କୁଆଡ଼େ ଗୋଟାଏ ବ୍ରହ୍ମଭୂତ ଥିଲା। ତେଣୁ ଘରଟି ଅଲୋଡ଼ା ହୋଇ ପଡ଼ିଥିଲା। ଦିନେ ମାକୁ କହିଲି ଆମେ ପକ୍କା ଘରକୁ ଯିବା। ଦେଖିବା ସେଇ ବ୍ରହ୍ମଭୂତ କଣ କରୁଛି? ରାମ ରାମ ଗଛ ତଳେ ପଛେ ରହିବୁ। ସେଠିକି ଯିବୁ ନାଇଁରେ ପୁଅ। ମା' ଛାତିରେ ଥୁଥୁ କରି କହିଲେ। ସେଇ ଘରକୁ ସଭିଙ୍କ ଡ଼ର।

ବାପାଙ୍କ ଭାଗର ଘର ବେଶୀଥିଲେ ବି ଖରାକାଳ ପାଇଁ ନାନା ଅସୁବିଧା। ମୋ ବାହାଘର ପରେ ଘର ଭିତରଟା ଆମର ହେଲା। ବାପା, ମା' ଉଠି ଆସିଲେ ବାରଣ୍ଡାକୁ। ଦି' ପହରଟା କଷ୍ଟେମଷ୍ଟେ କଟିଯାଏ। ରାତି ଆସିଲେ ଯେତେ ଝାମେଲା। ସବୁ ସହିହେବ।

ପହିଲି ଆଷାଢ଼ର ଗୁଳୁଗୁଳି ସହିହେବ ନାହିଁ। ଭୀଷଣ ଗରମରେ ସିଝି ସିଝି ପାଚିବା କଥା। ବାପା ବୁଦ୍ଧିଟିଏ ପାଞ୍ଚିଲେ। ଆମ ହଳିଆ ସୁନ୍ଦର ଗଉଡ଼କୁ କହିଲେ। ଢ଼ବାରୁ ଖପର ଛାଉଁଣି ଫାଳେ ହିଟା। ସୁନ୍ଦର ଗଉଡ଼ ସୁନ୍ଦର କରି ଫାଳେ ଛାଉଣି ମେଲା କଲା। ରାତିରେ ପୁଅ ବୋହୂ ସେଠିକି ଯିବେ। ଗରମ ହେବନି। ମୁଁ ହାର ମାନିଲି ବାପାଙ୍କ ବୁଦ୍ଧିକୁ। ଯେତେବେଳେ ଯାହା, ନାଥ ବୋଇଲେ ତାହା। ଅନ୍ୟମାନେ କେମିତି ଆରାମରେ ରହିବେ ସେ କଥା ଆଗେ କରନ୍ତି। ନିଜେ ପଛେ କଷ୍ଟରେ କଟେଇବେ।

ସଂସ୍କୃତି ଆମ ଜାମୁ ନୁହେଁ। ଝଟ ଯାଇ ପଟ ତୋଳି ଆଣିବି। ସଂସ୍କୃତି ଏକ ପୁରୁଣା ଚିଜ। ଏକ ଚଳଣି। ବାପା ଗୋସବାପା ଗୋସେଇଁ ବାପା ଅମଳର କଥାଟିଏ। ସେମାନେ ଯାହା କରୁଥିଲେ। ଯାହାଭଲ ଓ ହିତକର ଥିଲା। ତାକୁ ପୁଅ, ନାତି, ଅଣନାତି, ପଣନାତି ପର୍ଯ୍ୟନ୍ତ ଚଳି ଚଳି ଆସୁଥିବା ଏକଧାରା। ଧନୀ ହେଉ କି ଗରୀବ ହେଉ ପ୍ରାୟ ସବୁ ସମାଜରେ ଊଣା ଅଧିକେ ଏହା ଚାଲିଥାଏ। ଏଇ ଧାରାରେ ଗୋଟିଏ ଚିଜ ବାରି ହେଉଥାଏ। ଆଗ ପୀଢ଼ିର ଲୋକେ ପର ପୀଢ଼ିଙ୍କୁ ସୁଯୋଗ ଛାଡ଼ି ଦିଅନ୍ତି।

ଧରାଯାଉ ଅଜା ଆଈ ଢ଼ବା ଭିତରେ ରହୁଥିଲେ। ପୁଅ ବାହା ପରେ ସେଇ ଗମ୍ଭିରା ଘରକୁ ପୁଅ ବୋହୁ ଭୋଗିଲେ। ନାତି ବାହାପରେ ନାତି ନାତୁଣୀ ବୋହୂହଳଙ୍କୁ ଛାଡ଼ି ଦେଲେ ସେଇଘର। ବାପ ମାଆ ଆବୋରିଥିବା ଘରକୁ ନାତି ନାତୁଣୀ ବୋହୂ ପାଇଲେ। ବାପ ମାଆ ଉଠି ଆସିଲେ ପିଣ୍ଢାକୁ। ପର ପୀଢ଼ିର ଲୋକଙ୍କୁ ଆଗ ପୀଢ଼ିର ଲୋକେ ବାଟ ଛାଡ଼ି ଦିଅନ୍ତି। ସୁଯୋଗ ଛାଡ଼ି ଦିଅନ୍ତି। ସୁଖକୁ ନିଜର ମୌରସି ଅଧିକାର ନମଣି ତାକୁ ସମୟାନୁସାରେ ବାଣ୍ଟିକୁଣ୍ଟି ଭୋଗ କରନ୍ତି। ଏହା ହେଉଛି ଆମ ସଂସ୍କୃତି। ଏ ପ୍ରକାର ଚଳଣିରୁ ସଂସ୍କୃତିକୁ ଠଉରେଇବାକୁ ହୁଏ। ମୁଁ ଆମ ପରିବାରରେ ଏ ପ୍ରକାର ସଂସ୍କୃତିର ଜୀବନ୍ତ ଧାରାଟିଏ ଲକ୍ଷ୍ୟ କରିଛି। ମୋ ଅଜା, ମୋ ବାପାଙ୍କ ଅଜାଙ୍କୁ ଦେଖିଛି। ସେମାନେ ବେଶୀ ପାଠ ପଢ଼ି ନଥିଲେ ବି ସାମାଜିକ ଚଳଣିରେ ପଣ୍ଡିତଥିଲେ। ଅନ୍ୟର ଆବଶ୍ୟକତା ବୁଝୁଥିଲେ। ଦୂରକୁ ଦେଖି ପାରୁଥିଲେ। ଆଗାମୀ ବଂଶଧରକୁ ଜନମ ହେବା ଆଗରୁ ଚିହ୍ନିପାରୁଥିଲେ। ଅନୁଭବି ପାରୁଥିଲେ। ଆଗାମୀ ପୀଢ଼ିର ପିଲାଏ କେଉଁ ସମୟର ସମ୍ମୁଖୀନ ହେବେ ସେଇ ସମୟକୁ ଦେଖି ପାରୁଥିଲେ। ସୁଖକୁ ମାଡ଼ି ବସୁନଥିଲେ। ନିଜ ପରେ ଅନ୍ୟମାନେ ବି ସୁଖ ଭୋଗ କରନ୍ତୁ। ଚାହୁଁଥିଲେ। ବାଟ ଛାଡ଼ି ଦେଉଥିଲେ ଅନ୍ୟମାନଙ୍କୁ। ଆମ ଗାଁରେ ଏମିତିକା ଏକ ବାରି ହୋଇ ଯାଉଥିବା ସଂସ୍କୃତିଟିଏ ଫୁଟି ଉଠିଥିଲା।

ଏବେ ଆମ ଅନୁଷ୍ଠାନରେ, ଅଣ ଅନୁଷ୍ଠାନରେ, ସରକାରୀ ବେସରକାରୀ ଦପ୍ତରରେ, ରାଜନୀତିରେ, ଦେଶ ଶାସନରେ, କ୍ଷମତା ଭୋଗରେ ପୂର୍ବ ସୂଚିତ ଚଳଣିରେ ଓଲଟା କଥାହିଁ ଦେଖୁଛୁ। ଷାଠିଏ ହେଲେ ବୟସ ଖସେ। ସବୁକାମରୁ ଓହରି ଯାଇ ପଛ ପୀଢ଼ିର

ଲୋକଙ୍କୁ ସୁଯୋଗ ଦେବା କଥା। ହେଲେ ସର୍ବୋଚ୍ଚ ରାଷ୍ଟ୍ରପତିଙ୍କ ଠାରୁ ସର୍ବନିମ୍ନ ମଣିଷ ପର୍ଯ୍ୟନ୍ତ ଗାଦି ଛାଡ଼ିବାକୁ କାହାରି ମନନାହିଁ। ସଭିଙ୍କ ମନ ମରିବାଯାଏ କୁରସିରେ ଲଟକିଥିବି। ଫଳରେ କାମ ଢ଼ିଲା ହେଉଛି। ଯେଣ ତେଣ ପ୍ରକାରେଣ କାମ ଗୁଣ୍ଡି ନେବାରେ ଅର୍ଥର ଅପଚୟ ଘଟୁଛି। ଏଣେ ପର ପୀଢ଼ିର ପିଲାଏ ଅତିଷ୍ଠ ହେଲେଣି ଏ ବୁଢ଼ାଏ ମରନ୍ତେ କି? ଏକଥା ଖୋଲି ନ କହିଲେ ବି ଚୂଳିମୁଣ୍ଡକୁ ଛେଚି ବୋହୂଟି ଯେମିତି ମନର ରାଗମାରେ ଆମ ପିଲାଏ ତାଙ୍କ ମନର ଅସନ୍ତୋଷ ନାନା ବାଗରେ ପ୍ରକାଶ କରନ୍ତି। ସନ୍ତ୍ରାସ ବାଦର ମୂଳମଞ୍ଜିଟି ଏଇ ଅସନ୍ତୋଷର ବୋଲି ମନେହୁଏ। କୁରସିର କରାମତି ଏମିତି ଯେ ଥରେ, ଯେ ବସିଲା ସେଇଠୁ ଉଠିବାକୁ ତାର ମନନାଇଁ। ଯେ କୌଣସି ଉପାୟରେ ସେଇଠି ଲଟକି ରହିବାକୁ ଇଚ୍ଛା। ସକଳ ଜନ ଅସନ୍ତୋଷର ଏ କଥାଟି ହିଁ ମୂଳ। ଆଜିକାଲି ସବୁ କାମ ଏପରି। ଷାଠିଏ ପରେ ଚାକିରି ନାଇଁ। ତେବେ ରାଷ୍ଟ୍ରପତିଠୁ ଗିରାମ ପତି ଯାଏ ପ୍ରଧାନମନ୍ତ୍ରୀଠୁ ଗୃହପତି ଯାଏ। ଷାଠିଏ ପରେ ଦାୟିତ୍ୱ ପରପୀଢ଼ିକୁ ସମର୍ପି ଦେବା ଠିକ୍ ହେବ। କଠୋର ଭାବେ ଏକଥା ପାଳନ କରି ପାରିଲେ। ଆମର ଅନେକ ସାମାଜିକ ସମସ୍ୟା ତୁଟିଯିବ। ମାତ୍ର ଆଗ ପୀଢ଼ିର ବୁଢ଼ାମାନେ ଚ଼ଉକିର ଢ଼କଢ଼କ କ୍ଷମତାର କ୍ଷୀରସା ଏମିତି ଚାଖି ସାରିଛନ୍ତି ଯେ ଚ଼ଉକି ଛାଡ଼ିବାକୁ ନାରାଜ। ସଳଖରେ ଚାଲି ପାରୁନଥିବା ଲୋକ ବି ଶାସନ ମୁଖ୍ୟ ହେବାକୁ ସକସକ ହୁଅନ୍ତି। ଯୁବପୀଢ଼ିକୁ ମନେଇ, ବୁଝେଇ ଭୁରୁଡେଇ କେତେଦିନ ରଖିହେବ? ଫଳରେ ଯୁବପୀଢ଼ି ସବୁ ପ୍ରକାର ଅଘଟଣ ଘଟେଇବାରେ କୁଣ୍ଠା ପ୍ରକାଶ କରୁନାହାନ୍ତି। ଘରର ବାପା ମାଆମାନେ ପଛ ପୀଢ଼ି ହାତରେ ଦାୟିତ୍ୱ ଛାଡ଼ି ଦିଅନ୍ତୁ, ଦେଖିବେ ସପ୍ତାଶ୍ଚର୍ଯ୍ୟ କଣ ସହସ୍ରାଶ୍ଚର୍ଯ୍ୟ ସୃଷ୍ଟି କରିପାରିବେ ଆମ ପିଲାଏ।

ମୋ ବାହାପରେ ମୋ ମାଆ ନୂଆ ବୋହୂଟିକୁ ପାଖକୁ ଡାକିଲେ "ଆଲୋ ମା' ଏ ଚାବି ପେନ୍ଥାକ ନେ', ଏ ଘର ଦୁଆର ଏଣିକି ତୋର। ଯେଉଁଠି ଯାହା ଅଛି, ସବୁ ତୋର ତୁ ମୋ କୂଳ ବୋହୂ, ପୁଣି ବଡ଼ ବୋହୂ। ତୁ ଆଜିଠୁ ହେଲୁ ମୋର ମାଆ। ମୁଁ ତୋର ଝିଅ। ହେଲା ନ ହେଲା ବେଳକୁ କେବେ କେମିତି ପାଟିରୁ କିଛି ବାହାରି ପଡ଼ିଲେ, ଧରିବୁନି। ବୟସ ହେଲାଣି। ନ ପାରିଲା ବେଳକୁ ସମ୍ଭାଳି ନେବୁ।। ଦରକାରକୁ ପଦେ ବୁଝିବୁ। ତୋ ପଛରେ ଛାଇ ପରିଥିବି।"

ପରପୀଢ଼ିର ପିଲାଙ୍କୁ ଦାୟିତ୍ୱ ହସ୍ତାନ୍ତରର ବଡ଼ ନମୁନାଟିଏ ଆଉ କଉଠି ପାଇବା ଶୁଣେ? ଲସବୁଢ଼ୀ କଉଠିଥିଲା କେଜାଣି କଥାଗୁଡ଼ା ଶୁଣି ପକାଇଲା ନା କଣ? କହିଲା "ଆଲୋ ଭଗବତୀ, ପିଠଉ ବଟାରୁ ପରଖ ନେବୁ ତୋ ବୋହୂର।"

■■

## ୩୯. ହାତୀକୁ ହୋମିଓପାଥି

ଡାୟୋଜିନିସଙ୍କ ନାଆଁ ଚାରିଆଡ଼େ ପଡ଼ିଲା। ଲୋକେ ଦିନରାତି ତାଙ୍କୁ ତାରିଫ କଲେ। ଦାର୍ଶନିକ ଜଣେ। ସେ ବଡ଼ ପଣ୍ଡିତ ମଧ। ନଗର ଉପକଣ୍ଠରେ କୁଡିଆଟିଏ କରି ରହୁଥିଲେ। ବିପୁଳ ଉପଲବ୍ଧିର ମୂଳ କଥାଟି ହେଲା। ଯିଏ ଯେତେ କମ୍ ଲୋଡ଼େ ଦୁନିଆରେ ସେ ସେତେ ସୁଖୀ। ଏଣୁ ବଞ୍ଚିବା ପାଇଁ ଖୁବ୍ କମ ଜିନିଷ ଲୋଡ଼ା ତାଙ୍କର। ବଞ୍ଚିବାକୁ ପ୍ରତି ମୁହୂର୍ତ୍ତରେ ପବନ ଦରକାର। ଈଶ୍ବର ସେଇ ପବନ ଟିକେ ନାକ ପାଖରେ ଥୋଇଛନ୍ତି। ପବନ ଟିକକ ପାଇଁ କେବେ କାହାକୁ କଉଠି କି ଯିବାକୁ ପଡୁନାହିଁ। ଭାବନ୍ତୁତ? ଏଇ ପବନ ଟିକକ ଆମକୁ ବଜାରରୁ ଅନ୍ୟ ଦ୍ରବ୍ୟ କିଣିବା ଭଳି କିଣିବାକୁ ପଡୁଥିଲେ ଆମ ଅବସ୍ଥା କଣ ହୋଇଥାନ୍ତା? କେବେ କେମିତି ରୋଗଟିଏ ପାଇଁ ଅମ୍ଳଜାନ ଲୋଡ଼ିଲେ କେତେ ହନ୍ତସନ୍ତ ହେଉ ସତେ। ଦୁତିଅରେ ବଞ୍ଚିବା ପାଇଁ କିଛି ପାଣି ଦରକାର। ଆପଣ ଯେଉଠି ଠିଆ ହେବେ ଧାପେ ବାଟ ଗଲେ ପାଣି ପାଇବେ। ପାଣି ତ ପବନ ପରି ପ୍ରତି ମୁହୂର୍ତ୍ତରେ ଦରକାର ପଡ଼େନା। ଚବିଶି ଘଣ୍ଟାରେ ଥରେ ଦୁଇଥର ପାଣିର ଆବଶ୍ୟକତା ରହିଛି। ଏଣୁ ଠାକୁରେ ଚାହାନ୍ତି ପାଣି ମୁନ୍ଦିଏ ପାଇଁ ଆମକୁ ଘଣ୍ଟେ କି ଦିଘଣ୍ଟା ମେହେନତ କରିବାକୁ ହେବ। ତୃତୀୟରେ ଆମକୁ ଖାଇବା ପାଇଁ କିଛି ଖାଦ୍ୟ, ନଖାଇଲେ ବଞ୍ଚିବା କିପରି? ପ୍ରଭୁ ଆମପାଇଁ ମୂଳ, ପତ୍ର ଫଳ ଓ ଫୁଲ ଥୋଇ ଦେଇଛନ୍ତି ସବୁ ଋତୁରେ ସଂଗ୍ରହ କରିପାରିଲେ ହେଲା। ଚ଼ତୁର୍ଥରେ ଲଜ୍ଜା ଲୁଚେଇବା ପାଇଁ ପରିଧାନ ମିଳିଯିବ। ପ୍ରାଣୀ ସଂସାରରେ ବଞ୍ଚିବା ପାଇଁ ଈଶ୍ବର ସବୁ ଯୋଗାଡ଼ କରି ଯଥା ସ୍ଥାନରେ ଥୋଇଛନ୍ତି। ଆମେ ସେ ସବୁକୁ ସ୍ୱାଭାବିକ ବ୍ୟବହାର କରି ପାରିଲେ ହେଲା। ଏଣୁ କଞ୍ଚା ମୁରୁଖମାନେବି କହନ୍ତି। ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ। ଏକଥାଟି ଶହେକୁ ଶହେ ସତ।

ମାତ୍ର କାଳକ୍ରମେ ମଣିଷ ପରି ପ୍ରାଣୀମାନେ ଅତ୍ୟନ୍ତ ଚତୁର ହୋଇ ସଂସାରରେ ସବୁ ସୁଖ ଗିଳି ଦବାକୁ ଚାହିଁଲେ। ମୂଳ ଚାହିଦାରୁ ହଜାର ହଜାର ଚାହିଦା ବାହାରିଲା। ଫଳମୂଳ ସେ ଏକାକୀ ଖାଆନ୍ତା। ଅନ୍ୟମାନେ ଖାଇବେ କାହିଁକି? ଏଣୁ ତା ଫ୍ରିଜ୍ ତିଆରି ପାଇଁ କାରଖାନା ବସେଇବା ଦରକାର? କାରଖାନା ପାଇଁ ଜମି। ଜମି ପାଇବାକୁ ଜଙ୍ଗଲ କଟାହେବ। କାରଖାନରୁ ଆବର୍ଜନା ଆସିବ। ମାଟି ପାଣି ପବନକୁ କଳୁଷିତ କରିବା। ଫଳରେ ମଣିଷର ଚାହିଦା ଯୋର୍‌ରେ ବଢ଼ିଲା। ଆଜି ପରିବେଶ ସେଇ ମାତ୍ରାରେ ବଦଳିଲା। ଈଶ୍ବରଙ୍କ ସ୍ୱାଭାବିକତାରେ ଏକ ଅସନ୍ତୁଳନ ଦେଖାଦେଲା। ପବନ ପାଣି, ଖାଦ୍ୟ, ବସ୍ତ୍ର ବ୍ୟତୀତ ଆଜି ହଜାର ହଜାର ଚିଜର ଆବଶ୍ୟକତା ପଡୁଛି। ଏ ଦରକାରିତା ଦିନକୁ ଦିନ ଏପରି ବଢ଼ିବାରେ ଲାଗିଛି ଯେ ସ୍ୱୟଂ ଈଶ୍ବର ବି ସେଇ ଆବଶ୍ୟକତା ପୂରଣ କରି ପାରିବେ ନାହିଁ। ମଣିଷ ତାର ଏହି ସୀମାହୀନ ପୂର୍ତ୍ତି ପାଇଁ ବିଜ୍ଞାନ ଟେକ୍‌ନୋଲୋଜିକୁ

ଲଗେଇଛି । ବଟନ ଟିପିଲେ ଯାହା ଚାହିଁବୁ ତାହା । ସୁଖ ପାଦ ପାଖରେ ଅଜାଡ଼ି ପଡୁଛି । ହେଲେ ଗୋଦରା ମାଡ଼େ ଯେତେ କୋଡ଼େ ସେତେ ନ୍ୟାୟରେ ଏ ଟେକ୍‌ନୋଲୋଜି ବିଷମ ସମସ୍ୟା ଆଣି ଥୋଇଛି । ଗୋଟିଏ ଦୁଃଖ ନ ଯାଉଣୁ ଆଉ ଗୋଟିଏ ମାଡ଼ି ଆସୁଛି । ଟେକ୍‌ନୋଲୋଜିର ଉତ୍ପାତରେ ଆଜି ବିଶ୍ୱବାସୀ ଥରହର । ମଣିଷର ଏ ଲୋଡ଼ିବାପଣ ହାତୀପରି ପୃଥୁଳ ହେବାବେଳକୁ ଟେକ୍‌ନୋଲୋଜି ହୋମିଓପାଥିର ଅନୁପାନ ପରି କ୍ରମେ କ୍ରମେ ଅଳ୍ପରୁ ଅଳ୍ପତର ହେଉଛି । ଏବେ ଆମର ସର୍ବଗ୍ରାସୀ ଆବଶ୍ୟକତାକୁ ଦେଖି ହାତୀକୁ ହୋମିଓପ୍ୟାଥି ବୋଲି ଲୋକେ ବିଦ୍ରୂପ କଲେଣି ।

ଆମର ଏ କ୍ରମବର୍ଦ୍ଧିଷ୍ଣୁ ଚାହିଦାର ଅନ୍ୟ ଏକ କାରଣ ରହିଛି । ଆମେ ଆମର ବଞ୍ଚିବା ଶୈଳୀରେ ଅନ୍ୟର ଜୀବନ ଯାପନକୁ ତୁଳନା କରି ବଞ୍ଚୁଛୁ । ପଡିଶା ଘର ରଙ୍ଗିନ ଟିଭି ଆଣିଲେ । ଆମର ବି ରହିବା ଦରକାର । ସମୁକ ବାବୁ ଗ୍ରାଇଣ୍ଡର କିଣିଲେଣି ଆମେ ବି ଗୋଟିଏ କିଣିବା । ଜେନା ମାଷ୍ଟ୍ରେ ୱାସିଙ୍ଗ ମେସିନ କିଣିଲେଣି । ଆମେ ବି ଆଣିବା । ଏପରି ଭବେ ଅନ୍ୟକୁ ଦେଖି ବଞ୍ଚିବାର ଅଭ୍ୟାସ କରୁଛେ । ଫଳରେ ଆମର ଚାହିଦା ବଢ଼ି ବଢ଼ି ଯାଉଛି । ଯେଉଁ ଜିନିଷ ସବୁ ବ୍ୟବହାର ପାଇଁ ଆଣୁଛୁ ସେ ସବୁର ଯତ୍ନ ଓ ମରାମତି, ବ୍ୟବହାର ସମ୍ପର୍କରେ ଆମର ସାମାନ୍ୟତମ ଜ୍ଞାନ ନାହିଁ । ଫଳରେ ସେ ଗୁଡ଼ିକ ଆମ ଉପରେ ବୋଝ ଉପରେ ନଳିତା ବିଡ଼ା ହୋଇ ଯାଇଛି । ଆମର ଆର୍ଥିକ ସ୍ୱଚ୍ଛଳତାକୁ ଚୁରମାର କରି ଦଉଛି । ଋଣ ଭାରରେ ଆମେ ଦବି ଯାଉଛୁ । ଆମର ଯାହା ନିହାତି ଦରକାର ସେଥିରେ ସନ୍ତୁଷ୍ଟ ରହିଲେ ଆମର ଅନେକ ସମସ୍ୟା ତୁଟିଯାଆନ୍ତା । ଥରକରକଥା, ଏ ଆଲୋଚକ ଭୁବନେଶ୍ୱର ଯାଇଥାଏ । ବନ୍ଧୁ ଭାଗରଥି ନେପାକ ଓ ବନ୍ଧୁ ରମେଶ ଧଳଙ୍କ ସହିତ ଡ଼ଃ ପ୍ରହଲ୍ଲାଦ ପ୍ରଧାନଙ୍କ ଘରକୁ ବୁଲିଗଲୁ । ଗପସପ ଭିତରେ ବେଲ ସରବତ ଆସିଲା । ବମ୍ବେରୁ ଡ଼ଃ ପ୍ରଧାନଙ୍କ କେହି ଆତ୍ମୀୟ ସରବତ ତିଆରିର ନୂଆ ଯନ୍ତ୍ରଟି, ଆଣିଥିଲେ । ଯନ୍ତ୍ରତ ଯନ୍ତ୍ର ବେଲକୁ ଏମିତି ମନ୍ଥିଲା ଯେ ସରବତ କୁଦୋ ତିଖିରି ପରି ବହଳିଆ ହୋଇଗଲା । ଆଉ କିଏ ପିଇଲା କି ନ ପିଇଲା କିଏ ଜାଣେ? ମୁଁ ପିଇ ପାରିଲି ନାହିଁ । ବାହାରକୁ ଯାଇ ଶୋଷିଥିବା ତକ ଥୁଥୁ କଲି । ସାରଙ୍କୁ ଅନ୍ୟମାନେ ସରବତ ତିଆରି ଯନ୍ତ୍ରର ତାରିଫ କରୁଛନ୍ତି । ବାହାବା ଦଉଥାନ୍ତି । "ସାର ଏ ଦୁର୍ବୁଦ୍ଧି ଧଇଲା କେବେଠୁ?" ବେଲବଣା ତିଆରିର ପୁରୁଣା ପଦ୍ଧତି ରହିଛି । ଗୋଲମରିଚ ଗୁଣ୍ଡ ପଡ଼ିବ । ପାଚିଲା ବେଲର କେଉଁ ଅଂଶ ପଣାରେ ମିଶିବ ତାହା ଜଣାଥିବା ଦରକାର । ଆପଣ ଆପଣଙ୍କ କମଗାଁରେ ଏମିତି ବେଲପଣା କେବେ ପିଇଥିଲେ? ଏ ସୁଆଦ ସେ ସୁଆଦର ସରିସମ ହେବ? ଡ଼ଃ ପ୍ରଧାନ ଏମିତି ହସିଲେ ଯେ ତାଙ୍କ ଡାୟୋଜିନିସ ଅନ୍ତରଟା ଶେଷ ଭୋଦେଇ ଆକାଶ ପରି ମେଘମୁକ୍ତ ହୋଇଗଲା । "ମଙ୍ଗଲୁ ଶେଷକୁ ତମେ ହିଁ ସତକଥାଟି କହିଲ ।" ସାର କହିଲେ ଲେମ୍ବୁ ଅତି ଚିପୁଡିଲେ ପିତା । ଆମେ ଆମ କରଣିରେ ଭିତରେ

ଭିତରେ ଅସୁସ୍ଥ ଅନୁଭବ କରୁ। ଆମେ ସଚରାଚର ବାହାବାରେ ମାତିଯାଉ ନିଜ ଅନୁଭବର ସତକଥାଟି ବୟାନ କରିବାରେ ଡ଼ର କାହାକୁ? ଅତି ହେଲେ ଇତି ହୁଏ। ଆମର ହାତୀ ଇଚ୍ଛାକୁ ହୋମିଓପ୍ୟାଥି ସମ୍ଭାଳି ପାରିବ ନାହିଁ, ଆମେ ଜାଣୁ। ତେବେ ଆମେ କଣ ଡାୟୋଜିନିସ୍ ଭଳି ଆମର ଆବଶ୍ୟକତାକୁ ସବୁଠୁ କମ୍ କରିପାରିବାନି?

ଆଲେକଜାଣ୍ଡର ଡାୟୋଜିନିଷଙ୍କ ନାଆଁ ବାରମ୍ବାର ଶୁଣିଲେ। ତାଙ୍କ ମହିମା ମେଘ ଡମ୍ବରୁ ପରି ଚଉଦିଗେ ବାଜିଲା। ତାଙ୍କର ଖ୍ୟାତି ଫଇଲି ଗଲା ସଚରାଚର। ବୀର ଆଲେକଜାଣ୍ଡରଙ୍କ ବିଶାଳ ଅନ୍ତର କେମିତି ନିରୋଳାରେ ରହି ପାରନ୍ତା? ଘୋଷଣା କଲେ ଯେ ଡାୟୋଜିନିସଙ୍କୁ ଭେଟିବେ। ସମ୍ରାଟ ସ୍ୱୟଂ ଯିବେ ଭେଟିବାକୁ ଜଣେ ନଗଣ୍ୟ ନାଗରିକଙ୍କୁ? ତାଙ୍କର ଇଚ୍ଛା ହେଲା ସେଇ ମହାତ୍ମାଙ୍କୁ ଦେଖନ୍ତେ। ସମ୍ରାଟ ଗଲେ। କିଛି ଦୂରରେ ଅଟକି ଗଲେ ପାର୍ଶ୍ୱଚର ମାନେ। ଘୋଡ଼ାରୁ ଉତୁରି ଆଗକୁ ଆଗକୁ ଗଲେ ସମ୍ରାଟ। ବିଚରା ଡାୟୋଜିନିସ ମୁକୁଳା ଶୀତୁଆ କଅଁଳ ଖରା ଖାଉଥିଲେ। ସମ୍ରାଟ ଯଥାମାନ୍ୟ ଦେଇ କହିଲେ। କିଛି ସେବା କରିବାର ସୁଯୋଗ ଦେବେକି, ମହାଶୟ? ପରିପୁଷ୍ଟ ସମ୍ଭ୍ରାନ୍ତ ଯୁବକଙ୍କୁ ଘଡ଼େ ଅନେଇଲେ ଡାୟୋଜିନିସ୍। ପଦୁଟିଏ କହିଲେ 'ତମର ଲମ୍ବା ଛାଇଟା ମୋ ପିଠିରୁ ଖରାତକ ଆଡ଼େଇ ଦଉଛି। ସେତକ ନକଲେ ଭଲ ହୁଅନ୍ତା ନାହିଁ? ସମ୍ରାଟ ଆଲେକ୍‌ଜାଣ୍ଡାର ଆବାକ୍ ହେଲେ। ମୁଁ ଜୀବନରେ ଆଲେକଜାଣ୍ଡର ନହେଲେ ନାଇଁ ଡାୟୋଜିନିସ୍ ଟାଏ ହେବି ନିଶ୍ଚୟ।"



# ୪୦. ବାଂଝ କି ଜାଣେ

"ଯହ ପଢ଼ାକେ ଯହ ବେଢ଼ା"। ବେଶୀ ପାଠ ପଢ଼ିଲେ ଲୋକ ସରଳ ଓ ନିଷ୍କପଟ ହେବା କଥା। ସେଇ ସରଳତାକୁ ଲୋକେ ବେଢ଼ା ବୋଲି କହନ୍ତି। ଯେମିତିକି ଆମ ଶ୍ରଦ୍ଧାକର ସୂପକାର। ଶ୍ରଦ୍ଧାକର ସୂପକାର ଅସାଧାରଣ ଜ୍ଞାନୀ। ବହୁ ବିଷୟରେ ପଣ୍ଡିତ। ଗଣିତ, ସଂସ୍କୃତ, ବିଜ୍ଞାନ, କଳା, ଆଇନ କଉଥିରେ ଊଣା ନ ଥିଲେ ସେ। ଜ୍ଞାନ ଗମ୍ଭୀର ଲୋକସେ। ତାଙ୍କଭଳି ପଣ୍ଡିତ ଓଡ଼ିଶାରେ ବିରଳ। ମରିବା ପର୍ଯ୍ୟନ୍ତ ପଢୁଥିଲେ। ସାରା ଜୀବନ ଛାତ୍ରଥିଲେ ସେ। ବହୁବିଷୟରେ ପ୍ରବୀଣ ଥିଲେ ସେ। ମାତ୍ର ନିର୍ବୋଧ ଶିଶୁଟିଏ ପରି ସରଳ ଓ ନିଷ୍ପାପ ଥିଲେ ଶ୍ରଦ୍ଧାକର ବାବୁ। ମଣିଷର ଭିତରକୁ ଚିହ୍ନିଥିଲେ ସେ। ସାଂପ୍ରତିକ ଜୀବନରେ ଆମେ ଓଲଟା ଦେଖୁଛୁ। ଯେଉଁମାନେ ଜ୍ୟାଦା ଜାଣନ୍ତି, ସେମାନେ ମଣିଷକୁ କମ୍ ଚିହ୍ନନ୍ତି। ଅଳ୍ପରେ ଯେଉଁମାନେ ଆପଣାର ଗୁଜରାଣ ମେଣ୍ଟାନ୍ତି, ସେମାନେ ଅନ୍ତରରେ ନିଶ୍ଚିତ ନିର୍ମଳ ଥାଆନ୍ତି।

ଦିନକୁ ଦିନ ଆମ ଚାହିଦା ବଢୁଛି। ସେଇ କ୍ରମ ବର୍ଦ୍ଧିଷ୍ଣୁ ଚାହିଦାର ପରିପୂରଣ

ପାଇଁ ଆମେ ନାନା ବାଟ ଖୋଜୁଛୁ। ଆମ ସାମର୍ଥ୍ୟ ଭିତରେ ଯାହା କମଉଛୁ, ତାହା ନିଅଣ୍ଟ ହେଉଛି। "ଆହୁରି ହଉ ଆହୁରି ହଉ, ଖୋଷାର ଉପରେ ଚାଉଁରୀ ହଉ"। ଚାଉଁରୀ ଗଢ଼ିବାକୁ ପଇସା ଲୋଡ଼ା। ପଇସା କମେଇବାକୁ ନାନା ଅକାର୍ଯ୍ୟ କରୁଛୁ। ଘୁଷ୍ ଖାଉଛୁ, ଧାର ଆଣୁଛୁ, ସୁଝୁ ନାହୁଁ। ଋଣ ଆଣୁଛୁ ଫେରଉ ନାହୁଁ। ନ ହେଲା କଥା କରୁଛୁ। ଶେଷକୁ କିଛି ବାଟ ନପାଇ ନିଜର ବୋହୂ କୁ କେଞ୍ଚୁଛୁ। ଏୟା ଆଣ ସେୟା ଆଣ। କୂଳର ବୋହୂ ସେ। ଘରର ଲକ୍ଷ୍ମୀ। ପିତୃପୁରୁଷକୁ ପିଣ୍ଡଦେଇ ଉଦ୍ଧାର କରିବ। ପୁତ୍ ନାମକ ନରକରୁ ତ୍ରାହି କରିବ। ଶେଷକୁ ତା' ସହିତ ବି ସଉଦା ଆରମ୍ଭ କରି ଦଉଛୁ ମୂଲଚାଲ କରୁଛୁ। ଏତେ ଦେବ ସେତେ ଦବ। ବାପ ବିଚାରାବି ଅଡୁଆରେ ପଡ଼ି ହଁ କରୁଛି। ଦେବି ଦେବି କହୁଛି। ଥିଲେତ ଦବ। କଥା ଦଉଛି। କଥା ରଖି ପାରୁନି। ଏଣୁ ତେଣୁ କରି ନାନା ଲନ୍ଦର ଫନ୍ଦରରେ ଝିଅ ବିଦା କରୁଛି। ଦେଲା ନାରୀ ହେଲାପାରି। ଏଣେ ନାରି ଦେଲା ମାନେ ଠକି ଦେଲା ବୋଲି ଶଶୁର ଘର ଫଣ ଫଣେଇ ଉଠୁଛନ୍ତି। କାହାକୁ ଆଉ କହିବେ? ବୋହୂଟାକୁ କେଞ୍ଚୁଛନ୍ତି କଷ୍ଟ ଦଉଛନ୍ତି। ଶେଷକୁ ପ୍ରାଣରେ ମାରୁଛନ୍ତି। ଏହା ଏକ ନିତିଦିନିଆଁ ଘଟଣା ହେଲାଣି। ଆମେ ତାକୁ 'ଯୌତୁକ' ଯଉତୁକ କହି କଉତୁକ କରିବା ଆରମ୍ଭ କଲୁଣି।

ଯଉତୁକ ମୂଳରେ ରହିଛି ଆମେ ଅନ୍ୟକୁ ଦେଖି ବଞ୍ଚିବାର ପ୍ରଣାଳି। ହ୍ନମଣା ଲାଞ୍ଜପରି ଦିନକୁ ଦିନ ବଢୁଥିବା ଚାହିଦାର କରାମତି। ସେଇ ଚାହିଦାର ପରିପୂର୍ତ୍ତି ପାଇଁ ଆମର ବିବେକହୀନ ପ୍ରଚେଷ୍ଟା।

ମାଆର ଝିଅ ଥାଏ। ସେଇ ଝିଅ ବୋହୂ ହୋଇ ଅନ୍ୟ ଘରକୁ ଯାଏ। ଝିଅ ବୋହୂ ହୁଏ।। ମାଆର ପୁଅଥାଏ। ବୋହୂଆଣି ସେଇ ମାଆ ଶାଶୂ ହୁଏ। ସେଇ ସ୍ତ୍ରୀ ଲୋକଟି ମାଆଝିଅ, ଶାଶୂ ବୋହୁର ଭୂମିକାରେ ଠିଆ ହୁଏ। ସତରେ ଆଶ୍ଚର୍ଯ୍ୟ ଲାଗେ ସେଇ ଝିଅ ମାଆହୁଏ, ବୋହୂହୁଏ, ଶାଶୁହୁଏ ଝିଅବି ହୁଏ। ସେ କେମିତି ଏଡ଼େ ଚଞ୍ଚଳ ପାଶୋରି ପକାଏ ମାଆର ମମତା, ଝିଅର ସ୍ନେହ, ବୋହୂର ଆଦର, ଶାଶୁର ଶାଳୀନତା? ଦିନ କେଇଟାରେ ସମୟ କଡ଼ ଲେଉଟାଉ ଲେଉଟାଉ ବଦଳିଯାଏ କେମିତି? ଡ଼ାଆଣୀ ପାଲଟି ଯାଏ। ଅତ୍ୟାଚାରିତା ବୋହୂଟି ମାଆ ହୁଏ। ବୋହୂଟିଏ ଆଣି ଶାଶୂ ହୁଏ। କେମିତି ସେଇ ଅତ୍ୟାଚାରିତା ବୋହୂଟି ମାଆ ହେବାପରେ ଶାଶୂ ହୋଇ ଅତୀତକୁ ଭୁଲିଯାଏ? ନିଜ ଅଙ୍ଗେ ନିଭେଇଥିବା ଅତ୍ୟାଚାରର ବଦଳା ନିଏକି? ବୁଝି ହୁଏନା, ତା'ର ଭିତରେ ଥିବା ନାରୀ ମନର ପ୍ରତିହିଂସା। ସଜ ତଟକା ଚାହିଦା ସବୁ ସତେକି ତାକୁ କେଞ୍ଚି କେଞ୍ଚି କୁହେ "ତୋର ଫ୍ରିଜ ଦରକାର, ଟି.ଭି. ଦରକାର, କୁଲର ଦରକାର, ଓ୍ୱାସିଙ୍ଗ ମେସିନ ଦରକାର, ଅମୁକ ଦରକାର, ସମୁକ ଦରକାର, ଢ଼େଙ୍କି ଦରକାର, ବଗ ଦରକାର, ଚାନ୍ଦି ଦରକାର।

ଲୋଡ଼ିବାର ଏକ ବିକୃତ ପବୃତ୍ତି ତା'ର ମାଆ ପଣିଆର ସ୍ୱାଭାବିକତାକୁ ନଷ୍ଟ କରିଦିଏ। ସେଇ ସନ୍ତାନ ବତ୍ସଳା ମାଆ ବାଂଝ ପାଲଟିଯାଏ। ଦୁନିଆର ସବୁ ବାଂଝ ଭାବନ୍ତି, ଦୁନିଆରୁ ଛୁଆସବୁ ମରିଗଲେଣି। ବାଂଝ ସିନା ବିଆଡ଼ କଥା ବୁଝି ପାରେନା। ଆଶ୍ଚର୍ଯ୍ୟ ଲାଗେ। ଆଜି ଲୋକେ ବେଶୀ ପାଠ ପଢୁଛନ୍ତି। ଅନୁଭବ ବଢୁଛି। ସ୍ତ୍ରୀ ପୁରୁଷ ଉଭୟେ ଶିକ୍ଷିତ ହେଉଛନ୍ତି। ହେଲେ ମଣିଷ ପଣିଆ ବଢୁନାହିଁ। "ଲୋଗ ଯୋ' ଜ୍ୟାଦା ଜାନତେ ହେଁ, ଇନସାନ୍‌କୋ କମ୍ ପହେଚାନତେହେଁ" ରାଜ କପୁରଙ୍କ ଏ ଗୀତ ଯେମିତି ଆଗରୁ ସୂଚେଇ ଦେଇ ସାରିଛି। ମାଆର ସେଇ ଶାଶ୍ୱତ ମନ କେମିତି ବଦଳି ଯାଉଛି ହେ! ଆବାକ୍ ଲାଗେ।

ମୋ' ମାଆ ତାଙ୍କ କୂଳବୋହୂକୁ ଘରକୁ ନେଇ ସାରିବା ପରେ ତା' ସାଙ୍ଗରେ ଆସିଥିବା ଭାରୁଆ ମାନେ ଆମ ଦୁଆରେ ଜିନିଷ ସବୁ ଥୋଇଲେଣି ଚ଼ଟୁ ପନଖିରୁ ଆରମ୍ଭ କରି ଶିଳ ଶିଳପା ଚାଲୁଣି ରୁ ଆରମ୍ଭ କରି ଚାଉଁରୀ ମୁଡ଼ି ପର୍ଯ୍ୟନ୍ତ। ଘର କରଣାର ଯାହା ଯାହା ଲୋଡ଼ା ଝିଅ ଜନମ ହବାଠୁ ମା' ମାନେ ଆଈ ମାନେ ଗୋଟିଏ ଗୋଟିଏ କରି ଦରବ ସାଇତି ରଖୁ ଥିଲେ। ଝିଅ ବଢ଼ିଲା ବେଳକୁ ଘରେ ଘରକରଣାର ସବୁ ଚିଜ ଠୁଳ ହୋଇ ସାରିଥାଏ। ଏମିତି ମୂଳରୁ ଚେ଼ତିଥିଲେ ବାପକୁ ବୋଝ ହୁଏ ନାହିଁ। ଝିଅକୁ ସବୁ ଦିଅନ୍ତି ହେଲେ  କୁଲା ଓ ଛାଞ୍ଚୁଣି ଦିଅନ୍ତି ନାହିଁ। ଏବେ ବରପକ୍ଷ କହିଲେଣି ଘର କରଣାର ଚିଜ କଣ ଦରକାର? ଆମକୁ ଠନାଠନ୍ ନଗଦ ନାରାୟଣ ମୋଟା ରକମଟିଏ ଦେଇ ଦିଅ କାମ ଫତେ। ସେଇ ଆଜୁରୁ ବାଜୁରୁ ଜିନିଷ ନେଇ କଉଠି ଫୋପାଡ଼ିବୁ? ଉପରେ କହି ଦିଅନ୍ତି ହେଲେ ଭିତରେ ଭିତରେ ସୁଜିରୁ ସୂତାଯାଏ ନେବାକୁ ମନ। ପାରୁଛ ଯଦି ତମ ଝିଅକୁ ସୁନା ଛାଉଣୀରେ ଛାଇ ଦଉନ। କିଏ ମନା କରୁଛି? ପାରୁଛ ଯଦି ମାରୁତିଟାଏ ଦିଅ। ଗୁଣ୍ଡୁଣୀ ହାତୀ ଉପରେ ବସିଲା ପରି ତମରି  ଝିଅ ବୁଲିବ। ଅମ ଶାଶୁ ଶଶୁରଙ୍କୁ କଣ ଦେଉଛ, ତମ ଝିଅ ଜୁଆଇଁକୁ ଦଉଛନା!

ବାହାଘର ଯୋଗାଡ଼ ପାଇଁ ମାସ ମାସ ଲୋଡ଼ା କହିଲେ ଲୋକେ ହସନ୍ତି। ପୈସା କ୍ୟା ନକରେ କାମ। ପଇସାଥିଲେ, ବାପା ମା' ଛାଡ଼ି ସବୁ ମିଳେ। ପଇସା ଯଦି ଅଛି ରାତି ଗୋଟାକରେ ବାହାଘର ସରିଯିବ।

ମୋ' ଭାରୀଯାର ଯଉତୁକ ସାମାନ ଦେଖି ଆମ ଗାଁ ସାହି ମାଇପିଏ କହୁଥିଲେ
॥ ବୋହୂ ଆଣିଲେ ଘର ଭରେ ନାଇଁକି  ଝିଅ ନେଇଗଲେ ଘର ସରେ ନାଇଁ॥
ବିଡ଼ମ୍ବନା, ଆଜି ସବୁ ଶାଶୁ ଯେ ବାଂଝ!!!



# ୪୧. ଚିରା ପଣତର ସଂସାର

'ଗାଁ ଛାଡ଼ହୋ' ଟେଙ୍ଗୁରା ବାଜିଲା। ୧୯୫୬ରେ ଆମେ ଗାଁ ଛାଡ଼ିଲୁ। ଜନମ ମାଟି ସଦା ସର୍ବଦା ପାର୍ଶ୍ଚ ଛାଡ଼ିବା କଠିନ। ଶୁଣିବାକୁ ସହଜ ହେଲେବି, କରିବା ମୁସ୍କିଲ। ଲୋକେ ଆପଣାର ଆଲୁକୁଚି ମାଲୁକୁଚି ଧରି ଯିଏ ଯଉଠିକି ପାରିଲା, ଗଲା। ଯଉମାନେ କଉଠିକି ଗଲେ ନାଇଁ, ଗାଁ ପାଖ ଢ଼ିପ ଜାଗା ମାନଙ୍କୁ ଉଠି ଆସିଲେ।

ଗାଁ ଛାଡ଼ିବାର ବିକଳ ଦୃଶ୍ୟ ମୁଁ ଆଖିରେ ଦେଖିନାହିଁ, ଶୁଣିଛି ମାତ୍ର। ସେକାଳେ ମୁଁ କଲେଜରେ ଥିଲି। ଖରା ଛୁଟିରେ ଯେବେ ଗଲି, ସିଧା ବାରଢୁମୁରିକୁ। ଆମ ଜନମ ମାଟି ପିଟାପାଲିଠୁଁ ପ୍ରାୟ ଦଶ ମାଇଲ ଦୂର ନାକ ସଳଖେ। ମୋ' ମାମୁଘର ଗାଁର କର୍ଣ୍ଣୀ ପଧାନ ଆଗରୁ ଆସି ବାରଢୁମୁରିରେ ରହୁଥିଲେ। ତାଙ୍କ ଘର ବଖରାକେ ଆମେ ରହିଲୁ। ମୁଁ ନୂଆଁ ବାହା ହୋଇଥାଏ।

ବାରଢୁମୁରି ଆସିବାର ଏକମାତ୍ର କାରଣଥିଲା, ଜମି ମିଳିବ। ନୁନିଆଁ। ରାଁଚି ଅଞ୍ଚଳର ଲୋକଟିଏ। ତାଠୁଁ ଏକଚ଼କୀ ଅଶୀ ଏକର ଜମି ଆମ ବଂଶର ଭାଇମାନେ ମିଶି କିଣିଲେ। ମୋ' ବାପାଙ୍କ ପାଖରେ ପଇସା କାହିଁଯେ ସେମାନଙ୍କ ଗହଣରେ ମିଶିବେ। ମୋ' ମାମୁଘର ସହ ବାପା ମିଶିଲେ। ପରମାଣପୁରର ହରିବାରିକର ଜମିଥିଲା ବାରଢୁମୁରିରେ। ସେଇ ଜମିଟକ ମୋ'ମାମୁ, ମୋ' ଶାଶୁ ମିଶି କିଣିଲେ। ବାପା ଶଶୁରଘର ଗୋଠରେ ପଶିଲେ। ନୁନିଆଁ ଜମିରୁ ସଂସାର ତ୍ରିପାଠୀର ଭାଗଟି ମୁଁ ଚାକିରି କଲା ପରେ କିଣିଲୁଁ। ଆମ ବଉଁଶ ଲୋକେ ଆମକୁ ତାଙ୍କ ଗୋଠରେ ମିଶେଇଲେ ନାହିଁ। ଯା'ର ପଇସା ନାଇଁ, ତାର ଭରସା କାହିଁ?

ମୋ ମାମୁଁଘର, ଶାଶୁଘର ଓ ଆମର ଏମିତି ତିନୋଟି ପରିବାର ଗୋଟିଏ ପରିବାର ହୋଇଗଲୁ। ମୋ' ମାମୁଁ ଓ ବାପା ଆଗରୁ ଆସି ଘର ତିଆରିରେ ଲାଗିଲେ। ଗଉରା ପଧାନର ବାପା ଲଇଖନ ପଧାନକୁ କିଣା ଜମିରୁ କିଛି ଦେଇ ତାଙ୍କଠୁ ଘରଢ଼ିହ ବଦଳ କଲୁଁ। ସେଇ ଖେତଟାକୁ ପାଟି ପାଟି ଘର ତିଆରି ହେଲା। ଏଯାଏଁ ସେ ତିଆରି ସରିନାଇଁ, ଚାଲିଛି। ଧନ୍ୟ କହିବି  କରୁଣାକର, ଲଇଖନ ପଧାନ ଦି' ଭାଇଙ୍କୁ। ବିପଦବେଳେ ଆମର  ସାହା ହୋଇଛନ୍ତି। ଫଗୁ ଓରାମ। ଆଦିବାସୀ ମହାତ୍ମାଟିଏ। ଆମ ଘର ପାଇଁ ଇଟା ଗଢ଼ିଲେ। ଇଟା ପୋଡ଼ି ଘର ତୋଳିବାକୁ ବେଳ କାହିଁ? ମଜଭୁତ ପାଗରେ ଇଟା ଗଢ଼ିଥିଲେ ଫଗୁ ଓରାମ। ଚାଳିଶ ବର୍ଷପରେ ସେ ଘର ଭଙ୍ଗାହେଲା। ଇଟା ଗୁଡ଼ିକ ଏପରି ଅତୁଟ ଥିଲା ଯେ ସେଇ କଞ୍ଚା ଇଟାକୁ ପୋଡ଼ିବାରେ ସମର୍ଥ ହେଲୁ ଆମେ। ଧନ୍ୟ କହିବ ସେ ଗଢ଼ାଳିକୁ। ଫଗୁ ଓରାମକୁ। ଆଜିସେ ନାଇଁ। ନାଁ ଅଛି।

ଆମ ପରିବାରରେ ମୋର ବାପମାଆ, ମୋ' ସାନଭାଇ ଓ ଆମେ ଦି' ପ୍ରାଣୀ।

ଏମିତି ପାଞ୍ଚଜଣୀ । ମୋ'ଶାଶୁ ଓ ତାଙ୍କ ସାନଝିଅ । ମୋ' ମାମୁ ମାଇଁ ଓ ମୋ' ବୁଢ଼ୀ ଆଈ, ମା'ର ମା''। ଏପରି ଗାଏ ମୋଟ୍ ଦଶ ପ୍ରାଣୀର କୁଟୁମ୍ବ । ଏ ସଭିଙ୍କୁ ସମ୍ଭାଳିବାର ବୋଝ ମୋ' ଉପରେ ପଡ଼ିବା ବେଳକୁ ମୁଁ ଆଇ.ଏ ପାସ୍‌କରି ସାରିଥାଏ ।

ଜମି କିଣିଲୁ ସିନା । ତାକୁ ଚାଷ କଲେତ! ହରେଇଥିବା ଜମିପାଇଁ ଯେତେ କ୍ଷତିପୂରଣ ପାଇଲୁ, କିଣିଲା ବେଳକୁ ତାଠୁ ଜହ ଦାମରେ କିଣିଲୁ । ଏଣୁ ହାତରେ ଆଉ ପଇସା ନାହିଁ । ଭାଇ ପଢୁଥାଏ ଲରମ୍ଭାରେ । ତା' ଉପରେ ମୋର ପାଠପଢ଼ା । ବାପାଙ୍କ ପେଟ ବେମାରି । ହାତରେ କଣା ପଇସାଟିଏ ନାହିଁ । ହାତରୁ ପଣତରୁ ସବୁ ସରିଥିଲା ।

ଜମିରୁ ଆୟ ପାଇବାକୁ ଛଅମାସ ଟାକିବାକୁ ହେବ । ଚାଷ ଉଠେଇବା ପାଇଁ କିଛି ଦରକାର । ପିଲା ଦୁଇଟାର ପଢ଼ା । ଦଶ ପ୍ରାଣୀର ରୋଜରୋଜର ଖରଚ଼ । ବାପେପୁଏ ବସିଲୁ । ଚ଼ରଚା କଲୁଁ । ବାପା କହିଲେ, ମୁଁ ଜାଣେ, ତୋ' ପଢ଼ିବାଟା ତୁ ସମ୍ଭାଳି ନବୁ । ଆଇ.ଏ ରେ ଭଲ କରିଥିବାରୁ ବୃତ୍ତି ପାଇବୁ । ସେଇ ବରଷର ଡ଼ିସେମ୍ବର ଶେଷ ଯାଏ ନାମ ଲେଖାଇନେବାକୁ ଶିକ୍ଷା ନର୍ଦ୍ଦେଶକଙ୍କ ପାଖରୁ ଚ଼ିଠି ଆସିଥାଏ ।

''ଅନ୍ୟର ସାହାଯ୍ୟରେ ପାଠ ପଢ଼ିବୁ ଯାହା ପରଜାମା ପିନ୍ଧି ହାଟକୁ ଯିବୁ ତାହା । ଜୀବନସାରା ଅଙ୍ଗୁଳି ଉଠାଇ ଦାତାପଣ ଜାହିର କରିବେ । ଏଣୁ ନିଜ ଶକ୍ତିରେ ବଡ଼ ହବାକୁ ଶିଖ । ତୋ' ବାଟ ତୁ ବାଛି ନେ । ଆଜିଠୁ ତୁ ମୋ' ବାପା, ମୁଁ ତୋ' ପୁଅ । ମୋତେ ତୁ ପୋଷିବୁ ।'' ବାପା ଶୁଣାଇ ଦେଲେ । ମା' କହଲେ, ''ମୋ' ପାଖରେ ଆଉ କିଛି ବୋଇଲେ କିଛି ନାହିଁ । ସାଜୋବାଜୋ ଆୟ ଅଳଙ୍କାର ଯାହାଥିଲା ସବୁ ଆଗରୁ ଦେଇ ସାରିଛି । ଗୋଡ଼ର ଝୁଣ୍ଟିଆ କେଇପଟ କଉଠି ପଡ଼ିଥିବ ।'' ଆଗପଛ ସବୁ ବିଚାରି ମୁଁ ଚୁଟୁକି ଫୁଟାଇ ଦେଲି । ''ଯାଃ, ଆଉ ପଢ଼ିବି ନାହିଁ!''

ତେବେ କଣ କରିବି? ସବୁଠୁ ତେଜୀୟାନ ଦିନ ଖରାଦିନ ଥିଲେବି ଦଶ ଦିଗ ଅନ୍ଧାର ଦିଶିଲା । ସଂସାର ଚ଼ଳେଇବାକୁ ହେବ । କେମିତିଏ ସଂସାର? ଅନେକ ଘାରିହେଲି । ଦିନକର ଦିନେ ଖାଉଥାଏଁ । ସବୁଦିନ ଭଳି ମା' ସାମନାରେ ବସିଥାନ୍ତି । ପିଲା ଦିନରୁ ବଳେଇ ବଳେଇ ଖୁଆନ୍ତି । ହଠାତ୍ ପଚାରିଦେଲି, ''ଏ ସଂସାରଟା କେମିତି ଗୋ' ମା? କଣ ଭାବିଲେ କେଜଣି, ମା' ଖୁବ୍ ସହଜ ଭାବେ ତାଙ୍କ ଲୁଗା କାନିକୁ ଦେଖାଇ ଦେଲେ । କିଛି ବୁଝି ପାରିଲି ନାହିଁ । ଆକାବାକା ହେଲି । କହିଲି, ଜମା ବୁଝି ହେଲାନି । ତୁ କୁଆଡ଼େ ଢ଼େର ପଢ଼ିଲୁଣି, ମୁ ଜନମ ମୁରୁଖ । ତୁ ଯଦି ବୁଝିଲୁନି, ମୋ' ପରି ମୁରୁଖ ମା'ଟିଏ କଣବା ବୁଝାଇବ? ସବୁ କାଳରେ ମା' ମାନେ ହିଁ ବେଶୀ ବୁଝିଥାନ୍ତି । ବୁଝାନ୍ତି ଓ ବୁଝେଇ ପାରନ୍ତି । ମା'ଙ୍କ ମୁରୁଖ ଆଖି ତେଜୀୟାନ ହୋଇଗଲା । ଆକାଶ ପରି ବିସ୍ତାରିତ ହୋଇଗଲା । ସେ ଛଳଛଳ ଆଖି ସାଗରଠୁବି ବେଶୀ ଗଭୀର ଜଣାଗଲା । ଖୁବ୍ ସହଜରେ ସକାଳ ହେବାପରି, ଫୁଲ ଫୁଟିବା ପରି କହିଲେ, ''ଧନ, ଏ ସଂସାରଟା ବେଶୀ କିଛି

ନୁହେଁରେ। ଚିରା ପଣତ କାନିଟାଏ! ପାଖେ ସାଇଁଲେ ଆରପାଖ ଦରକି ଯାଏ!"

ତାଙ୍କ କଥାରେ କଣଥିଲା କେଜାଣି। ମୋ' ମନଗହୀରକୁ ତୀର ଭେଦିଲା ପରି ଏମିତି ଭେଦିଗଲାଯେ ମୋ' ମାଆଙ୍କ ଶୁଖିଲା ଗୋରୀ ମୁହଁଟାକୁ ଦଣ୍ଡେ ଅନେଇଲି। ସେ ଶୁଖିଲା ହସଟିଏ ହସି କହିଲେ ପ୍ରଥମ ଥର ଦେଖିଲା ପରି ଏମିତି କଣ ଚାହିଁଛୁରେ ମୋ' ମୁହଁକୁ? ଛଳ ଛଳ ଆଖିରେ ମୋର ଉଚ୍ଛୁଳି ପଡୁଥିଲା ଅନେକ ଉତ୍ତର। ହେଲେ ମୁଁ ନିରୁତ୍ତର ରହିଲି। ମୋର ନୀରବତା ହିଁ ବେଶୀ ମୁଖର ହୋଇ ଉଠୁଥିଲା। ଧନ୍ୟ କହିବି ତୋ' ଚିରା ପଣତର ସଂସାରଟାକୁ ମୋ' ପିଠିରେ ବୁଜୁକେଇ ଦେଲୁ। ମୁଁ ତାକୁ ସାରା ଜୀବନ ଲାଭ କରି ବୋହି ଚାଲିଛି ଯେ ଚାଲିଛି। ତୋର ଉତ୍ତର ଏତେ ସହଜ ଥିଲା ଯେ ଆଜିଯାଏଁ ମୋ ଜୀବନରେ ମୁଁ କୌଣସି ବୁଦ୍ଧିମାନକୁ ପାଇନାଇଁ ଯିଏ ମୋତେ ତୋ'ଭଳି ବୁଝେଇ ଦେବ। ଧନ୍ୟ ତୋ' ବୁଦ୍ଧି! ଧନ୍ୟ ତୋ' ମାଆପଣ! ଧନ୍ୟ ତୋ' ଘରକରା!!!

କଣ ବୁଝିଲେ କେ' ଜାଣେ ଆମ ସିଏ ହସିଦେଲେ। ଜବା କୁସୁମ ସକାଳ ପରି ମୋ' ମାଆଙ୍କ ମୁହଁ ନିଶାନ୍ତ ପାଲଟିଗଲା।



## ୪୨. ସାଆଁନ୍ତରୁ ସୁଖବାସୀ

ମୋର ପାଠପଢ଼ା ଶହେକୁ ଶହେ ବନ୍ଦ ହୋଇଗଲା। ତାର ପରେ କଣ କରିବି? ପଞ୍ଚାକ୍ଷରକୁ ଘୋଷିବି। ଆମବେଳେ ଚାକିରି ପାଇବାଟା ସହଜଥିଲା। ଘନାପାଲିର ବଇଁଶୀ ପତି ଟ୍ରାଫିକ୍ ଇନ୍ସପେକ୍ଟର ହେବାପାଇଁ ବଲାଙ୍ଗୀର ଗଲେ। ମନେ ମନେ ଭାବିଲି ତାଙ୍କ ସହ ଗଲେ କେମିତି ହୁଅନ୍ତା? ଏଣୁ ତାଙ୍କ ସହ ବଲାଙ୍ଗୀର ଗଲି। ଦେଖାକଲି ପରିବହନ ସାହେବଙ୍କୁ। ସେ ହଁ କଲେ। କାମରେ ବାହିଲ ହେଲି। ମୋତେ କିଛି ଜଣା ନଥିଲା। ସେ କାମର ଅଗବୁନ୍ଧ କି ସାରୁ ଆଳୁ। ଶୁଣିଲି ଆଗରୁ ଯାଇ ସଡ଼ଖ କଡ଼ରେ ଲୁଚି ରହିବାକୁ ହେବ। ଅଜାଗାରେ ବସ ଅଟକାଇ ଟିକଟ ତନଖି କରିବାକୁ ହେବ। ଚାଲି ଚାଲି କେତେ ଦୂର ଯିବାକୁ ହେବ? ବଡ଼ ସାହେବ ମୋତେ ପଚାରିଥିଲେ, "ମଟର ସାଇକେଲ ଚଢ଼ି ଜାଣିଛ?" ମୁଁ କହିଲି, "ହଁ"। ଏବେ ବୁଝୁଛି ସେ କାହିଁକି ଏ ପ୍ରଶ୍ନ କରିଥିଲେ। ଶିଖା କଥାକୁ ପଇତେଇ ଥିଲି। ହଁ କରିଦେଲି। ହେଲେ ମଟର ସାଇକେଲ ଚଢ଼ିବା ଶିଖିଛି କଉଠି? ଭଲ ଭାବରେ ସାଇକଲ ଚଢ଼ି ଜାଣେନା। ଉଚ୍ଚ ଜାଗା ଦେଖି ଚଢ଼େଁ ତ ଉଚ୍ଚ ଜାଗାରେ ଉତୁରେଁ। ଏଯାଏଁ ସେ ଢଙ୍ଗଟି ଅଛି। ଅନ୍ୟ ସହକର୍ମୀଙ୍କ ଠୁଁ ଯାହାବୁଝିଲି ଏପରି କାମ ମୋ' ପରି ଡରୁଆ ଲୋକଦେଇ ହେବନାହିଁ। ଅଣକୁଶଳୀ ଲୋକଙ୍କ ଏକାମ ନୁହେଁ। ଖରାମାସ ହୋଇଥାଏ। ଏଣୁ ଭାବିଲି ବୁଲାବୁଲିଟେ ହଉ। ଲୋକେ ଖରଚ କରି ବୁଲି ଯାଉଛନ୍ତି। ଏ ସୁଯୋଗରେ ବଇଁଶୀ ପତିଙ୍କ ସହ ବୁଲାବୁଲି ହଉ। ବଲାଙ୍ଗୀରରୁ

ସୋନପୁର, ବଲାଙ୍ଗୀରରୁ ପାଟଣାଗଡ଼, ଟିଟିଲାଗଡ଼ ଏମିତି ଏମିତି ଯଉଠିକି ବସ୍‌ମାନ ଯାଉଥିଲା, ଗଲି। ନିତ୍ୟକର୍ମ ସାରି ସଜବାଜ ହୁଏ ସକାଳରୁ ବସଷ୍ଟାଣ୍ଡକୁ ଚାଲିଆସେ। ଯଉଠିକି ମନ ପାଇଲା ବାହାରି ପଡ଼େ। କଣ୍ଡକ୍ଟର ବାବୁମାନେ ଆଦର କରନ୍ତି। ଜୀବନରେ ସର୍ବପ୍ରଥମ ସେମାନଙ୍କ ମୁହଁରୁ "ସାର୍" ଶୁଣିଲି। ଭିତରେ ଭିତରେ କୁରୁଳି ଉଠୁଥାଏଁ। ଏଯାଏଁ ସେ ସମ୍ବୋଧନ ମୋ' ପ୍ରତି ଲୋମକୂପରେ ସାଇତା। ଗୋଟିଏ ପାରିଲା ପଣର ଧ୍ୱନି ସେଇ "ସାର୍" ଭିତରେ ଠେସି ହୋଇ ଚହିଛି। କଣ୍ଡକ୍ଟର ବାବୁମାନେ ଗେଲ୍‌ହା ପୁଅ ପରି ସରାଗରେ ନଉଥିଲେ, ଆଣୁଥିଲେ। ସୁଖ ଚାଖିଲେ ଲୋକ କୁଆଡ଼େ ଦୁର୍ବଳ ହୋଇଯାଏ। ସତକଥା, ପରେ ବୁଝିଲି।

ଦିନକର କଥା ବସଟି ସୋନପୁର ବାହାରିଥାଏ। ଘରଘର୍ ହଉଥାଏ। ଷ୍ଟାର୍ଟର ଅସୁବିଧା ଥିବାରୁ କିଏ ଠେଲୁଛି ଡ୍ରାଇଭର ବାପୁଡ଼ା ଗାଡ଼ୀଟାକୁ ଷ୍ଟାର୍ଟରେ ରଖିଥାନ୍ତି। ବନ୍ଦ କରିନାହାନ୍ତି। କଉ ହାତରୁ ପଇସା ସରୁଛି ଯେ। ତେଲତ ସରକାରର। ଯେତେ ସରୁଛି, ସରୁ। ଏମିତିଆ ଧାରଣାରୁ ଏଦେଶ ଆଜି ଧରାଶାୟୀ।

କଣ୍ଡକ୍ଟର ଟୋକାଟି ଅନୁରୋଧ କଲେ, "ସାର୍ ଆସୁନାହାନ୍ତି ଆମ ଗାଡ଼ୀରେ? ସୋନପୁର ବୁଲି ଆସିବେ?" ହଁ କଲି। ଗାଡ଼ୀରେ ଉଠିଲି। ସେତେବେଳେ ସିଗାରେଟ୍ ପିଇବା ଆରମ୍ଭ କରିଥିଲି। ଉପୁରି ପାଇଲେ ବଦଭ୍ୟାସ ସୁରୁ ହୋଇଯାଏ। କଣ୍ଡକ୍ଟର ବାବୁ ଆଗର ଭଲ ସିଟ୍‌ରେ ବସାଇଲେ। ବସାଇବା ଆଗରୁ କାନ୍ଧରେ ପକାଇଥିବା ଛୋଟ ଟାଓ୍ୱେଲ୍‌ରେ ଝାଡ଼ିଦେଲେ ସିଟ୍‌ଟାକୁ। ବସିଲି। ପାନ ସିଗାରେଟ ଧରେଇଦେଲେ। ବାଟଯାକ ଚା'ପିଆ, ଜଳଖିଆ ଖିଆ। ଯଉଠି ଗାଡ଼ୀ ଅଟକିଲା କିଛି ନା କିଛି ଆଣି ଧରେଇଲେ। ସାଆଁନ୍ତ ରକତତ ଧମନୀରେ ଅଛି। ଏପ୍ରକାର ଖୋସାମତି ପାଇଲେ ରକତ ଭିତରେ କଣଟାଏ ଗୁରୁଣ୍ଡିଲା ପରିଲାଗେ। ଗାଆଁରେ ସକାଳ ପାଇଲେ ଗଉଁଟିଆ ଘରର ବଡ଼ନାତି ବୋଲି ଶହଶହ ଜୁହାର ମିଳୁଥିଲା। 'ଜୁହାର'ର ଅର୍ଥ ହେଲା ପାପକୁ ହରଣ କର। 'ଜୁ' ବୋଇଲେ ପାପ। ହାର (ହୃ) ବୋଇଲେ ହରଣ କରିବା। କି ପାପ ହରଣ କରିବି ମୁଁ? ବଅସରେ ମୁଁ ସାନ। ମୋ' ଅଜାବୟସର ଲୋକେବି ମୋତେ ଜୁହାର କରୁଥିଲେ। ମୋ' ଭିତରର 'ମଙ୍ଗଲୁ' ବିଦ୍ରୋହ କରି ଉଠୁଥିଲା। ଏ କି ପ୍ରକାର ସାମନ୍ତପଣ? ବଡ଼ଲୋକି? ଜଣେ, ଦି'ଜଣଙ୍କୁ କହି ପକେଇଲି। ତମେ ମୋତେ ଜୁହାର କରିବନି। ବରଂ ମୁଁ ତୁମକୁ ପ୍ରଣାମ କରିବି। "ରାମ୍ ରାମ୍, ବାମ୍ହନ୍ ଦେବତା, ଚହିଁ ଉପ୍ରେ ଗାଁ ଗଁଟିଆ ଘରର ପୋ'ନାତି! ଆମ୍‌କୁ ଜୁହାର କରବ? ଆମର ଭଲଗତି ହେବା? ହେନ୍ତା ନାଇଁ କରବ ବାବୁ!" ଝନାକେତେ କହେଲେ।

ହଁ ଠିକ୍ ମନେ ପଡ଼ିଲା। ଗୋକୁଳ ପଣାୟତ ବାରିକ, ଖିଅର କରିବା ଆଗରୁ ଜୁହାର କରେ। ମୋ' ଅଜାମାନଙ୍କୁ, ବାପା ମାନଙ୍କୁ ଯଥାବିଧି କରୁଥିଲା। ଦେଖ ଦେଖ

ବୋଇଲା ବେଳକୁ ମୋତେ ବି ଜୁହାରରେ ଗଧେଇ ଦେଲା । କହେ କଣନା, ମୁ କୁଆଡ଼େ ବ୍ରାହ୍ମଣ ଦେବତା । ସବୁ ଜାତିର ରଜା । ଗୋକୁଳ ପଶାୟତର ସେ ବ୍ରାହ୍ମଣ ଦେବତାପଣ ମୋ' ଭିତରେ ପଶି ପାରିଲା ନାହିଁ । ସାମନ୍ତ ରକ୍ତର ଏ ଏକ ବୁନିଆଦୀ ଦୋଷ । ଜୁହାରଟିଏ ପାଇଲେ କେମିତି କେମିତି ଲାଗେ ।

ଯୋଗୀଟାଏ ଭିଖ ମାଗିବାକୁ ଆସିଥାଏ । ବାପା ବସିଥାନ୍ତି ଦାଣ୍ଡ ପିଣ୍ଡାରେ ଯୋଗୀଟି ବାପାଙ୍କୁ ଟେକିଲା । ଆମ ବାସି ପଖାଳ କୁଆଡ଼େ ଯୋଗୀଟାର ପେଟରେ ସେ ଯାଏଁ ଅଛି । ବାପା ଯଉଠିଥିଲେ, କାହିଁ କଉ ଉପରକୁ ଉଠିଗଲେ । ଯୋଗୀଟାକୁ ଆଶାରୁ ଅତୀତ ଅନେକ କିଛିଦେଲେ । ଥିଲା ଥିଲା ଯୋଗୀ ଜଣକ ବାପାଙ୍କୁ ଲଙ୍ଗଳଟାଏ ମାଗିଲା । ବାପା ହଁ କଲେ । ଦେଖେଇ ଦେଲେ । ସେ ନେଲା । ଯୋଗୀକୁ କି ଯୁଆଳି! ଖୋଷାମତିରେ ମଜ୍ଜିଥିବା ସାଆନ୍ତ ମନ ଏକଥା କୁ ହେଜିଲା ନାହିଁ । ଶୁଣିଲି, ଯୋଗୀ ଜଣକ ଲୁହା ଲଗା ଲଙ୍ଗଳଟା କାହାକୁ ବିକିଦେଲା । ଅଦ୍ଭୁତ ଏ ସାଆନ୍ତ ମାନେ! ବିଚିତ୍ର ଏମାନଙ୍କ ମିଜାଜର ମୌରସି !!

ଗାଡ଼ୀ ଧାଉଁଥାଏ ବଲାଙ୍ଗୀରରୁ ସୋନପୁର । ତରଭା ବାଟଦେଇ ଯିବ । ରାଜରାସ୍ତାରୁ ତରଭା ପୁଣି ତରଭାରୁ ରାଜରାସ୍ତା । ଯିବ ଓ ଆସିବ । ମଝି ବାଟରେ ସୁଖତେଲ ନଈ । ତା'ଉପରେ ପୋଲ ତିଆରି ହୋଇ ନଥିଲା । ପୋଲ ହେବାକୁ ଖମ୍ବ ଗୁଡ଼ିକର ନେହି ଖୋଲା ଚାଲିଥିଲା । ଦିନ ଏଗାରଟା ବେଳକୁ ସୋନପୁର । ରଜାଙ୍କ ନଅର ଛୋଟ ହେଲେ ବି ଇତିହାସରେ ମୋଟ । ନଈ କୂଳିଆ ସହରର ଗୋଟାଏ ସ୍ୱତନ୍ତ୍ର ଠାଣିଥାଏ । ଅଧିକାଂଶ ଘରର ଛାତ ପାଳଛୁଆଁ । ଗରିବି ନା ରାଜାଙ୍କ ଗରିମା ବୁଝି ହଉ ନଥାଏ । ପାଉଁଶିଆ ପାଉଁଶିଆ ପରିବେଶ । ବହୁ ବର୍ଷ ପରେ ପୁଣିଥରେ ସୋନପୁର ଯାଇଥିଲି । ଭୀମ ଭୋଇଙ୍କ ଖଲିଆପାଲି ଯିବା ବାଟରେ ବନ୍ଧୁ ଟିପୁ (ଚ଼ନ୍ଦ୍ରଶେଖର ପୁରୋହିତ) ସେଠିକାର ବି.ଡ଼ି.ଓ. ଥାନ୍ତି । ମୋତେ ପାଛୋଟି ଆଣିଥିଲେ ନଈ ଆରପଟରୁ । ଦେଖିଲି ମୋ ସାନ ନାତୁଣୀ ପରି ଯେମିତିକି ସେମିତି ରହିଛି । ବଦଳି ନାହିଁ । ସବା ସାନ ରାଣୀ ପରି ନିଖୁଣ ହୋଇ ରହିଛି । ସହରମାନ ସଚ଼ରାଚ଼ର ଆଖି ପିଛୁଡ଼ା କେ ବଦଳିଯାଏ । ବଦ୍‌ମାସ ବି ହୋଇଯାଏ । ହେଲେ ସୋନପୁର କୁ ସେ ରୋଗ ଧରିନାହିଁ । ତା'ର ସୁବର୍ଣ୍ଣ ଆଭାରେ କଞ୍ଚା ହଳଦୀପରି ଟହଟହ ହସୁଛି । ବୀଣାପାଣି ନାମକ ହୋଟେଲଟିଏ ଥିଲା । ଏବେ ଅଛିକି ନାହିଁ, କହି ପାରିବିନି । ସିନେମା ଘରଥିଲା । ଛବି ପଡୁନଥିଲଲା ସେଇଠି ।

କଣ୍ଡକ୍ଟର ବାବୁଙ୍କ ସଖ୍ୟ ଓ ସହାଚ଼ର୍ଯ୍ୟ ମୋତେ ପ୍ରଭାବିତ କରିଥିଲା । ମୁଁ ଅଧମ ତାଙ୍କ ଶୁଭ ନାମଟି ପାଶୋରି ପକେଇଛି । ଏଇ ପାଶୋରିବା ମୋର ଏକ ବେମାରି । ମରିବାକୁ ବସିଲିଣି, ଗଲାନାହିଁ ।

ଏଇମିତି ରୋଜରୋଜ ସକାଳୁ ବାହାରି ସଞ୍ଜକୁ ଫେରେ । ଭଡ଼ା କୋଠରୀ ଗୋଟାକରେ

ରାତିଟା କଟେଇ ଦିଏଁ। ପନ୍ଦର ଦିନ କାଳ ଏପରି କଟିଗଲା। ଏଇ ଅବସରରେ ବଲାଙ୍ଗୀରରୁ ଯଉଠିକି ବସ ଯାଉଥିଲା ସେଇ ସେଇ ଜାଗାମାନ ଦେଖି ସାରିଦେଲି। ବୁଲା ବୁଲି ସରିଲା। କାହିଁକି କେଜାଣି ଘରମୁହାଁ ଘରମୁହାଁ ଲାଗିଲା। ଆମ ସମ୍ବଲପୁରିଆଙ୍କ ଏଇ ହୋମସିକନେସ୍ ରହିଛି। ଘରମାଉ ଅଭ୍ୟାସ ଯୋଗୁଁ ଦୂର ଚାକିରୀକୁ ଅନେକ ଛାଡ଼ିଛନ୍ତି। ମୁଁ ତହିଁରୁ ତ୍ରାହି ପାଆନ୍ତି କିପରି? ବଲାଙ୍ଗୀରରେ ଏଇ ରହଣି ମୋ' ପରବର୍ତ୍ତୀ ଜୀବନକୁ ଅନେକ ଖୋରାକ ଯୋଗାଇଛି।

ଦିନେ କଣ ହେଲାନା ଡ଼ାକରେ କାଗଜ ଖଣ୍ଡେ ଲେଖି ପଠାଇ ଦେଲି। କାହାକୁ କିଛି ନକହି ବଲାଙ୍ଗୀରରୁ ବାହୁଡ଼ି ଆସିଲି। ଚାକିରୀ କରା ମୋ'ଦେଇ ହେବନାହିଁ। କାଗଜ ଖଣ୍ଡିକ ଥିଲା ମୋ' ଇସ୍ତଫା। କୌଣସି ଦାୟିତ୍ୱ ଲେଖାରେ ନେଇ ନଥିଲି। ଏଣୁ କେହି ମୋତେ ଲୋଡ଼ିଲେ ନାହିଁ। ଅନେକ ମାସ ପରେ ମନି ଅଡ଼ରଟାଏ ଆସିଲା ଟ୍ରାଫିକ୍ ଇନ୍ସପେକ୍ଟର କାମର ଦରମା। ଧନ୍ୟ କହିବ ସେ ସାହେବଙ୍କୁ। ତାଙ୍କ ଥାନରେ ମୁଁ ଥିଲେ ଏ ଅଧମକୁ କାହିଁକି ଦୁନିଆର କୌଣସି ଅଧମକୁ ଦରମା ଦେଇ ନଥାନ୍ତି। ଟଙ୍କାତକ ମା'ଙ୍କୁ ଦେଇ କହିଲି ଏ ମୋ' ଚାକିରିର ପ୍ରଥମ ଦରମା। ରଖିଥା' ଠାକୁରଙ୍କୁ ଭୋଗ ଦବୁ। ଯେମିତି ସର୍ବ ଶୁଭରେ ସୁଖବାସୀଟିଏ ହୋଇ ରହିଥିବି। ମା' ଆକାବାକା ହୋଇ ପଚାରିଦେଲେ "କେବେ କଉଠି ଚାକିରି କଲୁ କିରେ?"



## ୪୩. ମଂଗଲୁ ମାଷ୍ଟର

ମଙ୍ଗଳପୁର ଗାଁଟିଏ। ଇବ ନଈର ସେ ପଟେ। ଏପଟେ ଆମ ଗାଁ ପିତାପାଲି। ଏବେ ନାହିଁ। ହୀରାକୁଦ ଠେଲା ପାଣି ଭିତରେ। ମଙ୍ଗଲୁ ବୋଲି ଜଣେ ମାଷ୍ଟର ଥିଲେ। ମଙ୍ଗଳପୁରର ହୋତା ପରିବାରର। ଭଲ ପଢ଼ଉଥିଲେ। ବଲବସପୁର ପ୍ରାଥମିକ ସ୍କୁଲରେ ଶିକ୍ଷକ ଥିଲେ। ତାଙ୍କ ବହୁ ଭଲ ଗୁଣ ଭିତରେ ଗୋଟାଏ ଅବିଗୁଣ ଥିଲା। ସେ ଗଞ୍ଜାଇ ଟାଣୁଥିଲେ। ଏ ଗୋଟାକ ଛଡ଼ା ବାକି ସବୁଥିରେ ବାଘନଥା।

ମୁଁ ତାଙ୍କଠି ପାଠ ପଢ଼ି ନଥିଲେ ବି ତାଙ୍କ ବିଚକ୍ଷଣତାର ପରିଚ୍ୟ ପାଇଥିଲି। ମଙ୍ଗଲୁ ମାଷ୍ଟରେ ଟିଏ ହେବାର ଅନୁପ୍ରେରଣା ତାଙ୍କଠୁ ପାଇଥିଲି। ମାଷ୍ଟରଟିଏ ହେବାର ଇଚ୍ଛାଟିଏ ମୋ ଭିତରେ ଗଜୁରି ଉଠିଥିଲା। ଶିକ୍ଷକ ହେବାର ବହୁକାମନାରୁ ସେ ଗୋଟାଏର ଉସ୍ଥିଲେ।

ମୁଁ ଅଷ୍ଟମ ପଢ଼ିବା ବେଳେ ଆମ ସାର୍ ଥିଲେ ଜନାର୍ଦ୍ଦନ ପାତ୍ର। ଧମା ପାଖ ହଳଦୀ ଗାଆଁର। ତାଙ୍କ ନାଆଁ ଆଗରେ ଏମ୍.ଏ. ବି.ଇଡ଼ି ଲେଖୁଥିଲେ। ତାଙ୍କୁ ଅନୁକରଣ କରି ଆମେ ବି ଆମ ନାଆଁ ଆଗରେ ସେମିତି ଲେଖୁଥିଲୁ। ଅଷ୍ଟମ ପଢ଼ା ନାଆଁ ଆଗରେ ସେ ଯୋଗ୍ୟତାର କିଛି ମାନେ ନଥିଲା। ହେଲେ ସେ ଅନଧିଗତ ଦକ୍ଷତା ପାଇଁ ପ୍ରଚୁର

ପ୍ରେରଣା ପାଉଥିଲୁ। କଞ୍ଚା ବୟସରେ ଏମିତି ଅନେକ ଅଭିନବ ଅଭିନୟର ସୁଯୋଗ ଆସେ। ତା'ର ପ୍ରତିଫଳନ ବାସ୍ତବ ଜୀବନରେ ସମ୍ଭବ ହୁଏ। ଅଷ୍ଟମରୁ ମାଷ୍ଟରଟିଏ ହେବାର ଝୋକ୍ ମୋର ଥାଏ।

ରଂପେଲା ମାଇନର ସ୍କୁଲର ହେଡ଼ମାଷ୍ଟର କମଲ ଲୋଚନ ମିଶ୍ର ମୋର ପ୍ରଧାନ ଶିକ୍ଷକ କୁଞ୍ଜ ବିହାରୀ ପଣ୍ଡାଙ୍କର ସେ ପ୍ରଧାନ ଶିକ୍ଷକ ଥିଲେ। ତାଙ୍କ ନାଆଁ ଶୁଣିଥିଲି। ତାଙ୍କ ମୁକୁଟ ବନ୍ଧା ବ୍ୟକ୍ତିତ୍ୱର ଅନେକ କଥା ଲୋକେ କହନ୍ତି। ସେ କୁଆଡ଼େ ଭଜା ଝୁରିରେ ମୁର୍‌ହି ଖାଉଥିଲେ। କବିଟାଏ। "ହମ୍‌ଲୋଗ୍ ହୀରାଖଣ୍ଡ କେ ଭୁତ୍" ଗୀତର ସେ ବାନାଧରା କବି। ତାଙ୍କ ନାଆଁର ନୀରବ ପ୍ରେରଣା ମୋର ରକତରେ ଥିଲା। ମୋ'ସ୍ଥିତି କ୍ରମେ କ୍ରମେ ଶିକ୍ଷକ ହେବା ଆଡ଼କୁ ବାଟ କଢ଼ଉଥିଲା।

ଆମବେଳେ ସାତ କିଲାସ ପାସ୍ କଲେ କିଛି ନ ହେଲେ ବି ପ୍ରାଇମେରି ମାଷ୍ଟରଟିଏ ହେବାର ବିପୁଳ ସୁଯୋଗଥିଲା। ବେକିଙ୍ଗ୍ କି ହାତ ପେକିଙ୍ଗ୍ ଆବଶ୍ୟକତା ନଥିଲା। "ଦେ' କଉଡ଼ି, ଖା' ପିଠାର" ମୂଲଚାଲ ନଥିଲା। ଆମ ଜିଲ୍ଲାର ଚାରିଆଡ଼େ ନୂଆ ନୂଆ ଶିକ୍ଷାନୁଷ୍ଠାନ ମାନ ଖୋଲିବାର ପ୍ରବଳ ଆଗ୍ରହ ଦେଖାଦେଲା। ଏ ଉଦ୍ଦାମତାରେ ମଫସଲ ମାନ ବେଶୀ ମାତିଲେ। ଶିକ୍ଷକଟିଏ ହେବାପାଇଁ ତାଲିମ ଉପରେ ସେତେଟା ଯୋର ଦେଉନଥିଲେ। ମୋ' କଲେଜ ପଢ଼ା ବେଳକୁ ମୁଁ ଲେଖାଲେଖି ଯୋର କରୁଥିଲି। ଆସନ୍ତାକାଲି, ଝଂକାର, ରବିବାର ପ୍ରଜାତନ୍ତ୍ର, ଡଗର ଆଦିରେ ମୋର କବିତା ବାହାରୁଥିଲା। ବାଲେଶ୍ୱରରୁ କବି ବ୍ରଜନାଥ ରଥ ଓ ଯଦୁନାଥ ଦାଶ ମହାପାତ୍ର ମିଳିତ ଭାବେ 'ଧରିତ୍ରୀ' କବିତା ସଂକଳନଟିଏ ଛାପିଥିଲେ। ସେଥିରେ ମୋର ତିନୋଟି କବିତା ସଂକଳିତ ହୋଇଥିଲା। ବ୍ରଜନାଥ ରଥଙ୍କୁ ଏବେ ଚାରିଦଶକ ପରେ ଭେଟିଲି। କବି ପଣରେ, ସାରସ୍ୱତ ଗରିମାରେ ସେ ଉଝାଟ ଦିଶୁଥିଲେ। ଦୀପ୍ତିମନ୍ତ ଦିଶୁଥିଲେ।

ଏଥିଯୋଗୁଁ ମୋ' ନାଆଁସହ ଲୋକେ ପରିଚିତ ଥିଲେ। ମୋର ପଢ଼ା ଛାଡ଼ିବା କଥାଟା ରାଷ୍ଟ୍ର ହୋଇଗଲା। ଯେମିତି କିଏ ହାଟକୁ ହାଟ ଡେଙ୍ଗୁରା ପିଟି ଦେଇଛି। ଆରେ ମଙ୍ଗଳୁଟା ଭଲ ପଢୁଥିଲା। ପାଠ ଛାଡ଼ିଲା କିଆଁ? କେମିତି ଜାଣିଲେ କେଜାଣି, ଶ୍ରୀପୁରା ଗାଆଁର ପିଲାଏ ବି ଶୁଣିଲେ। ଝାରସୁଗୁଡ଼ା ମନମୋହନ ମିଃଇଃ ସ୍କୁଲରେ ପଢ଼ିବାବେଳେ ଭୁର୍କାମୁଣ୍ଡା, ଶ୍ରୀପୁରା, କାତିକେଲାକୁ ମୁଁ ଆସୁଥିଲି। ଭୁର୍କାମୁଣ୍ଡାର ସଦାଶିବ ପାଢ଼ୀ ଆମ ଶିକ୍ଷକଥିଲେ। ଏ ଗାଁ ମାନଙ୍କର ବହୁପିଲା ମୋର ପଢ଼ାସାଙ୍ଗ।

୧୯୫୭ର ଡହଡହ ଖରା ପିଟୁଥାଏ। ଶ୍ରୀପୁରାର ସୁରେଶ କୁମାର ପଣ୍ଡା ଓ ଧ୍ରୁବ କୁମାର ପଣ୍ଡା ଆମ ଘରକୁ ଆସିଲେ। ଗୋପୀନାଥ ପଣ୍ଡାଙ୍କ ନେତୃତ୍ୱରେ ମାଇନର ସ୍କୁଲଟିଏ ଖୋଲିଥାଏ। ବରଷେ ହୋଇଥାଏ। ସେଇଠି ଧ୍ରୁବ କୁମାର ପଣ୍ଡା ଏକମାତ୍ର ମେଟ୍ରିକ୍ ପାସ ଶିକ୍ଷକ।

ସେତେବେଳେ ଆମ ନୂଆଘରର ତିଆରି ସରିଥାଏ। କର୍ଣ୍ଣ ପଧାନ ଘରୁ ଆମ ଘରକୁ ଉଠି ଆସିଥାଉ। ବାଡ଼ି ପଟରେ ପାଣି ପାଇଁ କୂଅ ଖୋଳା ଚାଲିଥାଏ। ମିସ୍ତ୍ରୀ ଥାଏ ଚରଭୁଜ ଓରାମ୍। ପାଖରେ ଥାଇ ହାତେ ପାତେ ସହାୟତା କରୁଥାଏଁ। ମା' ଖବର ଦେଲେ କେହି ଦି'ଜଣ ବାବୁ ଆସିଛନ୍ତି। ଜଣେ ଧ୍ରୁବ କୁମାର ପଣ୍ଡା ମୋର ମାଇନର ସ୍କୁଲର ସହପାଠୀ। ଆର ଜଣକ ସୁରେଶ କୁମାର ପଣ୍ଡା, ଗୋପୀନାଥ ପଣ୍ଡାଙ୍କ ପୁଅ। ତାଙ୍କ ମାଇନର ସ୍କୁଲ ପାଇଁ ଶିକ୍ଷକ ଦରକାର। ସେମାନେ ମୋତେ ନବାକୁ ଆସିଛନ୍ତି। ମୋର ଲୋଡ଼ାଥିଲା। ମୁଁ ହଁ କଲି।

ଆଗରୁ କହିଛି ମୁଁ ବାହାହୋଇ ସାରିଥାଏଁ। ଜଣାଇ ଦେଲି ମୁଁ କାହା ଘରେ ରହିବିନି। ମୋ' ପାଇଁ ଘରଟିଏ ଲୋଡ଼ା। ଗାଁ ମୁଣ୍ଡ ଗୋପୀ ପଣ୍ଡାଙ୍କ ବଗିଚାରେ ମୋ' ପାଇଁ ଘର ତିଆରି ହେଲା। ଦି'ବଖରା ଘର। ପାଇଖାନା ଓ ଗାଧୁଆଘର ସୁବିଧାବି କରାଗଲା। ବୁଢ଼ାବୁଢ଼ୀ ମାନେ ପିଣ୍ଡାରେ ବସି କୁହାକୁହି ହେଲେ "କି ମାଷ୍ଟରଟାଏ ଆଣିଛଯେ ଘର ଭିତରେ ଦୁଇ କରିବ?" ଅନେକେ ହସିଲେ। ହେଲେ ମୁଁ ଅଟଳ। ମୋର ଯୁକ୍ତିଥିଲା ମୁଁ ହେବି ପ୍ରଧାନ ଶିକ୍ଷକ। ପ୍ରଧାନ ଶିକ୍ଷକ ମାନଙ୍କୁ ଲୋକେ ସ୍ୱତନ୍ତ୍ର ଆଖିରେ ଦେଖନ୍ତି। ଏଣୁ ମୋର ସାମାନ୍ୟତମ ଅଶାଳୀନତା ପିଲାଙ୍କ ଆଖିରେ ପଡ଼ିବା କଥା ନୁହେଁ। ସେତେବେଳେ ମଫସଲରେ ପାଇଖାନା ରଖିବାର ଚିନ୍ତାବି କେହି କରୁନଥିଲେ। ମେଲା ମେଲା ପ୍ରକୃତିର ପର୍ଯ୍ୟାପ୍ତ ଜାଗାରେ ପ୍ରାତ୍ୟହିକ ଜୀବନର ଦରକାରିତାକୁ ମେଣ୍ଟାଇ ପାରୁଥିଲେ। ଏବେ ସେ ଗାଆଁରେ ଲୋକେ ନିଜର ଖାସ କୋଠରିକୁ ଫଟାଇ ପାଇଖାନା କଲେଣି। ମୋତେ ନାକ ଟେକିଥିବା ବୁଢ଼ାମାନେ ଏବେ କହନ୍ତି "ଟୋକାଟାର ଦୂରଦୃଷ୍ଟି ଥିଲା।

୧୯୫୭ ଜୁନ୍ ଚବିଶ ତାରିଖରେ ଶ୍ରୀପୁରା ସ୍କୁଲରେ ଯୋଗଦେଲି। ପ୍ରଥମରୁ ପ୍ରଧାନ ଶିକ୍ଷକ ଦେଲି ଯେ ୧୯୯୫ ମଇ ଏକତ୍ରିଶ ତାରିଖରେ ପ୍ରଧାନ ଶିକ୍ଷକ ପଦରେ ହିଁ ଅବସର ନେଲି। ସହକାରୀ ହେବାର ଅନୁଭବଟି ବାକି ରହିଗଲା। ଶ୍ରୀପୁରାରେ ମୋର ରହଣି ମୋ' ଜୀବନର ଶ୍ରେଷ୍ଠତମ ଅଧ୍ୟାୟ। ଛଅବର୍ଷ ଆଠ ଦିନ ରହିଥିଲି ସେ ଗାଆଁରେ। ଜୀବନରେ ଆଉ କିଛି ହବାର ସୁଯୋଗ ନଥିଲା। ଇଚ୍ଛାବି ନଥିଲା। ମୋତେ ଯାଚି ଦେଇଥିବା ଶିକ୍ଷକତାକୁ ମୁଁ ମୋ' ଜୀବନର ସର୍ବସ୍ୱ ରୂପେ ଗ୍ରହଣ କରି ସାରିଥିଲି। ଏଣୁ ମୋତେ ଅନ୍ୟ କୌଣସି ବିକଳ୍ପ ପ୍ରଲୋଭିତ କରିନଥିଲା। ସମସ୍ୟା ନ ଥିବାରୁ ସମାଧାନ ପ୍ରଶ୍ନ ହିଁ ନଥିଲା। କାମ କରିବା, ବଞ୍ଚିବା, କୁଟୁମ୍ବ ପୋଷିବା, ଦଶ ପ୍ରାଣୀର କଣ୍ଠା ମୁହଁକୁ ଅନ୍ନ ଯୋଗାଇବାର ଆହ୍ୱାନ ମୋ'ପାଇଁ ଯଥେଷ୍ଟଥିଲା। ତାକୁ କଷ୍ଟେ ମଷ୍ଟେ ସମ୍ଭାଳି ନବାର ଦମ୍ଭ ମୋ' ପାଖରେ ଥିଲା। ଯୋଗ୍ୟତା ଥିଲା କି ନଥିଲା କହି ହେବନାହିଁ। ଚାକିରି କରିବା ବେଳକୁ ମୁଁ ବାହା ହୋଇ ସାରିଥିଲି। ବାହା ହେବାର ଦୁଇ ବରଷ ପୂରି ଆସିଥିଲା। ପିଲାପିଲି ହୋଇ ନଥାନ୍ତି। ବାହା ହେବାର ଛଅ ବରଷ ପରେ ପହେଲା ପୁଅ ହେଲା।

ବାଳିକା ବଧୂ ପରି ଭାରୀଯା । ତାକୁ ଛାଡ଼ି ଏକାକୀ ରହିବାର କୌଣସି ବିପ୍ରଳମ୍ଭର ବାଧା ନଥିଲା । ବାପା, ମାଆ, ମାମୁଁ, ମାଇଁ, ଶାଶୁ, ବୁଢ଼ୀ ଆଇ ଏମାନେ ସବୁ ମୋ' ଘରକୁ ଘେରି ରହିଥିଲେ । ଏଣୁ ନାୟିକା ପାଖକୁ ଖବର ଦବାକୁ କାଳିଦାସୀ ମେଘର ଅଭାବ ନଥିଲା । ସିଏଲ ଯୋରରେ ସକାଳ ସ୍ନାହାନ କରୁଥିବା ନାୟିକାକୁ ଚିହ୍ନାଇବାକୁ ମୋର କାହାକୁ କହିବାକୁ ପଡ଼ିନଥିଲା । "ତନ୍ୱୀ ଶ୍ୟାମା ଶିଖରୀ ଦଶନା, ପକ୍ୱ ବିମ୍ବାଧରୋଷ୍ଠୀ, ମଧ୍ୟେକ୍ଷମା ଚକିତ ହରିଣୀ ପ୍ରେକ୍ଷଣା ମୃଗନାଭିଃ ।"

ଆମ ସମ୍ବଲପୁର ଜିଲ୍ଲାର ମଙ୍ଗଲୁମାନେ ଖୁବ୍ ମସ୍‌ହୁର ଥିଲେ । ରେମଣ୍ଡାର ମଙ୍ଗଲୁ ପଧାନ, ମଙ୍ଗଳପୁରର ମଙ୍ଗଲୁ ହୋତା, ଜି.ଏମ୍ କଲେଜର ମଙ୍ଗଲୁ ଚ଼ପରାଶି ଏମିତି ଆଉ ଅନେକ ମଙ୍ଗଲୁ ଆପଣା ସ୍ଥିତିରେ, ଆପଣା ମେହଫିଲ୍‌ରେ, ଦପ୍ତରରେ, ଦରବାରରେ ବେଶ ଜଣାଶୁଣା ଥିଲେ । ପରବର୍ତ୍ତୀ କାଳରେ ଏ ଅଧମ ସାରା ଜୀବନ ପାଇଁ ବନିଗଲା 'ମଙ୍ଗଲୁ ମାଷ୍ଟର' ।



## ୪୪. ନଉକରର ଉକର ନାହିଁ

ଶ୍ରୀପୁରାରେ ପ୍ରାଥମିକ ଶିକ୍ଷକ ତାଲିମ କେନ୍ଦ୍ରଟିଏ (ଇ.ଟି ସ୍କୁଲ) ସ୍ଥାପନ କରିବାକୁ ଶିକ୍ଷା ବିଭାଗ ଠିକ୍‌କଲେ । ଏ ସଂକ୍ରାନ୍ତରେ ଅନୁସନ୍ଧାନର ରିପୋର୍ଟ ଦବାକୁ ଡ଼ି.ଆଇ. ମାନେ, ଉପର ହାକିମମାନେ ଧାଇଁଲେ । ଶ୍ରୀପୁରା ଗାଆଁଟି ଭେଡ଼େନ୍ ନଈ କୂଳରେ । ଲପଙ୍ଗା ରେଲ ଷ୍ଟେସନରୁ ପ୍ରାୟ ଚାରି କିଲୋମିଟର ଓ ବେନାମ ବ୍ରିଜଠାରୁ ତିନିକିଲୋମିଟର ଭିତରକୁ । ରେଲ ରାସ୍ତାକୁପାରି ହେବାକୁ ବାଟ ନଥିଲା । ଏବେ ହେଲାଣି । ମୁ ସେଇଠି ଥିବା ବେଳୁ ରେଲ ବିଭାଗକୁ ଲେଖାପଢ଼ା ଆରମ୍ଭ ହୋଇଥିଲା । ସେତେବେଳେ ସି.ଆଇ., ଡ଼.ଆଇ, ମାନେ ଚାଲି ଚାଲି ଆସୁଥିଲେ । ସେମାନଙ୍କୁ ଜିପ୍ ଗାଡ଼ୀ ମିଳିନଥିଲା ।

ଇ.ଟି ସ୍କୁଲଟି ଆରମ୍ଭ ହେଲା । ଘର ନାହିଁ । କିଛି ବୋଇଲେ କିଛିନାହିଁ । ଖାଲି ଶିକ୍ଷକ ଓ ଛାତ୍ର । ଏଣୁ ସବୁ ବୋଝ ମାଇନର ସ୍କୁଲର ଉପରେ । ଅସୁବିଧା ଦେଖାଇ ଶିକ୍ଷକମାନେ ସେଠି ରହୁନଥିଲେ । ପ୍ରଧାନ ଶିକ୍ଷକ ଭାବରେ କବି ସତ୍ୟନାରାୟଣ ବହିଦାର, ବଳରାମ ନନ୍ଦ, ରସାନନ୍ଦ ପଟ୍ଟନାୟକ, ଦାଶରଥୀ ମିଶ୍ର ଆସିଥିଲେ । ଦାଶରଥୀ ମିଶ୍ର ସେଇଠି ବେଶୀ ଦିନ ରହିଥିଲେ । ଲୋକଙ୍କ ସହ ମିଶି ପାରୁଥିଲେ । ସରକାରୀ ପ୍ରଧାନ ଶିକ୍ଷକ ବୋଲି ଛାତି ଫୁଲେଇ ନଥିଲେ । ପରିସ୍ଥିତି ସହ ଖାପ ଖୁଆଇ ପାରିଥିଲେ ।

ଜାଣେନା କାହିଁକି ସରକାରୀ ଚାକିରିଆ ମାନେ ଭୁଲି ଯାନ୍ତିଯେ ସେମାନେ ପବ୍ଲିକ ସରଭେଣ୍ଟ । ଜଣଗଣଙ୍କ ସେବାକାରୀ । ଚାକିରୀ ଖଣ୍ଡେ ପାଇବା ପରେ ସବୁ ସରକାରୀ ଲୋକେ ସାମନ୍ତ ହୋଇଯାନ୍ତି । ସେବା କରିବେ କଣ, ସେବା ଲୋଡ଼ନ୍ତି । ଦରବାରକୁ ରଜା

ବିଜେ କଲାପରି ଦରବାରୀ ଆଦବ କାଇଦା ଲୋଡ଼ନ୍ତି । ବୋଧହୁଏ ଏଇ ଗୋଟିକ କାରଣ ଯୋଗୁଁ ମୁଖ୍ୟତଃ ଆମ ଦେଶରେ ଦୁର୍ଯୋଗ ଲାଗି ରହିଛି । ସେବକ ସାମନ୍ତ ହେବାର ଦୁରାଚାରୀ ମନୋଭାବ ଏ ଦେଶର ନିରୀହ ଓ ସଦା ସହି ପାରୁଥିବା ଭାରତୀୟ ମହାଜାତିକୁ ହନ୍ତସନ୍ତ କରିଛି ।

ଇ.ଟି ସ୍କୁଲ ଦେଖିବା ପାଇଁ ଡି.ପି.ଆଇ., ସି.ଆଇ., ଡ଼ି.ଆଇ ମାନେ ବରାବର ଆସିଲେ । ସେତେବେଳେ କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ସୁନ୍ଦରଗଡ଼ – ଏଇ ଚାରି ଜିଲ୍ଲାକୁ ନେଇ ଗୋଟିଏ ଶିକ୍ଷା ସର୍କଲ । ଥରେ କବି ବୈକୁଣ୍ଠନାଥ ପଟ୍ଟନାୟକ ଆସିଲେ । କବି ମିଜାଜର ଲୋକ । ଭଲ ଲୋକ । ନଈ କୂଳିଆ ପରିବେଶକୁ ଭଲ ପାଇଲେ । ଗୋଟିଏ ମାତ୍ର ଅସୁବିଧା ଶ୍ରୀପୁରାକୁ ବାହାର ଜଗତରୁ ରାସ୍ତା ନାଇଁ । ଯିବା ଆସିବାର ଘୋର ଅସୁବିଧା । କୌଣସି ମତେ ତାଙ୍କୁ ସମ୍ଭାଳି ନେଲି । ତାଙ୍କ ରିପୋର୍ଟରେ ବେଶୀ ମାତ୍ରାରେ 'ହଁ' ରହିଲା । ସାହେବ ମାନଙ୍କ ଭଲ ମନ୍ଦ ବୁଝିବାକୁ ମାଇନର ସ୍କୁଲ ଉପରେ ଚାପପଡୁଥିଲା । ମାଇନର ସ୍କୁଲର ଛାତ୍ରବାସଥିଲା । ମେସ୍ ଚାଲୁଥିଲା । ଛାତ୍ରାବାସରେ ଶହେ ପାଖାପାଖି ପିଲା । ଶିବ ନାରାୟଣ ପାଣିଗ୍ରାହୀ ମାଇନର ସ୍କୁଲର ଚପରାଶି । ମେସ୍‌ର ରୋଷେଇ ବି କରୁଥିଲେ । ଭଲ ପାଚ଼କ । ସେବାକାରୀ ବି । ତାଙ୍କଯୋଗୁଁ ସାହେବ ମାନେ ଦିଲ୍‌ଖୁସ ହୋଇ ପାରୁଥିଲେ । ନିତିଆ ଗଉଡ଼ ପିଲାଟିଏ । ନନ୍ଦୀ ଭୃଙ୍ଗୁଟି ପରି ଶିବ ସହ ଧରିଆଣ ବୋଇଲେ ବାନ୍ଧି ଆଣିବା ଲୋକ । ଶିବ ପାଣିଗ୍ରାହୀ ଓ ନିତିଆ ଗଉଡ଼ ସାହେବ ମାନଙ୍କୁ ସମ୍ଭାଳୁଥିଲେ । ଶିବ ଶାନ୍ତ ଧୀର କର୍ମ ତତ୍ପର ବ୍ୟକ୍ତି ଜଣେ । ଠିକ୍ ସମୟରେ ସବୁ କାମ କରି ଥୋଇ ଦବାରେ ବାଘନଥା । ଗାଁ ଲୋକେ ଅନୁଷ୍ଠାନ ପାଇଁ ଜୀବନ ଦେଇ ଦଉଥିଲେ । ଯାହାକୁ ଯାହା କହିବ, ନାହିଁ କରିବାର ପଦ ନାଇଁ ।

ଏ ଯୁଗରେ ଗାଁ ବାଲାଙ୍କ ଏପରି ସହଯୋଗ ମୁଁ ଆଉ କଉଠି ଦେଖିନାହିଁ । ସରକାରଙ୍କ ବିନା ସହାୟତାରେ ଲୋକେ ଘର କଲେ । ଛାତ୍ରାବାସ କଲେ । ଶିକ୍ଷକଙ୍କ ଡ଼େରାଘର କଲେ । ମେସ୍‌ଘର ତିଆରି କଲେ । ଆସବାବ ପତ୍ର ଯୋଗାଇଲେ । ନିଜ ହାତରୁ ଦରମାଦେଇ ଅନୁଷ୍ଠାନ ଗଢ଼ିଲେ । ସେତେବେଳେ ଓଡ଼ିଶାରେ ବିଜୁ, ବିରେନ୍ ଓ ବିଜୟ ପାଣିଙ୍କ ଶାସନ । ଏ ତିନି ରଜାଙ୍କ ରାଜୁତିରେ ରାମରାମ ଡାକୁଥିଲା ଦେଶ । ସବୁ ଯୁଗରେ ଦିଅଁଙ୍କ ଠାରୁ ଦିଅଁଙ୍କ ପାଖଲୋକଙ୍କ ଦୌରାତ୍ମ୍ୟ ବେଶୀ । ଏ ତିନିନେତାଏ ଭଲ ଥିଲେବି ତାଙ୍କ ଅନୁଚ଼ରମାନେ ପ୍ରବଳଥିଲେ ବୋଲି ଲୋକ କହନ୍ତି । ବିଜୟ ପାଣିଙ୍କ କେହି ପାଖଲୋକ ଶ୍ରୀପୁରା ଇ.ଟି. ସ୍କୁଲର ଠିକା ପାଇଲେ । ଶ୍ରୀପୁରାକୁ ତ ବାଟ ନାହିଁ । ଘର ତିଆରି ସାମାନ ଇଟା, ବାଲି, ସିମେଣ୍ଟ ନବାକୁ ନାନା ଅସୁବିଧା । ଗୁଡ଼ାଏ ଖର୍ଚ୍ଚବି ହେବ । ଏଣୁ ସେ ମହାଶୟ "ମୂଳୁ ମାଇଲେ ଯିବ ସରି" ନ୍ୟାୟରେ ଅନୁଷ୍ଠାନଟିକୁ ଉଠାଇ ନେଲେତ କାମ ଫତେ । ଏଣୁ ସେ ଲାଗି ପଡ଼ିଲେ । ସତକୁ ସତ ଶ୍ରୀପୁରାରୁ ପଞ୍ଚପଡ଼ାକୁ ଅନୁଷ୍ଠାନଟି ଉଠିଗଲା । ଇ.ଟି. ସ୍କୁଲ

ସବୁ ସି.ଟି. ସ୍କୁଲ ହେଲା । ଏବେବି ଶ୍ରୀପୁରା ଇ.ଟି.ସ୍କୁଲ, ପଞ୍ଚପଡ଼ା ବୋଲି ରବର ଷ୍ଟାମ୍ପମାନ ଅଛି ଓ ବହିରେ ମରା ହୋଇଛି ।

ଶ୍ରୀପୁରା ଇ.ଟି. ସ୍କୁଲ ଉଠାଇନେବାରେ ଲୋକେ ଅସନ୍ତୋଷ ପ୍ରକାଶ କଲେ । ବିରୋଧ କଲେ । ସେ ବିରୋଧରେ ମୁଁ ମଧ ସାମିଲ ହେଲି । ବହୁ ଅଫିସର ବିଭିନ୍ନ ସମୟରେ ଏ ଗାଁକୁ ଆସି ଜାଗାଟିକୁ ଉପଯୁକ୍ତ ସ୍ଥାନ ବୋଲି ସୁପାରିଶ କରିବାପରେ ଜଣେ ଠିକାଦାରର ଲାଭଖୋର ମନୋବୃତ୍ତି ଗୋଟିଏ ସୁଚିନ୍ତିତ ସିଦ୍ଧାନ୍ତକୁ ଓଲଟପାଲଟ କରିଦେବ । ଏକଥାଟି କାହିଁକି ମୋ ଯୁବକ ମନରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପୂର୍ବ ସୁପାରିଶଟି ଅପରିଣାମ ଦର୍ଶୀ ଓ ତରବରିଆ ଭାବେ ହୋଇଥିଲା ବୋଲି ପ୍ରକାଶ ପାଇଲା । ପରବର୍ତ୍ତୀ ସାହେବମାନେ କିପରି ସୁପାରିଶ ନକରିବେ ସେଥିପାଇଁ ଯୋଜନାବଦ୍ଧ ଭାବେ ବ୍ୟବସ୍ଥା କରାଗଲା "ଯା'ର ପଇସା ତା'ର ଭରସା" ନ୍ୟାୟରେ ଶ୍ରୀପୁରାରୁ ପଞ୍ଚପଡ଼ାକୁ ଇ.ଟି.ସ୍କୁଲ ଉଠିଗଲା । ଏବେ ସେ ଗୋଟାକ ସି.ଟି. । ଯୋର୍ ଯା'ର ମୁଲକ ତାର, ପ୍ରମାଣିତ ହୋଇଗଲା ।

ଥରକର କଥା ଜଣେ ଅମଣିଆ ଡ଼ି.ଆଇ ସାହେବ ଅସିଲେ । ଦାଢ଼ିବାଲା । ଚମ୍ବଲର ଡ଼ାକୁ ଚେହେରା । ଖୁବ ଧଚ୍ଚାପୁରା ଲୋକ । ମସ୍ତ ମସ୍ତ ଦିଶୁଥାନ୍ତି । ସଦାବେଳେ ମୁହଁରେ ଚୁରୁଟ । ଟାଙ୍ଗିଆ ଛିଡ଼ା କଥାବାର୍ତ୍ତା ମୁହଁରେ । ବାଡ଼ବତା ନାଇଁ । ପ୍ରଥମରୁ କାହିଁକି କେଜାଣି ଗରଗର । ଦୁର୍ଭାଗ୍ୟକୁ ମୋତେ ହିଁ ତାଙ୍କୁ ସମ୍ଭାଳିବାକୁ ପଡ଼ିଥିଲା । କିଏ କଉଠି କେମିତି କହିଥିଲା ଯେ ମୋତେ ହିଁ ସେ ସକଳ ବିରୋଧର କେନ୍ଦ୍ରବିନ୍ଦୁ ବୋଲି ଧରି ନେଇଥିଲେ । ଏଣୁ ମୋ ଉପରେ ତୁଚ୍ଛାଟାରେ ବି ସଦା ଗରଗର ହେବାକୁ ଲାଗିଲେ । ଥରଦା ବଛାକୁ ମନେଇବା ଭଳି ସବୁ ବାଗ, ଅନୁରାଗ ଓ ଉପାୟମାନ କଲି । ହେଲେ ସେ ମହାଶୟଟି କଉ ଉପାଦାନରେ ଗଢ଼ା କେଜାଣି, ମୋର ସବୁ ଉପଚାର ଫସର ଫାଟିଗଲା । ସେ ମଣ ମାନିଲେ ନାହିଁ । ଥିଲି ଥିଲି ଏମିତି କରଲାପତ୍ରିଆ ଯାବ ମାଇଲି ଯେ ପୁଅ ଏକାବେଳକେ ଥଣ୍ଡା । ସୁଖର କଥା ସେ ଭଦ୍ରଲୋକ ବହୁବର୍ଷ ପରେ ମୋଠି କ୍ଷମା ମାଗିଲେ । ଶେଷକୁ ହନୁ ସତ କହିଲା! ଭୁବନେଶ୍ୱରର ଏକ ବିଶେଷ ଅନୁଷ୍ଠାନରେ ଆମେ ସତୀର୍ଥ ହୋଇ ରହିଲୁ କିଛିଦିନ ।

ମୂଳ କଥାଟି ହେଲା । ସୁଚିନ୍ତିତ, ସୁପରିକଳ୍ପିତ, ବହୁ ବିଜ୍ଞ ବୁଦ୍ଧିଦ୍ୱାରା ସମର୍ଥିତ ସିଦ୍ଧାନ୍ତକୁ ବଦଳେଇ ଦବା କମ୍ କଥା ନୁହେଁ । ସାମାନ୍ୟ ବ୍ୟକ୍ତିଗତ ସ୍ୱାର୍ଥର ପାଇଁ ଆମେ ସମୂହକୁ ବେଖାତିର କରିବା ଏକ ସାମାଜିକ ଅପରାଧ । ଆଜି ଜନଗଣର ବୃହତ୍ତର ସ୍ୱାର୍ଥକୁ ଅପରିଣାମ ଦର୍ଶିତାରେ ନଷ୍ଟ କରୁଥିବାରୁ ଦେଶ ବହୁ ସମସ୍ୟାରେ ଜର୍ଜରିତ ।

ମୋର ଗୋଟିଏ ଯୁକ୍ତିଥିଲା ବୈକୁଣ୍ଠନାଥ ପଟ୍ଟନାୟକ, ରାମକୃଷ୍ଣ ମିଶ୍ର, ଶେଖ ଅବଦୁଲ୍ ଓ୍ୱାହିଦ ଭଳି ବିଚକ୍ଷଣ ଓ ବିବେକବନ୍ତ ପରିଦର୍ଶକ ମାନେ ଶ୍ରୀପୁରାକୁ ବାଛିଥିଲେ । ଉତ୍ତମ ପରିବେଶର ଜାଗାବୋଲି । ଗମନାଗମନର ଅସୁବିଧା ଦେଖାଇ ପୂର୍ବ ସିଦ୍ଧାନ୍ତକୁ

ପରିବର୍ତ୍ତନ କରାଗଲା। ଜାଗାନଥିବା ସହରରେ ସବୁ ଅନୁଷ୍ଠାନ ଠୁଳକରି ସହରକୁ ଆହୁରି କ୍ରୁର, ଦୁର୍ବହ ଓ ଦୁରାଚାର କରିବାଠାରୁ ମଫସଲକୁ କ୍ରମେ କ୍ରମେ ସୁବିଧାସବୁ ଉଠାଇନବା ଭଲ ନୁହେଁକି? ଏଇ ଗୋଟିଏ ଯୁକ୍ତିକୁ ନେଇ ମୁଁ ପ୍ରବଳ ବିରୋଧ କରିଥିଲି। ସେଇ ବୁଟ୍ସୁଟ ଚର୍ଚ୍ଚିତ ଭଦ୍ରଲୋକଟି ମତେ କହିଲେ, "ଦେଖନ୍ତୁ ମହାଶୟ, ଆପଣ ସାମାନ୍ୟତମ ନଉକର। ବଡ଼ି ବଡ଼ି କଥା କହନ୍ତୁ ନାହିଁ। **You should know your limitations.**"। ବାରୁଦରେ ନିଆଁ ଲାଗିବାପରି ମୁଁ ଫାଟି ପଡ଼ିଲି। ମୋତେ ସମ୍ଭାଳେ କିଏ? ନିଜକୁ ଶହେକୁ ଶହେ ଶିକ୍ଷକ ଭାବି ଶିକ୍ଷା ସେବାରେ ନିଜକୁ ଉତ୍ସର୍ଗ କରିଥିବା ଜଣେ ଯୁବକକୁ ନଉକର କହିବାରେ ମୋତେ ବାଧୁ ନବାଧୁ ମୋ ଭିତରେ ଥିବା ଗୋଟିଏ ମହାନ ଶିକ୍ଷକ ଜାତିର, ବୁନିଆଦି ଭିତ୍ତି ଭୂମିକୁ ଆଘାତ କଲାପରି ଲାଗିଲା। ତାଙ୍କ ପାଇଁ ମୋର ଏକମାତ୍ର ବାକ୍ୟଥିଲା, " ଆପଣଙ୍କ ଭଳି ଉଦ୍ଧତ ଦୁର୍ବୃତ୍ତ ମାନେହିଁ ଏ ଦେଶର ସବୁଠାରୁ ବଡ଼ ବିପଦ।" ସେ ଆଶାକରି ନଥିଲେ ମୋ'ପରି ଜଣେସାମାନ୍ୟତମ ନଉକର ଠାରୁ ଏପ୍ରକାର ଆସ୍ପର୍ଦ୍ଧା!

ସେତିକିରେ କଥା ସରିଥିଲେ କିଛି କହିବାର ନଥିଲା। ଏବେ ସେ ମହାଶୟଙ୍କ ଭଳି ଅଗଣିତ ଦୁର୍ବୃତ୍ତ ଏ ଶିକ୍ଷା ବିଭାଗକୁ ଧସେଇ ପଶି ଆସିଛନ୍ତି! ଶିକ୍ଷା ଯେ ଉତ୍ସବ ହେଲାଣି!!

ଶିକ୍ଷକ ଆଉ ଶିକ୍ଷକ ହୋଇ ରହିନାହିଁ। ସେ ଆଜି ଅନ୍ୟ ମାନଙ୍କଭଳି ନଉକର କର୍ମଚାରୀ। କଠଉ ଓ ଯୋତା ପାଦରେ ପିନ୍ଧାଯାଏ। ହେଲେ କଠଉର ଆସନ ଯୋତା ପାଇବକି? ବିଡ଼ମ୍ବନା! ଶିକ୍ଷକ ଆଜି କଠଉରୁ ଯୋତା ପାଲଟି ଯାଇଛି। ଶିକ୍ଷକତା ଆଜି ଚାକିରି। ନଉକରର ଉକର ରହିବତ?



## ୪୫. ଶେଖ୍ ଅବଦୁଲ୍ ୱାହିଦ

ଦଶହରା ମାସ। ପିତୃପକ୍ଷ। ଘରେ ଘରେ ପିତୃଶ୍ରାଦ୍ଧ। ସେଇ ପନ୍ଦର ଦିନ କେତେ ଭୋଜି ଖାଇବୁ ଖା। ବ୍ରାହ୍ମଣ ଭର୍ତ୍ତିଗାଁ। ନୂଆଁ କରି ଅନୁଷ୍ଠାନ ଗଢ଼ିଥାନ୍ତି। ଏଣୁ ଅନୁଷ୍ଠାନ ଉପରେ ସଭିଙ୍କର ନିଘା। ଯିଏ ପାରିଲା, ସ୍କୁଲ ପିଲାଙ୍କୁ ବି ଖାଇବାକୁ ନିଉତା ଦିଅନ୍ତି। ପିଲାଏ ଯାଇଥିଲେ ଭୋଜି ଖାଇବାକୁ। ମୁଁ ରଚ଼ନା ଖାତା ସୁଝୁଥାଏ। ଗୋଟାଏ ବଖରା ଘର। ସେଇଠି କ୍ଲାସ, ସେଇଠି ଅଫିସ।

କାନ୍ଧରେ ବେଡ଼ିଂ ବୋହି ଜଣେ ମଧ୍ୟ ବୟସ୍କ ଲୋକ ଆସିଲେ। ହେଡ଼ମାଷ୍ଟର କାହାନ୍ତି ପଚାରି ପଚାରି ମୋ' ଆଗରେ ଉଭା। ମୁଁ ଅଡମଡ ହେଲି। ସେ ନିଜ ଆଡୁ କହିଲେ, "ମୁଁ ଡ଼ି.ଆଇ"। ସେତେବେଳେ ଡ଼ି.ଆଇ. ମାନେ ଖୁବ୍ ବଡ଼ ସାହେବ। ତାଙ୍କ କାନ୍ଧରୁ ବେଡ଼ିଂଟା ଭିଡ଼ି ନେଇ ସାରିଥିଲି ଆଗରୁ। ସେ ଯେ ବି ହୁଅନ୍ତୁ ମଣିଷତ। ହେଡ଼ମାଷ୍ଟର ବୋଲି ନିଜର ପରିଚ଼ୟ ଦେଲି। "ଖବର ଦେଲେ ନାହିଁ? ଆମେ କେହି

ହେଲେ ଜଣେ ଧାଇଁ ଯାଇଥାନ୍ତୁ । ମୁ ବ୍ୟସ୍ତ ହୋଇ ପଡ଼ିଲି । ମାଠିଆରୁ ଗିଲାସେ ପାଣିଦେଲି ପିଅନ୍ତୁ, ଭଲଲାଗିବ । ସେ ନରେଖି ଦେଖିଲେ ମୋର ଖାତା ସୁଝା । ମୁ ତାଙ୍କ ବିକଳ ଅବସ୍ଥା ଠଉରାଇଲି । ଏକେତ ଦଶରାମାସ ସାହେବ ଲୋକ । ହାଲୁକା ହେଲେବି ବିସ୍ତର ବୋହି ଆଣିଛନ୍ତି । ତିନି କିଲୋମିଟର ରାସ୍ତା ଚାଲି ଚାଲି ଆସିଛନ୍ତି । ମୋତେ ଦୟା କରନ୍ତୁ କି ନ କରନ୍ତୁ । ତାଙ୍କ ପ୍ରତି ମୋର ଦୟା ଜାତ ହେଲା । ଚ଼ଉକିରେ ବସିଲେ । ଅଥା ମାରିଲେ । ସେତେବେଳକୁ ପିଲାଏ ଭୋଜି ଖାଇସାରି ଫେରିଥାନ୍ତି । ଡ଼.ଆଇ. ସାହେବ ଆସିଛନ୍ତି । ଖବର ପଠେଇଲି । ଗାଁ ସାରା ରାଷ୍ଟ୍ର ହୋଇଗଲା । ଏକା ସାଥିରେ ସଭିଏଁ ଯିବା ଠିକ୍ ହେବନାଇଁ । ଏଣୁ ପିଲାଏ ଓ ବାକି ଶିକ୍ଷକ ପହିଲେ ଗଲେ । ସେମାନେ ଫେରିଲେ ମୁଁ ଯିବାକଥା । ସଭିଏଁ ଯିବା ଠିକ୍ ହୋଇ ନଥାନ୍ତା – ଡ଼ି.ଆଇ. ସାହେବ ଅନୁମାନ କଲେ । ଭୋଜିଦାତା ଆମ ଦିହିଙ୍କୁ ଡାକିବାକୁ ହାଜର । ଯଜମାନ ଖାଇବା ପଠେଇ ଦବାକୁ କହିଲେ । "ହେଡ଼ମାଷ୍ଟର ବାବୁ ଖାଇଲେଣିକି?" ସାହେବ ପଚାରିଲେ । ମୁଁ ନାହିଁ କଲାରୁ ଡ଼ି.ଆଇ କହିଲେ କାହିଁକି ଆଣିବେ? ଆମେ ଯାଇ ଖାଇ ଆସିବୁ । ଆମ ଶ୍ରାଦ୍ଧ ଭୋଜି ଖାଇବାର କିଛି ଅସୁବିଧା ନାହିଁତ? ପଚାରିଦେଲି । ସେ ହସିଦେଇ କହିଲେ ଆହାର ଦବା ଆଉ ନେବାରେ ସବୁ ଧର୍ମର ମତ ଏକ । ଦିହେଁ ଭୋଜି ଖାଇଲୁ । ସେ ଖୁସି ହେଲେ ।

ପିଲାଙ୍କୁ ଛୁଟି ଦେବାକୁ କହିଲେ । ଶିବ ଘଣ୍ଟା ବାଡ଼େଇଲା । ପିଲାଏ ଛୁ । ଡ଼ି.ଆଇ. ଦେଲେ ଛୁଟିରେ ଗାଁ କମ୍ପିଲା । ସନ୍ଧ୍ୟା ପର୍ଯ୍ୟନ୍ତ ସେ ମୋତେ ପାଖରେ ବସେଇ ଖାତାପତ୍ର ଦେଖିଲେ । ପରାମର୍ଶ ଦେଲେ । ଭୁଲ ସୁଧାରିଲେ । ନୂଆ ଲୋକମୁଁ । ଅନୁମାନେ ଗାଇ ଗୋବର ହଗେ ନ୍ୟାୟରେ ସବୁକାମ ନିଜ ମନରୁ କରୁଥାଏ । ଆଗ୍ରହଟି ଭିତରୁ ଫୁଟିଥିବାରୁ ସବୁକାମ ଠିକ୍‌ଠାକ୍ ହୋଇଥିଲା । ଡ଼ି.ଆଇ ସାହେବ ମୋତେ ଅନ୍ତରଙ୍ଗ ଭାବେ ସବୁ ବତେଇଲେ ।

ପ୍ରଥମରୁ ମୋର ଗୋଟିଏ ଧାରଣା । ଜଣେ ପଢ଼ିବ ଆଉ ଜଣେ ପଢ଼େଇବ । ଆମ ଶିକ୍ଷା ବ୍ୟବସ୍ଥାର କେନ୍ଦ୍ରବିନ୍ଦୁ ଏ ଦୁହେଁ । ଯାହା କରାଯିବ ଏ ଦୁହିଁଙ୍କ ପାଇଁ । ମାତ୍ର ଆମ ଶିକ୍ଷାର ଏକମାତ୍ର ବିଡ଼ମ୍ବନା ଆମେ ଯାହାସବୁ କରୁଛୁ, ଏ ଦୁହିଙ୍କୁ ଛାଡ଼ି । ମଝି ଲୋକଙ୍କର ରୁଚି ଓ ବଡ଼ପଣକୁ ମାନ୍ୟତା ଦେଇ ଦେଇ ଆମ ଶିକ୍ଷା ବ୍ୟବସ୍ଥା ଘୋର ବିପର୍ଯ୍ୟୟର ସମ୍ମୁଖୀନ ।

ପିଲାଙ୍କୁ ପାଠ୍ୟ ପରଷିବାରେ ନିଷ୍ଠାହିଁ ଏକମାତ୍ର ଆବଶ୍ୟକତା । ଯାହାବି ହେଉ ପଢ଼େଇବା, ଭଲଭାବରେ ପଢ଼େଇବା । ତା'ପରେ ପିଲାଏ କେମିତି ବୁଝିବେ, ଦେଖିବା । ପାଠରେ ପିଲାଙ୍କ ରୁଚି ବଢ଼େଇବା । ପାଠରେ ବୁଡ଼େଇବା ନାହିଁ । ରାମକୃଷ୍ଣ ପରମହଂସ ଚମତ୍କାର କଥାଟିଏ କହନ୍ତି । ସରବତ୍ ଗିଲାସରେ ମାଛି ବସେ । ମିଠାକୁ ଉପରୁ ଚାଖେ । ସରବତ ଭିତରେ ବୁଡ଼େନାଇଁ । ବୁଡ଼ିଲେ ମରିଯିବ । ଠିକ୍ ସେମିତି ଆମ ପିଲାଏ ପାଠ୍ୟରୁ

ମିଠାତକ ଶୋଷିବେ। ପାଠ୍ୟରେ ବୁଡ଼ିବେ ନାହିଁ। ପିଲାଏ ପାଠରୁ ବାଟ ଫିଟାଇବେ ନିଜେ ନିଜେ। ନିଜର ମାଷ୍ଟର ନିଜେ ହେବେ। ଆମର କାମ ତାଙ୍କ ଭିତରେ ପାଠପ୍ରତି ଆଗ୍ରହ ସୃଷ୍ଟି କରିବା।

ମୋର ଏ ବିଚାରକୁ ଡ଼ି.ଆଇ ସାହେବଙ୍କ ପରିଣତ ଓ ପୋଖତ ମନକୁ ପାଇଲା। ସେ ମୋ' ସହ ଶହେକୁ ଶହେ ସହମତ ହେଲେ। ମୋ'ପ୍ରତି ତାଙ୍କ ହୃଦୟରେ ଏକ କଅଁଳ ବିନ୍ଦୁ ଜାଗାକରିବା ଆରମ୍ଭ କରିଦେଇଥିଲା। ତା'ପରଦିନ ସେ ଜଣ ଜଣ କରି ପ୍ରତି ପିଲାଙ୍କୁ ପାଠ ପଚାରିଲେ। ପିଲାଏ ଯଥାସମ୍ଭବ ଉତ୍ତର ଦେଲେ। ପ୍ରତି ଖାତା ଦେଖିଲେ। କା'ର ବହି ଅଛି କି ନଅଛି, ବୁଝିଲେ। ଏଗାରଟାରୁ ସାଢ଼େ ଚାରିଟାଯାଏଁ ପିଲାଙ୍କ ପିଛାରେ ଲାଗିଲେ। ପିଲାଙ୍କ ରିସେସ୍‌ରେ ଖାଇବା କାମଟି ସାରିଲେ। ତାଙ୍କ ତନଖିରେ ପରାମର୍ଶର ମାତ୍ରା ବେଶୀ। କାମରେ ଖୁଣ କାଢ଼ିବା ସେ ଜାଣିନଥିଲେ। ମହୁମାଛି ପରି ମହୁହିଁ ଖୋଜୁଥିଲେ। ମାଛି ପରି ମଇଲା ଖୋଜୁନଥିଲେ।

ସଞ୍ଜକୁ ଗାଁ ଲୋକଙ୍କୁ ଡ଼ାକିଲେ। ସ୍କୁଲର ଭଲମନ୍ଦ, ଅଭାବ ଅସୁବିଧା, ଆୟବ୍ୟୟ ସବୁ ବୁଝିଲେ। ସେ କହନ୍ତି ଖଟର ଚାରିଟି ଖୁରା ପରି ଅନୁଷ୍ଠାନର ଚାରିଟି ଖୁରା। ପ୍ରଥମ ଖୁରାଟି ଛାତ୍ର। ଦ୍ୱିତିଅ ଖୁରାଟି ଶିକ୍ଷକ। ତୃତୀୟଟି ପିଲାର ମାଆବାପ ବା ଅଭିଭାବକ। ଚତୁର୍ଥଟି ସରକାର ବା ପରିଚାଳନା କମିଟି। ଏଇ ଚାରିରୁ ପ୍ରଥମ ଦୁଇ ଶିକ୍ଷାର ମୂଳ। ଜଣେ ନେବେ ଆଉ ଜଣେ ଦେବେ। ଗିଭ୍ ଓ ଟେକ୍ ର ଖେଳ। ବାକି ଦୁଇ ଖୁରାର କାମ ସହଯୋଗ। ଏ ଚାରିହେଁ ଠିକ୍ ରହିଲେ ସବୁ ଠିକ୍। ଶିକ୍ଷା ଖଟଟି ଛେଛିରି ହବାର ଦୁର୍ଯୋଗ ନଥାଏ। ଗାଁଲୋକେ ସବୁ ଚଳଉଥାନ୍ତି। ସରକାର ଅନୁଦାନ ଦେଇ ନଥାଏ। ଲୋକଙ୍କର ଚାନ୍ଦା, ଦାନ ଓ ସହଯୋଗରେ ଘର, ଖେଳପଡ଼ିଆ, ଆସବାବପତ୍ର, ଦରମା ସବୁ ଚଳୁଥାଏ। ଆଖପାଖ ଗାଁ ଲୋକେବି ମଦଦ୍ ଦେଉଥାନ୍ତି। ଲପଙ୍ଗା, ଠେଲକୋଲି, ଖଡ଼ିଆପାଲି, ତରେକେଲା, କୁମ୍ଭାରୀ, ହିରମା, କନ୍ଦାଗାଡ଼, ଶ୍ରୀପୁରା, ଗୁମକାରମା, ଡେରବା, ବୁଦଲା, ଘିଚାମୁରା, ଭୁର୍କାମୁଣ୍ଡା, କାତିତେଲା ଗାଁମାନେ ଡ଼ାକିଦେଲେ 'ଓ' କରୁଥିଲେ। ଦଶ କା ଲକଡ଼ି ଏକ ଅଦ୍‌ମିକା ବୋଝ। ଦଶ ଜଣକୁ ଖଣ୍ଡେ ଖଣ୍ଡେ ହେବା ବେଳକୁ ଜଣକ ପାଇଁ ବୋଝ। ସଭିଙ୍କର ସହଯୋଗରେ ଅନୁଷ୍ଠାନଟି ସଳଖି ଉଠିଲା। ବହୁ ଦୂରରୁ ପିଲା ଆସିଲେ। ଦି'ପ୍ରକାର ପିଲା। ଭଲ ପଢୁଥିବା ପିଲା ଓ ଦୁଷ୍ଟ ପିଲା। ଆସିଲା ପରେ ସଭିଏଁ ଗୋଟିଏ ଗୋଠରେ ମିଶିଲେ ଭଲ ନହେବେ କାହିଁକି?

ଡେରବା ଗାଁର ଭୋଳାନଥ ବେହେରା ଥିଲେ ଜଣେ ଶିକ୍ଷକ। ତାଙ୍କ ଚାରି ପୁଅରୁ ଜଣେ ପ୍ରଶାସକ, ଜଣେ ଇଂଜିନିଅର, ଜଣେ ଡ଼ାକ୍ତର ଓ ଆଉଜଣେ ଓକିଲ ତାଙ୍କ ଏକମାତ୍ର ଜୁଆଇଁ ଲପଙ୍ଗାର ଧନୁର୍ଯ୍ୟ ବେହେରା। ଭୋଳାନାଥ ବେହେରାଙ୍କୁ ଆମେ ଦଳେ ଲୋକ ଭେଟିଲୁ। ସାଙ୍ଗରେ ଥିଲେ ଚକ୍ରଧର ଦୀକ୍ଷିତ, ହରିଶଙ୍କର ପାଢ଼ୀ, ପୃଥ୍ୱୀପାଲ ତ୍ରିପାଠୀ,

ମାନଗୋବିନ୍ଦ ପଣ୍ଡା । ରାଧେଶ୍ୟାମ ତ୍ରିପାଠୀ, ଧୋବା ନାୟକ, ପୂର୍ଣ୍ଣଚନ୍ଦ୍ର ଧର ଏମିତି ଆଉ ଅନେକ । ଭୋଲା ବେହେରା ତାଙ୍କ ଢ଼େରବା ଗାଁରେ ରହୁଥାନ୍ତି । ଅର୍ଦ୍ଦାରେ ବି ତାଙ୍କ ଜମି ଜାଗା ଅଛି । ଢ଼େର ଜମିବାଡ଼ି । ସଂଭ୍ରାନ୍ତ ଲୋକ । ଶାନ୍ତ ଓ ଅମାୟିକ । ଆମ ଗୁହାରି ଜଣେଇଲୁ । ଅଶୀ ପାଖାପାଖି ବୟସ । ଦଣ୍ଡେ ଚିନ୍ତିଲେ । ଶ୍ରୀପୁରା ବାସୀଙ୍କ ଆର୍ଥିକ ଅବସ୍ଥା ଭୋଲାବାବୁ ଜାଣନ୍ତି । ସକାଳେ ଖଟି ସଞ୍ଜକୁ ଚଳିଯାଉଥିବା ଗାଁ । ଧନ ନଥିଲେ ବି ମନଟି ଟାଣ । ପଚାରିଦେଲେ ଭୋଲା ବେହେରା "କଣ ଚାହଁ?" ଆମେ ନୀରବ ରହିଲୁ । କଥାଟି ତାଙ୍କ ଦୟାରେ ଛାଡ଼ି ଦେଲୁ । କଣ ଭାବିଲେ କେଜାଣି ବୁଢ଼ା ପାଢ଼ୀକୁ ଡକେଇଲେ । ବୁଢ଼ାପାଢ଼ୀ ଶ୍ରୀପୁରା ଗାଁର ଲୋକ । ଭୋଲାନାଥ ବେହେରାଙ୍କ ପାଖରେ ଚାକିରି କରୁଥିଲେ । ବାବୁଙ୍କ ଜମିବାଡ଼ି, ବ୍ୟବସାୟ ସବୁ ବୁଝୁଥିଲେ । ବୁଢ଼ାପାଢ଼ୀଙ୍କୁ ନିର୍ଦ୍ଦେଶ ଦେଲେ, "ପାଢ଼ୀ, ତମେ ମାସକୁ ମାସ  ଶିକ୍ଷକ ମାନଙ୍କ ଦରମାତକ ମୋଠୁ ନବ । ଠିକ୍ ପହିଲା ଦିନ ଫି ମାସର ।" ଆମେ ଆଶାକରି ନଥିଲୁ ଏତେବଡ଼ ସାହାଯ୍ୟ । ସତକୁ ସତ ତାଙ୍କ କଥା ସେ ରଖିଲେ । ସରକାରୀ ସାହାଯ୍ୟ ପାଇବା ପର୍ଯ୍ୟନ୍ତ ପ୍ରତିମାସର ଠିକ୍ ପହିଲା ଦିନ ବୁଢ଼ାପାଢ଼ୀ ମୋ' ହାତରେ ଦରମା ତକ ଦେଇ ଆସନ୍ତି । ଏଥିରେ କଦାପି ଅନ୍ୟଥା ହୋଇ ନାହିଁ । ଲୋକେ ଆଚମ୍ବିତ ହେଲେ । ପଥର ଦେହରୁପାଣି ବାହାରିଲା କେମିତି? ଭୋଳା ବେହେରା କୁବେର ମହାତ୍ମା ଟିଏ । ଦେବାକୁ ହଁ କେଲେ ଜୀବନ ଦେଇଦେବେ ।

ଲୋକଙ୍କର ଏପ୍ରକାର ସହଯୋଗ ଦେଖି ଡ଼ି.ଆଇ ସାହେବ ଅତ୍ୟନ୍ତ ଖୁସି ହେଲେ । ସେ ଏଗାର ପୃଷ୍ଠିଆ ଭିଜିଟ ଟାଏ ଲେଖିଲେ । ତାଙ୍କ ସୁପାରିଶରେ ଅନୁଷ୍ଠାନଟି ମଞ୍ଜୁରି ଓ ସରକାରୀ ଅନୁଦାନ ପାଇଲା । ଶାସକୀୟ ପରାମର୍ଶଟି ଗଠନ ମୂଳକ ହେଲେ ଅନୁଷ୍ଠାନ ବଞ୍ଚେ ।

ସେ ଭଦ୍ରଲୋକଙ୍କ ନାଆଁଥିଲା ଶେଖ ଅବଦୁଲ ୱାହିଦ । ସେ କୁଆଡ଼େ ଯାଜପୁରର ଲୋକ । ସେ ଆଉ ନାହାନ୍ତି । ଇସ୍‌ଲାମ ଧରମର ଲୋକ । ତାଙ୍କ ଆଖିରେ ସବୁ ଧରମ ସମାନ । ତାଙ୍କ ଭଳି ଲୋକ ଶିକ୍ଷା ବିଭାଗରେ ପଶିଲେ ବିଭାଗଟି ବଞ୍ଚିଯାନ୍ତା । ମୋ ସ୍ମୃତିରେ ସେ ମହାତ୍ମାଙ୍କୁ ସାଇତି ମୁଁ ଗର୍ବ ଅନୁଭବ କରୁଛି ।



## ୪୬.  ନିଆଁକୁ ଚିହ୍ନେ ନିଆଁ

ସଞ୍ଜ ହୋଇ ସାରିଥାଏ । ତରାମାନେ ଫୁଟି ସାରିଥାନ୍ତି । ଆଦ୍ୟ ଶୀତ । ହେମନ୍ତ କାଳ । କାହିଁକି କେଜାଣି ମଫସଲକୁ ଆଗ ଅନ୍ଧାର ଆସେ । ରାମକୃଷ୍ଣ ମିଶ୍ର, ସମ୍ବଲପୁର ଡ଼ି.ଆଇ । ଆସିଥାନ୍ତି ଶ୍ରୀପୁରା ଇ.ଟି. ସ୍କୁଲ ପରିଦର୍ଶନରେ । ଦାଶରଥୀ ମିଶ୍ର ପ୍ରଧାନ ଶିକ୍ଷକ

ଇ.ଟି.ସ୍କୁଲର। ରାମକୃଷ୍ଣ ବାବୁଙ୍କ ଚର୍ଚ୍ଚାର ଦାୟିତ୍ୱ ଥାଏ ମୋ' ଉପରେ। ରାମକୃଷ୍ଣ ମିଶ୍ର ଭାରି  ଗମ୍ଭୀର ପ୍ରକୃତିର ଲୋକ। ଦଶପଦ ପଚାରିଲେ ପଦେ କହିବେ। ମାଇନର ସ୍କୁଲ ଅଫିସରେ ଶୋଇଥାନ୍ତି। ଇ.ଟି.ସ୍କୁଲର କଉ ଘର ଥିଲାଯେ! ଦଉଡ଼ିଆ ଖଟର ଆଗପାଖେ ପାନଡବାଟି ଥାଏ। ପାନ ତାଙ୍କ ଆହାର। ଦିନକୁ ଷାଠିଏ ଖିଲ ପାନ ଖାଉଥିବେ। ପାନ ନ ହେଲେ ଅଚଳ। ମିଜାଜ କୁଆଡ଼େ ଗୋଳମାଳ ହୋଇଯାଏ। ଶଶୀ ଦୀକ୍ଷିତ ଆସି କହିଲେ, "ଡ଼ି.ଆଇ ସହେବ ଡାକୁଛନ୍ତି।" ସଜବାଜ ହୋଇ ଗଲି। ଶଶୀ ଦୀକ୍ଷିତ ଇ.ଟି. ସ୍କୁଲର ଚପରାଶି।

ରାମକୃଷ୍ଣ ମିଶ୍ର ତାଲୁରୁ ତଳିପା'ଯାଏ ମୋତେ  ଅନେଇଲେ। ହୁକୁମ କଲେ "କାଗଜ ଖଣ୍ଡେରେ ଲେଖ, ମୁଁ ଡାକୁଛି।" ହଁ କଲି। କାଗଜ କଲମ ଧରି ତଳେ ବସିଲି। ଚ଼ଉକିରେ ବସିବାକୁ କହିଲେ। ହେଲେ ତଳେ ବସିଲି। ତଳେ ବସି ଲେଖିବା ମୋର ଅଭ୍ୟାସ।

ଇଂରାଜୀରେ ଗୋଟାଏ ଡ୍ରାଫ୍ଟ ଡାକିଲେ। ମଝିରେ ମଝିରେ ପାନଖିଲେ କଳରେ ଜାକି ଦିଅନ୍ତି। ଆଖି ବୁଜି ବୁଜି ଡାକୁଥାନ୍ତି। ମୁଁ ଲେଖି ଚଲିଥାଏ। ଯେମିତି ବ୍ୟାସଦେବଙ୍କ ଆଗରେ ଗଣେଶ। ଲେଖା ସରିଲା। ଲେଖା କାଗଜ ଖଣ୍ଡିକ ଯତନରେ ମୋଡ଼ି ତାଙ୍କ ପାନ ଡ଼ବା ପାଖରେ ଥୋଇଦେଲି। ସେ ଯା' କହିବାରୁ ଚାଲି ଆସିଲି। ଭାବିଲି ସାହେବ ମୋତେ ପରଖିଲେକି?

ସକାଳ ହେଲା। ରାମକୃଷ୍ଣ ମିଶ୍ର ଆମଠୁ ବିଦାୟ ମାଗିଲେ। ଆମେ ପଂଝାଏ ପଛେପଛେ ଗଲୁ। ରଜା ପାରିଧିକୁ ବିରାଜିଲେ ଯେମିତି ଯାନ୍ତି। ରାସ୍ତା ସାରା ଚୁପଚୁପ୍ ମାହୋଲ। ବକର ବକର ହେବା ମୋ' ଅଭ୍ୟାସ। ମଶାଣୀକୁ ମଡ଼ା ବୋହି ନବାର ନୀରବତା ମୋତେ ଭଲ ଲାଗୁନଥାଏ। ସେ ନୀରବତାର ବିଷାଦ ନଥିଲା। ଥିଲା ବହୁ ସମ୍ଭାବନାର ଉତ୍ସମୁଖ ଉତ୍ସାହ।

ବସକୁ ଉଠିବା ବେଳେ ରାମକୃଷ୍ଣ ବାବୁ ମୋତେ କହିଲେ, "ତମପାଇଁ ଏଥାନଟି ଛୋଟ। ତମ ଭିତରେ ଅନେକ କିଛି ହବାର ସମ୍ଭାବନାଟିଏ ଅଛି।" ତାଙ୍କ କଥାଟି ଶୁଣିଲି ସତ, ହେଲେ ତାଙ୍କ କଥାର ଆଗବୁଦ୍ଧ କିଛି ବୁଝି ପାରିଲି ନାହିଁ। ଗହୀରେଇ ଭାବି ନଥିଲି ମୋଟେ। ଲଘୁ ମନରେ ବିଚାର କଲି। ସାହେବ ଲୋକ। କଣ ଭାବି କହି ଦେଇଥିବେ। ଆମେ ତାଙ୍କୁ ଅଲବିଦା କହିବା ବେଳକୁ ବସ ଷ୍ଟାର୍ଟ ହୋଇ ସାରିଥିଲା। ସେ ଗଲେ ଦୂରକୁ ଦୂରକୁ ବସ ସରୁହୋଇ ଅଦୃଶ୍ୟ ହେବା ବେଳକୁ ଆମେ ଗାଁ ଆଡ଼କୁ ମୁହେଁଇଲୁ। ବାଟ ସାରା ରାମକୃଷ୍ଣ ବାବୁଙ୍କ ଉପରେ ଚ଼ର୍ଚ୍ଚାର କେନ୍ଦ୍ରବିନ୍ଦୁଟି ଥିଲା, ରାମକୃଷ୍ଣ ବାବୁଙ୍କଙ୍କୁ ବୁଝିବା କଠିନ।

କିଛି ଦନି ପରେ ସମ୍ବଲପୁର ଗଲି। ଡ଼ି.ଆଇ. ଅଫିସରେ କାମଥିଲା। ଏବକାର

ହୋମିଓପାଥି କଲେଜ ସେବେଳର ଜିଲ୍ଲା ବୋର୍ଡ଼ ଅଫିସ। ମୋତେ ଦେଖି ଦେଖି ଗୋପବାବୁ (ଗୋପବନ୍ଧୁ ମିଶ୍ର) ହେଡ଼କ୍ଲାର୍କ କହିଲେ "କିହୋ, ହେଡ଼ମାଷ୍ଟ୍ରେ ସାହେବଙ୍କ କଣ ଖୁଏଇଲ ଯେ ତମର ତ ଭାରି ପ୍ରଶଂସା କରୁଥିଲେ। ମୋରି ଆତୁରତା ବଢ଼ିଗଲା। ଛାନିଆଁ ହୋଇ ପଚାରି ଦେଲି, "କଣ ହେଲାକି ଗୋପବାବୁ?" ଅଫିସିଆଲ ଶ୍ଳେଷ ବୁଝିବା କଷ୍ଟକର। "ଗାଳି ଦଉଥିଲେ କି?" ପଚାରି ଦେଲି। ସେ ଯାହା କହିଲେ ତା'ର ମର୍ମଟି ହେଲା। ମୁଁ କୁଆଡ଼େ ଭଲ ଛାତ୍ରଟିଏ! ସେ ଡ଼ାକି ଦେଇଥିବା ଇଂରାଜି ଡ୍ରାଫ୍ଟଟି ଶୁଦ୍ଧ ଭାବରେ ଲେଖିପାରିଥିଲି। ସେଥିରୁ ସେ ମୋର ଦକ୍ଷତା ଠଉରେଇ ପାରିଥିଲେ। ସେ କେବେ କାହାକୁ ବେଶୀ ପ୍ରଶଂସା କରନ୍ତି ନାହିଁ। ତାଙ୍କ ମୁହଁରୁ ଏକଥା ଗୁଡ଼ାକ ମୋର ଭାଉ ବଢ଼େଇ ଦେଲା। ସେ କେବଳ ଗୋପବାବୁଙ୍କୁ କହିନଥିଲେ। ଯଉଠିକି ଗଲେ ସବୁଠି ମୋ' ଦକ୍ଷତା ପ୍ରସଙ୍ଗ ବଖାଣିଲେ।

ମୁଁ ଭଲ ପଢୁଥିଲି। ଗଛରେ ଚୋଟ ମାରିବା ପରି ହଠାତ୍ ପାଠରେ ଚୋଟ ମାରିଦେଲି। ପାଠ ଛାଡ଼ିକରି ଚାକିରି କଲି ଧରିନେଲି ମୋ' ପଢ଼ାର ଡୋରି ବନ୍ଧା ହେଲା। ପଛକଥା ଭାବି ଲାଭ କଣ? ଯା'ହେଲା, ହେଲା। ଯୋ ହୋଗା, ଦେଖା ଯାଏଗା। ଏଣୁ ମୋ' ଭିତରଟା ନିସ୍ତରଙ୍ଗ ଥିଲା।। ରାମକୃଷ୍ଣ ବାବୁଙ୍କ କଥା କେଇପଦ ମୋ' ଭିତରକୁ ହଦମଦେଇ ଦେଲା। ଗୋଟାଏ ନୂଆ ଢେଉ ଉଠିଲା ମୋ'ଭିତରେ। ଦରମରା ଝାଉଁଳି ଯାଇଥିବା ଇଚ୍ଛାଟିଏ ଦମକାଏ ବରଷାରେ ଯେମିତି ପାଉଁଳି ଉଠେ, ଠିକ୍ ସେମିତି, "ପଢ଼ିବି, ଆଗକୁ ପଢ଼ିବି"ର ଚେ଼ର ଧରି ବସିଲା।

ଠିକ୍‌କଲି, ପଢ଼ିବି। ପଢ଼ିବାର ଅନୁରାଗଟି ମରି ସାରିଥିଲା। ପୁଣି ଜୀଇଁ ଉଠିଲାବେଳକୁ ଧାଇଁଲି ନିର୍ମଳ ପାଢ଼ୀ ପାଖକୁ। ନିର୍ମଳ ପାଢ଼ୀ ବନ୍ଧୁ ଓ ସହପାଠୀ। ସାରସ୍ୱତ ପୁସ୍ତକ ଭଣ୍ଡାରର ମାଲିକ। ବି.ଏ. ପରୀକ୍ଷା ପାଇଁ ଉତ୍କଳ ଇଉନିଭରସିଟି କୁ କାଗଜପତ୍ର ପଠେଇ ଦେଲି। ବହି ଆଣିବାକୁ ଗଲି ନର୍ମଲବାବୁ ହସିଲେ। ଆଉମାତ୍ର ଦୁଇମାସ ରହିଲା। ମୁଁ ପାଲଟା ହସଟିଏ ଫିଙ୍ଗିଦେଲି। ହସରେ ହସରେ କଥାବାର୍ତ୍ତା। ଏମିତି ଲାଗିଲି ଯେ ବି.ଏ. ପାସକଲି। ଖୁବ୍ ଭଲ ନମ୍ବର ରଖି ପାସ୍‌କଲି। ନୂଆ ଉତ୍ସାହ ଜମାଟ ବାନ୍ଧିଲା। ଭିତରର ଦରମଲା ଅଙ୍କୁରଟି ପତର ଫିକିଲା, ଡ଼ାଳ ମେଳିଲା।

ଥରେ ପାଇଲେ, ଆହୁରି ପାଇବାକୁ ମନହୁଏ। ଶ୍ରୀପୁରା ଛାଡ଼ିଲି ୫ ଜୁଲାଇ ୧୯୬୩ରେ। ଅନୁଷ୍ଠାନ ଓ ଲୋକଙ୍କ ସହ ଗୋଟାପଣେ ଏକାତ୍ମ ହୋଇ ଯାଇଥିଲି। ଗାଁ ଛାଡ଼ିବା ବେଳେ ମୋତେ ବାଧିଲା। ଭିତରୁ ଲଟ ଲାଗିଲେ ଭିତରକୁ ବାଧେ। ଶ୍ରୀପୁରାଠୁ ବିଦାୟ ମୋତେ ବହୁବର୍ଷ ଅସ୍ଥିର କରି ପକେଇଲା। ସ୍ଥିରକଲି ଏଣୁ ଏଣିକି ବେଶୀ ଭଲ ପାଇବା ଠିକ୍ ନୁହେଁ। ସୀମାଠୁ ଅଧିକ ସବୁଠି ଖରାପ। ଏଣୁ ପରବର୍ତ୍ତୀ ଜୀବନରେ ସାବଧାନ ହେଲି। **Thus far. No further** ଏତିକି ଏଠୁ ବେଶୀ ନୁହେଁ। ଏଇ ନୀତିରେ

ପୁଅ, ଭାରୀଯା, ଘର ପରିବାର, ବନ୍ଧୁ ପରିଜନଙ୍କ ସହ ଭଲ ପାଇବାର ସୀମାକୁ ଜଗିଲି। ତଥାପି କୁରୁଳା ମରମଟା ସଦାବେଳେ ଲଲେଇ ବିଲେଇ ପରି ଆନର ଚଉପାଖେ ଗୁରୁଗୁରୁ ହୁଏ। ଅଭ୍ୟାସ ଥାଏ। ଯେତେ ଆକଟିଲେ ବି ମାନେନାହିଁ।

ବି.ଇଡ଼ି ପାଇଁ ଆବେଦନ କରି ସାରିଥାଏଁ। ଜାଗା ପାଇଗଲି। ଦଶ ମାସର ତାଲିମ ସରିଗଲା। ତାଲିମ ପରେ ଶ୍ରୀପୁରା ଗଲି। ଅନୁଷ୍ଠାନରେ ଯୋଗଦେଇ ପରମାଣପୁର ଆସିଲି। ସବୁ ଠିକ୍ ହୋଇ ସାରିଥାଏ।। ଗାଁ ପାଖ। ମୋର ସଂସାର ମୋତେ ବାଧ୍ୟ କରୁଥିଲା ଘରେ ରହିବାକୁ। ଯୋଗକୁ ରାମକୃଷ୍ଣ ମିଶ୍ର ସି.ଆଇ ହୋଇ ଆସିଲେ ସମ୍ବଲପୁର– ସୁନ୍ଦରଗଡ଼ ସର୍କଲର। ତାଙ୍କର ଉପାଧ୍ୟାୟର ଡ଼ିଗ୍ରି ନଥିବାରୁ ବୁଢ଼ା ବୟସରେ ଏମ୍.ଇଡ଼ି କଲେ। ବିଡ଼ିଓ ମାନେ ଜିପ୍ ପାଉଛନ୍ତି। ଦୁଇଟି ଜିଲ୍ଲାକୁ ଦଉଡୁଥିବା ସି.ଆଇର ଜିପ୍ ନାହିଁ! ବିଡ଼ମ୍ବନା। ସରକାରଙ୍କୁ ଲେଖିଲେ। ସରକାର ନ ଶୁଣିବାରୁ କୁଆଡ଼େ ବିରକ୍ତିରେ ଇସ୍ତଫା ଦେଇଦେଲେ। ତାଙ୍କ ଯୋଗୁଁ ଏବେ ସି.ଆଇ ମାନେ ଜିପ୍ ପାଇଲେ। ରାମକୃଷ୍ଣ ବାବୁ ନିଆଁଥିଲେ। ଏଣୁ ନିଆଁକୁ ଚିହ୍ନି ପାରୁଥିଲେ। ତାଙ୍କର ଚିହ୍ନି ପାରୁଥିବା ଗୁଣକୁ ଶହଶହ ସଲାମ।



# ୪୭. ଶିଖାଇଲା କିଏ ଦଂଶନ

କୁର୍ଲା ଗାଁଆଁରେ ପାଠ ପଢ଼ିଥିଲି। ଏଣୁ ସେଠିକାର ଅନେକଙ୍କ ସହ ମୋର ପୂର୍ବ ପରିଚୟ ଥିଲା। ହୀରାକୁଦ ଜଳ ବୁଡ଼ିରେ କୁର୍ଲାର କିଛି ପରିବାର ଶ୍ରୀପୁରା ଆସିଥିଲେ। ଗୋପୀନାଥ ପଣ୍ଡା ଶ୍ରୀପୁରାର ସ୍ଥାୟୀ ବାସିନ୍ଦା ହୋଇ ସାରିଥିଲେ। ତାଙ୍କ ବଗିଚାରେ ହେଡ଼ମାଷ୍ଟ୍ରଙ୍କର ଘର। ସେ ଘରେ ମୁଁ ରହୁଥିଲି।

ଶ୍ରୀପୁରାର ଶିକ୍ଷା ବିକାଶ ଓ ପ୍ରସାର କଥା ଉଠିଲେ, ଗୋପୀନାଥ ପଣ୍ଡାଙ୍କ କଥା ଆପେଆପେ ଆସିଯାଏ। ଲମ୍ବାଲୋକ। ଆଜାନୁ ଲମ୍ବିତ ବାହୁ। ଗୋରା ତକତକ ଦିହ। ଖଇରା ଖଇରା ଆଖି। ନିର୍ଭିକ ମଣିଷ ଜଣେ। ଆଭରଣରେ ଖଦଡ଼ ଧୋତି ଓ ଗାମୁଛା। ମୂଳରୁ ଗାନ୍ଧୀବାଦୀ ଲୋକ।। ଯାହା କରିବେ ବଡ଼। ଛୋଟ କଥାକୁ ମନ ନାହିଁ। ଭୁଲ ହେଉକି ଭଲ ହେଉ, ସେ ଯାହା ଭାବିଥିବେ ତହିଁରୁ ଓହରି ଯିବାର ଲୋକ ନୁହନ୍ତି। ଅବିଗୁଣ ଭିତରେ ଏଇ ଗୋଟିକ ବହୁ ସମୟରେ ଏଇ ଗୋଟିକ ଗୁଣ ଯୋଗୁଁ ସେ ବିବାଦୀୟ ହୋଇ ପଡୁଥିଲେ। ପୁଅ, ମାଇପ, କାହାରି କଥା ଶୁଣନ୍ତି ନାହିଁ। ଯାହା ବୁଝିଛନ୍ତି ସେୟା। କପଡ଼ାକୁ ଦେଖି କୁରୁତା ତିଆରି କରନ୍ତି ନାହିଁ। ପୁଞ୍ଜିକୁ ଚାହିଁ ପସରା ମେଲାଇବା ଜାଣନ୍ତି ନାହିଁ। ଫଳରେ ଗୁଡ଼ାଏ ଖର୍ଚ୍ଚ ହୁଏ। ଲୋକସାନ ହୁଏ। ଯୋଜନା ବିଫଳ ହୁଏ। ଧରାଯାଉ ପୂଜା ପାଇଁ ଚାରିଶହ ଟଙ୍କାଥିବ ସେ ତିନିଶହ ପରଭାରେ ଖରଚ କରିଦେବେ।

ବାକି ଶହେରେ ସବୁ କାମ ନହେଲେ, ଧାର ଉଧାର କର। ଧାର ଉଧାରରେ ସମସ୍ୟା ବେଶୀ। ନିଜ ନିଜ ଭିତରେ ମନ ଫଟାଫଟି ହୁଏ। ଧାରରେ କାମଟା ସରିଯିବ। ହେଲେ ସୁଝିବ କିଏ? ଅସୁଝା ରହିଲେ ସମସ୍ୟା। **Credit cuts the relation.** ଉଧାର ସମ୍ପର୍କକୁ ଛିନ୍ନକରେ। ବିନା କାରଣରେ ବଇରି। ଗୋପୀନାଥ ପଣ୍ଡାଙ୍କ ଯଦି କେହି ବଇରି ହଉଥିଲା, ଏଇ ଗୋଟିକ କାରଣରୁ।।

କଳାପ୍ରିୟ ଲୋକଥିଲେ। ସୁନ୍ଦର ହସ୍ତାକ୍ଷର। ମାର୍ଜିତ ରୁଚିଟାଏ ଥିଲା। ବଡ଼କଥା ଭାବୁଥିଲେ। ବଡ଼ ବଡ଼ ଯୋଜନା କରୁଥିଲେ। ପରପାଇଁ ଅନେକ କିଛି କରିଛନ୍ତି। ହେଲେ ତାଙ୍କ ବଂଶଧରଙ୍କ ପାଇଁ ସେମିତି କିଛି ଆଖିଦୃଶିଆ କରିପାରି ନଥିଲେ। ହାତରେ ଅନେକ ସୁଯୋଗଥିଲା। ନିଜପାଇଁ କରିଥିଲେ ଧନବନ୍ତ ହୋଇ ପାରିଥାନ୍ତେ। ନିଜ ବଂଶଧରଙ୍କ ପାଇଁ ବଙ୍ଗଳା ବାନ୍ଧି ପାରିଥାନ୍ତେ। କିଛି କରି ପାରିଲେନି। ପରପାଇଁ କାମ କରୁଥିବା ଲୋକ ଜୀବନରେ କଷ୍ଟ ପାଆନ୍ତି। ପରପାଇଁ କାମ କରୁଥିବା ଲୋକଙ୍କ ସଂଖ୍ୟା ଧିରେ ଧିରେ କମିବାକୁ ବସିଲାଣି। ଆଜି ଆମେ ନିଜପାଇଁ ବ୍ୟାକୁଳ। ପରପାଇଁ କାମ କରିବାକୁ ସମୟ କାହିଁ? ମନ କାହିଁ?

କାହିଁକି କେଜାଣି କଚେରି ମକଦ୍ଦମା ପ୍ରତି ଗୋପୀନାଥ ବାବୁଙ୍କ ସଉକ ଥିଲା। ଗୋଟିଏ ନିଶା। ଶାନ୍ତ, ଅବିଚଳିତ ରହି ପାରୁନଥିଲେ ସେ। ଗୋଟାଏ ଉତ୍ତେଜନା ବା ଟେନସନ୍ ଭିତରେ ବଞ୍ଚିବାକୁ ଭଲ ଲାଗୁଥିଲା। ଏଣୁ ସେ ମକଦ୍ଦମା ବାଜ ହୋଇଗଲେ। ସାମାନ୍ୟତମ କାରଣରେ ଅର୍ଜି ଲେଖୁଥିଲେ। ମାମୁଲି କଥାରେ କେଶଟାଏ ଠୁକି ଦେଉଥିଲେ। ଏ ପ୍ରକାର ପରୋପକାରୀ ସଦା ପରଚିନ୍ତା କରୁଥିବା ଏକ ବିଶାଳ ହୃଦୟ ଭିତରକୁ ଚୁନ୍ ଚୁନ୍ ଖାଉଥିବା ଘୁଣ ପଶାଇଲା କିଏ? ଚୋଟ ମାରିବାର ଅଭ୍ୟାସ ଆସିଲା କୁଆଡୁ? ଦଂଶନ ଶିଖାଇଲା କିଏ? ବେଳେବେଳେ ତାଙ୍କ କଥା ମନେ ପଡ଼ିଗଲେ ମୁଁ ତାଙ୍କୁ ଏତକ କହନ୍ତି ପରା! **Everyone is a moon who has a black side.** ପାଖେକ କଳଙ୍କ ଥିବା ଚନ୍ଦ୍ରମାଟିଏ ସତେ!

ଶ୍ରୀପୁରାର ଲୋକଙ୍କ ସହ ମୁଁ ଏପରି ଏକାତ୍ମ ହୋଇ ଯାଇଥିଲି ଯେ ମୋର ଜୀବନକାଳ ମଧ୍ୟରେ ସେମାନଙ୍କ ସ୍ମୃତି ମୋର ଅନ୍ତଃସ୍ଥଳକୁ ଆନ୍ଦୋଳିତ କରି ପକାଏ। ବହୁ ମଣିଷ ମୋ' ଭିତରକୁ ପଶି ଆସନ୍ତି।

ଝାଡୁ ସାମାନ୍ୟତମ ମଣିଷଟିଏ। ମୋ' ବାପା ବୟସର। ରମେଲାର ଲୋକ। ଜଗନ୍ନାଥ ପତିଙ୍କ ପୁଅ ପ୍ରସନ୍ନ କୁମାର ପତିଙ୍କ ସାଙ୍ଗରେ ଆସିଥିଲେ। ମୋ'ବାଟ ଦେଇ ଝାଡୁ ତା' ବିଲକୁ ଯାଏ ଓ ଫେରେ। ଦେଖାରୁ କଥାବାର୍ତ୍ତା। କଥାବାର୍ତ୍ତାରୁ ଆତ୍ମୀୟତା, ଦୋସ୍ତି। ବୁଢ଼ାଲୋକ। କେବେ କେମିତି କିଛି ଖାଇବାକୁ ଦେଲେ ଗପିବ। ଆସର ଜମେଇଦବ। ରଜା, ଜମିଦାର, ଗୌନ୍ତିଆ ଭଳି ସାମନ୍ତ ଶ୍ରେଣୀର ଗେଲ୍‌ହା ମଣିଷଟିଏ।

ନାନା ମଜାମଜା ଗପର ଖଲେଇଟିଏ। କଥାକୁ ମାଜି ଜାଣି ନଥିଲେ ବି ଲମ୍ୱେଇ କଥା କହିବାର ଢଙ୍ଗ ଜଣାଥିଲା। ମୋର ବହୁ ଲେଖାରେ ମୁ ତାକୁ "ଝାଡୁକାକୁ" ବୋଲି ସୂଚାଇଛି। ଜମା ପାଠ ପଢ଼ି ନଥିଲେ ସେ। ମଫସଲୀ ଲୋକ ଜଣେ। ଜୀବନକୁ କିନ୍ତୁ ବାଗରେ ଜୀଉଁଥିଲେ। ଦୁଃଖକୁ ପିଠିରେ ଲାଉକରି ବି ସଦା ଜୀବନକୁ ସରସ ରଖି ପାରୁଥିଲେ। ଜୀବନ ପ୍ରସଙ୍ଗରେ ତାଙ୍କ ଅନୁଭବ ଗଭୀର ଥିଲା। ଜୀବନକୁ ପୋକମାଛି ଭାବୁଥିବା ଲୋକ ତାଙ୍କ ମୂଲ୍ୟବୋଧକୁ ବୁଝି ପାରିବ ନାହିଁ। ଥରେ ଅଗଷ୍ଟ ୧୫ରେ ପତାକା ଉଡ଼ାଇବାକୁ ଡ଼ାକିଥିଲି। ତାର ଅଛଅ। ଭାଷାରେ ଏମିତି କହିଲାଯେ ତା'କଥା ଆଖି ଆଗେ ସତସତ ବୋଲି ପ୍ରତେ ହେଲା। ମୋର 'ଝାଡୁକାକୁ' ବୋଧହୁଏ ଆଉ ନଥିବ। ତାକୁ ଏ ଅଧମର କୋଟି କୋଟି ପ୍ରଣାମ!

ଗାଁ ସାରା ଭାଲେଣି ପଡ଼ିଛି ଦରଜୀର ମଡ଼ା କେମିତି ଉଠିବ? ଥିଲା ଥିଲା କଣ ହେଲା କେଜାଣି ଦରଜୀ ମରି ଶୋଇଛି। କି ଜାତିର ମାଇକିନା ଆଣିଥିଲା କେଜାଣି, ମଡ଼ା ଛୁଇଁବ କିଏ? ବ୍ରାହ୍ମଣ ଭର୍ତ୍ତି ଗାଆଁ। ପଇତା ମାରା ହେବ। ଜାତିବି ଯାଇପାରେ। କଉଠି ଥିଲା କେଜାଣି ଲାଦୁପାଢ଼ୀ ମୋତେ ହକାରିଲା। "ମାଷ୍ଟ୍ରେ, ଦରଜୀ ବୁଢ଼ୁରା ମରିଗଲା। ଚାଲ ତାକୁ ବୋହି ନବା। ବାହାରି ପଡ଼ିଲି। ମନା  କରିବାକୁ କିଏ ବା ଅଛି?

କଉଠୁ ପଳେଇ ଆସିଥିଲା ସେ ଦରଜୀ। ସତପଥୀ ବୋଲାଉଥିଲା। ଗୋଟିଏ ଗୋଡ଼ ସରୁଥିବାରୁ ଛୋଟେଇ ଛୋଟେଇ ଚାଲେ। ଏଣୁ 'ଦରଜୀଛୁଟା' ଗାଁଆଁ ସାରା ଡାକନ୍ତି। ସିଲେଇ କାମଜାଣେ। କଉଠୁ ମାଇକିନାଟିଏ ଧରି ପଳେଇ ଆସିଥିଲା। ଏ ଗାଁରୁ ସେ ଗାଁ ବୁଲି ବୁଲି ଶେଷକୁ ଶ୍ରୀପୁରାରେ ସ୍ଥାୟିଭାବେ ଚଳିଥିଲା। ଶ୍ରୀପୁରା ମୂଳରୁ ଏକ ବିଚାରବନ୍ତ ଗାଁ। ଧନରେ ଧନୀ ନହେଲେବି ମନର ଧନୀ ସଭିଏଁ। ତା'ର ସାମୟିକ ଦୁର୍ବଳତାକୁ ଭୁଲି ଯାଇଥିଲେ। ଗାଁ ଗୋଟାକରେ ଜଣେ ହୋଇ ରହିଲା।

ଦରଜୀ ଛୁଟାର ଶବ ମଶାଣିକୁ ନେଲାବେଳେ ଯେ ଦେଖିଛି, କୌଣସି ସାମନ୍ତର ଶବ-ପଟୁଆର ସେପରି ଆଡ଼ମ୍ୱରରେ ଯାଇନାହିଁ, ସେ ଜାଣିଥିବ। ପୁଅ ପରଜା ଉଠିଗଲେ। ମାଇକିନା ମାନେ ହୁଳହୁଳି ଦେଲେ। ଅଣ୍ଡିରା ପୁଏ 'ରାମନାମ ସତ୍ୟହେ' ଘୋଷିଲେ। ଲାଦୁ (ପ୍ରହଲ୍ଲାଦ) ପାଢ଼ୀ ଦେଖେଇ ଦେଲା ଯେ ମଣିଷର ଜାତି ଥାଏନା। ମଣିଷର ମାନବିକତାହିଁ ତା'ର ଜାତି। ମାନବିକତା ଆଉ କଉଠି ଥାଉ ବା ନଥାଉ ଶ୍ରୀପୁରାରେ ଥିଲା। ଅଛି ଓ ଥିବ। ମୋର ଛଅ ବରଷ ରହଣି ଭିତରେ ସେଇ ମହନୀୟ ମାନବିକତାର ନଜିର ଅନେକଥର ପାଇଛି। ମଣିଷକୁ ଭଲପାଇ ଶିଖିଲେ ମଣିଷର ଅନେକ ଦୁଃଖ ଓ ଅନେକ ସମସ୍ୟା ବୋଧହୁଏ ରହନ୍ତା ନାହିଁ।



# ୪୮. ଗୋଠ ମାତିଲେ ହଡ଼ା ମାତେ

ଦିନେ ସଞ୍ଜକୁ ସାଲଟ ଗାଁର ବେଣୁଧର ବିଶ୍ୱାଳ ଚାରୋଟି ପିଲାଧରି ମୋ'ବସାରେ ହାଜର। ସେଇ ଚାରୋଟି ପିଲାଙ୍କର ନାଁ ଲେଖାହେବ। ବେଣୁଧର ବିଶ୍ୱାଳ ମୋ' ଦାଦା। ଆମ ବଂଶର ଲୋକ। ଗୌନ୍ତିଆ ଲୋକ। ସୁନ୍ଦର ଗୋରା ଟକଟକ ଚେ଼ହେରା। ପ୍ରତିକଥାରେ ସାଆନ୍ତ ପଣ ବାରି ହଉଥାଏ।

ରେଙ୍ଗାଲିର ବାବୁମାନେ ତାଙ୍କ ପୁରୁଣା ବସ୍ତିରେ ମାଇନର ସ୍କୁଲ ଆରମ୍ଭ କରିଥିଲେ। ଏଇ ପିଲା ଚାରୋଟି ସେଇ ଅନୁଷ୍ଠାନର ଛାତ୍ର। ଅନୁଷ୍ଠାନଟି ସରକାରୀ ସ୍ୱୀକୃତି ନପାଇବାରୁ ପିଲାଙ୍କୁ ସେଠୁ ଅଣାଗଲା। ଅଣ ସ୍ୱୀକୃତ ଅନୁଷ୍ଠାନରେ କେହି ନାମ ଲେଖାଇବାର ବିଧିନାହିଁ। ସାଆନ୍ତକୁ ସାଆନ୍ତ ମିଶିଯାନ୍ତି ଏଇ ନ୍ୟାୟରେ ବେଣୁଦାଦା ତାଙ୍କ ପିଲାଙ୍କୁ ସାଆନ୍ତମାନେ ଆରମ୍ଭ କରିଥିବା ଅନୁଷ୍ଠାନରେ ପଢ଼ାଇଲେ। ଦେଖଦେଖ ବୋଇଲା ବେଳକୁ ଅନୁଷ୍ଠାନଟି ଉଠିଗଲା। ଏଣୁ ବେଣୁଦାଦା ମୋଠି ହାଜର। ଭାଇଟାଏ ଅଛି। କାମ ଚଳିଯିବ। ସେତେବେଳେ ଶ୍ରୀପୁରା ସ୍କୁଲରେ ଛାତ୍ରାବାସଥିଲା। ମେସ୍ ଚାଲୁଥିଲା। ହଷ୍ଟେଲରେ ଶହେ ସରିକି ପିଲାଥିଲେ। ଚାରିଆଡୁ ପିଲା ମାଡ଼ି ଆସୁଥିଲେ। ସମସ୍ତଙ୍କୁ ସ୍ଥାନଦେବା ସମ୍ଭବ ହେଉନଥିଲା।

ଦେଖିଲି ପିଲା ଚାରୋଟିର ପାଠ ପଢ଼ା ଠିକ୍ ହୋଇଛି। ଆଇନ କହୁଛି ନାମ ନ ଲେଖାଇବାକୁ। ଏଥିରେ ଅବୋଧ ପିଲାଙ୍କର ଦୋଷ କଣ? ଏଣୁ ସେ ପିଲାଙ୍କର ନାମ ଲେଖାଇ ଦେଲି। ସେଇ ପିଲା ଚାରୋଟି ରହିଲେ। ପାଠ ପଢ଼ିଲେ। କିଛିମାସ ପରେ ଡ଼ି.ଆଇ ସାହେବ ଆସିଲେ। ନାମଲେଖା ଖାତା ତନଖି କଲେ। ଏଇ ଚାରୋଟି ପିଲାଙ୍କର ନାମ ଲେଖାକୁ ଅବୈଧ ଘୋଷଣାକଲେ। ପିଲାଙ୍କୁ ତଡ଼ି ଦେବାକୁ ତାଙ୍କ ଭିଜିଟ୍ ଖାତାରେ ଲେଖିଦେଲେ। ସାହେବଙ୍କର ଚ଼ର୍ଚ୍ଚାରେ କି ଆତିଥ୍ୟରେ ହେଳା କରି ନଥିଲି। ସେ ଖୁସିଥିଲେ। ଗଲା ବେଳକୁ ପଚାରିଦେଲି "ସାର୍, ପିଲା ଚାରୋଟିଙ୍କୁ ତଡ଼ି ଦେବିତ?" ହସି ଦେଇ କହିଲେ, "ନା, ମ ଦରଖାସ୍ତ' ଖଣ୍ଡେଦେଇ Condone କରାଇନବ। ଆଗରୁ ଅର୍ଜି ଲେଖି ରଖିଥିଲି। ସାଙ୍ଗେ ସାଙ୍ଗେ କଲମଟିଏ ଧରେଇ ଦେଇ Condone କରାଇନେଲି। ମୋ' ଆଡ଼କୁ ଚାହିଁ ଡ଼ି.ଆଇ ସାହେବ କହିଲେ, "ବେଳ ଜାଣି ବନ୍ଧ ବାନ୍ଧିବାର କଳା ଜଣା। ସେ ଚାରୋଟି ପିଲା ଏବେ ଜୀବନରେ ପ୍ରତିଷ୍ଠିତ। ସେମାନେ ହେଲେ ତ୍ରିବିକ୍ରମ ବିଶ୍ୱାଳ, ହଳଧର ରାଉତ, କାମଦେବ ପାଣି ଓ ଶୁକଦେବ ବିଶ୍ୱାଳ।

ଫକୀର ମୋହନ ତ୍ରିପାଠୀ ସୁନ୍ଦରଗଡ଼ ଜିଲ୍ଲା ସ୍କୁଲରେ ପଢୁଥିଲେ ମୋ' ମଉସା ହୃଷିକେଶ ନାୟକ ସେଠି ପ୍ରଧାନ ଶିକ୍ଷକ। ଫକୀର ତ୍ରିପାଠୀ ସେଠି କୁଆଡ଼େ ଅବୋଲକରା ହେଲେ। ଦୁଷ୍ଟାମି କଲେ। ମୋ' ହରିବୋଲ କାକାର ଶଳାସିଏ। କକାଙ୍କ ଶଶୁର କୁଳମଣି

ତ୍ରିପାଠୀ ପୁଅକୁ ସୁନ୍ଦରଗଡ଼ୁ ଆଣି ଶ୍ରୀପୁରାରେ ଥୋଇଲେ। ଦେଖିଲି ପିଲାଟି ଭିତରେ ବହୁଗୁଣ ଭରି ରହିଛି। ତାଙ୍କୁ ମାଠିଦେଲେ ମାଠିଆ କି ବାଗେଇ ଦେଲେ ବାହାଦୁରଟିଏ ହୋଇ ପାରିବେ। ଭିତରେ ଯାହାଥିବ ଫୁଟି ଉଠିବ। ସତକୁ ସତ ପିଲାଟି ଭଲ ପଢ଼ିଲେ। ବିଜ୍ଞାନରେ ସ୍ନାତକ ହୋଇ, ଏବେ ବେଙ୍କ ସେବାରେ ଜଣେ ବରିଷ୍ଠ ଅଫିସର।।

ହାଜିରାରେ ଯଉପିଲାମାନେ ବରାବର ଅନୁପସ୍ଥିତ ରହନ୍ତି, ମଝିରେ ମଝିରେ ମୁଁ ସେମାନଙ୍କ ଘରକୁ ଯାଏଁ ସେଇ ଗଡ଼ହାଜର ପିଲାଙ୍କୁ ମନାଇ ପଛରେ ବସେଇ ଆଣେ। ଏପରି କଲେ, ଦେଖିଛି, ପିଲାଏ ଆଉ ଗଡ଼ହାଜର ହୁଅନ୍ତି ନାହିଁ। ରୋଜରୋଜ ଆସିବାରେ ଆଗ୍ରହ ବଢ଼େ। ସେପରି ଦୁଇଟି ପିଲାଙ୍କର କଥାମନେ ପଡ଼ିଯାଉଛି। ଜଣେ ଦିଲିପ ତ୍ରିପାଠୀ ଆର ଜଣକ ରାମଦାସ ମିଶ୍ର। ରାମଦାସ ମିଶ୍ର ଆମ କୁଳ ପୁରୋହିତ ପଣ୍ଡିତ ଦୀନବନ୍ଧୁ ମିଶ୍ରଙ୍କର ସାନପୁଅ। ଚାରିବର୍ଷ ଆମଠି ପଢ଼ିଥିଲେ। ଛାତ୍ରାବାସରେ ରହନ୍ତି। ମେସରେ ଖିଆପିଆ। ବାପାମମାଆଠୁ ଦୂରରେ ରହି ପାଠ ପଢ଼ିବା କଠିନ। ପ୍ରଥମେ ପ୍ରଥମେ ଛାତ୍ରାବାସର ଜୀବନ ଭାରି ଅଡୁଆ ଲାଗେ। ମୁ ବାରବରଷ ଛାତ୍ରାବାସରେ ରହିଛି। ଏଣୁ ମୋ ସେ ଅନୁଭବ ଅଛି। ରାମଦାସକୁ ସକାଳେ ଆଣି ଥୋଇଦେଲେ ସଞ୍ଜକୁ ପୁଣି ଘରେ ହାଜର। ତାକୁ ପାଖକୁ ଡ଼ାକି ଭଲମନ୍ଦ ପଚାରିଲି। ଆଦର ଦେଲି। ଧିରେ ଧିରେ ସେ ଛାତ୍ରାବାସରେ ଏମିତି ଧିରଚେଇ ଗଲାଯେ ଜମା ଘରକୁ ଯିବାକୁ ମନକଲା ନାଇଁ। ଏବେ ସେ ଜଣେ ଭଲ ଡ଼ାକ୍ତର। ପିଲାଙ୍କୁ ମନେଇ ପାରିଲେ ଜୀବନର ମୋଡ଼ ବଦଳିଯାଏ।

ଠିକ୍ ରାମଦାସପରି ଦିଲିପ ତ୍ରିପାଠୀ। ସେ ମୋ ଗାଁ ଅଚ୍ୟୁତା ତ୍ରିପାଠୀଙ୍କ ପୁଅ, ପିଡାପାଲିରୁ ଆସି ପଣ୍ଡ୍ରଲୋଇ ଗାଁରେ ରହନ୍ତି। ଦିଲିପ ଆମ ଅନୁଷ୍ଠାନରେ ଚାରିବର୍ଷ ପଢ଼ିଲେ। ପ୍ରଥମେ ପ୍ରଥମେ ସ୍କୁଲ ଯିବନାଇଁ ବୋଲି ଅଡ଼ି ବସିଲା। ବାପା ଯେତେଥର ଆଣି ଛାତ୍ରାବାସରେ ଥୋଇ ଦିଅନ୍ତି ସେ ସେତେଥର ଘରକୁ ପଳେଇଯାଏ। "ମଂଗଳୁ ମାଷ୍ଟ୍ରେ ଭାରି କଡ଼ା, ପିଲାଙ୍କୁ ନିର୍ଦ୍ଧମ ପିଟନ୍ତି।" କିଏ କହି ଦେଇଛି। ଗଁଠେଇଛି କଥାଟାକୁ। ତାକୁ ମୁଁ କେଇଥର ସାଇକେଲ ପଛରେ ବସାଇ ଘେନି ଆସିଲି। ତାକୁ ଥରକୁ ଥର ମୋ' ବସାକୁ ଡ଼ାକି ଆତ୍ମୀୟତା ବଢ଼ାଇଲି। ସେ ଧରିନେଲା ମୁଁ ତାର ପାଖଲୋକ। ମୋ'ପ୍ରତି ତା'ର ଡ଼ର ରହିଲାନି। ରହୁ ରହୁ ଏମିତି ହେଲାଯେ ଘରକୁ ଯିବାର ନାଁବି ଧଇଲାନି। ମୋଡ଼ ବଦଳିଗଲା। ଭଲ ପଢ଼ିଲା। ଏବେ ସେ ଓଡ଼ିଶା ବିଚାର ବିଭାଗର ଜଣେ ବରିଷ୍ଠ ବିଚାରପତି।

ଶ୍ରୀପୁରାର ପ୍ରଥମ ବର୍ଷର ଛାତ୍ର ଛାତ୍ରୀ ମାନେ ପ୍ରାୟ ବଡ଼ ବଡ଼ ପିଲା। ବୟସରେ ଓ ଗଠନରେ। ବ୍ରାହ୍ମଣ ଡ଼ିହିର ଦ୍ୱାରିକା ପାଣିଗ୍ରାହୀ, ମାତ ପାଢ଼ୀ, ମେଘନାଦ ନାୟକ, ନିମାଇଁ ଦାସ, ମିତ୍ରଭାନୁ ଦାସ, ନିମାଇଁ ଦୁବେ, ସାପ ଆଦିଙ୍କ ନାଁ ମନେ ପଡୁଛି।

ମାଚେଶ୍ୱରୀ ପାତ୍ରୀ ଭଲ ପଢୁଥିଲେ। ମାଇନର ପରୀକ୍ଷାରେ ଦୁଇଟି ସ୍କଲାରସିପ ପାଇଥିଲେ। ଗରିବ ଘରର ଝିଅ। ଆଗକୁ ପଢ଼ି ପାରିଲେନି। ମୋ' ମଉସା ପୁଅ ଭିଖାରୀ ନାୟକକୁ ବାହାହୋଇ ତାଙ୍କ ପୁଅଝିଅଙ୍କୁ ଢ଼େରଢ଼େର ପଢ଼ାଇଲେ। ତାଙ୍କ ଜୀବନର ଅପୂର୍ଣ୍ଣତା ତାଙ୍କ ପୁଅଝିଅଙ୍କ ଜୀବନରେ ପୂର୍ଣ୍ଣକଲେ। ଏ ସମସ୍ତେ ଆଜି ନିଜନିଜ ସ୍ଥିତିରେ ବେଶ ସ୍ୱଚ୍ଛଳ।

ଏସବୁ ପିଲାଙ୍କର କଥା ଉଲ୍ଲେଖ କରିବାର ଅର୍ଥ ନୁହେ ଯେ ସେମାନେ ମୋ' ଯୋଗୁଁ ମଣିଷ ହେଲେ। ମୋ' ଜାଗାରେ ଯେ କେହି ଏମନ୍ତ କରି ପାରିଥିଲେ ଏ ପିଲାମାନେ ଯାହା ହେଲେ ତାହା ହୋଇ ପାରିଥାନ୍ତେ। ପ୍ରତ୍ୟେକ ପିଲା ଭିତରେ କିଛି ନା କିଛି ଦକ୍ଷତା ଥାଏ। ତାକୁ ତାଙ୍କ ଭିତରେ ଠଉରେଇବା ଶିକ୍ଷାର କାମ। ଶିକ୍ଷକରକାମ। ପିଲା ଚାହେଁ କିଛି ଉତ୍ସାହ। କିଛି ସହଯୋଗ। କିଛି ଅନୁପ୍ରେରଣା। ସାମାନ୍ୟତମ ଅନୁପ୍ରେରଣା ପିଲାର ଜୀବନରେ ନୂଆମୋଡ଼ ଆଣିଦିଏ। ପିଲା କଣରୁ ଆଉକଣ ହୋଇଯାଏ। ଏଣୁ "ତୋ' ଦେଇ କିଛି ହେବ ନାହିଁ କହିବାଟା ଶିକ୍ଷକ ଜୀବନର ସବୁଠାରୁ ବଡ଼ ବିଫଳତା। ପିଲା ଦେଇ ସବୁ ହେବ। ଯାହା ନହେବାର ଅଛି, ହେବ। ଅରଣା ବଳଦକୁ ମଣେଇବା ପରି ତାକୁ ମାଠିବାକୁ ହେବ। ଅରଣା ଘୋଡ଼ାକୁ କଦମ ଶିଖେଇବା ପରି ଶିଖେଇବାକୁ ହେବ। **How to harness a horse** ପରି ପିଲାକୁ ବି ସାଜିବାକୁ ହେବ। କୌଶଳ ଟିକକ ଶିକ୍ଷକ ଜାଣିଥିବା କଥା। ଶିକ୍ଷକ ଭିତରେ କିଛି କରିବାର ଉତ୍ସାହ ଓ ନିଷ୍ଠାଥିବା କଥା। ମାସକୁ ମାସ ବେତନ ପାଉଥିବା କର୍ମଚାରୀଟିଏ ନୁହେଁ ସେ। ସେ ଏପରି ଏକ ମଣିଷ ଯେକି ଜୀବନ୍ତ ଫାଇଲ ଗୁଡ଼ିକୁ ଚାଷକରେ। ଶୃଙ୍ଖଳା କାଗଜକୁ ନୁହେଁ। ଶିକ୍ଷକର ମୂଳଲକ୍ଷ୍ୟ ଶିଶୁକୁ ମଣିଷରୁ ମଣିଷ କରିବା। ଗୋଟାଏ ପ୍ରତିଷ୍ଠିତ ମୂଲ୍ୟବୋଧକୁ ପିଲା ଭିତରେ ଭର୍ତ୍ତି କରିବା। ଆମର ପାରମ୍ପାରିକ ସଞ୍ଚିତ ସାଂସ୍କୃତିକ ପୁଞ୍ଜିକୁ ତାକୁ ଧରେଇଦେବା ସେଇ ପୁଞ୍ଜିରୁ ସେ ଜୀବନର ପସରା ମେଲାଇ ପାରିବ। ଜୀଇଁ ପାରିବ। ଅନ୍ୟକୁ ଜୀଆଁଇ ପାରିବାର ଦମ୍ଭ ପାଇବ। ଆପଣାର ଗୋଠକୁ ମତାଇ ପାରିଲେ ହଡ଼ା ବି ମାତିବ।



## ୪୯. ମଉନାବତୀ ମୁଖର ହେଲେ

୧୯୬୦, ଅଗଷ୍ଟ ମାସର ଚଉଦ ତାରିଖ। କବି ଦିଗମ୍ବର ଉପାଧ୍ୟାୟଙ୍କ ପୁଅ ନବୀନ ଉପାଧ୍ୟାୟ ମୋ ସହିତ ଶିକ୍ଷକତା କରୁଥାନ୍ତି। ଖେଳଓ୍ୱାଡ଼ ଲୋକ ଓ ଆଜ୍ଞାବହ ପିଲାଟିଏ। ସଦା ହସହସ ଓ ଉଦ୍ୟମୀ। ପ୍ରସନ୍ନ କୁମରପତି ଗାଁର ଜଣେ ଯୁବକ। ମୁଁ ସେମାନଙ୍କ ସହ ମିଶିଲି। ଆମେ ସାଇକେଲରେ ଝାରସୁଗୁଡ଼ା ଗଲୁ। ଭେଡ଼େନ ନଦୀ ଉପରେ ଖେତୁଆଲ ଗାଁ ପାଖରେ ଏକପୋଲ ତିଆରି ସରିଥାଏ। ତା' ଉପରେ ଯିବାକୁ ଟିକସ୍ ଦବାକୁ ପଡୁଥିଲା। ସେଇ ଟୋଲ ଗେଟର ଠିକାଦାର ତୁମ୍ପେକେଲା ଗାଁର ଲୋକ ଶ୍ରୀ ଚାରଆଁଠି

ନାଥ। ସେ ଆମ ଅନୁଷ୍ଠାନକୁ ଅନେକ ସାହାଯ୍ୟ କରିଛନ୍ତି। ଆମେ ତିନିହେଁ ଶ୍ରୀପୁରାରୁ ବାହାରିବା ବେଳେ ଆକାଶରେ ମେଘଥିଲେ ବି ବର୍ଷା ମାଡ଼ି ଆସିବାର ସମ୍ଭାବନା କମ୍ ଥିଲା। ଝାରସୁଗୁଡ଼ାରେ ସଉଦା ସାରି ବୁଲାବୁଲି କରୁକରୁ ସନ୍ଧ୍ୟା ହୋଇସାରିଥିଲା। ସେଠୁ ବାହାରିବା ବେଳକୁ ରାତି ଆଠ। ସେଆଡ଼େ ମେଘ ଆସିବି ଆସିବି ହେଲାଣି। ଭଣ୍ଡାର କୋଣରୁ କଳାହାଣ୍ଡିଆ ମେଘ ଆମକୁ ଧମକେଇବା ବେଳକୁ ଆମେ ଝାରସୁଗୁଡ଼ାରୁ ବାହାରି ପଡିଥିଲୁ। ଶ୍ରୀପୁରାକୁ ପହଞ୍ଚିବା ବେଳକୁ ମେଘ ଛେଚ଼ିବା ଆରମ୍ଭ କରିଦେଇଥିଲା।

ରାତିସାରା ବର୍ଷା ଏମିତି ଛାଟିଲା ଯେ ସକାଳେ ଉଠିବା ବେଳକୁ ବଢ଼ିପାଣି ଆମ ସ୍କୁଲ ପାଖରେ। ବ୍ରାହ୍ମଣ ଡ଼ିହି ବୁଡ଼ିଯାଇଛି। ପାଳ ଗଦା ସବୁ ଭାସି ଭାସି ଯାଉଛି। ନାନା ଖବର ବ୍ୟାପିବାରେ ଲାଗିଛି। ରେଲ ଲାଇନ ପାଣି ଭିତରେ। ବୋନାମ ବ୍ରିଜ ଭସେଇ ନେଇଛି। ଖେରୁଆଲ ଗାଁ ପୁରାପୁରି ଧୋଇ ହୋଇ ଯାଇଛି। ଗଲା ଶହେ ବର୍ଷ ଭିତରେ ଏମିତିକା ବନ୍ୟା ଦେଖାଯାଇ ନାହିଁ ବୋଲି  ବୁଢ଼ା ବୁଢ଼ାମାନେ କହିବାକୁ ଲାଗିଲେ। ପ୍ରାୟ ମାସେ କାଳ ଝାରସୁଗୁଡ଼ା ସମ୍ବଲପୁର ମଧ୍ୟରେ ଯାତାୟାତ ବନ୍ଦ ରହିଥିଲା।

୧୯୬୦ରେ ଅଗଷ୍ଟ ପନ୍ଦର ପାଳିବୁ କିପରି? ପତାକାକୁ ଖୁଣ୍ଟରେ ବାନ୍ଧି ଯେଣତେଣ ପ୍ରକାରେଣ ଛାତ୍ରାବାସର ପିଲାଙ୍କୁ ନେଇ କାମ ସାଇଲୁ।

ଶ୍ରୀପୁରାର ଲୋକେ ବାହାରିପଡ଼ିଲେ। ଆମେ ବି ମିଶିଲୁ। ଆମ ମେସ୍‌ରେ ରୋଷେଇ ଆରମ୍ଭ କରିଦେଲୁ। ଚାଉଳ ପନିପରିବା ଜମାହେଲା। ଲୋକେ ଆଗ୍ରହରେ ଆଣିଲେ। ଅସହାୟ ଲୋକଙ୍କୁ ସ୍କୁଲଘରେ ରଖିଲୁ। ଦୁଇଦିନ ପରେ ବଢ଼ିପାଣି କମିଗଲା। ବରଷା ଥମିଲା। ନଈର କୋପ ଅପସରି ଗଲା। ଲୋକେ ଆପଣା ଆପଣା ଘରକୁ ଗଲେ। ହେଲେ ବ୍ରହ୍ମଣଡ଼ିହି ଗାଁଟି ସଦାସର୍ବଦା ପାଇଁ ଭଙ୍ଗାମୁଣ୍ଡା ଉପରକୁ ଉଠି ଆସିଲା। ଖେରୁଆଲ ଗାଁ ସାହାପଡ଼ାକୁ ଚାଲିଗଲା। କିଏ କେତେ ସରକାରୀ ସାହାଯ୍ୟ ପାଇଲେ କହିହେବ ନାହିଁ। ଆମ ସ୍କୁଲ ପାଞ୍ଚଶହ ଟଙ୍କା ପାଇଥିଲା।

ନଈକୂଳିଆ ଏକ ଗାଁରେ ଜନମ ମୋର। ହେଲେ ନଈର ଏପରି ଉନ୍‌ମାଦିନୀ ରୂପ ଦେଖି ନଥିଲି କେବେ। ଭେଡ଼େନ୍ ନଦୀର ବନ୍ୟା, ଉପକୂଳ ଅଞ୍ଚଳର ବନ୍ୟା ଯେ କେତେ ଭୟଙ୍କର ହେଉଥିବ, ଏ ଅନୁମାନକୁ ପ୍ରମାଣିତ କରିଦେଲା। ଜଗଜୀବନ ରାମ ଥରେ କହିଥିଲେ। ନଦୀ ଓ ନାରୀ ଉଛୁଳିଲେ ଅସମ୍ଭାଳ ହୋଇ ପଡ଼ନ୍ତି। ଏକ ନଈର ପୋଳ ଉଦ୍‌ଘାଟନ ଅବସରରେ କହୁଥିଲେ। ତାଙ୍କ କଥାର ଉଛୁଳାରୂପ ମୁଁ ଦେଖିଲି ଭେଡ଼େନ ନଈର ବନ୍ୟାରେ। ଆଉ ଦେଖିଲି ଶ୍ରୀପୁରାର ମଣିଷ ପଣିଆ।

ଶ୍ରୀପୁରାର ଡ଼ାକଘର ଥିଲା ଲପଙ୍ଗା। ଡାକ ସହିତ ମୋର କାରବାର ବେଶୀ। ମୂଳରୁ ଚିଠି ଆସେ ଓ ଯାଏ। ଶ୍ରୀପୁରାରେ ଡ଼ାକଘରଟିଏ ଖୋଲିବାର ଆବଶ୍ୟକତା ଅନୁଭବ କଲୁଁ। ଅନ୍ୟମାନେ ବି ଅନୁଭବ କଲେ। ଚାକିରି କରୁଥିଲେ। ଏ ଦିଗରେ

ସେମାନେ ଆଗୁଆହେଲେ । ଶାଖା ଡ଼ାକଘରଟିଏ ମଞ୍ଜୁର ହେଲା । ଭୁର୍କାମୁଣ୍ଡାର ଦୀନବନ୍ଧୁ ପାଢ଼ୀ ପ୍ରାଥମିକ ସ୍କୁଲରେ ଶିକ୍ଷକଥିଲେ । ତାଙ୍କର ଅକ୍ଷର ଗୋଳ ହେଉଥିଲା । ନିଷ୍ଠାପର ଲୋକ । ଏଣୁ ତାଙ୍କୁ ପୋଷ୍ଟ ମାଷ୍ଟର ଦାୟିତ୍ୱ ଦିଆଗଲା । ଡ଼ାକ ବାଣ୍ଟିବା ପାଇଁ ଧ୍ରୁବା ନାୟକଙ୍କ ବଡ଼ ପୁଅ ପୂର୍ଣ୍ଣଚନ୍ଦ୍ର ନାୟକ ନିଯୁକ୍ତି ପାଇଲେ । ଲପଙ୍ଗା ରେଳ ଷ୍ଟେସନରୁ ଡ଼ାକ ନେବା ଆଣିବା ପାଇଁ ଦୋଳଗୋବିନ୍ଦ ଦୁବେର ବାପକୁ ରଖାଗଲା ।

ପୋଷ୍ଟ ଅଫିସଟିଏ ହେବାରୁ ଚିଠିପତ୍ର ସୁବିଧାରେ ଆସିଲା । ଖବର କାଗଜ ଆସିଲା । ପତ୍ରପତ୍ରିକା ଆସିଲା । ବାହାର ଜଗତ ସହିତ ଶ୍ରୀପୁରା ଯୋଡ଼ି ହୋଇଗଲା । ଶ୍ରୀପୁରାର ବିକାଶ ସହ ଡ଼ାକଘରଟି ସାମିଲ ହୋଇଗଲା । ଆମେ ସ୍କୁଲ ପାଣ୍ଠି ଡ଼ାକଘରେ ରଖିଲୁ । ଆଗରୁ ଝାରସୁଗୁଡ଼ା ଦଉଡ଼ିବାକୁ ପଡୁଥିଲା । ନହେଲେ ଲପଙ୍ଗା । ଶ୍ରୀପୁରା ପାଇଁ ଆଉ ଦୁଇଟି ଆବଶ୍ୟକତା ଥିଲା । ସ୍ୱାସ୍ଥ୍ୟ ସେବାର ସର୍ବନିମ୍ନ ସୁବିଧା ଓ ରେଳରାସ୍ତା ଉପରେ ରାସ୍ତାଟିଏ । ଶ୍ରୀପୁରା ଓ ଠେଲକୁଲି ସୀମା ମଝିରେ ଘଞ୍ଚ ଶାଳବଣ ଥିଲା । ଆକାଶକୁ ଛୁଉଁଥିବା ମୋଟା ମୋଟା ରେଙ୍ଗାଲ ଗଛ ଗାଁ ଦୁଇଟିର ପ୍ରହରି ପରି ଠିଆ ହୋଇଛନ୍ତି । ଆମ ସ୍କୁଲ ପିଲାଙ୍କ ପାଇଁ ଫର୍ନିଚର ନଥିଲା । ପିଲାଏ ତଳେ ବସୁଥିଲେ । ତଳେ ବସିବାର ଅଭ୍ୟାସ କରିଥିଲେ କିଛି କ୍ଷତି ହେଇ ନଥାନ୍ତା । ମାତ୍ର ସରକାରୀ ନିୟମ ଏମିତି ଅବାଗିଆ ଥିଲା ଯେ ଆସବାବପତ୍ର ନାଇଁତ ମଞ୍ଜୁରି ନାଇଁ । ଏଣୁ ଗଛକଟା ହେଲା । ଛେଲି ହଣା ହେବା ପରି କିଛି ଗଛ ହାଣ ଖାଇଲେ । ଠେଲକୁଲି ଗାଁକୁ ଗଲୁ । ନାନା ଟଣା ଓଟରା ପରେ ଗାଁ ବାଲେ ହଁକଲେ । ଗଛ ପାଇଲୁ । ଖଡ଼ିଆପାଲିର ଗୋବିନ୍ଦ ବଢ଼େଇ ତା' ଭାଇସହ ଆସି ଚଉକି, ଟେବୁଲ ଓ ଆଲମାରି ତିଆରି କଲେ । ପିଲାଙ୍କୁ ଚଉକି ଟେବୁଲ ନଦେଇ ମସିଣା ଦେଲେ କ୍ଷତିକଣ? ସରକାରୀ ବିଚାରରେ ଏଯାଏଁ ପରିବର୍ତ୍ତନ ଆସିନାହିଁ । ଫଳରେ ବଣ ନଷ୍ଟ ହବାର ଏହା ଏକ କାରଣ । ଏବେ ପରିବେଶ ପରିବେଶ ବୋଲି ହୁରି ପକାଇ ଲାଭକଣ? କୌଣସି ବିକାଶ ଅନ୍ୟର ବିନାଶ ପାଇଁ କାରଣ ନହେଉ । ଆମ ପ୍ରଶାସନ ସଦା ଏଥିପ୍ରତି ସଚେତନ ହେଲେ ଅନେକ ସମସ୍ୟା ଆପେ ଆପେ ତୁଟିଯାନ୍ତା ।

ପ୍ରଶାସନର ଦିବ୍ୟଦୃଷ୍ଟି ଫିଟିବା କଥା । ଆସନ୍ତୁ ଆମେ ଆମ ପିଲାଙ୍କୁ ତଳେ ବସିବାର ଅଭ୍ୟାସ କରେଇବା । ଏଥିରେ କହାରିର ମାନହାନି, ଧନହାନି କି ଅନ୍ୟ କୌଣସି ହାନି ହବନାହିଁ । ମଉନ ପରିବେଶକୁ ମୁଖର କରିବା କାହିଁକି?



## ୫୦. ମୂଳ ନ ଖୋଜି ଚୂଳ ମାଇଲେ

ନୂଆ ଉତ୍ସାହଟିଏ ଆସିଲେ ଲୋକେ ଅନୁଷ୍ଠାନଟିଏ ଗଢ଼ନ୍ତି । ଗଢ଼ିବା ବେଳର ନିଷ୍ଠା ପରେ ମଉଳି ଯାଏ । ପ୍ରଥମେ ପ୍ରଥମେ ଅନୁଷ୍ଠାନଟିର ପ୍ରତିଟି କ୍ରିୟା କଳାପରେ ଯୋଶ ଥାଏ । ଲୋକଙ୍କର ସହଯୋଗ ଥାଏ । ଲୋକଙ୍କ ଶ୍ରଦ୍ଧାରେ ଜାତ ଅନୁଷ୍ଠାନଟି କ୍ରମେକ୍ରମେ

ଅନ୍ୟମାନଙ୍କ ହାତକୁ ଚାଲିଯାଏ। ନୂଆ ଲୋକ ଆସନ୍ତି। ସରକାରଙ୍କ ହୁକୁମ ବରକରାର ରହେ। ସରକାର ଅନୁଷ୍ଠାନରେ ପଶିଲାଣି ଭାବି ଲୋକେ ନିଶ୍ଚିନ୍ତ ରହନ୍ତି।ଏବେ ସରକାର ବୁଝିବ। ସେ ଝାମେଲାକୁ ଆମର ଯାଉଛି କିଏ? ପୂର୍ବପରି ନିଜ ହାତରେ ପାଳିଥିବା ଅନୁଷ୍ଠାନକୁ ଅସମ୍ଭବ ନିଷ୍ଠୁରତାରେ ପରହାତକୁ ଠେଳିଦେଇ ନିଶ୍ଚିନ୍ତ ରହନ୍ତି। ଦୁର୍ଯୋଗକୁ ସେଇଠି ଅବାଗିଆ ଲୋକ ଯୁଟିଲେ ଅନୁଷ୍ଠାନ ଜନସାଧାରଣଙ୍କ ହାତ ମୁଠାରୁ ଖସି ଏମିତି ଏମିତି କେତେ ଜଣଙ୍କ ହାତକୁ ଚାଲିଯାଏ। ସେଇମାନେ ସେଇଠି ରାଜୁତି ଆରମ୍ଭ କରିଦିଅନ୍ତି। ଯିଏ ପଢ଼ିବ ଓ ଯିଏ ପଢ଼ାଇବ, ଏମାନଙ୍କ କଥା ଚୂଲିକୁ ଫିଙ୍ଗିଦେଇ ଏ ଦୁଇଙ୍କ ବ୍ୟତୀତ ଅନ୍ୟମାନେ ମାଡ଼ିବସନ୍ତି। ହର୍ତ୍ତାକର୍ତ୍ତା ବନିଯାନ୍ତି। ଅନୁଷ୍ଠାନର ସବୁ କ୍ରିୟା କଳାପ ଆନୁଷ୍ଠାନିକତାରେ, ଔପଚାରିକତାରେ, ଅନୁମାନେ ଗାଈ ଗୋବର ହଗେ ନ୍ୟାୟରେ, ଯେମିତି ହଉଛି ହଉରେ ଅଟକି ଯାଏ। ଲୋକଙ୍କ ଆଉ ଅନୁଷ୍ଠାନ ମଝିରେ ପାଚେରି ଉଠେ। ସେମାନେ ଅଲଗ ଅଲଗ ହୋଇଯାନ୍ତି। ଯେମିତି ସରସ୍ୱତୀ ପୂଜା, ଗଣେଶ ପୂଜା ଲୋକଙ୍କର ନୁହେଁ ଓ ସ୍ୱାଧୀନତା ଦିବସ ଓ ଗଣତନ୍ତ୍ର ଦିବସ କେବଳ ସରକାରଙ୍କର। କେମିତି ଓ କାହିଁକି ଗୋଟାଏ ଧାରଣା ପଶି ଆସୁଛି ଯେ ଆମ ଲୋକେ ଓ ଆମ ସରକାର ଅଲଗା ଅଲଗା ହୋଇ ଯାଉଛନ୍ତି। ଅଗଷ୍ଟ ପନ୍ଦର ଦିନ ଗାଁ ପରକ୍ରମା କଲାବେଳକୁ ଲୋକେ ପିଲାଙ୍କୁ କହନ୍ତି "କେନ୍ତା ବୋ ପିଲେ, ଆଏଜ ତମର ମଜାଆଏ। ତମର ସାଧୀନତା ପାଏଲ ବଲ"। ମୋର ଶିକ୍ଷକ ଜୀବନର ପ୍ରଥମରୁ ମୁଁ ଏହା ଅନୁଭବ କରିଛି ଯେ ଲୋକେ ଏ ଜାତୀୟ ଉତ୍ସବକୁ ଆମର ବୋଲି ଭାବିନାହାନ୍ତି। ଏକାମଟି ସରକାରର। ସରକାର ତରଫରୁ ଅନୁଷ୍ଠାନର ଜନସାଧାରଣଙ୍କ ସଂପୃକ୍ତି ଏଥିରେ ନାଇଁ। ଆମ ବ୍ୟବସ୍ଥା ବି ଲୋକଙ୍କୁ ଏଥିରେ ସାମିଲ କରାଇବାକୁ ଚାହେଁନାହିଁ।

ସ୍କୁଲରେ ଗଣେଶ ପୂଜାହୁଏ। ଗଣେଶ ପୂଜା ଆରଦିନ ନୂଆଁଖାଇ ହୁଏ। ଗଣେଶ ପୂଜାକୁ ଆଡ଼ମ୍ବରହୀନ ଭାବେ ଆମେ ସାରିଦେଉ। ସରସ୍ୱତୀ ପୂଜାକୁ ଜାକଜମକରେ କରୁ। ପୂଜାଟି ଖାଲି ପିଲାଙ୍କର ନୁହେଁ, ଅନୁଷ୍ଠାନର ନୁହେଁ। ଲୋକଙ୍କର, ଜନସାଧାରଣଙ୍କର। ପିଲାଙ୍କଠୁ ଚାନ୍ଦା ସଂଗ୍ରହ କରି ଖାଲି ଭୋଜିଟିଏ ଖାଇଦେଲେ ଚଳିବ ନାହିଁ। ଏହି ବିଚାରରେ ସରସ୍ୱତୀ ପୂଜାକୁ ଏକ ଗଣପର୍ବରୂପେ ପାଳନ କରିବାକୁ ଯୋଜନା କଲି। ତିନିଦିନ ପୂଜାହବ। ପ୍ରଥମଦିନ ପିଲାଏ କିଛି ନାଚ୍ ତାମସା କରିବେ। ତାଙ୍କ ସୃଜନୀ ଶକ୍ତିର ବିକାଶ ହେବ। ଦ୍ୱିତୀୟ ଦିନ, ଭାଗବତ, ସଂକୀର୍ତ୍ତନ ଯାତ୍ରା, କରମା ଆଦିରେ ଲୋକଙ୍କର ମେଳଣ ହେବ। ତୃତୀୟ ଦିନ ବିସର୍ଜନ ବେଳେ ଏକ ବିରାଟ ପଟୁଆରରେ ସରସ୍ୱତୀଙ୍କୁ ବିସର୍ଜନ ଦିଆହେବ। ଏ ଯୋଜନା ପାଇଁ ଲୋକଙ୍କର ପରାମର୍ଶ କଲି। ଶଙ୍ଖ, ଘଣ୍ଟା, ସଂକୀର୍ତ୍ତନ, ଯାତ୍ରା, କୃଷ୍ଣଗୁରୁ, କରମା, ଦୁଲଦୁଲିବଜା ଏପରି ବହୁ କିସମର ଲୋକନୃତ୍ୟକୁ ସାମିଲକଲୁ। ଫଳରେ ସରସ୍ୱତୀ ପୂଜା ଶ୍ରୀପୁରାର କେବଳ ଶିକ୍ଷାନୁଷ୍ଠାନର

ପୂଜା ନହୋଇ ଆଖପାଖ ଅଞ୍ଚଳର ପୂଜା ହୋଇଗଲା । ଗଣପର୍ବରେ ପରିଣତ ହୋଇଗଲା । ଲୋକେ ସବୁ କଲେ । ଖାଲି ଲୋକଙ୍କୁ ସାମିଲ କରି ଜାଣିଲେ ହେଲା ।

ଅନୁଷ୍ଠାନରେ ମୁଖ୍ୟତଃ ଦୁଇଟି ଜାତୀୟ ପର୍ବ ପାଳିତ ହୁଏ । ପ୍ରଥମଟି ଅଗଷ୍ଟ ପନ୍ଦର । ଦ୍ୱିତୀୟଟି ଜାନୁଆରୀ ଛବିଶ । ଅଗଷ୍ଟ ପନ୍ଦର ବର୍ଷା ଦିନର ଉତ୍ସବ । ଚିନ୍ତାକଲି ଗାଁର ସାମାନ୍ୟତମ ମଣିଷଟିଏ ଜାତୀୟ ପତାକାକୁ ଉତ୍ତୋଳନକରୁ । ସେ ବୁଝୁ ଯେ ଏପତାକାଟି ମୋର । ପ୍ରସ୍ତାବଟି ହଠାତ୍ ଅନେକଙ୍କୁ ଖାପଛଡ଼ା ଲାଗିଲା । ଶ୍ରୀପୁରାରେ ମୋର ପ୍ରଥମ ସ୍ୱାଧୀନତା ଦିବସ ପତାକାକୁ ଯେତେବେଳେ ଗାଁର ଚଉକିଦାର ଉତ୍ତୋଳନ କଲେ । କିଛିଲୋକ ବିଗିଡ଼ିଲେ । ଏଘଟଣାଟି ସାଧାରଣ ଲୋକଙ୍କ ମନକୁ ପାଇଲା । ସେମାନଙ୍କ ମନରେ ନୂତନ ଉତ୍ସାହ ଓ ପ୍ରେରଣା ଆସିଲା । ଏ ଜାତୀୟ ପର୍ବକୁ ସେମାନେ ଆମର ପର୍ବ ବୋଲି ବିଚାର କଲେ । ପରମ୍ପରା କ୍ରମେ ଦରିଦ୍ରତମ ବ୍ୟକ୍ତିଙ୍କ ହାତରେ ପତାକା ଉଡ଼େଇଲୁ । ଏପରି କରିବା ଦ୍ୱାରା କାହାରିର କିଛି କ୍ଷତି ହୋଇନାହିଁ ବରଂ ସଦା ଅବହେଳିତ ଓ ଅଯାଚିତ ଦେଶବାସୀଟିଏ ପତାକାକୁ ମୋର କହି ପାରିଲା । ଆଜି ଆମ ଜାତୀୟ ପର୍ବମାନଙ୍କରେ ମନ୍ତ୍ରୀ ମାନଙ୍କୁ ରଜା ବିଜେ କଲାପରି ଥାଟ ବାଟରେ ନ ଆଣି କୌଣସି ଦରିଦ୍ର ସୀମାରେଖା ତଳର ବ୍ୟକ୍ତିଟାକୁ ସେଇ ସମ୍ମାନ ଦେଲେ କେମିତି ହୁଅନ୍ତା? ସତରେ ଜାତୀୟ ଉତ୍ସବମାନ ଆମ ଲୋକଙ୍କର ହୋଇଯାନ୍ତା ।

ଭାରତ ସ୍ୱାଧୀନତା ପାଇଲା ହେଲେ ଆମ ଲୋକେ ଅନୁଭବକଲେ ଏ ସ୍ୱାଧୀନତା ଆମର ନୁହେଁ । ସରକାରର, ଦିଲ୍ଲୀର ବା ରାଜଧାନୀ ମାନଙ୍କର । ଲୋକଙ୍କର ବିଶ୍ୱାସରେ, ଜୀବିତ ନିଶ୍ୱାସରେ, ସେମାନଙ୍କ ରକ୍ତରେ ଆମେ ସ୍ୱାଧୀନତାର ଭାବ ଧାନ ବୁଣିଲାପରି ବୁଣି ପାରିଲୁ ନାହିଁ । ସେମାନଙ୍କ ଅନୁଭବରେ ଥୋଇ ପାରିଲୁ ନାହିଁ । ଏଣୁ ଆଜି ଜନ ସାଧାରଣ ସରକାରଠାରୁ ଅଲଗା ହୋଇ ଯାଇଛନ୍ତି । ଏଣୁ ସବୁ କ୍ଷେତ୍ରରେ ଏକ ଅବକ୍ଷୟ ଅଥୟ କରି ପକଉଛି । ପଚାଶ ବର୍ଷରୁ ବେଶୀ ହେଲେବି ଏ ସ୍ୱାଧୀନତା ଲୋକଙ୍କର ହୋଇ ପାରିନାହିଁ । ଗାଁର ଅସ୍ଥି ମଜ୍ଜାରେ ସ୍ୱାଧୀନତା ପଶି ପାରିନାହିଁ । ରାଜଧାନୀ ମାନଙ୍କରେ ରହି ଯାଇଛି । ମନ୍ତ୍ରୀମାନଙ୍କ ଜାମାମୁଣାରେ, ହାକିମ ମାନଙ୍କର ଫଣାରେ ଅଟକି ଯାଇଛି । ଆମ ପିଲାବେଳେ ଆମେ ବସ୍ତାନିରେ ଭରି ବୋହି ଆଣିଥିଲୁ । ଆମ ହାତରେ ଧରେଇ ଦେଇଥିଲେ ଆମ ସିପାହିମାନେ, ପାଇକମାନେ, ଜବାନ ମାନେ, କିଷାନ ମାନେ, ବିଜ୍ଞାନୀ ମାନେ, ଗାନ୍ଧି ମହାତ୍ମା ମାନେ, ନେହେରୁ ଚାଚାମାନେ, ସୁଭାଷ ବୋଷ ମାନେ । ଆମେ କିନ୍ତୁ ଆମର ଉତ୍ତର ପୀଢ଼ିର ପିଲାଙ୍କୁ ସମର୍ପି ପାରିଲୁ ନାହିଁ । କଉଠି କେମିତି ବସ୍ତାନିର କଣାରେ ଗଳିପଡ଼ିଲା । ଆମ ପିଲାଏ ଭାବିଲେ ଏ ସ୍ୱାଧୀନତା ବାପର, ଜେଜେର, ଆଉ କଉ ଗୋସେଇଁ ବାପର । ଆମର ନୁହଁ କି ଆମର ପୁଅ ନାତିଙ୍କର ନୁହଁ । ବିଡ଼ମ୍ବନା ଏଇଠି! ସେଇଥିପାଇଁ ଆଜି ଭାରତର ତମାମ୍ ଭୂଗୋଳରେ ଅସ୍ଥିରତା । ଇତିହାସ ବାଟ ଦେଖାଇ ପାରିଲାନି ଭୂଗୋଳକୁ । ଥୋକେ ସ୍ୱାଧୀନତାକୁ ଗିଳି ପକାଇ ଭୋଗୁଥିବାରୁ, ଆଉ ଥୋକେ

ନପାଇ ବିକଳ। ବୋମା, ବାରୁଦ ଓ ଭୁଜାଳିରେ ସ୍ୱାଧୀନତାକୁ ଛଡ଼େଇ ନବାକୁ ତତ୍ପର।

ଜାନୁଆରୀ ଛବିଶରେ ଆମେ ଗଣତନ୍ତ୍ର ଦିବସ ପାଳୁ। ନିଜ ଶାସନ ନିଜେ କରୁଛୁ ବୋଲି ବାନା ଉଡ଼ାଉ।ଏଇଦିନ ପରପାଇଁ କିଛି ତ୍ୟାଗ କରିଥିବା ଲୋକଙ୍କୁ ଡ଼ାକିବାକୁ ସ୍ଥିର କଲି। ଯିଏ ସମାଜସେବୀ ହୁଅନ୍ତୁ, ସ୍ୱାଧୀନତା ସଂଗ୍ରାମୀ ହୁଅନ୍ତୁ କି ଦେଶପ୍ରେମୀ ହୁଅନ୍ତୁ। ତାଙ୍କୁ ଆଣି ପତାକା ଉତ୍ତୋଳନ କରାଏଁ। ସେ ମହଶୟ ତାଙ୍କ ଅନୁଭୂତି ବୁଣନ୍ତି। ଆମେ ସ୍ୱତନ୍ତ୍ର ହେବାର ସ୍ୱାଦ ଚ଼ଖାନ୍ତି।

ଏ ଉତ୍ସବଟିରେ ଆମେ ଜନସାଧାରଣଙ୍କୁ ସାମିଲ କରି ପାରିଲୁ ନାହିଁ। ସେଇଥିପାଇଁ ଆମ ଲୋକେ ଏ ପର୍ବପ୍ରତି ଅନାଗ୍ରହୀ। ଉପର ଟେପରୁ ତଳକୁ ପାଣି ପଡ଼ିବା ପରି ଯାହା ସବୁ ହଉଛି, ଉପରୁ ଦିଲ୍ଲୀରୁ। କଳ ମୋଡ଼ିଦେଲେ ଆମ ମଫସଲୀ ଦୌଲତାବାଦ ମାନଙ୍କରେ ପଡୁଛି। ଦିଲ୍ଲୀ ଯାହା ଚାହିଁଲା, ଆମଲୋକେ ତାହା ଚାହିଁବାକୁ ବାଧ୍ୟ। ଆମ ଲୋକେ ଯାହା ଚାହାନ୍ତି, ଦିଲ୍ଲୀ ସେଇଟା ଚାହିଁଲେତ! ଚାହିଁଥିଲେ ଦଶା ଏମିତି ହୁଅନ୍ତା ନାହିଁ।

ତଳୁ ନେହି ବା ଭିତ୍ତି ଉଠିବା କଥା। ତଳ ମଜଭୁତ ରହିଲେ ଉପର ମହଲା ଉପରେ ମହଲା ରହିବ। ତଳକୁ ନଚାହିଁ ଆମେ ଉପର ଟାଣ କରିବାରେ ବ୍ୟସ୍ତ। ଫଳରେ ଭୁଷୁଡ଼ି ପଡୁଛି। ଆମେ ଗଲା ଗଲା ବୋଲି ହୁରି ଛାଡୁଛୁ।

କୌଣସି ବିକାଶ ମୂଳରୁ ହୁଏ। ଚୂଳରୁ ହବା ଆମକୁ ଜଣାନାହିଁ। ଆମ ମୂଳ ଛଡ଼ା ପ୍ରଶାସନ ସବୁ ଚୂଳରୁ କରୁଛି। ମୂଳତ ନାଇଁ ଚୂଳ ଶୂନ୍ୟରେ ଶୂନ୍ୟରେ ଠହରିବ କେମିତି? ନିର୍ମୂଳୀ ଲତାପରି। "ତହତହ ଯାଉ, ପାଖେଇ ଖା" ବୋଲି ଶିବେଇ ସାନ୍ତରାକୁ ବଟେଇବ କିଏ? ସଭିଏଁତ ବିଶୁ ମହାରଣା ଚୂଳ ମାରି ନଆସୁ ପଛେ ମିସ୍ତ୍ରୀ। ଧରମାକୁ ବଢ଼େଇକୂଳ ମିଶି ମାରି ସରିଲେଣି। ଗଣତନ୍ତ୍ରର କୋଣାରକ ରାମରାମ ନ ଡ଼ାକିବତ ଆଉ କିଏ ଡ଼ାକିବ?



## ୫୧. ଅବେଳର ବଉଳ

କୁକୁର ଜଙ୍ଘା ରଥଯାତ୍ରାରୁ ଫେରୁଥିଲେ ଧ୍ରୁବରାଜ। ସଞ୍ଜ ହୋଇ ସାରିଥାଏ। କୁନି ଛୁଆକ ମାଆ ପେଟେଇଲା ପରି ଅନ୍ଧାର ଆବୋରି ଧରିଥାଏ। ହଷ୍ଟେଲଭିତରକୁ ପଶିବି ପଶିବି ହବା ବେଳକୁ ହିନ୍ଦି ମାଷ୍ଟରଙ୍କଙ୍କ କୁଠି ସାମନାରେ ପଚାରିଦେଲି "କେତେ ବିକିଲ ହୋ"? ହିଙ୍ଗୁ ଶୁଙ୍ଘିଲା ପରି ସେ ମୁହଁ ବିକଟାଗ କହିଲେ। ନା' କିଛି ହେଲା ନାହିଁ। ଯାଉ ଦୁଇ ଚାରିଖଣ୍ଡ ଜବରଦସ୍ତି ଦେଲୁଁ। ତା ବଦଳରେ ଗୁଡ଼ିଆ ମାନଙ୍କରଠୁଁ ଖଜା ଖାଇଲୁଁ। ଭୋକ ବି କରୁଥିଲା। ପଇସା ମାଗିଥିଲେ ହୁଏତ ସେଇ କେତେ ଖଣ୍ଡବି ନେଇ ନଥାନ୍ତେ ସେମାନେ। ଏକେତ କବିତା ବହି। ଏବେ କଉ କବିତା ବହି ବିକ୍ରି ହେଉଛି ଯେ!

ମୁଁ ସପ୍ତମରେ ତ ଧ୍ରୁବରାଜ ଷଷ୍ଠରେ। ମୋଠୁଁ ବରଷକ ପଛରେ। ଏକା କୋଠରୀରେ ରହୁଥିଲୁ। ମୁଁ ମାଇନର ସ୍କୁଲରେ ପଢ଼ିବା ବେଳଠୁ ଗୀତ କବିତା ଲେଖିବା ଆରମ୍ଭ କରି ଦେଇଥିଲି। ସେ ବେଳର ଲେଖା କେବେ କେମିତି କାଗଜ ବନ୍ୟା ଭିତରୁ ପାଇଲେ ସେ ଗୁଡ଼ିକ ପଢ଼ିଲେ ହସମାଡ଼େ। କଞ୍ଚା ହାତର ହସ୍ତାକ୍ଷର କଷିଫଳ। ଅବେଳର ବଉଳ କି ସୁଆଦ ଥିବଯେ! ତଥାପି ସେ ଗୁଡ଼ିକ ଭିତରେ ବାଳୁତ ବେଳର ଫେଣସବୁ ବାରି ହଉଥିଲା। ଆମ ସାଙ୍ଗରେ ପଢୁଥିଲେ ମାଲିମୁଣ୍ଡାର ଗୌରୀ ଶଙ୍କର ନାଏକ। କବି ନନ୍ଦ କିଶୋର ପଟେଲଙ୍କ ଝିଅ ଅମ୍ବାଳିକା। ମୋର ସାତ ବେଳକୁ ଅବଦୁଲ ହମିଦ ଚୋକାଟା ଚାରି କିଲାସରେ। ଚୂଟି ମୂଷାପରି କୁନି କୁନି ଚେହେରା। ପିଲାଦିନରୁ ସେ ବେପାରି। ଖାତା ଓଜନେରୁ ଦିମାକ ଖଟାଇ ଏବେ ବେପାରରେ ଗିଳି ପକାଇବ ସଭିଙ୍କୁ।

କାହିଁକି କେଜାଣି କିଛି ଲେଖିଲେ ଛୁଆଁ ମୁଡୁଛି ବିଲେଇ ପରି କଉଠି ନା କଉଠି ଥୋଇବାକୁ ମନହୁଏ। କଉଠି ନ ଥୋଇଲେ ନିଦନାହିଁ। ନୂଆ ଲେଖକର ଛପା ଅକ୍ଷର ପ୍ରତି ଗୋଟିଏ ଅହେତୁକ ଆକର୍ଷଣ ଥାଏ। ମୋର ନ ଥିବ କାହିଁକି? ସେ ବେଳର କାଁଭାଁ କୋଉଠି ଛାପାଖାନାଟିଏ ଥିଲା ବା ନଥିଲା। ଝାରସୁଗୁଡ଼ାରେ ତ ଏକଇରବଳା ବିଶିକେଶନ ପରି ପ୍ରଭାତ ପ୍ରେସ।

ଧ୍ରୁବରାଜ ନାଏକ ଅଗରିଆ ପିଲା। ଅଗରିଆ ଜାତିଟା କୃଷିଜୀବୀ ପରିଶ୍ରମୀ। ଘର କରିବେତ ରାଜାପରି। ଅଳସ କଣ ଜାଣନ୍ତି ନାଇଁ। ସେଇଥି ପାଇଁ ଏମାନଙ୍କ ଘର କରଣାରେ ସମ୍ପନ୍ନ ଭାବଟିଏ ବାରି ହେଉଥାଏ। ଧ୍ରୁବରାଜ ବାବୁଙ୍କ ଘରର ଅବସ୍ଥା ଭଲଥିଲା। ଏଣୁ ହାତ ଖରଚକୁ ଆମଠୁ ବେଶୀ ପାଆନ୍ତି। କଣ ତାଙ୍କ ମନକୁ ଛୁଇଁଲା କେଜାଣି ଡାଆଣୀ ଲାଗିଲା ପରି ମାତିଲେ। ମଙ୍ଗଳୁର କବିତା ଛାପିବା। ଯାହାର ଯାହା ଶକତି ହେଲା ହଷ୍ଟେଲ ସାଙ୍ଗ ପିଲାଙ୍କଠୁ ଅଣେ ପଣେ ଠୁଳ କଲେ। ଚହିଁକୁ ଛାତ୍ରାବାସର ପିଲା। ସଦା କାଙ୍ଗାଳିଆ। ହାତରେ କଣଥାଏ ଯେ ଦେବେ? କଣ ପାଇଁ ଆଣିଥିଲେ କେଜାଣି ଧ୍ରୁବରାଜ ପ୍ରାୟସବୁ ଖରଚ ଉଠାଇଲେ। ପ୍ରଭାତ ପ୍ରେସରେ ଛପାହେଲା। ଧ୍ରୁବରାଜ ନାଏକ ମୋ' ଲେଖକ ଜୀବନର ପ୍ରଥମ ପ୍ରକାଶକ ବନିଗଲେ। ପାଁଶ ନା କେତେ କପି ଛପା ହୋଇଥିଲା। ବହିଟିର ନାଁ ଥିଲା "ଆଇଲା ବସନ୍ତ ଫେରି", ହାତ ପାପୁଲି ସାଇଜର ତ୍ରିନାଥ ମେଳିଆ ଆକାରର ବହିଟାଏ। ଏବେ ସେ ବହିଦେଖି ହସମାଡ଼େ ଓ ନିଜକୁ ନିଜେ ଥଟ୍ଟା କରିବାକୁ ଇଚ୍ଛାହୁଏ। କବି ନା କୁବି, ଫୁଲ ନୁହେଁ କି ବନ୍ଧା। ହେଲେ ହୋଇଥିବ ଗଣ୍ଡି କୁବି!

ଖରଚ ବାବଦକୁ ଗାଏ ମୋଟ ବତିଶ ଟଙ୍କା। ବହି ସିନା ବାହାରିଲା ବିକ୍ରି କରିବ କିଏ? ମଙ୍ଗଳ ବଜାରରେ ମଙ୍ଗଳୁର ବହି ବସେଇଲେ ଧ୍ରୁବରାଜ ଓ ଆଉ ସାଙ୍ଗମାନେ। କାହିଁକି କିଏ କିଣନ୍ତା? ସିଝା କନ୍ଦା ନ କିଣି ଏ ଅସିଝା ଶୁଖିଲା ଦରବକୁ ଛୁଅନ୍ତା ବା କିଏ? ସବୁ ଯୁଗର କବିର ସମଦଶା। ବହି ବାହାରିଲା ବାହାରିଲା ବୋଲି ଆମେ ହେଣ୍ଡି

ମାରିଲୁସିନା। ଗରାଖେ ଆମ ଆଡ଼ିକୁ ଅନାଇଲେ ବି ନାଇଁ। ମାତାମୁହାଁ କାଳୀ ଝିଅକୁ କେହି ଚାହାନ୍ତି ନାହିଁ ଯେପରି। ପାଠକର ଦୁଆର ମୁହଁରୁ ଫେରି ଆସିଲା ଆମ ବହି ଅଭିମାନିନୀ ବୋହୂଟିଏ ପରି।

ଆଗ ଯୁଗରେ ରାଜା ମହାର୍ଜା ମାନଙ୍କୁ ଭଣତି କରି ଲେଖୁଥିଲେ। ମକର କୁଣ୍ଡଳ, ପାଟଯଥା, ଶିରପା ମିଳୁଥିଲା। ଆମ ଯୁଗରେ କୁଆଡ଼େ ଧରାଧରି କଲେ କେତେ କଣ ମିଳୁଛି।

ଆମେ ସେ କଳାଟି ହାସଲ କରି ପାରିଲୁ ନାହିଁ। ବହି ବିକିବେ ଆଉ କଣ ଧ୍ରୁବରାଜ ବାପାଙ୍କ ପାଖରୁ ଗାଲି ଖାଇଲେ। ଆମରଃ ଏ କାରବାରର ବିନ୍ଦୁ ବିର୍ସଗ ବି ଜାଣି ନଥିଲେ ଆମ ଶିକ୍ଷକ ମାନେ। ପରେ ଜାଣିଲେ। କଉ ଗାଇ ମାରିଥିଲୁ ଯେ ଶୋଧିଥାନ୍ତେ। ଧନ୍ୟ ସେ ବାଳୁତ ବେଳର ସେ ପ୍ରକାଶକ! ଏ ଅଧମ କବି ହେବି ହେବି ବୋଲି ହେଲା କଉଠି? ବାଲ୍ୟ ବନ୍ଧୁ ଧ୍ରୁବରାଜଙ୍କୁ ଗାଳି ଖୁଏଇଲା ସିନା!

ଅନଗୁଳ ପାଖରେ ସେ ଗାଁ ରନ୍ତଲେଇ। ଝାଟି ମାଟିର ଗାଁ। କୁଆଁରୀ ଝିଅପରି। କଣ ହେଲା କେଜାଣି ଦେଖ ଦେଖ ବୋଇଲା ବେଳକୁ ବାଳୁତ ବାଳକଟିଏ ବାବା ହୋଇ ବିଜେ କଲା। କାହାଠୁଁ କେମିତି ସ୍ୱପ୍ନାଦେଶ ପାଇଲେ। ସେ କୁଆଡ଼େ ହାଁକି ଦେଲେ ସବୁ ସତ ସତ ହୋଇଯାଏ। ଫଳିଯାଏ। ଡ଼ାଆଣୀ ଲାଗିଲା ପରି ଲୋକେ ଧାଇଁଲେ। ସେ ବାବା ପାଣି ମନ୍ତୁରି ଛାଟି ଦେଲେ ରୋଗ ବାହାରି ଯାଏ। ଅନ୍ଧ ଆଖିପାଏ। ଛୋଟା ଦଉଡ଼େ। ଥାଅରି ପିଟିଲେ ଦୁଃଖ ହଟିଯାଏ। ବାଞ୍ଝ ପାଏ ପୁଅ। ଯିଏ ଯାହା ମାଗିଲା, ପାଇଲା। ଏମିତି ହଉ ହଉ ସେ ଗାଁ ଲୋକଭୀଡ଼ରେ ଦହି କାଦୋ ହେଲା। ଅବସ୍ଥା ଅସମ୍ଭାଳ। ଆମ ପ୍ରଧାନ ଶିକ୍ଷକ ଅପୁତ୍ରିକ। ପୁତ୍ରଦାନ କରୁଛି ଶୁଣି ଧାଇଁଲେ। ସେ କି ଯାଆନ୍ତେ? ତାଙ୍କ ଭାରିଯା ରହି ବସି ଦେଲେନି। କୁଞ୍ଜ ବିହାରୀ ପଣ୍ଡାଙ୍କ ପୁଅ ନଥିଲେ। ଏଣୁ ଗଲେ। ଏ ଅଧମ ଛାତ୍ରବି ତାଙ୍କ ସହ ଯାଇଥିଲା। ମୋର ପ୍ରଧାନ ଶିକ୍ଷକଙ୍କତ ଆଉ ପୁଅ ହେଲାନାହିଁ। ଏ ଅଧମ "ରନ୍ତଲେଇ" କବିତାଟିଏ ଲେଖିଲା ଯାହା। ତାକୁ ବି ଛପେଇଥିଲେ ଧ୍ରୁବରାଜ ନାୟକ। ମୁଁ ଝାରସୁଗୁଡ଼ାରୁ ଆସିଲି ଲରମ୍ଭା। ଧ୍ରୁବରାଜ ନାୟକ ତାଙ୍କ ବାଟରେ ସେ ଗଲେ। ଆଠଚାଳିଶ ବର୍ଷର ନିଷ୍ଠୁର ବ୍ୟବଧାନ ଆମ ଦୁହିଙ୍କୁ ବାଳୁତ ବୟସରୁ ଆଣି ବୁଢ଼ା କରିଦେଲା। ମୁଁ ତାଙ୍କୁ କଉଠି ଖୋଜିବି ଖୋଜିବି ହେବାବେଳକୁ ସେ ଜ୍ୟୋତି ବିହାରର କୂଳପତି। ଏକ ଅଭିନବ ଜ୍ୟୋତିରେ ଆଭାମୟ।

ସେତେବେଳକୁ "ମା ସମଲେଇ" ବହିର ଛପା ସରିଥାଏ। ନୂଆଖାଇରେ ବହିଟାକୁ ବଜାରରେ ଛାଡ଼ିବୁ ବୋଲି ସ୍ଥିର କରିଥିଲୁ।

ଧ୍ରୁବରାଜ ନାୟକଙ୍କୁ ଭେଟିବାକୁ ମନ ଛନଛନ ହେଲା। ଆନନ୍ଦ ଚନ୍ଦ୍ର ସାହୁଙ୍କ ସହ ୟୁନିଭାରସିଟିକୁ ଗଲି। କୁଳପତିଙ୍କ ଦପ୍ତରରେ ଅତୀତଟା ଓହ୍ଲାଇ ଆସିଲା ଭାରିମେଘ ପରି। ବରଷିବି ହେଉଥିଲା ଯେ କହିଲି,ରହିଯା।

ଶରତର ପରିଚ୍ଛନ୍ନ ଆକାଶରେ ତଥାପି ମେଘଥିଲା । "ମା ଆସିବେ । ସର୍ବାର୍ଥସାଧିକେ ଦେବୀ ନାରାୟଣୀ ଦୁର୍ଗେ ବିରାଜିବେ ଏ ମାଟିରେ ଓ ମଣିଷର ରକ୍ତରେ ପ୍ରାଣରେ । ପାର୍ବଣର ଆତୁର ପ୍ରବଣତା । 'ମା ସମଲେଇ' ବହି ଉନ୍ମୋଚିତ ହେବ । ୨୨.୯.୯୮ ସନ୍ଧ୍ୟାରେ ସମଲେଶ୍ୱରୀ ମନ୍ଦିରରେ ଭୋଗ ମଣ୍ଡପରେ ଉତ୍ସବର ଏକ ମାହୋଲ । ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଗହଣରେ ବିରାଜମାନ କଲେ ବନ୍ଧୁ ଧ୍ରୁବରାଜ ନାୟକ । ଆସିଥିଲେ ଚମାର ପାଢ଼ୀ, ଆସିଥିଲେ ମଧୁ ପତି, ନୀଳମାଧବ ପାଣିଗ୍ରାହୀ, ଶଶାଙ୍କ ପଣ୍ଡା, କାଳୀ ଶଙ୍କର ବେହେରା, ଭାଗବତ ନନ୍ଦ । ଲହୁଣୀ ପରି କୋମଳ ଅଥଚ କଳାପ୍ରିୟ କିଛି ଲୋକ ଯେଉଁମାନଙ୍କୁ ଗହଣରେ ପାଇଲେ ଯେ କେହିବି ଗର୍ବ କରିବ । ସଭାକୁ ସଭାପତି ଚଳେଇ ନେଲେ ଶିବ ତ୍ରିପାଠି, ଦ୍ୱାରିକା ନାୟକ ଓ ଶ୍ୟାମ ସୁନ୍ଦର ଧର । ବହିକୁ ବନ୍ଧନରୁ ଫିଟାଇଲେ କୁଳପତି ଧ୍ରୁବରାଜ ନାୟକ । ମା'ଙ୍କ ଦିବ୍ୟ ଆଭା ବିଭାବରୀକୁ ବିଦାରି ଦେଲା । ଧ୍ରୁବରଜ ନାୟକ ଅତୀତକୁ ଉଖାରିଲେ । ଅର୍ଦ୍ଧ ଶତାବ୍ଦୀ ତଳର ସେ ଅତୀତଟା ସେ ବାଲୁତ ବେଳା ଆମ ସାମନାରେ କେତେ ଫରଚା ଦିଶୁଥିଲା ସତେ! ଗୁଣଗ୍ରାହୀ କୁଳପତିଙ୍କ ଆଖିପତା ଲୁହର ଓଜନରେ ନଇଁ ପଡୁଥିଲା । ମଣିଷ ପଣିଆର ଧ୍ରୁବତାରା ଟକ ଟକ କରୁଥିଲା ଦୂର ଦିଗନ୍ତରେ ।

ଅତୀତରେ ହଜି ଯାଇଥିଲା ଦଇଟି ବୟସ୍କ ପ୍ରାଣ ଚେତେଇ ଦେଲେ ଆନନ୍ଦ ଚନ୍ଦ୍ର ସାହୁ "ଚାଲନ୍ତୁ ଯିବା' । ମାଙ୍କ ଆଳତି ବେଳର ବାସ୍ନା ମହକେଇ ଦେଲ [illegible]ୂରର ପରସ୍ତ ପରସ୍ତ ଭେଦକରି ।



## ୫୨. ଶରତ ରାତିର ତାରା

ତମ ରାଧାନାଥୀ ଚିଲିକାରେ କିଛି ବୋଲି କିଛି ନାହିଁ । ଖାଲି ପାଣି ପାଣି ପାଣି । ନୀଳାମ୍ବୁ ହୋଇପାରେ ମରାଳ ମାଳିନୀ ନୁହେଁ କିନ୍ତୁ । ଏତକ କହି କହି ପଶି ଆସନ୍ତି ଶାନ୍ତ, ସୌମ୍ୟ ଗୌରବପୁ ଅଧ୍ୟାପକ ।

୧୯୫୫-୫୬ ର କଥା । ଗଙ୍ଗାଧର ମେହେର କଲେଜରେ ମୁଁ ଆଇ.ଏ ଶ୍ରେଣୀର ଛାତ୍ର । ଅଧ୍ୟକ୍ଷ ଥାନ୍ତି ଡ଼ଃ ମାୟାଧର ମାନସିଂ । ସେତେବେଳେ ଆମ ମେହେର କଲେଜରେ କେତେ ଜଣ ନାଆଁକରା ଅଧ୍ୟାପକ ଥାନ୍ତି । କେ.ପି.ଏ ପିଲାଇ (କ୍ରିଷ୍ଣା ପ୍ରସାଦ ଆଖୁତା ନନ୍ଦ ପିଲାଇ) ଇଂରାଜି ଅଧ୍ୟାପକ । ଠାଣିରେ ଯେମିତି ବାଣୀରେ ସେମିତି । କୀର୍ତ୍ତନ ବିହାରି ପଟ୍ଟନାୟକ ହସନ୍ତି ନାଇଁ କିନ୍ତୁ ହସେଇ ପାରନ୍ତି । କେ.ଭି.କେ ରାଓ । ନାରାୟଣ ମହାପାତ୍ର, ରାଧାକାନ୍ତ ମିଶ୍ର, ଦୁର୍ଗା ପ୍ରସାଦ ନାୟକ, ବଳଭଦ୍ର ଦାସ, ଜି.ପାର୍ଥ ସାରଥି, ତାଲଡ଼ା ବିଶାରଦ ଦାଶରଥି ମିଶ୍ର, ମେଜର ବଟକୃଷ୍ଣ ମହାନ୍ତି । ବାଇଧର ମହାନନ୍ଦିଆ, ଚିନ୍ତାମଣି ବେହେରା, ଗୌର କିଶୋର ଦାସ (କୁଳପତି ଉତ୍କଳ ବିଶ୍ୱବିଦ୍ୟାଳୟ) ନିଜ ନିଜ ଇଲାକାରେ

ଅପ୍ରତିଦ୍ୱନ୍ଦୀଥିଲେ। ତାଙ୍କର ବିଚକ୍ଷଣତା ଆମକୁ ତାଙ୍କ ଆଡ଼କୁ ଟାଣି ନେଉଥିଲା। ମେହେର କଲେଜର ଆଗ ବେଳର, ସେ ଚେହେରା କାହିଁ? ଏବେ ଖୁବ୍ ବଢ଼ିଛି। ଗୁଣରେ, ଅବଗୁଣରେ ବି।

ଆଗରୁ ଜଣେ ଅଧ୍ୟାପକ ଚିଲିକା ପଢ଼ାଉଥିଲେ, ଆମକୁ ଭାରି ବୋର୍ ଲାଗୁଥିଲା। ଆମେ ତାଙ୍କଠୁ ମୁକୁଳିବାକୁ ଚାହୁଁଥିଲୁ। ଡ଼ଃ ମାୟାଧର ମାନସିଂଙ୍କୁ କହିଲୁ। ସେ ଚତୁରତାର ସହିତ ଆମକୁ ଧରା ନପକାଇ ଅଧ୍ୟାପକ ବଦଳାଇ ଦେଲେ। ସେଇଠୁ ଆସିଲେ ଗୋଳକ ଧଳ। ତାଙ୍କ ପଢ଼ାଇବା ଢ଼ଙ୍ଗ ଲାଗୁଥିଲା ଅଲଗା। ଚମତ୍କାର ଆବୃତ୍ତି କରୁଥିଲେ। ନାଟକର ସଂଳାପ କହିବା ପରି ଯୁବକ ପିଲାଙ୍କ ଚଞ୍ଚଳ ଉଦ୍ଦାମମନକୁ ଅଠାକାଠିରେ ବାନ୍ଧି ରଖିବା ପରି ପାଠ୍ୟକୁ ରସାଣିତ କରୁଥିଗେ। ତାଙ୍କ ପରିବେଷଣ କୌଶଳ ଆମକୁ ମନମୁଗ୍ଧ କରି ରଖୁଥିଲା। ଧଳ ସାର୍ ଓଡ଼ିଆ ଓ ସଂସ୍କୃତରେ ଅଧ୍ୟାପକ ଥିଲେ। ଆଗେ ଏଇ ଦୁଇ ବିଷୟ ପାଇଁ ଜଣେ ଅଧ୍ୟାପକ ରହୁଥିଲେ।

୧୯୧୯ ମାର୍ଚ୍ଚ ମାସ ତିନି ତାରିଖରେ ତାଙ୍କ ଜନ୍ମ। ଢେଙ୍କାନାଳର ଗଞ୍ଜେଇ ଡ଼ିହ ତାଙ୍କ ଗାଁ। ତାଙ୍କ ନାଁ ଥିଲା ଗୋଳି। ୧୯୭୪ ଜୁନ୍ ୨୪ ସୋମବାର ସନ୍ଧ୍ୟା ୭ଟା ୧୫ ମିନିଟରେ କଟକ ଡ଼ାକ୍ତରଖାନାରେ ଶେଷ ନିଶ୍ୱାସ ତ୍ୟାଗକଲେ।

ଗଞ୍ଜେଇ ଡ଼ିହରେ ଜନ୍ମ ବେହଲି ବୋଧହୁଏ ତାଙ୍କ ଭାଷାର ଗଞ୍ଜେଇ ଯିଏ ଖାଇଛି, ତାକୁ ନିଶା ଲାଗିବହିଁ, ଲାଗିବ। ସବୁ ଚୋର ବିରହି ହାଟେ ଠୋଳ ପରି ଆମେ ଯେଉଁମାନେ ସାହିତ୍ୟ ଆଡ଼କୁ ଟିକିଏ ଢ଼ଳି ପଡ଼ିଥିଲୁ। ତାଙ୍କୁ ବେଢ଼ିଗଲୁ। ସେ ବିଦେଶରୁ ତାଜା ଫେରିଥାନ୍ତି, ଆମେ ପ୍ରଥମେ ପ୍ରଥମେ ତାଙ୍କୁ ଡରୁଥାଉଁ। ପରେ ପରେ ତାଙ୍କ ସହ ନିବିଡ଼ତା ବଢ଼ିଲା। ସେ ଭାରି କଉତିକିଆ ଲୋକ। ପିଲାଙ୍କ ପାଖରେ ଗମ୍ଭୀର ଝଡ଼ ପୂର୍ବରୁ ଆକାଶ ପରି। ସହକର୍ମୀ ମମାନଙ୍କ ସହ ବେଶ ମେଳାପୀ। ଏଣୁ ତାଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ନାନା ଲୋକଙ୍କ ନାନା ମତ। ମୋର ପ୍ରିୟ ଅଧ୍ୟାପକ ଭାବେ ମୁଁ ତାଙ୍କୁ ନିକଟରୁ ଜାଣେ। ଦେଖାହେବା ମାତ୍ରେ କହନ୍ତି "ମଙ୍ଗଲୁ ଆଗକୁ ତମପାଇଁ ଭଲ ସମୟ ଆସୁଛି।" ସେ ମଙ୍ଗଲୁ କହି ପାରନ୍ତି ନାହିଁ। ସେ ଜ୍ୟୋତିଷ କି ଗଣକ ନଥିଲେ। ହେଲେ ତାଙ୍କ କଥା ସତ ସତ ଉତୁରି ଆସୁଥିଲା।

ଅଧ୍ୟାପକ ଧଳ ଚାକିରୀ ଜୀବନରେ ମୂଳରୁ ଚୂଳଯାଏ ଗୋଟାପଣେ ନିଷ୍ଠାବାନ ଥିଲେ। ବିଷୟକୁ ନିଠେଇ ପଢ଼ୁଥିଲେ। ବିଷୟକୁ ପିଲାଙ୍କ ଭିତରକୁ ଭେଦିଲା ଭଳି ଥୋଉଥିଲେ। କୌଶଳଟି ଥିଲା ତାଙ୍କ ନିଜର। ସଂସ୍କୃତିଟିକୁ କ୍ଷସ ଆମ କି ଜାମୁ ଭାବୁନଥିଲେ। ସବୁଠୁ ଭଲ ଜିନିଷକୁ ସଂସ୍କୃତି ବୋଲି କହୁଥିଲେ। ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ଜୀବନ୍ତ ସମନ୍ୱୟଟିଏ ଥିଲେ। ବକ୍ତବ୍ୟକୁ ସ୍ଥାନ, କାଳ, ପାତ୍ରକୁ ନଜରରଖେଇ ଥୋଉଥିଲେ। ରୋକଠୋକ ମୁହାଁ ମୁହିଁ କହିବାର ଡର କି ସଙ୍କୋଚ ନଥିଲା

ଚାକିରି। ଚାକିରି ବାକିରିର ଏକ ଗଣ୍ଡଗୋଳିଆ ପରିସ୍ଥିତିରେ ମତଦେଇ ଥରେ ସେ କହିଥିଲେ। "ଆଜିକାଲି ଶାସନରେ ବହୁଲୋକଙ୍କ ବିଷୟରେ ବହୁ ଅନାଚାରର କାହାଣୀ ଶୁଣା ଯାଉଛି। ସେମାନେ ନିଜକୁ ନିଜେ ଶୁଦ୍ଧ କରିବା ଦୂରର କଥା, ସରକାର ବି ସେମାନଙ୍କୁ ଛୁଇଁବାର ସାହସ ପାଉନାହିଁ। ଓଲଟା ସେମାନଙ୍କୁ ପ୍ରମୋଶନ ଦିଆଯାଉଛି।" ଆମ ନିଜ ସଂସ୍କୃତିରେ ବିଶ୍ୱାସ ରଖିଥିବା ଲୋକେ କିପରି ଅନ୍ୟର ସଂସ୍କୃତିକୁ ସନ୍ଦେହ କରନ୍ତି। ତାକୁ ସ୍ପଷ୍ଟ କରିବାକୁ ଯାଇ ଧଳ ସାର କହିଛନ୍ତି "ବିଶ୍ୱାସରେ ବିଷ ଖାଇଲେ ପାରହୁଏ। କିନ୍ତୁ ଅବିଶ୍ୱାସରେ ଅମୃତ ମଧ୍ୟ ଅଜୀର୍ଣ୍ଣ ସୃଷ୍ଟିକରେ।"

ପ୍ରଫେସର ଧଳ ଅନେକ ଅନୁବାଦ କରିଛନ୍ତି। ମୂଳ ଲେଖାରୁ ତାଙ୍କ ଅନୁବାଦ ଆହୁରି ପାହୁଣ୍ଡେ ମାଡ଼ି ଯାଇଛି। କାରଣଟି ହେଲା ତାଙ୍କରି ଚମତ୍କାର ଗଦ୍ୟଶୈଳୀ। ତାଙ୍କୁ ଆମ ମାଟିର ଡେଲ୍‌କାନେଗୀ  କହିଲେ ବୋଧହୁଏ ଅଧିକ ହେବନାହିଁ। "ଅମର ଜୀବନ" ଆଉ "କଥାମାଳା"ରେ କହିବାର ଢ଼ଙ୍ଗଟି ଡେଲକନେଗୀ  ଙ୍କୁ ବି ଟପି ଯାଇଛି। ପାଠକଙ୍କୁ ଟାଣି ନିଏ ଗୋଟାପଣେ। ଡେଲକାନେଗି ତାଙ୍କୁ ଭେଟିଲେ କହନ୍ତେ "ଧଳଜୀ ତମେ ମୋଠୁ ବଳିଗଲ।" ଭାଷାରେ ତାଙ୍କଭଳି ପଣ୍ଡିତ ନାହାନ୍ତି? ଧ୍ୱନି ବିଜ୍ଞାନ, ଭାଷା ବିଜ୍ଞାନରେ ସେ ନୂଆ ରୁଚି ଓ ଜ୍ଞାନ ପରଷିଲେ। ସବୁ ପ୍ରକାର ଲେଖାରେ ସେ ଠିକ୍ ଜାଗାରେ ଠିକ ଶବ୍ଦ ଥୋଇବାର ଓ ଠିକ୍ କଥାର ଯାଦୁକର ଥିଲେ। ଲଘୁ ହାସ୍ୟରସର ଛୁଙ୍କ ତାଙ୍କ ପ୍ରତିଲେଖାରେ  ମିଳେ। କଥାକୁ ଫେଣେଇ ଫୁଲେଇ କଉତିକିଆ କରି ପାରୁଥିଲେ। ପାଠକର ଅବବୋଧକୁ ଚଞ୍ଚଳ ଛୁଇଁବାର କାରିଗରି ତାଙ୍କୁ ଜଣାଥିଲା। ପଢ଼ିବାକୁ ସୁଖ ଲାଗିବ, ସରସ ଉପନ୍ୟାସର ସ୍ୱାଦ ବି ମିଳିବ।

ଅଧ୍ୟାପକ ଧଳଙ୍କର ଆଉ ଯାହା ବାହାଦୁରୀ ଥାଉ ନା କିଆଁ ସବୁବେଳେ ମୁଁ ତାଙ୍କର ଶୈଳୀର ସ୍ତାବକ ଓ ଓଡ଼ିଶାକୁ ଆଉ କିଛି ଦିଅନ୍ତୁ କି ନ ଦିଅନ୍ତୁ ଓଡ଼ିଆ ଗଦ୍ୟକୁ ମନୋରମ ଶୈଳୀଟିଏ, କଳାର କ୍ୟୋମାର୍ଯ୍ୟଟିଏ ଦେଇ ଯାଇଛନ୍ତି। ତାଙ୍କ ପାଇଁ ସେ ନିଜେ ପରିପୂରକ। ତାଙ୍କ ଗଦ୍ୟ ଶୈଳୀରେ କେହି ଟିପ ମାରି ପାରିବେନି। ଏଇ ତଳ ଅଂଶଟି ତାର ପ୍ରମାଣ।

'ବୋଉ କାହିଁକି କାନିରେ ଗଣ୍ଠି ପକାନ୍ତି। ତା' ଭିତରେ ବହୁତ ବଡ଼ କଥା ଅଛି। ପରେ ତମେ ଯେତେବେଳେ ଜାଣିପାରିବ ଆଶ୍ଚର୍ଯ୍ୟ ହେବ। ଚାକର ବାକର, ପୁଅଝିଅ, ବୋଉର ବାର ଜଞ୍ଜାଳ। ଏତେ ଜଞ୍ଜାଳ ଭିତରେ କଥାଟା ମନେ ରହିବ ନାହିଁ ବୋଲି ସେ କାନିରେ ଗଣ୍ଠି ପକାଇଥାନ୍ତି। ବାପା ଆଇଲେ ଗଣ୍ଠିଟା ଦେଖିଦେଲେ ସବୁ କଥା ମନେ ପଡ଼ିଯାଏ। ମୋଟ ଉପରେ କାନିର ଗଣ୍ଠିଟା ପଛ କଥାକୁ ମନେ ପକାଇଦିଏ।"

ଏଇମିତି ଥିଲେ ଆମ ଧଳସାର। ଗୋଳକ ବିହାରୀ ଧଳ। ଆଉ ଏମିତି ଥିଲା ତାଙ୍କ ଧଳା ପଣ। ଶରତ ରାତିର ତାରା ପରି।



# ୫୩. ସମୟ ଯଦି ଅଟକିଥାନ୍ତା

ସମ୍ବଲପୁର ସହରଟି ମୋ ଗାଁରୁ ଡାଳ ଶୁଖା ତିନିକୋଶର ବାଟ। ଯେତେବେଳେ ସହରକୁ ଆସେଁ, ମୋ ବଡ଼ ମାମୁଁ ନୀଳକଣ୍ଠ ତ୍ରିପାଠୀଙ୍କ ସହ ଆସେଁ। କେତେବେଳେ ଦୁର୍ଗାପୂଜା ଦେଖିବା ପାଇଁତ ଆଉ କେତେବେଳେ ଶୀତଳ ଷଷ୍ଠୀ ଦେଖିବାପାଇଁ। ବଡ଼ ବଜାର ଥିଲା କିଣା ବିକାର କେନ୍ଦ୍ରସ୍ଥଳ। ରବିବାର ଦିନର କମଲି ବଜାର ସାପ୍ତାହିକ ବଡ଼ ହାଟଟିଏ। ସେ କାଳର ଗୋରା ସାହେବ କମ୍ବରଲେଜ ସାହେବଙ୍କ ନାଁରେ ବସିଛି। ଏ ବଜାରରେ ସବୁ ମିଳେ। ଗୋରୁଠୁଁ ଗୁଆ ପର୍ଯ୍ୟନ୍ତ ଆଉ ଚଟୁରୁ ଚାମଚ। ସାନ ସଡ଼କରେ କଂସା ବାସନ। ଶିଳ ଶିଳପା ଯାହାକୁ ଯେତେ। କୁଆଁରୀ ଝିଅ ପରିଥିଲା ଏ ସହର। ଗୁମର ଓ ଗହଣା ରେ ଏବେ ଖୁନ୍ଦି ହେଲାଣି। କଂକ୍ରିଟ ବୋଝରେ ଗୁଡ଼ିଆଣୀପରି ଲଦରୋ ଭଷରୋ।

ଝାଡ଼ୁଆ ପଡ଼ାର ପଶ୍ଚିମ ପଟକୁ ଥିଲା "ସାରସ୍ୱତ ପୁସ୍ତକ ଭଣ୍ଡାର"। ହରିଚରଣ ପାଢ଼ୀ ମାଲିକ। ସେଠି ନାଏକ ଆଉ କୁଳଧର ଦିଜଣ କାମ କରୁଥିଲେ। ନିମକ ସଚ୍ଚା ମଣିଷ। ଯେ ଦେଖିବ ଭାବିବ ଏମାନେ ହିଁ ହରିଚରଣ ପାଢ଼ୀଙ୍କ ନିଜଲୋକ। ସାରସ୍ୱତ ପୁସ୍ତକ ଭଣ୍ଡାର ଏବେ ଗୋଳ ବଜାରରେ। ପୁରୁଣା ମାଲିକ ଗଲେଣି। ନୂଆ ମାଲିକ ବସନ୍ତି। ହେଲେ ସେଇ ବୁନିଆଦି ଢ଼ଙ୍ଗ ସେଇ ପରମ୍ପରା, ସେଇ ବ୍ୟବହାର। ମଣିଷକୁ ମଣିଷ ମଣିବାର ସେଇ ପ୍ରକୃତି। ହରିଚରଣ ପାଢ଼ୀ ନାହାନ୍ତି। ତାଙ୍କ ପୁଅ ନିର୍ମଳ ଚନ୍ଦ୍ର ପାଢ଼ୀବି ନାହାନ୍ତି। ଏବେ ନିର୍ମଳଙ୍କ ପୁଅ ପ୍ରଦୀପ କୁମାର ପାଢ଼ୀ ଓ ସଞ୍ଜୟ କୁମାର ପାଢ଼ୀ ବହି ଦୋକାନ ବୁଝନ୍ତି। ବଡ଼ ପୁଅ ଦିଲ୍ଲିପ କୁମାର ପାଢ଼ୀ ସୁଜାତା ହୋଟେଲର ମାଲିକ। ସାନପୁଅ ଦୀପକ କୁମାର ପାଢ଼ୀ ବି ସେଇ ହୋଟେଲରେ ସାନ ଦୋକାନଟିଏ ମେଲେଇ ବସନ୍ତି। ଢ଼େର ପାଠ ପଢ଼ିଛନ୍ତି ଚାରିଭାଇ ହେଲେ ଚାକିରି କରନ୍ତି ନାହିଁ। ଡ଼ଜନ ଡ଼ଜନ ଲୋକଙ୍କୁ ଯିଏ ଚାକିରି ଦିଅନ୍ତି। ସେ ପୁଣି ଚାକିରି କରନ୍ତେ କଉଠି? ହେଲେ ଏ ଚାକିରିଆ ଯୁଗରେ ମାଲିକର ମରମ ବୁଝିବା ଲୋକ କମ।

ପ୍ରଥମରୁ ଲୁଗା ଦୋକାନଥିଲା ହରିଚରଣ ପାଢ଼ୀଙ୍କର। ସମ୍ବଲପୁରୀ ଲୁଗାର ବିକାଶ ଦିଗରେ ହରିଚରଣ ପାଢ଼ୀଙ୍କର ବି କିଛି ଦାନ ଅଛି। ଲୁଗା ସାଙ୍ଗକୁ ବହି ବିକାବି ଆରମ୍ଭ କରିଥିଲେ ଝାଡ଼ୁଆପଡ଼ାରୁ। ଏବେ ବହି ଦୋକାନ ଅଲଗା ହୋଇଛି। ଟାଙ୍କ ପୁଏ ନିଜ ନିଜ ରୁଚିରେ ପସରା ମେଲାଇ ପେଟ ପୋଷୁଛନ୍ତି। ନିର୍ମଳ ଚ଼ନ୍ଦ୍ର ପାଢ଼ୀ ବହି ବେପାରକୁ ଆଦରିଲେ।

ଓଡ଼ିଶାରେ ବହି ପ୍ରକାଶନର କାମ ସୁରୁ ହୋଇଥିଲା ଗଞ୍ଜାମର ବ୍ରହ୍ମପୁରରୁ। କଟକର ସବୁ ବଡ଼ ବଡ଼ ବହି ଦୋକାନର ମାଲିକ ବ୍ରହ୍ମପୁରରୁ ଆସି କଟକରେ ଶାଖାମାନ

ଖୋଲିଲେ। ତା'ପରେ କଟକ ବହି ଛପା ଛପିର ପେଣ୍ଠ ବନିଗଲା। ଛାପାଖାନା ବାବୁନ ବଜାରରୁ ଚେପନ ଗଳିକୁ ଫଇଲି ଗଲା। ସମ୍ବଲପୁରରେ ବହି ଛପା କାମଟି ପ୍ରଥମେ ନିର୍ମଳ ଆରମ୍ଭ କଲେ। ସେ କଲିକତାରୁ ବହି ଛପେଇବାକୁ ବେଶୀ ପସନ୍ଦ କଲେ। କଲିକତାର ଛାପା ଓ ଗେଟ୍‌ଅପ କଟକଠାରୁ ଆନୁପାତିକ ଭାବେ ପରିଚ୍ଛନ୍ନଥିଲା।

ନିର୍ମଳ ଚନ୍ଦ୍ର ପାଢ଼ୀ ମୋର ତିନୋଟି ବହି ଛାପିଥିଲେ। "ଅନନ୍ୟା" କବିତା ବହି। "ଅଗ୍ନି ସମ୍ଭବା" ଗପବହି। 'ରୋମର ରୂପସୀ' ଅନୁବାଦ। 'ରୋମର ରୂପସୀ' ଆଲବେର୍ଟୋ ମୋରିଭିଆଙ୍କ "ଦି ଓମେନ ଅଫ୍ ରୋମ୍‌ର" ଅନୁବାଦ। ଏହି ସବୁ ବହି ୧୯୬୩ ଭିତରେ ପ୍ରକାଶ ପାଇଥିଲା।

ଅନୁମତି ପାଇଁ ମୁଁ ମୋରାଭିଆଙ୍କୁ ଚିଠି ଲେଖିଥିଲି ଡ଼ିସେମ୍ବର ୨୫ରେ ଉତ୍ତର ପାଇଲି ଦଶଦିନ ଭିତରେ। ଇଟାଲିର ମିଲାନ ବୋଲି ଏକ ସହର। ସେଠାକାର ବମ ପିଆନି ଏଣ୍ଡ କମ୍ପାନୀ ହଉଛି ବହିଟିର ପ୍ରକାଶକ। ପ୍ରକାଶକ ମୋତେ ଜଣାଇ ଦେଲେ। ତାଙ୍କ ଲେଖକ କୁଆଡ଼େ ଭୂମଧ୍ୟ ସାଗର କୂଳସ୍ଥ କେପ୍ରି ସହରରେ ଛୁଟି କଟଉଛନ୍ତି। ସେଠୁ ଫେରିଲେ ଅନୁମତି ଦେବେ। ବିନା ଦ୍ୱିଧାରେ ମୋରାଭିଆ ଅନୁମତି ପତ୍ର ପଠାଇଦେଲେ କୌଣସି ଦେୟ ମାଗିନଥିଲେ। ତିନି ଖଣ୍ଡ ବହି ପଠାଇବାକୁ ଅନୁରୋଧ କଲେ। ସତକୁ ସତ ଲେଦର ବାଉଣ୍ଡ ତିନିଖଣ୍ଡ କପି ନିର୍ମଳ ଚନ୍ଦ୍ର ପାଢ଼ୀ ପଠାଇଦେଲେ। ଲେଖକ ଲେଖକ ଭିତରେ ବିଶ୍ୱବ୍ୟାପୀ ଏପରି ଏକ ନିବିଡ଼ତା ଥିଲା। ଏବେ ନାହିଁ।

ସମ୍ବଲପୁର ସହରକୁ ଯିବିମାନେ ନିର୍ମଳ ପାଢ଼ୀ ପାଖକୁ ଯିବି। ଗପସପ କରିବି। ଯାହା ବ୍ୟକ୍ତିଗତ ଅଡୁଆଥିବ, ସମସ୍ୟାଥିବ, ଅଭାବ ଅସୁବିଧା ଥିବ ତାଙ୍କୁ ସଫା ସଫା କହିଦେଲେ ସେ ନିଶ୍ଚିତ ବାଟଟିଏ ବତାଇ ଦେବେ। ଅଡୁଆ ମେଣ୍ଟିଯିବ।

ଶ୍ରୀପୁରାରୁ ଟ୍ରେନିଙ୍ଗ କଲେଜକୁ ଆସିଥାଏ। ମୋ ମା ମୋତେ ସବୁଦିନ ପାଇଁ ଛାଡ଼ି ଚାଲିଯାଇଥାନ୍ତି। ହାତରେ କାଣି କଉଡ଼ିଟିଏ ନଥାଏ। ଚାଷ ଆଦାୟରୁ ଘରଟି କଷ୍ଟେମଷ୍ଟେ ଚଳିବ। ମୋର ମାସକୁ ମାସ ଶହେଟଙ୍କା ନ ହେଲେ ନ ଚଳେ। କିଏ ଦେବ? କାହାକୁ କହିବି ଏଇ ଚିନ୍ତା ମେଘ ଆବୋରିବା ପରି ଆବୋରି ରଖିଥାଏ ମୋତେ। ମୁଁ କେବେ ଧାର କରି ନାହିଁ। ହାତରେ ପଇସା ନଥିବାରୁ ଥରେ ମୁଁ ଲରମ୍ବାରୁ ଚାଲି ଚାଲି ପିତାପାଲି ଆସିଥିଲି। ନୂଆଁଖାଇ ପଡ଼ିଥାଏ ନା କଣ। ମାତ୍ର ଛଅଅଣା ଧାର କରି ନଥିଲି। କଛି କମ୍ପାନିର ବସ୍‌ରେ ଆସିବାକୁ। ମୋର ପାଦ ରୁଟିପରି ଫୁଲି ଉଠିଥିଲା। ମୋ ମାଁ କାନ୍ଦି ପକେଇଥିଲେ। ଏବେ କରେ କଣ? ବାଟ ପାଉନଥାଏ।

ସଞ୍ଜବେଳ। ଦୋକାନରେ ଗହଳି ନଥାଏ। ନିର୍ମଳ ବାବୁ ଗୋଡ଼ ଦୁଇଟି ଫେରକା କରି ସବୁଦିନିଆଁ ଢ଼ଙ୍ଗରେ କଣ ଗୋଟାଏ ଟାଇପ କରୁଥାନ୍ତି। ଗପସପ ଭିତରେ ମୁହଁ ଖୋଲି କହିଲି। ମାସକୁ ମାସ ଶହେଟଙ୍କା ଦରକାର। ଦଶମାସର ଟ୍ରେନିଙ୍ଗ୍। ଟ୍ରେନିଙ୍ଗ

ପରେ ବୁଝିବି । ଯିଏ ଆଗ ବୁଝିବି ବୋଲି କହେ ସେ ସହଜେ ବୁଝେ ନାହିଁ । ନିର୍ମଳ ବାବୁ ନୀରବ ରହିଲେ । ଆମ୍ଭ ଲିମ୍ଭ କିଛି ବୋଲି କିଛି କହିଲେ ନି । ଖାଲି ହସିଦେଲେ । ମୋ ପାଇଁ ହସଟି ଉତ୍ପୀଡ଼କ ଥିଲା । ବୃଥାଟାରେ କହିଲି ବୋଲି ପସ୍ତେଇ ହେଲି । ନିଜକୁ ନିଜେ ଝିଙ୍ଗାସିଲି । ତାଙ୍କଠୁ ଚାଲି ଆସିଲି । ଯେମିତି ଟେକା ଫିଙ୍ଗି ଫିଙ୍ଗି କିଏ ମୋତେ ଘଉଡ଼ାଇ ଦେଉଛି । ମନ ମରି ଯାଇଥାଏ ନି ପାଣିଆ ଗଛ ପରି ।

ଦିନେ ଗୋଳ ବଜାର ବାଟ ଦେଇ ଯାଉଛି । ମନରେ ଅଭିମାନ ଭରିଛି । ନିର୍ମଳ ବାବୁଙ୍କ ଦୋକାନ ଆଡ଼କୁ ଅନାଇ ପାରିଲିନି । ନିର୍ମଳ ବାବୁଙ୍କୁ ଦେଖି ବି ନଦେଖିଲା ପରି ଆଗକୁ ଚାଲି ଆସୁଛି । କିଏ ଜଣେ ପଛରୁ ପାଟିକରି ଡାକିଲା "ନିର୍ମଳ ବାବୁ ଡାକୁଛନ୍ତି ।" ଯିବି କି ନଯିବି ହେବା ବେଳକୁ ନିର୍ମଳ ବାବୁ ହାତ ଠାରି ଡାକୁଛନ୍ତି । ଗଲି । ସେ ସାଙ୍ଗେ ସାଙ୍ଗେ ତାଙ୍କ ଦେଢ଼ ଫୁଟିଆ ଲୁହା ସିନ୍ଦୁକରୁ ଶହେ ଟଙ୍କା ଧରାଇ ଦେଲେ, କହିଲେ 'ଆଜି ପହିଲା ନା? ଫି ପହିଲା ତାରିଖକୁ ନେଇ ଯାଉଥିବ । କିଛି ଅସୁବିଧା ଥିଲେ ଆସିବାକୁ ଖବର ଦେବ, କୃଳଧର ଦେଇ ଆସିବ ।

ଅଦ୍ଭୁତ ଲୋକ ଏ ନିର୍ମଳ ପାଢ଼ୀ । କଥାରେ ନକହି କାର୍ଯ୍ୟରେ କରନ୍ତି । ବାଣୀରୁ ପାଣିର ବ୍ୟବହାର ବେଶୀ । ମୋ ମନ ଭିତରେ ଥିବା କ୍ଷୁବ୍ଧ ଅସନ୍ତୋଷକୁ ସେ ଛେଚି ପକେଇଲେ ଯେମିତି!

ଟ୍ରେନିଙ୍ଗ ପରେ ପରମାଣପୁର ହାଇସ୍କୁଲରେ ଯୋଗ ଦେଇଥାଏଁ । ଚାରିମାସ ଗଡ଼ି ଗଲାଣି । ନେବା ବେଳକୁ ଯେଉଁ ହାଇଁପାଇଁ ଦେବା ବେଳକୁ ସେ ପ୍ରକାର ହାଇଁପାଇଁ ନଥାଏ ଆମ ସଭିଙ୍କର । ସଦାବେଳେ କିଏ ମୋ ଭିତରୁ ଡାକୁଥାଏ । "କିରେ ନିର୍ମଳକୁ ଫେରେଇଲୁଣି?" ହଜାରେ ଟଙ୍କା ଏକାବେଳକେ ଯୁଟିଲେ ତ! ସେ କାଳର ଦରମା ବା କେତେ? ରାତିରେ ନିଦ ହୁଏ ନାହିଁ । ଦେଖା ହେଲେ ବି ସେ ମୋତେ କଦାପି କିଛି କହୁ ନାହାନ୍ତି । ମୁଁ କିନ୍ତୁ ତାଙ୍କୁ ଦେଖିଲେ ବାଟ ଭାଙ୍ଗି ଚାଲି ଯାଉଥାଏଁ । ସେ ମୋତେ କିଛି ନ କହିବାଟା ମୋତେ ବେଶୀ ଦଂଶନ କରୁଥାଏ । କଉ ଏରିଅର ପାଇଲି ନା କଣ ଟଙ୍କା ଯୁଟିଗଲା । ଛୁଟି ନେଲି । ସକାଳ ବସରେ ଗଲି ସମ୍ବଲପୁର । ନିର୍ମଳ ବାବୁ ଠିକ୍ ଆଠଟାରେ ଦୋକାନ ଖୋଲନ୍ତି । ତାଙ୍କ ଦୋକାନ ଖୋଲିବା ଦେଖି ଆଖପାଖ ଲୋକେ ତାଙ୍କ ହାତଘଡ଼ି ମିଳାଇ ଦିଅନ୍ତି । ସମୟ ସହିତ ମେଳରଖି ଚଳୁଥିଲେ ସେ । ମୁଁ ତ ଆଗରୁ ଟାକି ରହିଛି । ଏଠି ସେଠି ସମୟ ସାରୁଥାଏ ଯାହା । ନୋଟ ବିଡ଼ାଟାଏ ଥୋଇଦେଲି ଲାଲ କୋଡ଼ିଏ ଟଙ୍କିଆ ନୂଆଁ ନୂଆଁ ନୋଟ । କହିଲି ଦୁଇ ହଜାର ଅଛି । ସେ କଣ ଜାଣୁ ନାହାନ୍ତି । ମୁଁ ନିର୍ବୋଧ ଭଳି କହିଲି ଯାହା । ସେ ହସିଦେଲେ । ନୋଟ ବିଡ଼ାଟି ସେମିତି ଥୁଆ ହୋଇଥାଏ । ଛୁଇଁଲେ ବି ନାହିଁ । କହିଲେ ଦେଲା ଜିନିଷ ଫେରେଇ ନବା ଠିକ୍ ନୁହେଁ । ମୋତେ ରିନୁଆ କରି ରଖିଥିବ? ତମେବିତ ମୋଠୁ କିଛି ପାଇବାର ଅଛି । ତମ ବହି ଛାପିଛି ଯୋ

ଏଇ ପ୍ରକାରର ଲୋକ ନିର୍ମଳ ବାବୁ। **A friend in need, is a friend indeed.** ଦରକାରର ବନ୍ଧୁ। ସେ ବହୁଲୋକଙ୍କୁ ବହୁ ପିଲାଙ୍କୁ ଅସୁବିଧାରେ ସାହାଯ୍ୟ କରିଛନ୍ତି। ମାଉନରେ ମୁନିଟାଏ। ନିଜକୁ ପ୍ରଚାର କରିବାର ଲୋକ ନଥିଲେ। ଆଜି ଆମେ ପାଞ୍ଚଟଙ୍କା ଉପକାର କଲେ ପଚାଶ ଟଙ୍କାର ଫଟୋ ଉଠାଉଛୁ। ଖବର କାଗଜରେ ଛାପୁଛୁ। ମାତ୍ର ନିର୍ମଳ ବାବୁ ପାଞ୍ଚହଜାର ଉପକାର କଲେ ବି ପାଞ୍ଚ ପଇସାର ବି ଦେଖେଇ ହଉ ନଥିଲେ। ଏଣୁ ତାଙ୍କର ମହତପଣିଆ ନୀରବତା ଭିତରେ ରହି ଯାଇଛି!

ନିର୍ମଳ ମୋର ବଅସର। ମୁଁ ମଇ ମାସରେ ଜନ୍ମ ସେ ଫେବୃୟାରୀର। ମୋଠୁଁ ପ୍ରାୟ ଦୁଇମାସର ବଡ଼। ସାର୍ଟିଫିକେଟ ପୁଅା ପାଠ ବେଶୀ ପଢ଼ି ନଥିଲେ। ହେଲେ ପଢ଼ି ପଢ଼ି ଏପରି ଦକ୍ଷ ଥିଲେ ଯେ ଆନୁଷ୍ଠାନିକ ଡ଼ିଗ୍ରୀ ତାଙ୍କ ଆଗରେ ମଳିନ ପଡ଼ି ଯାଉଥିଲା।

କେତେ ବା ବୟସ ହୋଇଥିଲା? ଷାଠିଏ ବି ପୂରିଲା ନାଇଁ। ଆମକୁ ସଖାହୀନ କରି ଚାଲିଗଲେ। ବେଳେ ବେଳେ ପଚାରିବାକୁ ମନହୁଏ। ହଇରେ ସମୟ, ନିର୍ମଳ ଚନ୍ଦ୍ର ପାଢ଼ୀ ପରି ମଣିଷକୁ ମାରିବା ବେଳେ ତୋ ହାତ ଅଟକିଲା ନାଇଁ?



# ୫୪. ନିର୍ଜନ ନାଗଫେଣୀ

ଝାରସୁଗୁଡ଼ା ମନମୋହନ ବିଦ୍ୟାଳୟର ପଛପଟେ ମୁଙ୍ଗାପଡ଼ା। ମୁଙ୍ଗାପଡ଼ାର ଉତ୍ତର ପଟେ ମଙ୍ଗଳ ବଜାର। ପ୍ରତି ମଙ୍ଗଳବାର ଦିନ ବଜାର ବସେ। ବିରାଟ ବଜାର। ଚାରିଆଡ଼ର ଲୋକ ଠୁଳ ହୁଅନ୍ତି। ଯାହା ଚାହିଁବ ମିଳିବ। ଖିରିସାରୁ ଖଟ, ଗଇଁତୀରୁ ଗୀତା। ପିଲାଟିଏ ଡଜନେ ଖାତା ନେଇ ଗାମୁଛା କାନିରେ ପସରା ମେଲେଇଛି। ପିଲାର ବୟସ ଆଉ ବେପାର ଦେଖି ଲୋକେ ଆଗ୍ରହରେ ଖଣ୍ଡେ ଖଣ୍ଡେ ଖାତା କିଣୁଥିଲେ ତାଆଠୁଁ। ଆଉ କଉଠୁ ଯଦି କିଣିବାର ଥାଏ, ଯାଠୁ ନ କିଣିବେ କିଆଁ? ଆଖି ପିଛୁଳାକେ ଖାତା ସରିଯାଏ। ପିଲାଟିର ଆଗ୍ରହ ବଢ଼େ। ଡଜନେ ଦି ଡଜନରୁ ବଢ଼ିବଢ଼ି ଶହ ଶହକୁ ଗଲା। ବେପାର ମୂଳରୁ ଚଉଡ଼ା ହେବାକୁ ଲାଗିଲା। ଆରମ୍ଭ ନକଲେ ଯେ କୌଣସି କାମ ଆଗେଇ ନପାରେ। ପୁଅର ଏ ଧନ୍ଦା ବାପ ମା ଜାଣିବେ କେମିତି? ପାଠ ପଢୁଛି ପୁଅ। ବଜାରକୁ ଯାଉଛି। ବୁଲାବୁଲି କରୁଥିବ। ଦେଖ ଦେଖ ବୋଇଲା ବେଳକୁ ପୁଅର ବେପାର ବନାରସକୁ ଛୁଇଁଲାଣି।

ଦିନେ ବାପା ଦେଖିଲେ ପୁଅର ଅନେକ ପଇସା, କାବା ହୋଇଗଲେ। ପିଲାର ମାକୁ ପଚାରିଲେ। ହମିଦ ଏତେ ପଇସା ଆଣୁଛି କୁଆଡୁ? ବାପା ଯଦି ଜାଣୁ ନାହାନ୍ତି ମା ବା ଜାଣିବେ କେମିତି? ପୁଅ କିଛି ଖରାପ କାମ କରୁ ନାଇଁତ? ମନରେ ସନ୍ଦେହ। କାଳେ ଚୋରି କରୁଥିବ। ପୁଅର ପିଛା ଧଇଲେ ଜାଣିବାକୁ ପାଇଲେ ପୁଅ ଠକି ଆଣୁ ନାଇଁ ଖଟି

ଆଣୁଛି। ପାଠ ସହ ଶାଠ ହବା କଥା ବୋଲି ଆମ ପଣ୍ଡିତ ମାନେ କହନ୍ତି। ଆରନିଙ୍ଗ ସହିତ ଲାରନିଙ୍ଗ ହବାକଥା ବୋଲି କୁଆଡ଼େ ଆମ ଶିକ୍ଷା କମିଶନ କହିଛି। ଆମ ପଣ୍ଡିତ ମାନେ, ଗୁରୁମାନେ, ଶିକ୍ଷକମାନେ କିଛି କଥା କହନ୍ତି। ହେଲେ କାମରେ ସେ କଥାକୁ ଉତାରି ପାରନ୍ତି ନାହିଁ। ପ୍ରାଥମିକ ସ୍ତରର ଅବୋଧ ବାଳକଟିଏ। ଏ ତତ୍ତ୍ୱ ଜାଣିଲା କେଉଁଠୁ?

ଅବସର ସମୟକୁ କିଛି ଲାଭପ୍ରଦ ପେଶାରେ ଖର୍ଚ୍ଚ କରିବା ଭଲକଥା। ଏ ଭଲ କଥାଟିକୁ ତା ମନ ଭିତରେ ପୂରାଇଲା କିଏ? ଜଣେ ଜଣେ ମଣିଷର ଏ ପ୍ରକାର ଗୁଣ ସହଜାତ ଥାଏ। ପଚାଶ ବର୍ଷ ତଳର ସେଇ ବେପାରୀ ବାଳକଟି ହଉଛି ଅବଦୁଲ ହମିଦ। ଝାରସୁଗୁଡ଼ା ମେନ ରୋଡ଼ରେ ଥିବା ପ୍ରଭନିସିଏଲ ବୁକ୍‌ଡ଼ିପୋର ମାଲିକ ସେ। ସେ ଦିନର ସେଇ ଅନାମଧେୟ ବାଳକ ଆଜି ଝାରସୁଗୁଡ଼ାର ସମ୍ଭ୍ରାନ୍ତ ଲୋକ। ଧନରେ ଯେମିତି ଧନପତି ମନରେ ସେମିତି ଏକ ସହେନ୍‌ସା। ମୁଁ ସପ୍ତମ ପଢ଼ିବା ବେଳକୁ ହମିଦ୍ ପଢୁଥିଲା ଚତୁର୍ଥରେ ଆମ ହିନ୍ଦି ମାଷ୍ଟର ନାମଜାଦା ସିଂହ ହମିଦ କଥା ପଡ଼ିଲେ ବରାବର କହନ୍ତି। "ଓ ଯୋ ହମିଦ ହେନା ବହୁତ ତେଜ ଲଡ଼୍‌କା ହେ"। ସତକୁ ସତ ହମିଦ ପିଲା ଦିନରୁ ତେଜ୍ ଲଡ଼୍‌କା। ପାଠରେ ଯେମିତି ଶାଠରେ ବି ସେମିତି। **A big genious.!**

ମୁଁ ଶ୍ରୀପୁରାରେ ଶିକ୍ଷକତା କରିବା ବେଳକୁ "ଆବେ ହମିଦ, ଯାବେ ହମିଦ୍‌ରୁ ବାବୁ ହମିଦ୍" ହୋଇ ସାରିଥିଲା। ତା' ଦୋକାନରେ ଢେଙ୍କିରୁ ଢେଙ୍କାନାଳ ସବୁ ମିଳିବ। ଟିପା ସୁଜିରୁ ଶିଲପା। ଗରାଖ ତା' ବାଟରେ ଆଗକୁ ଯାଇ ପାରିବନି। ତାଠୁ ମୁହଁ ନ ମାରି ଯିବ କୁଆଡ଼େ? ଅଶୀ ବରଷର ବୁଢ଼ାଠାରୁ ଛନ ଛନିଆଁ କୁନି ଛୁଆ ପର୍ଯ୍ୟନ୍ତ ସଭିଁଏ ତାର ବନ୍ଧୁ। ଯାହାକୁ ଯେଉଁ ଭାଷାରେ ଡାକିବାର କଥା ସେ' ଜାଣେ। କେଉ ଭାଷା ନ ଜଣା ତାକୁ? ଓଡ଼ିଆ, ଉର୍ଦ୍ଦୁ, ହିନ୍ଦି, ବଙ୍ଗଳା, ସମ୍ବଲପୁରୀ, ଅଗରୀଆ ଭଳି ସବୁ ବୋଲିରେ ବାହାଦୁର ସିଏ। ଜୀବନ୍ତ ଭାଷା କୋଷଟିଏ ଯେମିତି। ମନରେ ଦୁଃଖ ନାହିଁ ତାର। ପାହାନ୍ତି ତାରାପରି ସଦା ଛଳଛଳ। ଶାନ୍ତ ସାଗର ପରି ଗଭୀର ଓ ମୁଲାୟମ। ତା ଆଡ଼କୁ ଟାଣି ନେବାର ପାରିଲା ପଣ ଅଛି। ସମାହିତ ବ୍ୟକ୍ତିତ୍ୱଟାଏ। ନିହାତ୍ ଟେଢ଼ା ଲୋକବି ତା ପାଖରେ ଫୁକୁଲା ଲିଆ ପରି ବତୁରିଯାଏ। ସିଝା ଆଳୁ ପରି ନରମି ଯାଏ। ଏଇ ସିଝା ଆଳୁର କଥାଟା ମନେ ପଡ଼ି ଯାଉଛି।

ଥରେ ଜିଜ୍ଞାସୁ ସନ୍ୟାସୀ ବିବେକାନନ୍ଦ ରାମକୃଷ୍ଣ ପରମହଂସଙ୍କୁ ପଚାରିଲେ "ମଶାୟ, ସିଦ୍ଧ କାକେ ବୋଲି?" ରାମକୃଷ୍ଣ ତାଙ୍କ ସ୍ୱଭାବ ସୁଲଭ ଭଙ୍ଗିରେ କହିଲେ, "ହେଁଗୋ ଏତ ଦାରୁନ୍ ପ୍ରଶ୍ନ।" "ଭେବେ ବୋଲ୍‌ବି।" ବିବେକାନନ୍ଦ ଛାଡ଼ନ୍ତି କେତେବେ। ପିଛା ପିଛା ଲାଗିଥାନ୍ତି। ପୁଣି ଦିନେ ସନ୍ଧ୍ୟାରେ ପଚାରିଲେ, "ସିଦ୍ଧ କାକେ ବୋଲି?" ରାମକୃଷ୍ଣ କଞ୍ଚା ଆଳୁଟାଏ ଧରେଇ ଦେଇ କହିଲେ "ଦାବାଓ" ବିବେକାନନ୍ଦ ଯେତେ ଦବେଇଲେ ବି ଦବୁଛି କେତେବେ? ଆଉ ଗୋଟାଏ ଆଳୁ ଧରାଇ ଦେଲେ। ଆଳୁଟି ଦବାଇ ଦବାରୁ

ପିଚିକି ପଡ଼ିଲା । ସିଝା ଆଳୁଥିଲା । ରାମକୃଷ୍ଣ ସଙ୍ଗେ ସଙ୍ଗେ କହିଲେ "ଏଙ୍କେ ସିଦ୍ଧ ବୋଲି ।" ସିଝା ଆଳୁ ପରି ହେଲେ ଯାଇ ସିଦ୍ଧ ହେବାକୁ ହୁଏ । ସତକୁ ସତ ଆମ ହମିଦର ଭିତରଟା ସିଝା ଆଳୁପରି ।

ଶ୍ରୀପୁରାରେ ଥିବା ବେଳେ ଲେଖାଲେଖି ଖୁବ୍ ଜୋର ସୋର୍‌ରେ ଚାଲିଥାଏ । ମୋର କବିତା ମାନ ଅନେକ ପତ୍ର ପତ୍ରିକାରେ ପ୍ରକାଶ ପାଉଥାଏ । ଯିଏ ଲେଖେ କାହିଁକି କେଜାଣି ଲେଖାକୁ ଛାପିବାରେ ଆତୁର ହୋଇଯାଏ । ଛପା ବର୍ଣ୍ଣମାଳାର ମୋହ ଲେଖକକୁ ଘାରି ପକାଏ । ସଙ୍କଳନଟିଏ ହବା ଭଳି ମୋ ପାଖରେ କବିତା ମାନଥାଏ । ହମିଦ୍‌କୁ କହିଲି । ସେ ତାର ସ୍ୱଭାବ ସୁଲଭ ଢଙ୍ଗରେ କହିଲା, "ତୋର ରୁଚିରେ କର । ଯାହା ପଇସା ଲାଗିବ ଦେବି । ହେଲେ ଛପାଛପି ଝାମେଲା ତୁ ବୁଝିବୁ ।" ସତକୁ ସତ ସେ ଆଖିବୁଜି ପଇସା ବୁଣିଦିଏ । ହେଲେ କଉ ଛାପାଖାନା କି କାଗଜ ବେପାରୀ ତାକୁ ଠକିଦେବ? ନିଜେ ତ ଗୁଣିଆ, କଉ ଗୁଣିଆ ଶିଖେଇବ ଯେ! ପୋଖତ କାଗଜ ବେପାରିଟାଏ ସେ ।

୧୯୫୮ ରେ ହମିଦ୍ ମୋର "ଦରିଆ ପରିର କବିତା" ବହିଟି ଛାପିଲେ । ରାମକୃଷ୍ଣ ନନ୍ଦ ଏ ବହିର ମୁଖବନ୍ଧ ଲେଖିଥିଲେ । ଏ ବହିର ଦ୍ୱିତୀୟ ସଂସ୍କରଣ ୧୯୭୨ରେ ପ୍ରକାଶ କଲେ ପ୍ରଭନସିଆଲ ବୁକ୍‌ଡିପୋ । "ଦେଖ, କଇଁଚ କାଢ଼ିଛି ବେକ" ଶିଶୁ ଗଳ୍ପ ସଙ୍କଳନଟିଏ ଛାପିଲେ ହମିଦ । "ଚୟନିକା" ପ୍ରବନ୍ଧ ବହିଟି ଓଡ଼ିଆ ବି.ଏ. ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପାଠ୍ୟ ମନୋନୀତ କରନ୍ତି । "କଷ୍ଟ କଲେ କୃଷ୍ଣମିଳେ" ଓ ସମ୍ବଲପୁରୀ ନାଟକ "ହତିଆର, ଭୁତିଆର" ହମିଦର ଭାଇ ଅବଦୁଲ ମଜିଦ ଛାପିଲେ । ମୋର ପାଞ୍ଚଟି ବହିର ପ୍ରକାଶକ ଅବଦୁଲ ହମିଦ । ଲେଖକଙ୍କୁ ଉତ୍ସାହ ଦେବାର ନମୁନାଟିଏ ।

ମଣିଷକୁ ସକଳ ତୁଚ୍ଛତାରୁ ଉପରକୁ ଟେକି ଧରିବାର ଗୀତା ଠାରୁ ଆଉ ବଡ଼ ବହି ବୋଧହୁଏ ନାହିଁ । ପ୍ରାତ୍ୟହିକ ଜୀବନରେ ପଣ୍ୟ ପରି ବିପଣି କାରବାରରେ ମଜ୍ଜି ଯାଆନ୍ତି ଲୋକ । ମାତ୍ର ମୁଁ ଭଲ ଭାବରେ ଜାଣିଛି । ଅବଦୁଲ ହମିଦ ବେପାରରେ ବାରିଧି । ସେ ନିଜକୁ ଗୋଟାପଣେ ବୁଡ଼ାଇ ରଖିଥିଲେ ମଧ କଦାପି କୁତ୍ରାପି ଆପଣାର ପଣ୍ୟ ଭିତରେ ତାର ମଣିଷ ପଣିଆକୁ ହଜାଇ ନାହିଁ । ଜାଗତିକ ଜୀବନରେ ସକଳ ତୁଚ୍ଛତାରୁ ଆପଣାକୁ ଟେକି ଧରିଛି ତା ଅନ୍ତରର ଗରୀୟାନ ଗୀତା । ସେଥିପାଇଁ ଆପଣାର ଭାଇ ବିରାଦଙ୍କୁ ମଣିଷ କରିଛି । ଏତେବଡ଼ ପୃଥିବୀର ବିଶାଳ ପ୍ରାଙ୍ଗଣରେ ଦାନା ଗୋଟାଇବାକୁ ଡେଣାରେ ଉଡ଼ିବାର ଦମ୍ଭ ଭରିଛି । ଅମ୍ମି ଆଉ ଅବ୍‌ବାଜାନକୁ ହଜକୁ ପଠେଇଛି । ରୋଜ ରୋଜାର ଧର୍ମୀୟ ଆଚାରକୁ ମାନିଛି । ଅନୁଶାସନ ଅକ୍ଷରେ ଅକ୍ଷରେ ପାଳନ କରିଛି । ଥିବଥିବ ହଠାତ୍ ଉଠିଯିବ ଉପାସନାକୁ, ପୁଣି ଫେରି ଆସିବ କଥାବାର୍ତ୍ତାର ଆସରକୁ ବେପାରୀର ବ୍ୟସ୍ତତାକୁ । ବିରଳ ବ୍ୟକ୍ତିତ୍ୱଟିଏ । ମୁଁ ମୋ ଜୀବନରେ ବହୁ ଲୋକଙ୍କୁ ଦେଖିଛି । ହେଲେ

ଅବଦୁଲ ହମିଦ ପରି ମଣିଷଟିଏ ଦେଖି ନାହିଁ । ସେ ମଣିଷ ନୁହେଁ, ଦେବତାଟିଏ । ଧର୍ମୀୟ ନିଷ୍ଠାରେ ଯେପରି ଆଉରଙ୍ଗ ଜେବ । ଉଦାରତାରେ ସେପରି ଆକ୍ବରଟାଏ । ହମିଦ୍ ବରାବର କହେ ମଣିଷ ଜନ୍ମ ହେବାବେଳେ ତାର କୌଣସି ପରିଚୟ ନଥାଏ । ନଥାଏ ଜାତି, ନଥାଏ ଧର୍ମ, ନଥାଏ ଭାଷା, ନଥାଏ ଭୂମି କିଛି ବୋଲି କିଛି ନଥାଏ । ପରିଚୟହୀନ ସେ ମଣିଷ ଶିଶୁର ଏକମାତ୍ର ପରିଚୟ ମଣିଷ । ତାର ଉଚ୍ଚାରଣ ତାର ସନାତନ ପରିଚୟ ହେଲା ତାର ମାନବିକତା । ଜାତି, ଧର୍ମ, ଭାଷା, ବର୍ଣ୍ଣପରି ପ୍ରାଚୀର ତିଆରି କରୁଥିବା ଅମାନବୀୟ ପରିଚୟ ସବୁ ଅବଦୁଲ ହମିଦ ଆଗରେ ଚୁରମାର ହୋଇଯାଏ । ଇସଲାମ ଧର୍ମର ସଦା ଅନୁଗତ ଜଣେ ନିଷ୍ଠାବାନ ବ୍ୟକ୍ତି ହୋଇଥିଲେ ବି ଅବଦୁଲ ହମିଦ ଜଣେ ଖାଣ୍ଟି ହିନ୍ଦୁ, ଖାଣ୍ଟି ଇସାଇ, ଖାଣ୍ଟି ଶିଖ, ଖାଣ୍ଟି ବୌଦ୍ଧ ଓ ଜୈନ । ତାର ବିଶାଳ ଅନ୍ତର ଭିତରେ ସବୁ ଛୋଟ ଲୋକି ହଜିଯାଏ । ଜୀବନର ଅପନ୍ତରାରେ ନିର୍ଜନ ନାଗଫେଣୀ ପରି ମାଟିର ଛାତିକୁ ଫଟାଇ ବିକଶି ଉଠିଥିବା ସଦା ସବୁଜ ମହାଦ୍ରୁମଟିଏ ଆଭାମୟ । ସେ ଆଭାର ଜୟ ହେଉ!!!



# ୫୫. ମାଳଞ୍ଚର ମାଳାକାର

ଅଷ୍ଟମ ପଢ଼ିଲା ବେଳରୁ ସଂସାର ପତ୍ରିକାର ନାଁ ଶୁଣିଥିଲି । ଦଶମ ପଢ଼ା ବେଳକୁ ତହିଁରୁ ଖଣ୍ଡେ ମୋ' ହାତରେ ପଡ଼ିଲା । ଛୋଟ ଛୋଟ ପିଲା ଓ କିଶୋର ମାନଙ୍କର ଏ ପତ୍ରିକା । ଜ୍ଞାନ ବିଜ୍ଞାନ ଓ ବହୁ ଅଜଣା କଥା ବାହାରୁ ଥିଲା । ସେ ପତ୍ରିକାରେ ପହିଲେ ମୁଁ କବିତା ଲେଖୁଥିଲି । ମୋର କବିତାମାନ ଏଥିରେ ସ୍ଥାନ ପାଇଲା । ରାମକୃଷ୍ଣ ନନ୍ଦ ସଂସାରରେ କବିତା ଛାପୁନଥିଲେ । ରାମକୃଷ୍ଣ ନନ୍ଦ ଜଣେ ନାଁକରା ପ୍ରଧାନ ଶିକ୍ଷକଥିଲେ । ଶିଶୁ ଓ କିଶୋର ମାନଙ୍କ ପାଇଁ ପ୍ରଚୁର ଲେଖା ନଥିଲା । କଟକ ତେଲେଙ୍ଗା ବଜାରରେ ପାରିଜାତ ପ୍ରେସ ଆରମ୍ଭ କଲେ । ସେଇଠୁ ସଂସାର ପତ୍ରିକା ଛାପିଲେ । ତାଙ୍କ ପାରିଜାତ ପ୍ରେସର ନିର୍ଭୁଲ ଛପା ଓ ସୁନ୍ଦର ଗେଟ୍‌ଅପ୍ ଯୋଗୁଁ ପ୍ରେସକୁ ବହୁକାମ ଆସିଲା । ପ୍ରେସରେ କାମର ଏପରି ଭୀଡ଼ ହେଲା ଯେ ତାଙ୍କ ପ୍ରେସକୁ ଫେକ୍ଟ୍ରି ଘୋଷଣା କଲେ ସରକାର । ନାନା ଭାବରେ ହଇରାଣ କଲେ । ରାମକୃଷ୍ଣ ବାବୁ ସରଳ ଓ ନିର୍ଭେଜାଲ ଲୋକଥିଲେ । ପ୍ରେସରୁ ଧନୀ ହୋଇ ହୋଇ କୋଠା ପରେ କୋଠା ବାନ୍ଧିବାର ଲୋକ ନଥିଲେ ସେ! ହେଲେ ଭଲକାମ ଆମ ଲୋକଙ୍କ ଆଖିରେ କୁଆଡ଼େ କଣ୍ଟା ଫୋଡ଼ିଲା ପରି ଲାଗେ । ରାମକୃଷ୍ଣ ବାବୁ ପାରିଜାତ ପ୍ରେସକୁ ବନ୍ଦ କରିଦେଲେ । ଯାହିତାହି ପ୍ରକାରେ କେବଳ ସଂସାର ପତ୍ରିକାକୁ ବଞ୍ଚାଇ ରଖିଲେ । ବାହାରର କାମ ନେଲେ ନାହିଁ । ସବୁ ପରିସ୍ଥିତିରେ ସଂସାର

ତାର ଧାରାବାହିକତା ଓ ବୁନିୟାଦି ଉଚ୍ଚାରଣର ବାଟ ହୁଡ଼ିଲା ନାହିଁ।

ମୋର ପ୍ରଥମ କବିତା ସଙ୍କଳନ ଦରିଆ ପାରିର କବିତା ୧୯୫୮ରେ ପ୍ରକାଶ ପାଇଲା। ବହିରେ ଆପଣାର ମତାମତ ଲେଖିଥିଲେ ରାମକୃଷ୍ଣ ନନ୍ଦ। ସବୁଠୁ ସାନ ମନ୍ତବ୍ୟରେ ଲେଖିଥିଲେ "ଏ ବହିର କବିତା ଗୁଡ଼ିକ ମୋତେ ଭଲ ଲାଗିଲା। ଏହାକୁ ଜଣେ କବି ଲେଖିଛନ୍ତି।" ରାମକୃଷ୍ଣ ନନ୍ଦ ପ୍ରାଚୀନ ପନ୍ଥୀଥିଲେ। କବିତା ବେଶୀ ଲେଖୁନଥିଲେ।

ତାଙ୍କର ଏକମାତ୍ର ସର୍ବଜନ ବନ୍ଦିତ ପ୍ରାର୍ଥନା "ଆହେ ଦୟାମୟ ବିଶ୍ୱ ବିହାରୀ, ଘେନ ଦୟାବହି ମୋର ଗୁହାରି" କବିତାଟି ତାଙ୍କର ସବୁଠୁ ଶ୍ରେଷ୍ଠ କାବ୍ୟିକ ଉଚ୍ଚାରଣ। ସେ ଆଉ କିଛି ନଲେଖି କେବଳ ଏ କବିତାଟି ଲେଖିଥିଲେ ବି ଓଡ଼ିଆ ମାଟିରେ ସେ ଅମର ରହି ପାରିଥାନ୍ତେ। ଏ କବିତାର ଚିରନ୍ତନ ଆବେଦନ ନିଷ୍ଠୁର ପାଠକକୁ ବି ବିଭୋର କରିପକାଏ।

ଥରକର କଥା ପିଲାଙ୍କର ଚାଟଶାଳୀ ପାଖରେ କଂସାଇ ଦୋକନ ଥାଏ। ଛେଳିକାଟି ମାଉଁସ ବିକୁଥାଏ। ଛେଳିଟାର ଗଳା କାଟିବାକୁ ଚକୁ ଚଲାଇବା ବେଳକୁ ରାମକୃଷ୍ଣ ନନ୍ଦଙ୍କର ଆହେ ଦୟାମୟ ବିଶ୍ୱ ବିହାରୀ ପ୍ରାର୍ଥନାଟି ଭାସି ଆସିଲା। କଂସେଇ ଛେଳିର ଗଳା କାଟିବ କଣ ଚକୁ ଫିଙ୍ଗିଦେଇ ମାଉଁସ ବେପାର ଛାଡ଼ିଦେଲା। ତାଙ୍କ ପ୍ରାର୍ଥନାରେ ଏପରି ଏକ ମରମ ଛୁଆଁ ପ୍ରଭାବ ରହିଛି। ପଥରକୁ ବି ପାଣି କରିଦେବ। ତରଳେଇ ଦେବ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏକଦା ଶିଶୁ ସାହିତ୍ୟର ସଙ୍କଳନଟିଏ କରିବାକୁ ରାମକୃଷ୍ଣ ନନ୍ଦଙ୍କୁ ଦାୟିତ୍ୱ ଦେଲେ। ରାମକୃଷ୍ଣ ନନ୍ଦ ମୋ ପାଖକୁ କାର୍ଡ଼ ଖଣ୍ଡେରେ ଲେଖି ପଠାଇଲେ। ତମ ଲେଖାକୁ ବାଦ୍ ଦେଇ ସଙ୍କଳନ ସମ୍ଭବ ନୁହେଁ। ଏଣୁ ଲେଖାଟିଏ ପଠାଅ। ମୁଁ ଜାଣିଛି ଓଡ଼ିଆ ସାହିତ୍ୟ ଏକାଡ଼େମୀ ଆମକୁ କେବେ ନିବିଡ଼ ଭାବରେ ସ୍ୱୀକାର କରିନାହିଁ। ଅକସ୍ମାତ ଦେଖା ହେଲେ ଭଲ ଅଛନ୍ତି ଭଳି ଔପଚାରିକତା ଭିତରେ ସୀମିତ। ସରକାରୀ ଅର୍ଥକୁ ଆପଣା ଆପଣା ଭିତରେ ବାଣ୍ଟିକୁଣ୍ଟି ନବାର ଏକ ଚତୁର ଅନୁଷ୍ଠାନଟିଏ ଏ ଏକାଡ଼େମୀ।

ରାମକୃଷ୍ଣ ନନ୍ଦ ପରିଚ୍ଛନ୍ନ ସ୍ୱଭାବର ଲୋକ। ଚେହେରାଟି ଯେମିତି ସଫା ତାଙ୍କ ସାହିତ୍ୟର ଉଚ୍ଚାରଣଟି ସେମିତି ପରିଚ୍ଛନ୍ନ। ଶିଶୁ ମାନଙ୍କ ପାଠ୍ୟ ପାଇଁ ଲେଖା ପ୍ରସ୍ତୁତ ବେଳେ ସେ କଠୋରଭାବେ ସାବଧାନ ରହିବାକୁ ପରାମର୍ଶ ଦେଉଥିଲେ। ଆଜେବାଜେ ଲେଖା ପିଲାଙ୍କ ପାଇଁ ନ ରଖିବାକୁ ସେ ଅଡ଼ି ବସୁଥିଲେ ଲେଖକର ପଦ ପଦବୀକୁ ଆଳକରି ଲେଖା ନିର୍ବାଚନ କରିବାକୁ ସେ ଆଦୌ ଆଗ୍ରହୀ ନଥିଲେ।

ପିଲାଙ୍କର ମାନସିକ ଅଭିବୃଦ୍ଧି ସହିତ ଲେଖାର ବର୍ଗୀକରଣ କରିବା ଉଚିତ ବୋଲି ମତ ଦେଉଥିଲେ। ଶିକ୍ଷକତା ବେଳଠୁ ସେ ପାଠ୍ୟ ବହି ଲେଖାରେ ଧୁରନ୍ଧର ଥିଲେ। ତାଙ୍କର ବହୁ ଲେଖା ଓ ବହି ପାଠ୍ୟ ପୁସ୍ତକ ରୂପେ ଚଳୁଥିଲା। ଏଣୁ ପାଠ୍ୟ ବହି

ଲେଖାରେ ତାଙ୍କର ଏକରକମ ଦଖଲଥିଲା। ପ୍ରଥମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ସିଲାବସ ତିଆରି ଓ ପାଠ୍ୟ ପୁସ୍ତକ ତିଆରିରେ ମୁଁ ତାଙ୍କ ସହ କାମ କରିବାର ସୁଯୋଗ ପାଇଛି। ଏ ସବୁ ବିଷୟରେ ସେ ସାଲିସ କରିବା ଲୋକ ନଥିଲେ। ଠିକ୍ ଜିନିଷକୁ ଠିକ୍ ଜାଗାରେ ରଖିବାକୁ ସେ ବାଧ୍ୟ କରୁଥିଲେ। ଆମେ କଣ ଦେବା ବଡ଼କଥା ନୁହେଁ। ପିଲା କଣ ପଢ଼ିବେ ବଡ଼କଥା। ବେଶୀ ବକର ବକର ନକରି ନୀରବରେ କାମ କରି ଯିବାକୁ ସେ ବେଶୀ ପସନ୍ଦ କରୁଥିଲେ।

ଥରକର କଥା ମୋର ଛୋଟ କବିତାଟିଏ ମୁଁ ସଂସାର ପାଇଁ ପଠେଇଲି। କବିତାଟିର ନାଁ ମନେ ପଡୁନାହିଁ। କବିତାର ମର୍ମଟି ହେଉଛି। ଭଗବାନ ପଚାରିଲେ ଭକ୍ତକୁ ତମେ କିଛି ପାପ କରିଛ? ଭକ୍ତ କହିଲେ ନା। ଭଗବାନ କହିଲେ କି ପ୍ରକାର ଭକ୍ତ ହେ ତମେ? ଭଗବାନ ଉପରେ ତମର ଜମା ଭରସା ନାଇଁ। ଭକ୍ତ ଓ ଭଗବାନଙ୍କର ଏ ନିବିଡ଼ତାକୁ ତୀବ୍ରତର କରିବା ପାଇଁ ରାମକୃଷ୍ଣ ନନ୍ଦ ମନେ ମନେ କିଛି ସମୟ ଭାବିଲେ। କହିଲେ ମଙ୍ଗଲୁ ଏମିତି ଶେଷ କଲେ କେମିତି ହୁଅନ୍ତା?

॥ କେବେ କିଛି ଅପରାଧ କରିନାହ, ଜମା?
ଭରସା ନାଇଁକି ତମ, ପ୍ରଭୁ କରନ୍ତି ଯେ କ୍ଷମା ॥

ମୋ' କବିତାକୁ ଏମିତି ସଜାଡ଼ିଦେଲେ ଯେ କଉଠୁ ଯାଇ ଆଉ କଉଠି ପହଞ୍ଚିଗଲା। କବିତାର ଆବେଦନର ତୀବ୍ରତାକୁ କିପରି ବ୍ୟଞ୍ଜିତ କରିବାକୁ ହୁଏ ରାମକୃଷ୍ଣ ନନ୍ଦ ସେ ଟେକନିକ୍ ଜାଣିଥିଲେ। ଏଣୁ ମୋର କାବ୍ୟିକ ଉଚ୍ଚାରଣର କ୍ରମ ବିକାଶରେ ତାଙ୍କର ହାତ ସାଉଁଳା ସୁସ୍ପଷ୍ଟ।

ଲେଖାକୁ ମାଜିବା ଘଷିବାରେ ସେ ପୋଖତ ବିନ୍ଧାଣି/ ମଣିଷ ଭିତରେ ଖାଣ୍ଟି ଶିକ୍ଷକଟିଏ। ତାଙ୍କ କଥାରେ ଯେମିତି ଓଜନଥିଲା କଥାକୁ ଗୁନ୍ଥିବାରେ ସେ ସେମିତି ମାଳାକାର ଥିଲେ।



# ୫୬. ସୁଅକୁ ଯେ ସାଉଁଳି ପାରେ

ତାଙ୍କୁ କେବେ ଦେଖି ନଥିଲି। କଳା କି ଗୋରା ଜାଣି ନଥିଲି। ନାଁ ଶୁଣିଥିଲି। ତାଙ୍କର ଛାପାଖାନା ଥିଲା। ବହି ଦୋକାନଟିଏ ଥିଲା। ବହି ଛପାଛପି କରନ୍ତି। କୋରାପୁଟର ଜୟପୁର ସହରରେ ରହୁଥିଲେ।

କାହ୍ନୁ ଚରଣ ମହାନ୍ତିଙ୍କ "ସ୍ୱପ୍ନ ନା ସତ୍ୟ" ଉପନ୍ୟାସ ବହିରୁ ତାଙ୍କ ଠିକଣା ପାଇଲି। ୧୯୬୦ର କଥା। ସେତେବେଳକୁ କିଛି ଗପ ଲେଖି ସାରିଥିଲି। 'ମେହେର ପ୍ରଦୀପ', 'ଡ଼ଗର', 'ଆସନ୍ତାକାଲି', 'ଯୁଗ ଭାରତୀ', 'ଦିଗନ୍ତ' ଆଦିରେ ଛପା ହଉଥିଲା। ଗପ ବହିଟିଏ ବହାର କରିବାକୁ ମନ ସକସକ ହେଲାଣି। ରାମନାଥ ପଣ୍ଡାଙ୍କୁ ଚିଠି

ଲେଖିଲି । ସେ କଣ ଭାବିଲେ କେଜାଣି । ଏକାଥରକେ ଉତ୍ତର ଦେଲେ ଗପ ପଠାଅ। ଚଉଦଟି ଗପ ପଠାଇଦେଲି । "ଅସ୍ତରାଗର କବି" ଗଳ୍ପକୁ ନେଇ ବହିର ନାଁ। ୧୯୬୧ ବହୁଡ଼ା ଦଶମୀ ଦିନ ପ୍ରକାଶ ପାଇଲା ।

ଜୟପୁର ସହରର ବିକାଶ ପ୍ରତିଷ୍ଠାନ, ଏ ବହିର ପ୍ରକାଶକ । ପ୍ରାୟ ଶହେ ପୃଷ୍ଠାର ବହିଟିଏ । ଅଧ୍ୟାପକ ରାଜ କିଶୋର ରାୟ ଏ ବହିରେ ତାଙ୍କ ମତାମତ ଦେଇଛନ୍ତି । ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ଜରିଆରେ ମୁଁ ଅଧ୍ୟାପକ ରାଜକିଶୋର ରାୟଙ୍କୁ ଜାଣିଥିଲି । ତାପରେ ତାଙ୍କ ସହ କ୍ରମେ କ୍ରମେ ମୋର ନିବିଡ଼ତା ବଢ଼ିଲା । ସେ ଆଉ ନାହାନ୍ତି । ତାଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱକୁ ମୋର ଶତ ପ୍ରଣାମ । ମୁଁ ତାଙ୍କଠି ପାଠ ପଢ଼ିବାର ସୁଯୋଗ ପାଇନାହିଁ । ତଥାପି ତାଙ୍କ ଲେଖକୀୟ ଆଭିଜାତ୍ୟ, କଳାକାର ସୁଲଭ ଉଦାରତା, ମରମଛୁଆଁ ମଣିଷ ପଣିଆ ପାଖରେ ମୁଁ ସଦାନତଜାନୁ । ତାଙ୍କ ମନ୍ତବ୍ୟରେ ସେ ମୋ ଗପ ଉପରେ ଏତକ ଲେଖିଯାଇ ମୋତେ ଧନ୍ୟ କରିଛନ୍ତି । "ପ୍ରତ୍ୟେକ ଗଳ୍ପରେ ଜୀବନର ମହାସତ୍ୟ ଉଦ୍‌ଘାଟିତ । ଭାଷାର ଝରଝର ସ୍ରୋତ, ଲେଖକର ଅକୃତ୍ରିମ ସହାନୁଭୂତି, ନିତ୍ୟ ପରିଚିତ ବେଦନାପ୍ଲୁତ ଇଙ୍ଗିତ ଗଳ୍ପ ଗୁଡ଼ିକୁ ଆକର୍ଷଣୀୟ କରି ପାରିଛି । ସାଧନାର ମୂଳ ସୋପାନରେ ବି ପୋଖତ । ରାଜ କିଶୋର ରାୟଙ୍କର ଉତ୍ସାହ ମୋର ପରବର୍ତ୍ତୀ ଜୀବନରେ ପୁଞ୍ଜି ହୋଇ ରହିଲା । ସେଇ ମହାନ ଗାଳ୍ପିକଙ୍କୁ ମୁଁ ମୋର ପ୍ରଣାମ ଜଣାଉଛି ।

ରାମନାଥ ପଣ୍ଡା ଜଣେ ଲେଖକ । ଅଦୃଶ୍ୟ ଆଶୀର୍ବାଦ, ଦଇବ ଦଉଡ଼ି ଭଳି ଉପନ୍ୟାସ ଓ ବ୍ରତଭଙ୍ଗ ନାଟକର ସେ ଲେଖକ । ଲେଖକୀୟ ଜୀବନରେ ପ୍ରକାଶକର ଦ୍ୱାରସ୍ଥ ହୋଇ ଅସ୍ୱୀକୃତ ହୋଇଥିବାରୁ ନିଜେ ପ୍ରକାଶକ ସାଜିଲେ । ମୋ'ଗପ ବହିରେ "କାହୁନାଇଁ ହସୁଛି'।" ଅନୁଭବଟିକୁ ସେ ସଫାସଫା ଲେଖିଛନ୍ତି । ଲେଖକ ପ୍ରକାଶକ ହେଲେ କି ଅବସ୍ଥା ହୁଏ ସେ ଆପଣାର ଅନୁଭବକୁ ପ୍ରକାଶ କରିଛନ୍ତି । ଅଙ୍ଗେନିଭା କଥାକୁ ନିସଙ୍କୋଚ୍‌ରେ ପ୍ରକାଶ କରିଛନ୍ତି । ମାଗି ଆଣିଲା ଧର୍ମ ଆପଣାର ସର୍ବନାଶ କରେ । ସ୍ୱଧର୍ମେ ନିଧନଂ ଶ୍ରେୟଃ ପରୋଧର୍ମ ଭୟାବହଃ । ପ୍ରକାଶକଙ୍କ ଅସହଯୋଗରେ ପ୍ରକାଶକ ସାଜିଲେ ବି ଅସୁବିଧା ହୁଏ। ସେ ସୂଚାଇଛନ୍ତି ମୋ ବହିର ମୁଖଡ଼ାରେ । ନୂତନ ଲେଖକଙ୍କୁ ଏକ ଚେତାବନି ତାଙ୍କ ଲେଖା । ବହୁ ବର୍ଷ ପରେ ଯୁବ ଲେଖକ ସମ୍ମିଳନୀରେ ତାଙ୍କ ସହ ମୋର ପରିଚୟ ଘଟିଲା । ଯୁବ ଲେଖକ ସଂଗଠନର ମୁଖପତ୍ର "ସାହତ୍ୟ ସମାଚାର'ର ସେ ଥିଲେ ସମ୍ପାଦକ । ପରେ ଧରିତ୍ରି ଦୈନିକ ପତ୍ରିକାର ସମ୍ପାଦକ ଥିଲେ ସେ ।

୧୯୬୩ର ମାଘ ମାସ । ଜାନୁୟାରି ପଡ଼ିଥାଏ । ମୋ ମା' ସଦାସର୍ବଦା ପାଇଁ ମୋତେ ଛେଉଣ୍ଡ କରି ଚାଲିଗଲେ । ମୋତେ ମଙ୍ଗଲୁ ବୋଲି ଡାକିବାକୁ ଆଉ କେହି ରହିଲେ ନାହିଁ ଏ ଦୁନିଆଁରେ । ମୁଁ ଶିକ୍ଷକତାର ତାଲିମ ନେଉଁଥାଏଁ ।

ପଇସାର ଘୋର ଅଭାବ । ପଇସା ନଥିଲେ ଦିନ ବେଳାବି ଅନ୍ଧାର ଦିଶେ । ରାମନାଥ

ପଣ୍ଡାଙ୍କୁ ଚିଠି ଲେଖିଲି । ମୋର ବହି ବାବଦରେ ଯଦି କିଛି ଦେବାର ଥାଏ, ଦବାକୁ । କୌଣସି ଉତ୍ତର ଚିଠିରେ ଦେଲେନାହିଁ । ମୁଁ ମନମାରି ରହିଥାଏ । ଦେଖ ଦେଖ ବୋଇଲା ବେଳକୁ ମନିଅର୍ଡରଟାଏ ହାଜର । ତିନିଶହ ଟଙ୍କା! ବାପ୍ରେ! କେବେ କଉ ବେଙ୍ଗ ସିନା ଫାଟି ପଡ଼ିଥିଲା, ମୁଁ କିନ୍ତୁ ଖୁସିରେ ଫାଟି ପଡିଲି । ଦେଢ଼ଶହ ନୂଆ ପଇସାର ବହିକୁ ତିନିଶହ ଟଙ୍କାର ରୟେଲଟି । ମୋ ଜୀବନର ସର୍ବପ୍ରଥମ ସାରସ୍ୱତ ରୋଜଗାର । ଓଡ଼ିଶାର ଲେଖକକୁ ଅଯୋଚିତ ଭାବେ ରୟାଲଟି ଦେବା ବୋଧହୁଏ ଏଇ ପ୍ରଥମ ଘଟଣା । ଲେଖକକୁ ପ୍ରକାଶକ ପଇସା ଦେବାତ ଦୂରର କଥା ଲେଖକଠୁଁ ପଇସା ନେଇ ବହି ଛାପନ୍ତି । ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ସୁରେନ୍ଦ୍ର ମହାନ୍ତି ଭଳି ପ୍ରଚଣ୍ଡ ପ୍ରତିଭାର ଲେଖକମାନେ ବି ପ୍ରକାଶକମାନଙ୍କ ଶୀକାର ହେଇଛନ୍ତି । ଆମଭଳି ମାମୁଲି ଲେଖକଙ୍କ କଥା ନକହିବା ଭଲ ।

ଯିଏ ଗୀତ ଗାଏ ତାକୁ ପଇସା ଦେବାରେ କାହାର କୁଣ୍ଠା ନାଇଁ । ଯିଏ ଗୀତ ଗାଇବା ବେଳେ ବାଜା ବଜାଏ ପଇସା ନିଏ । ହେଲେ ଗୀତ ଯିଏ ଲେଖେ ତାକୁ ପଇସା ଦବାର ତ ଦୂରର କଥା । ଅମୁକର ଗୀତ ଗାଉଛୁ ବୋଲି କହିବାକୁ ଲାଜମାଡ଼େ । ଏଇ ହଉଛି ଓଡ଼ିଆ ମାଟିର ଲେଖକ ବାପୁଡ଼ାର ଅବସ୍ଥା । ତେଣୁ ରାମନାଥ ପଣ୍ଡାଙ୍କର ଏ ମହାନୁଭବ ଏକ ଐତିହାସିକ ଘଟଣା ମୋ ଜୀବନ ଅନୁକ୍ରମରେ ଏହା ଏକ ମନେ ରଖିବା ଭଳି ନଜିର ।

ରାମନାଥ ପଣ୍ଡାଙ୍କର ଏ ସାହାଯ୍ୟ ମୋର ଅଭାବ ଦୂର କରିନାହିଁକି କରି ପାରିବ ନହିଁ । ଲେଖକକୁ ହେୟଜ୍ଞାନ ନ କରି ତା ପ୍ରାପ୍ୟ ପ୍ରତି ସଚେତନ ହେବା ରାମନାଥ ପଣ୍ଡାଙ୍କର ମଣିଷ ପଣିଆର ଅନ୍ୟଦିଗ । ମୋ ବହିର ପ୍ରଚ୍ଛଦର ପଛ ପୃଷ୍ଠାରେ ରାମନାଥ ବାବୁ ଯଥାର୍ଥରେ ଲେଖିଛନ୍ତି । "ମଣିଷ ଜୀବନର ଅନୁଭୂତି ଗୁଡ଼ିକ କବିତାମୟ ଭାଷଣ ପରି ଟେପରେଗଡ଼ କରା ହୋଇଛି । ପଢ଼ୁ ପଢ଼ୁ ଆପଣା ଜୀବନର ବହୁବିଧ ଅନୁଭୂତି ଆଖି ଆଗରେ ଝଲସି ଉଠିବ । ମନସୁଖ ତ ମିଳିବ । ନିଜେ ନିଜର ଶିକ୍ଷକଟା ମଧ୍ୟ କରି ହେବ ।"

ଯେଉଁ ରାଇଜରେ ରାମନାଥ ପଣ୍ଡା ଭଳି ଦେବତା ଥାନ୍ତି ବହି ଛାପିବାକୁ । ସେଇ ରାଇଜରେ ଗୁରୁଜି ବୁକ୍‌ଷ୍ଟୋରର ପ୍ରକାଶକ ପରି ଦସ୍ୟୁବି ଥାଆନ୍ତି । ଭଗବାନ ଥିଲେ ସଇତାନ ଥିବାପରି । ଲେଖକକୁ କେମିତି ଟଙ୍କା ନ ଦେଇ ଜାଲକରି ଛାପା ଯାଇ ପାରିବ ସେ କୌଶଳ ଏହିପରି ସଇତାନ ପ୍ରକାଶକଙ୍କର ଥାଏ । କଳାଫଟା ଅଭିଯାନରେ ଯେଉଁ ବହି କାରବାର ହେଲା । ଏଇଭଳି ଡକେଇତ ମାନେ ଅନେକ ପଇସା କମେଇ କୋଠା ବାଡ଼େଇଲେ ।

ଭଗବାନଟିଏ ଥିଲେ ସଇତାନଟିଏ ଥାଏ । ଗାନ୍ଧୀଟିଏ ଥିଲେ ନଥୁରାମଟିଏ ଥିବାପରି ।

ରାମନାଥ ପଣ୍ଡା ପରି ଫରିସ୍ତା ପ୍ରକାଶକଟିଏ ଥିଲେ। ଗୁରୁଜି ବୁକ୍‌ଷ୍ଟୋରର ପ୍ରକାଶକ ପରି ଦସ୍ୟୁ ନଥିବେ ବା କାହିଁକି?

ମୋର ଯେତେଦୂର ମନେ ପଡୁଛି 'ଅସ୍ତରାଗର କବି' ଗଳ୍ପ ବହିର ପ୍ରଚ୍ଛଦର ଛବି ଆଙ୍କିଥିଲେ ସିଂହାଦ୍ରି ମହାରଣା। ରାମନାଥ ପଣ୍ଡାଙ୍କୁ ପ୍ରଭୁ କେବେ କାହିଁରେ ଊଣା କରିନାହାନ୍ତି। କାରଣ ରାମନାଥ ବାବୁ କାହାକୁ ଊଣା କରି ଦେଖିବା ଜାଣି ନାହାନ୍ତି!



# ୫୭. ଏକ ବ୍ୟକ୍ତିତ ଆହ୍ୱାନ

ଚଇତର ପତ୍ରଝରା ଥମିନଥିଲା। ବି.ଏ. ପରୀକ୍ଷା ପାଖେଇ ଆସିଲା। ସମ୍ବଲପୁର ଯାଇ ପରୀକ୍ଷା ଦେବି। ହେଲେ ରହିବି କଉଠି? ଏଇ ଚିନ୍ତା ଘାରୁଥାଏ ମୋତେ। ଆଲଫା ଭାଇର ସେଲୁନରେ ଦେଖାହେଲା ଭୋଳାନାୟକ ସହିତ। ଭୋଳା ନାୟକକୁ କଉଠି ନ ପାଇଲେ ଆଲଫା ସେଲୁନରେ ନିଶ୍ଚୟ ପାଇବ। ସେଇଠି ସେ ବରାବର ବସନ୍ତି। କଳାକାର ଲୋକତ। ସେତେବେଳେ ଭୋଳା ବାହା ହୋଇ ନଥାନ୍ତି। ମସ୍ତିକରି ଦିନ କାଟୁଥାନ୍ତି। ରହିବା ପାଇଁ କଉଠି ଜାଗାଟିଏ ଯୋଗାଡ଼ କରିବାକୁ ଭୋଳାକୁ କହିଲି। ଆଗପଛ କିଛି ନ ବିଚାରି ଭୋଳା କହିଲେ ମୋ ସାଙ୍ଗରେ ରହିବେ। ଚିନ୍ତା କଣ? ମା' ଅଛନ୍ତି। ଦିହେଁ ଦି ଭାଇ ପରି ରହିବା। ମସ୍ତବଡ଼ ଚିନ୍ତାରୁ ମନ ମୁକୁଳି ଗଲା।

ଭୋଳା ପାଖରେ କମ୍ ସେ କମ୍ ମାସେ କାଳ ରହିଲି। ଭୋଳାର ମା' ମୋ ମା''ରୁ ବଳି। ମୋତେ ମାସେ କାଳ ଯେଉଁ ସ୍ନେହ ଓ ଆଦରରେ ରଖିଲେ, ମୁଁ ସେଇ ଆଦରର ଋଣ ଶୁଝି ପାରିଲି ନାହିଁ ଏଇ ଜୀବନରେ। ତାଙ୍କ ପରି ମାଆ ଖୁବ୍ କମ ଲୋକଙ୍କ ଭାଗ୍ୟରେ ଯୁଟନ୍ତି। ଭୋଳା ସେଇପରି ଜଣେ କଲ୍ୟାଣମୟୀ ମାଆର ଏକମାତ୍ର ପୁଅ। ପିଲାବେଳୁ ବାପ ଛେଉଣ୍ଡ। ମୋ ଜୀବନରେ ଭୋଳାର ସ୍ଥାନ ସବା ଆଗରେ।

ଭୋଳାନାଥ ନାୟକର ଚିପିଲିମା ପାଖରେ କରଡ଼ୋଲାରେ ଘର। ଆମ ଶିକ୍ଷକ ନିତ୍ୟାନନ୍ଦ ନାୟକଙ୍କ ବଂଶର ପିଲା। ମୋଠୁ ବର୍ଷକ ତଳେ ପାଠ ପଢୁଥିଲେ। କବି ହରିଶଙ୍କର ବଡ଼ପଣ୍ଡାର ସହପାଠୀ। ଲରମ୍ଭାରେ ପଢୁଥିଲୁ। ଏକା ଛାତ୍ରବାସରେ ରହୁଥିଲୁ। ପଢ଼ା ବେଳଠୁ ଜଣାଶୁଣା। ଭୋଳା ପିଲାବେଳରୁ କଳାକାରଟିଏ। ଚିତ୍ର ଆଙ୍କେ, ଗୀତଗାଏ, କବିତା ଲେଖେ। ଶାନ୍ତି ନିକେତନରୁ ଚିତ୍ରକଳାରେ ଡ଼ିପ୍ଲୋମା କରିଛନ୍ତି। ଶିକ୍ଷକତାକୁ ବୃତ୍ତିରୂପେ ବାଛିନେଲେ। କିଛି ବର୍ଷ ମେହେର କଲେଜରେ ଥିଲେ। ତାପରେ କେନ୍ଦ୍ରୀୟ ବିଦ୍ୟାଳୟରେ ଯୋଗଦେଇ ସେଠୁ ଏବେ ଅବସର ନେଇ ଅଇଁଠା ପାଲିରେ ବସବାସ କରୁଛନ୍ତି। ଫଟୋଗ୍ରାଫିରେ ସଉକଥିଲା। ଓଡ଼ିଆ, ହିନ୍ଦି, ଇଂରାଜି ବଙ୍ଗଳା ଭଲ ଭାବରେ ଜାଣନ୍ତି। ଭୋଳା ଭିତରେ ଅନେକ ଗୁଡ଼ିଏ ଦକ୍ଷତା ଖୁନ୍ଦି ହୋଇ ରହିଛି।

ହେଲେ କେବେ ଆପଣାର ପାରିଲା ପଣକୁ ପ୍ରଚାର କରି ନାହାନ୍ତି। ସନ୍ଥ କବିର ପରି ଆପଣା ଭିତରେ ହଜି ଯାଇଥିବା କଳାକାରଟିଏ।

କଟକର ବିଶ୍ୱନାଥ ଲେନ୍‌ରେ ରହୁଥିବା ହରିହର ପଟ୍ଟନାୟକ ମୋର 'ଦିଧାର ଲୁହ। ଉପନ୍ୟାସ ଛାପିବାର ସ୍ଥିର କଲେ। ୧୯୬୧ର କଥା। ଏ ବହିର କଭର ଡ଼ିଜାଇନ କରିଥିଲେ ଭୋଳା ନାୟକ। ଏଇ ବୋଧହୁଏ ତାଙ୍କ ଜୀବନର ପ୍ରଥମ କଭର ଡିଜାଇନ। ଏହାପରେ ଭୋଳା ମୋ ଅନେକ ବହିର ପ୍ରଚ୍ଛଦ ଚିତ୍ର ଆଙ୍କିଛନ୍ତି। ଅଗ୍ନି ସମ୍ଭବା, ଦୂର ବସନ୍ତ, ପାଉଁଶ ତଳର ନିଆଁ, ଅନନ୍ୟା, ସୀମା, ଦେଖ କଇଁଛ କାଢ଼ିଛି ବେକ ଆଦି ବହିଗୁଡ଼ିକର କଭର ଡ଼ିଜାଇନ କରିଛନ୍ତି। ମୁଁ ତାଙ୍କୁ କଣା ପଇସାଟିଏ ଦେଇନାହିଁ। ବହି ଯେ ଛାପେ କୁଛୁ କୁଛୁ ହୋଇ ଛାପେ। କଳାକାରକୁ ଦେ' ବୋଇଲେ, ମଲା। ଲାଙ୍ଗୁଡ଼ ଚାପି ପଳେଇବ। ଏଇ ମୂଳ କାରଣରୁ ବୋଧହୁଏ ଆମ ଓଡ଼ିଶାର କଳାକାର ଦରିଦ୍ର। କବି ଲେଖକ, ସଙ୍ଗୀତଜ୍ଞ ଓ କଳାକାରର କଥା ନ କହିବା ଭଲ।

ମୁଁ ଜାଣେ, ଆମ ଭୋଳା ନାୟକ ଶହେକୁ ଶହେ କଳାକାର। ଭାରି ମୁଡ଼ିଲୋକ। କାମଟିଏ ପାଇଁ ମାସ ମାସ ଗଡ଼ିଯିବ। ମୁଡ଼ ଆସିଲେ ଘଡ଼ିକରେ କାମ ଫଟେ। ପିଲାବେଳରୁ ମୁଁ ତାଙ୍କୁ ଖୁବ୍ ନିକଟରୁ ନିରେଖିଛି। ଚିତ୍ର କରିବ ଯେମିତି, ଗୀତ ଗାଇବ ସେମିତି। ଗପ ଲେଖିବ ଯେମିତି ଗପିବ ବି ସେମିତି। କଉଣସି ବିଷୟରେ ବିଶ୍ଳେଷଣ କରିବାରେ ଭୋଳାର ଚମ୍‌ତ୍କାର ଦକ୍ଷତା ଅଛି। ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କର ଯେଉଁ ପ୍ରକାର ବାଜେ କଥାରେ ସଉକ ଥାଏ। ଭୋଳା ନାୟକର ସେ ସବୁ ନଥିଲା। ଲୋକପ୍ରିୟତାର ପ୍ରଚଣ୍ଡ ମଧ୍ୟାହ୍ନରେ ବି ସେ ଆପଣାକୁ ପ୍ରଚାରିତ କରି ନାହାନ୍ତି। ପ୍ରତିଭାକୁ ବଜାର ଭାଉରେ ବିକି ନାହାନ୍ତି। ସୂକ୍ଷ୍ମ ଭାବରେ କହିଲେ ତାଙ୍କର ଗୋଟିଏ **Sixth Sense** ଥିଲା। ଜୀବନକୁ ଗୋଟାଏ ବିଗ୍ ଜିରୋରୁ ଆରମ୍ଭ କରି ହଡ଼ ବଡ଼େଇ ହିରୋ ହବାର ବୃଥା ପ୍ରୟାସ କରିନାହାନ୍ତି। ଅନ୍ୟକୁ ଢ଼ାପି ଦେଇ ତୋଫା ଦିଶିବାର ପ୍ରବୃତ୍ତି ତାଙ୍କର ନଥିଲା କେବେ।

ଆଲୋଚ଼ନା ପ୍ରସଙ୍ଗରେ ସେ ବରାବର କହୁଥିଲେ। ଚିତ୍ର ହେଉଛି ଏକ **Silent Poetry** ନୀରବ କବିତା। ଆଉ କବିତା ହେଉଛି ଏକ **Talking Picture** ବାଙ୍ଗମୟ ଛବି। ଭାରତର ବଡ଼ ବଡ଼ କବି ମାନଙ୍କର କବିତା ପଢ଼ିବାରେ ତାଙ୍କର ଗଭୀର ରୁଚି଼ଥିଲା। କବିତା ପ୍ରସଙ୍ଗରେ ତାଙ୍କର ବଳିଷ୍ଠ ଉକ୍ତି ମୋର ମନେଅଛି। ଅଜ୍ଞେୟଙ୍କ 'ସାଁପ' କବିତାକୁ ଆବୃତ୍ତି କରି କହିଲେ। "ଓଁରେ ସାଁପ ନ ତୁମ ଗଲିଓଁମେ ପଲା। ଡଁସନା କାହାଁସେ ଶିଖା?" ଆରେ ସର୍ପ ତୁତ ସହରର ଗଳି କନ୍ଦିରେ ବଢ଼ିନାହୁଁ ଯେପରି ଏ ଯୁଗର ମଣିଷ ବଢ଼ିଛି। ତେବେ ଏ ଦଂଶନ କଉଠୁ ଶିଖିଲୁ? ସାପ ଜଙ୍ଗଲରେ ପ୍ରକୃତିର ବିଶାଳ ପରିବେଶରେ ବଢ଼ିଛି। ଆପାତତଃ ସରଳ ଓ ନୀରିହ ହବାକଥା। ସହରର ଗଳି କନ୍ଦିରେ ବଢ଼ିନାଇଁ ସାଂପ୍ରତିକ ମଣିଷ ପରି। ସବୁ ପ୍ରକାର ସରଳତା ତା'ଠୁ ଆଶା କରିବା କଥା।

ହେଲେ ସାପ ଦଂଶନ କରେ। ଏଣୁ ଆଧୁନିକ ବିକାର ଗ୍ରସ୍ତ ମଣିଷକୁ କବିଙ୍କର ଏ ପ୍ରକାର ଆକ୍ରମଣ। ଏପରି ପ୍ରଭାବଶାଳୀ କବିତା ସହ ଭୋଳା ନାୟକଙ୍କ ସମ୍ପର୍କ। ମୋ ଭିତରେ ଉନ୍ନତତର ଚେତନା ପୂରେଇବାରେ ଭୋଳା ନାୟକଙ୍କର ଭୂମିକା ରହିଛି।

ଭୋଳା ଭିତରେ ପ୍ରଚଣ୍ଡ କବି ପ୍ରତିଭାଟିଏ ଅଛି। ସେ କବିତା ସବୁ ଲେଖାରେ ନ ଥୋଇ ରେଖାରେ ଥୋଇଛନ୍ତି। ସେଇ ସଦା ଭୋଳାଙ୍କ ଦାନୀପଣକୁ ମୋର ନମସ୍କାର।

ଆମ ଜୀବନର ଅନ୍ତିମ ଲଗନରେ ଯେତେବେଳେ ବୟସ ଖସି ଖସି ଯାଉଛି। ତାଳ ଗଛରୁ ବରଡ଼ା ଖସିବା ପରି, ସେତେବେଳେ ଭୋଳା ନାୟକ କଥା ମୋର ବେଶୀ ମନେ ପଡ଼େ। ଟାଣ ଖରା ଗାଁ ଦାଣ୍ଡ, ଘୋ ଘୋ କରେ। ଅଶାନ୍ତ ସାଗର ପରି। ମଫସଲୀ ଅନ୍ଧାରରେ ଡାଆଣୀ ମାନେ ବାଳ ମୁକୁଳା କରି ବୁଲନ୍ତି। ପାଦରେ ପଇଁରି ଝମ୍‌ଝମ୍ ବଜାଇ ଆସନ୍ତି। ଆଉ ଦୂର ଗାଁରୁ ଶୁଭୁଥାଏ ବଇଁଶୀର ଥରିଲା ଥରିଲା ଡ଼ାକ। ଚେତନାରେ ପରସ୍ତ ପରସ୍ତ ଭିତରକୁ ପଶିଯାଉଥାଏ ସ୍ମୃତିର ଚଢ଼େଇ। ତାର ଡ଼େଣାରେ ଅନେକ ଅନେକ ନୀଳିମାର ଆସ୍ତରଣ। ଲୁହରେ ଓଜନିଆ ହୋଇଯାଏ ଆଖିପତା। ମାଟିତଳେ ଗଛରେ ଚେର ମୁହଁମାଡ଼ି ପଡ଼ିବା ପରି। ବୀପରିତ ଭାବେ। ସ୍ମୃତିର ମଇଦାନରେ ଭୋଳା ନାୟକର ସହଚର୍ଯ୍ୟ ଆଭାମୟ ହୋଇ ଉଠେ।

ଆମ ଜୀବନରେ ସ୍ଥିର ବିନ୍ଦୁ ନଥିଲା। ନଥିଲା କିଛି ହବା କିଛି କରିବାର ଆହ୍ୱାନ। ମାରତେ ମାରତେ ରାଜା। ଆଉ ଫିରତେ ଫିରତେ ଯୋଗୀ ହେବା ଭଳି ଆମେ ଯିଏ ଯାହା ହବାର ହୋଇଗଲୁ। ଦେଶର ପୁରୁଣା ଚଳଣି ବଦଳିଗଲା। ପକ୍ଷିଡ଼େଣାରୁ ପର ଝାଡ଼ିବା ପରି। ପୁରୁଣା ସମୟ ପର ଝାଡ଼ି ଦେଲା ଚିଲ ପରି।

ଆମ ରକତରେ ମା' ସମଲେଇଙ୍କ ଠୋଲାଏ ପ୍ରସାଦ ପରି ଅପୂର୍ବ ପଦାର୍ଥମାନ ଦିବ୍ୟ ଦରବମାନ, ଆଶୀର୍ବାଦ ରୂପେ, ଆହ୍ୱାନ ରୂପେ ବ୍ୟଞ୍ଜିତ ହେଉଥିଲା। ସେ ଆହ୍ୱାନର ଜୀବନ୍ତ ରୂପଟିଏ ଆମ ଭୋଳା ନାୟକ।



# ୪୮. କଉ କଥାରୁ କଉ କଥା

ସମ୍ବଲପୁର ସାନ ସଡ଼କରେ କଂସାରି ପଡ଼ା। କଂସାରି ପଡ଼ା ମଝିରେ ଛୋଟ ବହି ଦୋକାନଟିଏ। ନାଆଁଟି ମଡର୍ଣ୍ଣ ବୁକ୍ ହାଉସ। ମାଲିକଟି ଗଣ୍ଡାମିଆଁ ଲୋକ। ଗମ୍ଭୀର ସ୍ୱଭାବର। ଗର୍ବ ବୋଲି କିଛି ନାଇଁ ନାଁଟି ବିନୋଦ ବିହାରୀ ମିଶ୍ର।

ଥରକର କଥା। ଏମିତି ଗପସପ ହେଉଥାଏ। ସେ ବୁଝାଇ କହିଲେ। ଯାହୁ ସ୍ୟାହୁ କବିତା ଲେଖୁଛନ୍ତି। ଯେଉଁମାନେ ଦେଶପାଇଁ ଜୀବନ ଦେଲେ ତାଙ୍କ ପାଇଁ କିଛି ଲେଖୁ ନାହାନ୍ତି। ତାଙ୍କର ଏ ମଧୁର ପ୍ରେରଣା ମୋତେ ଉଦ୍‌ବୁଦ୍ଧ କଲା। ଶହେରୁ ବେଶୀ

ସ୍ୱାଧୀନତା ସଂଗ୍ରାମୀଙ୍କର, ସିପାହିଙ୍କର ଜୀବନକୁ ନେଇ କବିତା ଲେଖିଲି । ଛୋଟ ଛୋଟ କବିତା । କିଶୋର ପିଲାମାନଙ୍କ ପଢ଼ିବା ଭଳି । ତରୁଣ କଅଁଳ ମନକୁ ଛୁଇଁବ ଯେମିତି । ସେ ଭଦ୍ର ଲୋକଟି ପ୍ରକାଶ କଲେ । ବହିର ନାଁଥିଲା "ପାଉଁଶ ତଳର ନିଆଁ ।" ବ୍ରହ୍ମପୁର ପ୍ରଗତି ପ୍ରେସ୍‌ରେ ଛପା ହୋଇଥିଲା । ଭୋଳାନାଥ ନାୟକ କଭର ଡିଜାଇନ କରିଥିଲେ । ପ୍ରକାଶକ ଆଉ ନାହାନ୍ତି । କେବେଠୁଁ ପାଉଁଶ ହେଲେଣି ହେଲେ, ସେ ଏବେବି ମୋ ସ୍ମୃତିରେ ନିଆଁଭଳି ଦପଦପ କରୁଛନ୍ତି ।

ଲିଙ୍ଗରାଜ ପଣ୍ଡା । କଟକର ବାଙ୍କା ବଜାରରେ ବହି ଦୋକାନ ଅଛି । ମୋର ଏକାଧିକ ବହିର ପ୍ରକାଶକ । ଗୀତି କବିତା ସଙ୍କଳନ 'ମାଳଞ୍ଚ'! ଶିଶୁ କବିତା ସଙ୍କଳନ 'ଆଲୋ ନିଦ ମାଉସୀ ଆ' ପ୍ରବନ୍ଧ ସଙ୍କଳନ 'ଚିନ୍ତା ଓ ଚୈତନ୍ୟ' ଏପରି ଚାରୋଟି ବହି ଛାପିଛନ୍ତି । ଲିଙ୍ଗରାଜ ପଣ୍ଡା ଗଞ୍ଜାମର ଲୋକ । ବେଶୀ ପାଠ ପଢ଼ି ନାହାନ୍ତି । ଶାଠରେ ଧୁରନ୍ଧର । ବହି ବେପାରରେ କୁଶଳୀ । ଖଟି ଖାଇବାଲୋକ ଠକି ଜାଣନ୍ତି ନାହିଁ । ଭଲଲୋକ ବେପାରରେ ଉଧେଇ ପାରେନାହିଁ । ଲିଙ୍ଗରାଜ ପଣ୍ଡା ତାର ଏକ ନିଖୁଣ ନମୁନା ।

ବିନୋଦ ବିହାରୀ ସାମନାରେ ଫେଣ୍ଡସ ପବ୍ଲିସର୍ସ । ମାଲିକ ସହଦେବ ପ୍ରଧାନ ମୋର ଦୁଇଟି ବହି ଛାପିଛନ୍ତି । 'ସୀମା' ସନେଟ ସଙ୍କଳନ । ଗପବହି 'ଅନ୍ୟ ଦିଗନ୍ତ' । ଏ ବହିର ପ୍ରଚ୍ଛଦ ଆଙ୍କିଛନ୍ତି ଓଡ଼ିଶାର ନାମଜାଦା ଶିଳ୍ପୀ ଅସୀତ ମୁଖାର୍ଜୀ । ଏ ବହିର ଗଳ୍ପ 'ସୁମତିର ସ୍ୱପ୍ନ' ମାଧ୍ୟମିକ ଶିକ୍ଷାବୋର୍ଡ଼ର ଗଳ୍ପ ଓ ଏକାଙ୍କିକାରେ ପାଠ୍ୟ ହୋଇଥିଲା । ସହଦେବ ପ୍ରଧାନ ମୋ ସହ ଭଲ ସମ୍ପର୍କ ରଖିଛନ୍ତି । ସେ ଜଣେ ମେଳାପି ଓ ଉତ୍ସାହୀ ବନ୍ଧୁ ।

୧୯୬୮ର କଥା । କଟକର ଚାଦିର୍ନି ଚୌକ ଆଡ଼େ ଯାଉଛି । ଅକସ୍ମାତ ଦେଖାହେଲା ନବ କିଶୋର ମହାପାତ୍ରଙ୍କ ସହିତ । ଜେ. ମହାପାତ୍ର ଏଣ୍ଡକୋର ମାଲିକ । ସେ କହୁଁ କହୁଁ କହି ପକାଇଲେ ଖଣ୍ଡେ ବହି ଦେବା ପାଇଁ । ମୋର ଯେତେ କବିତା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ସେ ଗୁଡ଼ିକ ସଂଗ୍ରହ କରି ପଠାଇଦେଲି । କବିତା ବହି ଛାପିବାକୁ ପ୍ରାୟ ପ୍ରକାଶକ ମାନେ କୁଛୁ କୁଛୁ ହୁଅନ୍ତି । ମାତ୍ର ନବ କିଶୋର ଶ୍ରଦ୍ଧାର ସହ ଖୁବ୍ ସୁନ୍ଦର ଭାବରେ ବହିଟି ପ୍ରକାଶ କଲେ । ବହିଟିର ନାଁ ଥିଲା 'ମନଲୀନା' ।

କଟକ ବାଙ୍କା ବଜାରରେ ଆଉ ଗୋଟିଏ ବହି ଦୋକାନ ସାହିତ୍ୟ ସଂସାର । ଦୋକାନର ମାଲିକ ଯତୀନ୍ଦ୍ର କୁମାର ଦାସ । ସେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କ ଜ୍ୱାଇଁ । ଥରେ ଏମିତି କଥାଭାଷା ହେଉଁ ହେଉଁ ସେ ମୋତେ କହିଲେ ବହି ଖଣ୍ଡେ ଦବାକୁ । ସତକ୍ଷଠିଟି କବିତାର ଏକ ସଙ୍କଳନ ବାହାର କଲେ ସେ । ବହିଟିର ନାଁ ଥିଲା 'ବରଫ ଦେଶର କନ୍ୟା' । ଏ କବିତା ବହିର କଭର ଡ଼ିଜାଇନ କରିଥିଲେ ଗୋପାଳ କାନୁନ୍‌ଗୋ । ଏବେ ଶୁଣିଲିଣି ଯତୀନ୍ଦ୍ର କୁମାର ଦାସ ବହି ବ୍ୟବସାୟ ଛାଡ଼ି ଦେଲେଣି ।

ସେଇ ବିନୋଦ ବିହାରୀ ଗଳିରେ ସତ୍ୟ ସାରାୟର ବୁକ୍‌ଷ୍ଟୋର। ମାଲିକଟି ସହଦେବ ପ୍ରଧାନଙ୍କ ସମ୍ପର୍କୀୟ। ସହଦେବ ପ୍ରଧାନଙ୍କ ବହି ଦୋକାନରେ ଆଗରୁ କାମ କରୁଥିଲେ। ଏବେ ଆପଣା ଢୋଳ ପିଟିବାକୁ ଆରମ୍ଭ କଲେଣି। କଲାପଟା ଅଭିଯାନ ଯେତେବେଳେ ଘୋର ସୋରରେ ଚାଲିଥିଲା। କଟକରେ ବହି ଦୋକାନିମାନଙ୍କ ହରବର କହିଲେ ନସରେ। ପିଲାଙ୍କ ବହି କିଣୁଥାନ୍ତି ସରକାର କଲାପଟା ଅଭିଯାନରେ। ଶିକ୍ଷକ କିପରି କଲାପଟାକୁ ବେଶୀ ବ୍ୟବହାର କରି ପିଲାଙ୍କୁ ପାଠ ପଢ଼େଇବ। ସେଥିପାଇଁ ପ୍ରଚୁର ଅର୍ଥ ମଞ୍ଜୁର ହେଉଥିଲା। କେଉଁ ମହାତ୍ମା କି ବୁଦ୍ଧି ଦେଲା ଯେ କଲାପଟା ପାଇଁ ବହି କିଣିଲେ। ହଜାର ହଜାର ବହି ଗୋଦାମରେ ସଢ଼ିଲା। ପିଲାଙ୍କ ପାଖକୁ ଯାଇଥାନ୍ତା ଭଲା। କିଛି ଅସାଧୁ ବହି ବେପାରୀ ଏ କଲାପଟା କାରବାରରେ ବଙ୍ଗଲା ବାନ୍ଧିଲେ। କିଛି ବେଇମାନ ସାହେବ ସାହି ସାହି ଘର ବସେଇଲେ ରାଜଧାନିରେ। ଶୂନ୍ୟକୁ ଶୂନ୍ୟ ଗଲା ମିଶି ଗୋପୀ ପଡ଼ିଲେ ତଳେ ଖସି ନ୍ୟାୟରେ ଟଙ୍କା ଶୂନ୍ୟରେ ହଜିଗଲା। ଆମ ପିଲାଏ ଖସି ପଢ଼ିବା ସାରହେଲା। ଏମିତି ଏକ ହଟ ସେସନ ରେ ସତ୍ୟ ନାରାୟଣ ବୁକ୍ ଷ୍ଟୋର ମୋ ଦୁଇଖଣ୍ଡ ବହି 'ତୁମରି ପରି ପିଲାଟିଏ', 'ଆପଣା କିଆକୁ ଇଲାଜ କିଆଁ' ଛାପିଥିଲେ। ଲଙ୍କାରେ ସଭିଏଁ ଅସୁର ହେବାପରି ସେ ଭଦ୍ରଲୋକ ଦେବତା ହୁଅନ୍ତେ କିପରି? କଳାପଟା ଅଭିଯାନ ସବୁ ନିରୀହ ମେଣ୍ଢା ଛୁଆଙ୍କୁ ବି ମଲା ମାଉସଖିଆ ହେଟାବାଘ କରି ପକେଇଲା।

ମୋର କୌଣସି ବହି ଛାପି ନଥିଲେ ବାଲୁ ବଜାରର ଦାଶରଥି ପୁସ୍ତକାଳୟର ମାଲିକ ମୋର ଜଣେ ବନ୍ଧୁ ଦାଶରଥି ଦାସ। ଏକାଠି ଏକଦା ପଢୁଥିଲୁ। ପ୍ରଜାତନ୍ତ୍ରରେ ମୁଁ ସାମୟିକ ସାମ୍ବାଦିକତା କରୁଥିବା ଅବସରରେ। ଆମ ସାହିତ୍ୟିକ ଗଉରୀ ଶଙ୍କର ପାଣିଗ୍ରାହୀଙ୍କ 'ଦିଗ୍ ବଳୟର ଆର ପାରେ' ବହି ଖଣ୍ଡିକ ସେ ଛାପିଥିଲେ।

ଅଭିରାମ ମହାପାତ୍ର ଗ୍ରନ୍ଥ ମନ୍ଦିରର ମାଲିକ। ଖାଲି ବହି ବେପାର କରି ଓଡ଼ିଶାରେ କେହି ଯଦି ବଡ଼ ଲୋକ ହୋଇଥାଏ। ତାର ଏକମାତ୍ର ଉଦାହରଣ ଅଭିରାମ ବାବୁ। ଅନ୍ୟ ଦ୍ରବ୍ୟ ତ ଦୂରର କଥା, ସେ କେବେ ମାନେ ବହି, ଟେଷ୍ଟ ପେପର ପ୍ରକାଶ କରି ନାହାନ୍ତି। ଖାଲି ସାହିତ୍ୟର ବହି କାରବାର କରି ଚାଲିଛନ୍ତି ସେ ଏ ଯାଏଁ।

ଆମେ ଏପଟେ ବହି ସହିତ ବେଲୁନ ନ ବିକିଲେ ବେପାର ଚଳେ ନାହିଁ। ହେଲେ ଗ୍ରନ୍ଥ ମନ୍ଦିର ଗ୍ରନ୍ଥ ଛଡ଼ା ଅନ୍ୟ କୌଣସି ଛନ୍ଦରେ ଛନ୍ଦି ହୋଇ ନାହିଁ ମୋ ଜାଣିବାରେ।

ନାନା କାମରେ ମୁଁ ୧୯୫୦ରୁ କଟକ ଯା ଆସ କରୁଛି। ଅଭିରାମ ମହାପାତ୍ରଙ୍କ ସହ ମୋର ପରିଚୟ ବଢ଼ିବା ବେଳକୁ ମୁଁ କଟକର ଜଣେ ଅଧା ବାସିନ୍ଦା। ନାନା କାମରେ ମାସକୁ ସାଥରେ କଟକ ଦଉଡ଼ିବାକୁ ପଡୁଥିଲା। ଦିନେ ଗ୍ରନ୍ଥ ମନ୍ଦିର ଭିତରେ ଗପସପ ଚାଲିଥାଏ। ଅଭିରାମ ମହାପାତ୍ର ବହିଟିଏ ମାଗିଲେ। ମୁଁ ମୋର ସାତଟି ରେଡ଼ିଓ ଡ୍ରାମାକୁ 'ଉପନାୟିକା' ନାମରେ ବହିଟିକୁ ଦେଲି। ସେ ମୋ ସହ ଚୁକ୍ତି ସମ୍ପାଦନ କଲେ ରୀତିମତ

କୋର୍ଟ କଚେରିରେ କାରବାର ପରି ଲେଖାପଢ଼ା ହେଲା। ସେମୋତେ ହିସାବ କରି ତୁହାକୁ ତୁହା ରୟାଲଟି ବରାବର ଦେଲେ। ନ ମାଗିଲେ ବି ଯାଚି ଦବାର ଏକମାତ୍ର ଲୋକ ହଉଛନ୍ତି ଅଭିରାମ ମହାପାତ୍ର, ମାରିନେବା ମହାପାତ୍ର ସେ ନୁହନ୍ତି।

ବହି କାରବାର କଥା ପଦୁଥିବା ବେଳେ ବନ୍ଧୁ ଭାଗ୍‌ରଥି ନେପାକ ମୋ ମନ ଭିତରକୁ ଜବରଦସ୍ତି ପଶି ଆସୁଛନ୍ତି। ମୋଠୁ ଚାରିବର୍ଷର ବଡ଼ ହେବେ। ଭୁବନେଶ୍ୱରରେ ପଶ୍ଚିମ ଓଡ଼ିଶା ବୋଲି ଗୋଟିଏ ଶବ୍ଦ ଯଦି କେହି ପ୍ରଥମେ ଉଚ୍ଚାରଣ କରିଥାଏ, ସେ ବ୍ୟକ୍ତିଟି ହେଉଛନ୍ତି ଭାଗ୍‌ରଥି ନେପାକ। ସୋନପୁର ଜିଲ୍ଲାର ବିନିକା ପାଖରେ ଲଛିପୁର ଗାଁରେ ଘର। ଭୀମାଭୋଇଙ୍କ ଖଲିଆ ପାଲିର ଖୁବ୍ ପାଖରେ ତାଙ୍କ ଗାଁ, ଏ.ଜି. ଅଫିସରେ ଚାକିରି କରୁଥିଲେ। ଏବେ ଅବସର ନେଲେଣି। ଭୁବନେଶ୍ୱର ନୂଆଁପଲ୍ଲୀରେ ସ୍ଥାୟି ଭାବରେ ରହୁଛନ୍ତି। ସାହିତ୍ୟରେ ଲଢ଼େଇ କରିବାରେ ସେ ଧୁରନ୍ଧର। ସାହିତ୍ୟ କ୍ଷେତ୍ରରେ ମୋର ସହ ତାଙ୍କ ସମ୍ପର୍କ ଭୁଲିବାର ନୁହେଁ। ଭୀମ ଭୋଇ ଉପରେ ମୁଁ ଯଦି କିଛି ପଢ଼ିଥାଏ ବା ଲେଖିଥାଏ ତା ମୂଳରେ ଭାଗିରଥି ନେପାକଙ୍କ ପ୍ରେରଣା ରହିଛି।

କହୁ କହୁ କଉ କଥାରୁ କଉକଥା କହି ପକାଇଲି ଯେ!



## ୫୯. ଲୋହିତ ସନ୍ଧ୍ୟାର ଆଭା

ପୁଅର ଚାକିରି ଲୋଡ଼ା, ସାହୁ ବାବୁଙ୍କୁ କୁହ। ପଥର ଦରକାର ସାହୁବାବୁଙ୍କୁ କୁହ। ରାୟପୁରିଆ ପାଟଣୀ ପଥର ଆବଶ୍ୟକ, ସାହୁ ବାବୁଙ୍କୁ ପଚାର। ଦେହ ଅସୁଖ ହେଲା ସାହୁବାବୁଙ୍କ ପାଖକୁ ନିଅ। ପୁଅ ବାହାପାଇଁ ଗାଡ଼ି ଦରକାର ସାହୁ ବାବୁଙ୍କ ପାଖକୁ ଯାଅ। ଚଣ୍ଡିପାଠରୁ ଯୋତା ସିଲାଇ ପର୍ଯ୍ୟନ୍ତ ଯାହାର ଯାହା କାମଥିବ ସେ ସାହୁବାବୁଙ୍କୁ ପଚାରିବ। ସାହୁ ବାବୁ ତା' କାମ ଠିକ୍ ଠିକ୍ ସଜାଡ଼ି ଦେବେ।

ଥରେ ପିଲାଟିଏ ମୋ ପାଖକୁ ଆଇଲା, କୌଣସି କାମ ପାଇଁ। ତା' ବାପ ମା ମୋ ପାଖକୁ ପଠାଇଥିଲେ। ପଚାରୁ ପଚାରୁ ପଚାରିଦେଲି ପିଲାକୁ କି କାମ କରୁଛ ବୋଲି। ପିଲାଟି ଉତ୍ତର ଦେଲା ସେ ମିଲିଟାରିରେ ଯାଇଛି। ଆଶ୍ଚର୍ଯ୍ୟ ହେଲି। ମିଲିଟାରିକୁ ଗଲେ କିମିତି? କିଏ ବଟେଇଲା। କିମିତି ପାଇଲେ ହେ? ଆଜିକାଲି କଣ କରୁଛ ବୋଲି ପଚାରିବା ନିରାପଦ ନୁହେଁ। ପିଲାଟି କହିଲା ସାହୁବାବୁଙ୍କ ଧରମରୁ ଚାକିରି ଖଣ୍ଡିକ ପାଇଲି। କୋଉ ସାହୁ ବାବୁ, ପଚାରି ଦେଲି। ସେ କହିଲା ସିନ୍ଦୁର ପଙ୍କ ଛକରେ ରହୁଥିବା ସେ ସାହୁବାବୁ। ଜାଣିଲି, ସାହୁବାବୁ ବହୁ ପିଲାଙ୍କର ଜୀବନ ଜୀବିକାରେ ସହାୟତା କରନ୍ତି। ବାଟ ଦେଖାନ୍ତି। ସାଧାରଣ ମଫସଲୀ ମଣିଷ ଠାରୁ ହୁକୁମ ହାକୁଥିବା ହାକିମ

ପର୍ଯ୍ୟନ୍ତ ସାହୁ ବାବୁଙ୍କ ଗୋଟାପଣେ ବୋଲକରା ହୋଇଯାନ୍ତି । ତା' ମୂଳରେ ଏ କାରଣଟି ରହିଛି ଯେ ସେ ମଣିଷକୁ ଦରକାର ବେଳେ ସାହାଯ୍ୟ କରନ୍ତି **A friend in need a friend in is deed.** କଥାକୁ ଭଲଭାବେ ବୁଝିଛନ୍ତି ସେ । ଯେଉଁଠି ଯେତେବେଳେ ଯାହା କାମ ଥାଉ ସାହୁ ବାବୁଙ୍କୁ ଧଇଲେ କାମ ଫତେ ହୋଇଯାଏ ।

ଦିନେ ମୋ ସହକର୍ମୀ ବନ୍ଧୁ ଉଦିତ ଚନ୍ଦ୍ର ପାଟଯୋଷୀ ଆଉ ମୁଁ ସ୍କୁଟରରେ ସମ୍ବଲପୁର ଯାଉଥାଉଁ । ସିନ୍ଦୁରପଙ୍କ୍‌ର ସେ ପଟେ ଯେଉଁ ଜାତୀୟ ରାଜପଥ ଓ ଲିଙ୍କ ରୋଡ଼ ମିଶିଛି, ସେଇଠି ଗୋଟାଏ ସାଇକେଲ ସହ ଆମର ଧକ୍କା ହେଲା । ଆମେ ପଡ଼ିଗଲୁ । ସେଇ ସାଇକେଲ ବାଲାର ଖଣ୍ଡିଆ ଖାବରା କିଛି ହୋଇନାହିଁ । ସେ ଖାଲି ପଡ଼ିଗଲା । ଆମେ ସାମାନ୍ୟ ଆଘାତ ପାଇଲୁ । କଚେରିକୁ ଯିବାବେଳେ ବହୁଲୋକ ସମ୍ବଲପୁର ଆଡ଼କୁ ମୁହେଁଇଥାନ୍ତି । ଆମ ବନ୍ଧୁ ବାନ୍ଧବ ଭିତରୁ କେତେଜଣ ସେଇ ବାଟରେ ଗଲେ । ଆହା ପଦତ ଦୂରର କଥା ଆଡ଼ ଆଖିରେ ଦେଖିଲେ ନାହିଁ ।

କଉଠିଥିଲେ କେଜାଣି ପୋଲିସ ଆସିଲେ । ସବୁକଥା ଟିପିନେଲେ । ଖଣ୍ଡିଆ ଖାବରା ହୋଇ ଡ଼ାକ୍ତରଖାନା ଯାଇଥାନ୍ତୁ ସିନା । ଥାନାକୁ ଗଲୁ । କଉଠୁ ଖବର ପାଇଲେ କେଜାଣି ସାହୁବାବୁ ଧାଇଁ ଆସିଲେ । ପ୍ରାରମ୍ଭିକ ଚିକିତ୍ସା କଲେ ଓ ଥାନାର ଝାମେଲାରୁ ଆମକୁ ରକ୍ଷା କଲେ । ସିଧା କଥାକୁ ଥାନାରେ ଟେଢ଼ା କରି ପକାନ୍ତି ବୋଲି ଯାହା ଶୁଣିଥିଲି ତାହା ନିଜ ଅନୁଭବରେ ଜାଣିଲି ।

ସାହୁ ବାବୁଙ୍କ ମତ ପହିଲେ ପରାଣ ବଞ୍ଚୁ ତାପରେ ଜେଲ, ଫାସି କି ଜରିବାନା ଯାହା ହେବ ହେବ । ପରାଣ ଥିଲେ ତ ସେ ସବୁ ହେବ । ବିପଦ ବେଳେ ଯେ ଠିଆ ହୁଏ ସିଏ ବାନ୍ଧବ । "ରାଜଦ୍ୱାରେ ଶ୍ମଶାନେ ଚ" ବୋଲି ଆମ ପଣ୍ଡିତ ମାନେ କହି ଯାଇଛନ୍ତି । ବିପଦରେ ବି ସାହୁବାବୁ ସମ୍ପଦରେ ବି ସାହୁବାବୁ । ବିପଦବେଳେ ଯେମିତି ସାହୁବାବୁ ଦଉଡ଼ିଗଲେ, ମୋ ଝିଅ ବାହା ବେଳେ ସେମିତି ଗାଡ଼ିଧରି ହାଜର ।

କାହିଁକି କେଜାଣି ଏ ସାହୁ ବାବୁଙ୍କୁ ଦେଖିଲା ଦିନଠୁ ତାଙ୍କ ଆଡକୁ ମୋ ମନ ଢ଼ଳି ପଡ଼ିଛି ମୋର ଶହଶହ ଉପକାର କଲେଣି ହେଲେ ମୁଁ ତାଙ୍କର ଗୋଟାଏ ବି କାମ କରି ପାରିନାହିଁ । ଏ ଜୀବନରେ ବୋଧହୁଏ ମୁଁ ତାଙ୍କର ରିଣୁଆ ହୋଇ ରହିଯିବି ।

ଏ ସାହୁ ବାବୁଟି ହେଲେ ଆନନ୍ଦ ଚ଼ନ୍ଦ୍ର ସାହୁ । ବାଉଁଶ କନି ପରି ସରୁ ମଣିଷଟିଏ । ଓଜନରେ ଚାଲିଶ କିଲୋରୁ ବୋଧହୁଏ କମ ହେବେ । ହେଲେ ମନର ଓଜନ ଏତେ ବେଶୀ ଯେ ମସ୍ତବଡ଼ କ୍ରେନବି ଉଠାଇପାରିବ ନାହିଁ ।

ଜୀବନ ଜୀବିକା ପାଇଁ ମୂଳରୁ ସ୍ୱାସ୍ଥ୍ୟ ବିଭାଗରେ କାମ କରୁଥିଲେ । ଏବେ ଅବସରରେ । ଯିଏ ଦେଖିବ ଭାବିବ ସ୍ୱାସ୍ଥ୍ୟହୀନ ସ୍ୱାସ୍ଥ୍ୟ କର୍ମୀଟାଏ ହେଲେ ତାଙ୍କ ପତଲା ଦିହରେ ସ୍ୱାସ୍ଥ୍ୟ ଖୁନ୍ଦି ହୋଇ ରହିଛି । ଦିହରେ ମାଉଁସ ଭରିଥିଲେ ସ୍ୱାସ୍ଥ୍ୟବାନ ହୁଏ ନାହିଁ । ନୀରୋଗୀ

ମଣିଷଟିଏ। ହରେକ ଲୋକଙ୍କ ରୋଗ ଛଡ଼େଇବ ଯିଏ। ଟା ପାଖକୁ ରୋଗ ଆସି ପାରିବ?

ଆଗେ ପୁରୀ ଜିଲ୍ଲାର ଲୋକଥିଲେ। ଘରଟି ନୟାଗଡ଼ ଜିଲ୍ଲାରେ। କିନ୍ତୁ ଏବେ ସଦା ସର୍ବଦା ପାଇଁ ସେ ସମ୍ବଲପୁରୀଆ ହୋଇଗଲେ। ଶରଣ କୂଳର ଲଦ୍ଦୁ ବାବାଙ୍କ ବାନା ଯାହା ଉପରେ ଛାଇ କରିଛି ତାକୁ ଆଉ କଉ ଛାଇର ପ୍ରୟୋଜନ ଯେ! ଏବେ ସିନ୍ଦୁରପଙ୍କ ଛକ ଉପରେ ଘରକରି ମା' ସମଲେଇଙ୍କ ଶରଣ ପାର୍ଥୀ ହୋଇ ରହିଛନ୍ତି। ଲୋକ ସେବାକୁ ଶେଷ ଜୀବନର ବ୍ରତ ରୂପେ ବାଛି ନେଇଛନ୍ତି। ବଡ଼ି ଭୋରରୁ ଉଠି ପ୍ରାତଃ କୃତ୍ୟ ସାରି ବଇଠକ ଘର ଚଉକିରେ ଫିଟ୍‌ଫାଟ୍ ବସିବେ। ଚାରିଆଡ଼ ଫରଚା ଫରଚା ହେବା ବେଳକୁ ଲୋକେ ଗୁଡ଼ ପାଖକୁ ପିମ୍ପୁଡ଼ି ଆଇଲା ପରି ଧାଡ଼ି ବାନ୍ଧିବେ। ରୋଗୀ ସେବାରେ ସମୟ ଅଣ୍ଟେ ନାଇଁ। କି ମନ୍ତ୍ରର ଜାଣନ୍ତି କେଜାଣି ବୁର୍ଲାରୁ ଫେରିଥିବା ରୋଗୀ ତାଙ୍କଠି ଚେଙ୍ଗା ହୋଇ ଘରକୁ ଫେରେ। ଛାପାଖାନାଟିଏ କରିଛନ୍ତି। ସେଇଠି କେଇଜଣ ଚାକିରି ପାଇଛନ୍ତି। ଖଟି ଖା, କୁଟି ଖା, ଏଇ ନୀତିର ଲୋକ। ମାରୁତିଟିଏ ଅଛି ଗୁଣ୍ଡୁଣୀ ହାତୀପରି। କିଛି ନହେଲା ନାଇଁ। ଡ୍ରାଇଭର ପିଲାଟିଏ ଚାକିରୀ ପାଇଛିତ। ନିଜ ଯିବା ଆସିବା ବାହାରେ ଯିଏ ଚହିଁଲା, ନେଲା। ଏଣ୍ଡୁ ତେଣ୍ଡୁ ଚୁଟୁକି ପୁଟୁକି କାମରେ ସୂର୍ଯ୍ୟ ବୋଲି ପିଲାଟି ଅଛି ସାହାଯ୍ୟ କରିବାକୁ। ଛାଇପରି କାମ କରୁଛି। ତାଙ୍କ ଘରକୁ ଘେରି ରହିଛନ୍ତି ଭଡ଼ାଟିଆ ଲୋକେ। ଉପର ମହଲାରେ ଶିଶୁମନ୍ଦିର କୁନି କୁନି ପିଲାଏ ପାଠ ପଢ଼ନ୍ତି। ପ୍ରଜାପତି ଭଳି ଡ଼େଣା ମେଲାଇ ଯିବା ଆଇବା ବେଳେ ସେ ଛୁଆଙ୍କର ମଧୁର ଚାହାଣି ସତେ ମଣିଷକୁ ହଜାଇଦିଏ ଆଉ କଉଠି। ଛୋଟ ପରିବାର ସୁଖୀ ପରିବାର ପାଖ ଘର କାନ୍ଥରେ ଲେଖା ନଥିଲେବି ଶୁଣିଲା ଭଳି ଏକ ଦୁଇ ତିନ ପ୍ରାଣୀର କୁଟୁମ୍ବ। ଭାରୀଯା ବାସନ୍ତୀ ଓ ଝିଅ ମମତା ସାହୁ। ବାସ୍ ସେତିକି ଟ ଢେ଼ର। ଏଇମିତି ଏକସଦା ବ୍ୟସ୍ତ ସଂସାର ଘେରି ରହିଛି ତାଙ୍କ ଘରକୁ।

ରୋଜରୋଜର ତେଲ ଲୁଣକୁ ଠାକୁର ଚ଼ଳାଇ ନିଅନ୍ତି। ବାରଜାତିର କାରବାରରୁ ଏବେ ବନ୍ଧନ କାଟି ବସିଲେଣି। ଶେଷ ବେଳକୁ ଶିକ୍ଷା ସଂସ୍କୃତିରେ ମନ ପ୍ରାଣ ଢ଼ାଳି ଦେଲେଣି। ସଭା ସମିତିରେ ଯୋଗଦାନ, ରାମାୟଣ ପାରାୟଣ, ସତସଙ୍ଗ ଆଦିକୁ ମନ ସକସକ ହେଲାଣି। ମୁଠାଟାକର ମଣିଷଟିଏ। ଏତେ କାମକୁ ହାତ ବଢ଼ାଇ ପାରୁଛନ୍ତି? ଆଶ୍ଚର୍ଯ୍ୟ ଲାଗେ!

ଏଇ ଆନନ୍ଦ ଚନ୍ଦ୍ର ସାହୁ କଥା ମନେ ପଡ଼ିଲେ ରାମକୃଷ୍ଣ ପରମହଂସଙ୍କର ଗୋଟିଏ କାହାଣୀ ମନେ ପଡ଼ିଯାଏ।

ବେଲୁର ମଠରେ ସନ୍ଧ୍ୟା ପ୍ରାର୍ଥନା କରୁଥାନ୍ତି ରାମକୃଷ୍ଣ। ଜଣେ କର୍ମ ବ୍ୟସ୍ତ ଡ଼ାକ୍ତର ରାମକୃଷ୍ଣଙ୍କୁ ଦେଖାକଲେ। କାମରେ ଭୀଡ଼ ଯୋଗୁଁ ଏପରି ସତସଙ୍ଗକୁ ଆସି ପାରୁ

ନାହାନ୍ତି ବୋଲି ଦୁଃଖ କଲେ। ରାମକୃଷ୍ଣ ହସି ଦେଇ କହିଲେ ଲକ୍ଷ୍ୟଟି ସ୍ଥିର ରହିଲେ ଏକା ସାଙ୍ଗରେ ଅନେକ କାମ ହେବ। କଥାଟାକୁ ସହଜରେ ବୁଝାଇ ଦେବାକୁ ଗପଟିଏ କହିଲେ ରାମକୃଷ୍ଣ ପରମହଂସ।

ଗାଁ ମଝିରେ କେଉଟୁଣୀର ଘର। ବଡ଼ି ଭୋରରୁ ଉଠେ। ମୁଢ଼ି ଭାଜେ। ଚାଉଳ ଭାଜେ। କୋଳର ଛୁଆକୁ ଥନରୁ ଲୁଗାକାଢ଼ି କ୍ଷୀର ଖୁଆଏ। କେହି ଧାନକି ଚାଉଳ ଧରି ଆଇଲେ ତା ବଦଳରେ ମୁଢ଼ିଦିଏ। ଗଲା ଆଇଲା କେହି ଆଇଲେ କଥା ଭାଷା ହୁଏ। ଅଝଟ ଛୁଆକୁ ଧନରେ ରଁକରେ କହି ଭୁରୁଡାଏ। କୁଟୁଣୀ ଧାନ କୁଟୁଥିବାରୁ ସାଁଖୁଳୁଥାଏ। ଏଇମିତି ଏକା ସାଙ୍ଗରେ ଏତେ ଗୁଡ଼ାଏ କାମ କରି ଚାଲିଥାଏ। ହେଲେ ତା'ର ଚେତନାଟି ଥାଏ ଢ଼ିଙ୍କି ପାହାରକୁ। ଟିକିଏ ହେଳା କଲେ କେଁଚି ହୋଇଯିବଯେ ! କେଉଁଟୁଣୀ ପରି ଢ଼େଙ୍କି ପାହାରକୁ ସଚେତନ ଥିବା ମନଟିଏ ଲୋଡ଼ା। ଈଶ୍ୱରଙ୍କ ସେଇ ସନାତନ ପାହାର ଆଡ଼କୁ ମନଧାନ ଦେଇ ବାକି କାମ କରିଗଲେ, ଏକା ସାଥିରେ ଅନେକ କାମ କରିହେବ।

ଆମ ସାହୁ ବାବୁଟି ରାମକୃଷ୍ଣଙ୍କ ସେଇ କେଉଁଟୁଣୀ ପରି ସବୁକାମ ଯଥାବିଧି କରି ଚାଲିଛନ୍ତି। କେବେ ତାଙ୍କ କାମ ଅଟକି ରହୁନି। ସାହୁବାବୁଙ୍କ ଭଳି ଏକ ସମାହିତ ବ୍ୟକ୍ତିତ୍ୱ ସହ ମୋର ଏ ପରିଚୟ ମୋତେ ଆମୋଦିତ କରିଛି। ନଡ଼ା ଗଦାରେ ଛୁଞ୍ଚି ହଜି ଯିବାପରି ଆମେ ହଜିଯିବୁ। ଆମ ଭଳି ପ୍ରାଣୀ ପାଇଁ ମା' ତାଙ୍କ କରୁଣା ଉଣା କରିବେ କେମିତି? ମଣିଷକୁ ଭଲପାଇ ଶିଖିଲେ ଆଖିପତା ଲୁହରେ ଓଜନିଆ ଲାଗେ।



## ୬୦. ଚକ ଚକ ଚନ୍ଦ୍ରମାକୁ ତରତର ତାରା

ଶିଶୁ ମାନଙ୍କ ବିକାଶ ପାଇଁ ଓଡ଼ିଶା ସରକାର ଶିଶୁ ସାହିତ୍ୟ ସମିତିଟିଏ ଗଢ଼ିଥିଲେ। ତାର ସମ୍ପାଦକ ଥିଲେ କବି ଅନନ୍ତ ପଟ୍ଟନାୟକ। ପ୍ରଥମରେ ଅଫିସଟି ଥିଲା କଟକର ଆଲାମଚାନ୍ଦ ବଜାରରେ। ପ୍ରାଥମିକ ଶ୍ରେଣୀର ପାଠ୍ୟବହି ପ୍ରସ୍ତୁତ କରିବା ଥିଲା ସମିତିର ମୁଖ୍ୟକାମ। ଏଇ ସମିତିରୁ 'ଶିଶୁଲେଖା' ପତ୍ରିକାଟି ମାସିକ ପ୍ରକାଶ ପାଉଥିଲା।

ଅନନ୍ତ ପଟ୍ଟନାୟକଙ୍କ ଗଭୀର ରୁଚିଥିଲା ପ୍ରାଥମିକ ଶିକ୍ଷାରେ। ଛୋଟ ଛୋଟ ପିଲାଙ୍କ ପାଇଁ ସେ କବିତା ଲେଖି ପାରୁଥିଲେ। ପ୍ରଥମଶ୍ରେଣୀରୁ ପଞ୍ଚମଶ୍ରେଣୀ ପର୍ଯ୍ୟନ୍ତ ପିଲା ମାନଙ୍କ ପାଇଁ କେତେ ଶବ୍ଦ ଭିତରେ, କିପରି ଭାଷାରେ କେଉଁ ଶୈଳୀରେ ଲେଖାଯିବା କଥା, ତାହା ଅନନ୍ତ ବାବୁଙ୍କୁ ଭଲଭାବରେ ଜଣାଥିଲା। ଏଇ ସମିତିର ଜଣେ ସଭ୍ୟ ଭାବେ ମୋତେ ବାଛିଥିଲେ ଅନନ୍ତ ପଟ୍ଟନାୟକ। ମୁଁ ପ୍ରାୟ ପାଞ୍ଚବର୍ଷ ଏ ସମିତିର ସଭ୍ୟ ଥାଇ ପ୍ରାଥମିକ ପାଠ୍ୟ ପୁସ୍ତକ ପ୍ରସ୍ତୁତିରେ ସାହାଯ୍ୟ କରିଛି। ପରେ ପାଠ୍ୟ ପୁସ୍ତକ କାମଟି ଏ ସମିତି ହାତରୁ (SCERT) ରାଜ୍ୟ ଶିକ୍ଷକ ପ୍ରଶିକ୍ଷଣ ଓ ତାଲିମ ସଂସ୍ଥାକୁ ଚାଲିଗଲା। କେବଳ ଶିଶୁ ସାହିତ୍ୟ ପୁରସ୍କାର ଓ ଶିଶୁଲେଖା ପ୍ରକାଶନ ଏଇ ଦୁଇଟି କାମ ସମିତି

କରୁଥିଲା। କଟକରୁ ଅଫିସଟି ଭୁବନେଶ୍ୱରକୁ ଉଠିଆସିଲା। ଶିଶୁସାହିତ୍ୟ ପୁରସ୍କାର ପ୍ରସଙ୍ଗଟି ଓଡ଼ିଶା ସାହିତ୍ୟ ଏକାଡ଼େମୀ ବୁଝିବା ଆରମ୍ଭ କରିବାରୁ ଶିଶୁ ସାହିତ୍ୟ ସମିତି କେବଳ ଶିଶୁଲେଖାର ପ୍ରକାଶନ କାର୍ଯ୍ୟଟି କଲା। ସମ୍ପାଦକ ବଦଳିଲେ। ପ୍ରଥମ ଶ୍ରେଣୀର ଅଫିସର ଏ ସମିତିର ସହ ସମ୍ପାଦକ ହୋଇ ଆସିଲେ। ଦେଖ ଦେଖ ବୋଇଲା ବେଳକୁ ଶିଶୁଲେଖା ବନ୍ଦ ହୋଇଗଲା। ନିଷ୍ଠା ନଥିଲେ କେବଳ ପଦପଦବୀ ଓ ନିୟମ କୌଣସି କାର୍ଯ୍ୟର ମାନ ଓ ମାତ୍ରା ବଢ଼ାଇ ପାରେନାହିଁ। ଦୁଇଜଣ ପ୍ରଥମ ଶ୍ରେଣୀର କର୍ମଚାରୀ, ପଂଝାଏ କିରାଣୀ। ଦଳେ ପିଅନ ଥାଇବି ପଚାଶ ହଜାରିଆ ଖର୍ଚ୍ଚରେ ପାଞ୍ଚ ହଜାରିଆ ପତ୍ରିକାଟିଏ ବାହାର କରିପାରିଲେ ନାଇଁ ଆମ ସରକାର। "ଛଅ ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା" ବୋଲି ଯେଉଁ କଥାଟିଏ ଆମ ଓଡ଼ିଶାରେ ଅଛି, ତାକୁ ପ୍ରମାଣିତ କରିଦେଲା 'ଶିଶୁଲେଖା'ର ଆବଶ୍ୟକ ପ୍ରକାଶନ।

ମୁଁ ଦେଖିଛି, ଅନନ୍ତବାବୁ ଦପ୍ତରକୁ ପ୍ରାୟ ସକାଳ ଆଠଟାରେ ଚାଲି ଆସନ୍ତି। ମୁଁ ସକାଳୁ ପହଞ୍ଚି ସାରିଥାଏ କଟକ। ବାଙ୍କା ବଜାରର 'ସନ୍ତୋଷ ଭବନ' ଲଜରୁ ନିତ୍ୟକର୍ମ ସାରି ବାହାରିପଡ଼େ। ବାଟରେ କଉଠି ଜଳଖିଆ ଖାଇଦେଇ, ଆଲମଚାନ୍ଦ ବଜାରର ଅଫିସକୁ ଚାଲିଆସେ। ଅନନ୍ତବାବୁ ଯେପରି ଗମ୍ଭୀର ସେପରି ମେଳାପୀ। ମୋତେ ଦେଖିଲେ ଖୁସିରେ ଫାଟି ପଡ଼ନ୍ତି। କବିଟାଏ ନା। ଯିଏ କବି ତା" ଭିତରେ କିଛି ଦବାଇ ରଖି ପାରେନା। ଅନନ୍ତ ପଟ୍ଟନାୟକ ରଖନ୍ତେ କିପରି? ସାଢ଼େ ଦଶଟା ପର୍ଯ୍ୟନ୍ତ ଗପ୍ପ। ମଝିରେ ମଝିରେ ଚା। ବିସ୍କୁଟ ଖାଉ। ଭାରି ମଉଜିଆ ଲୋକ। ମୋଠୁ ବୟସରେ ଅନେକ ବଡ଼। ହେଲେ ମୁଁ ଯେପରି ତାଙ୍କର ଜିଗିରୀ ଦୋସ୍ତଟିଏ! ମାନ୍ୟ ପାଇଁ ମୁଁ ଯଥା ସମ୍ଭବ ଦୂରତା ରଖିବି ରଖିବି ହବା ବେଳକୁ ସେ ମୋତେ ନିବିଡ଼ତାରେ ଆବୋରି ରଖୁଥିଲେ। ମୋର ଗୋଟାଏ ବହି ଶିଶୁ ସାହିତ୍ୟ ସମିତି ଦ୍ୱାରା ପୁରସ୍କାର ପାଇଥିଲା ସେତେବେଳେ ମୁଁ ସେ ସମିତିର ସଭ୍ୟ ନଥିଲି କି ଅନନ୍ତ ପଟ୍ଟନାୟକ ନଥିଲେ।

ଅଳ୍ପ ପୁଞ୍ଜିରେ ଲୋକେ ବ୍ୟକ୍ତିଗତ ଉଦ୍ୟମରେ ସୁନ୍ଦର ପତ୍ରିକାମାନ ପ୍ରକାଶ କରୁଛନ୍ତି। ଅଥଚ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚକରି ସରକାରୀ ଉଦ୍ୟମରେ ଆମେ ପତ୍ରିକା ଖଣ୍ଡେ ଛାପି ପାରୁନା। 'ଶିଶୁଲେଖା' ର ଇତିହାସ ହିଁ ତା'ର ପ୍ରମାଣ।

ସରକାରୀ ମାଲ ବୋଇଲେ ଦରିଆମେ ଡ଼ାଲ ଅପବାଦଟି ଯାଉନାଇଁ। ଭାଷା ଓ ସାହିତ୍ୟର ସକଳ ବିଫଳତା ମୂଳରେ ଏଇ କାରଣଟି ରହିଛି। କାହାରି ମନରେ କଷ୍ଟ ନଦେଇ ନିର୍ବିବାଦୀୟ ଭାବେ ଅନନ୍ତ ପଟ୍ଟନାୟକ କାମକୁ ତୁଳି ନଉଥିଲେ। ଯଦିଓ ସେ ଭିନ୍ନ ରାଜନୈତିକ ମତବାଦର ଲୋକ। କେବେ କେହି ତାଙ୍କ ଦପ୍ତରରେ ସେ ନିଜ ମତବାଦର ପ୍ରଚାର ବା ସଂସାର ପାଇଁ କିଛି କରିଥିବାର ସୁଚ୍ୟଗ୍ର ପ୍ରମାଣ ଦେଇ ପାରିବ ନାହିଁ। ମୁଁ ଅନ୍ତତଃ ବାଜିମାରି କଥାଟି କହିପାରେଁ। ଗୋଟିଏ ଜାଗାରେ ଶିଶୁ ସାହିତ୍ୟ

ସମିତି ତରଫରୁ ଶିଶୁ ଉତ୍ସବ ନକରି ସେ ପ୍ରାୟ ସାରା ଓଡ଼ିଶାରେ ଏକ ପର୍ବ ରୂପେ ପାଳନ କରାଇ ପାରିଥିଲେ। ପୁରୀ, ବ୍ରହ୍ମପୁର, ସମ୍ବଲପୁରର ଉତ୍ସବମାନ ସେ ଚିନ୍ତାଧାରାର ପ୍ରମାଣ। ଅନ୍ୟକୁ ଡ଼ାକିବାରେ ସମ୍ମାନ ଦବାରେ ଚର୍ଚ୍ଚା କରିବାରେ ସେ କେବେ ନିଜର ବଡ଼ଲୋକି ଦେଖାଉ ନଥିଲେ। ସେ ନିଜକୁ ସେବକଟିଏ ଭାବୁଥିଲେ। ଜଣେ ଆତ୍ମନିମଗ୍ନ ଖାଣ୍ଟି କବିଟାଏର ଏ ତ୍ୟାଗ ଓ ନିଷ୍କାକମ୍ କଥା ନୁହେଁ।

ସରକାର ସବୁ କରି ପାରିବେ, ବେପାର କରିପାରିବେ ନାହିଁ। ବେପାରରେ ଯୌଥ ଚେତନା ଠାରୁ ବ୍ୟକ୍ତି ଚେତନା ବେଶୀ କାମ କରେ। ଆମ ଲୋକେ କହନ୍ତି। "ପାଞ୍ଚ ସହଜା ବାଇଗଣ ବାରି"। ପାଞ୍ଚଜଣ ମିଶି ବାଇଗଣ ଚାଷ କଲେ ଯାହାହୁଏ। "ଆପେ ବନିଜ ପୁତେ ଚାଷ ଦୁସରା କରେ ସରବ ନାସ।" ବେପାର ନିଜେ କରିବ। ପୁଅ, ପୁତୁରାକୁ ଚାଷକର କହିବ ଯାହା ଯା'ରେ ବାଘ ଅମୁକକୁ ଖାଇବୁ କହିବ ତାହା। ଅନ୍ୟଲୋକ ଦେଇ ଚାଷ କଲେ ଯାହାହୁଏ। କେବେ କିଏ ଏପରି କଥାଟିଏ କହିଥିଲା। ହେଲେ କଥାଟି ସମୟର କଷଟି ପଥରରେ ପରଖ ନେଇ ସାରିଛି।

ସରକାରଙ୍କ ଇଚ୍ଛାସବୁ ବେପାର କରନ୍ତେ। ସୁନାରୁ ଶୁଖୁଆ ଆଉ କେନ୍ଦୁପତ୍ରରୁ ଜରଡ଼ି। ହେଲେ ଏ ବେପାର ରେ ଲାଭତ ଦୂରର କଥା ମୂଳବି ନିର୍ମୂଳ ହେଉଛି। ବେପାର ଆରମ୍ଭ କରିଦେଇ ସରକାର "ଚୁଚୁନ୍ଦ୍ରାକୁ ନାଗଧଇଲା ଦୁର୍ଯୋଗ ପରି" ଦଶାରେ ସଢ଼ୁଛନ୍ତି। ରଖି ପାରୁନାହାନ୍ତି କି ଛାଡ଼ି ପାରୁନାହାନ୍ତି।

ଦିନେ ମୋ ନାତି ପଚାରିଲା "ଦାଦା ଏବେ ଲାଲ ବସ ଆସୁନାହିଁ କାହିଁକି?" ତାକୁ କଣ କହି ଉତ୍ତର ଦେବି ଭାବି ପାରିଲି ନାହିଁ। କହିଲି ଲାଲ ବସ ସବୁକୁ କଳା କରିବା ପାଇଁ ନେଇଛନ୍ତି! ଅବୋଧ ନାତିଟା କି ଛେନା ଗୁଡ଼ ବୁଝନ୍ତା ଚହିଁରୁ, ସରକାରୀ ଜିନିଷ ବୋଇଲେ ଲୋକେ କଣ ବୁଝନ୍ତି କେଜାଣି ତାକୁ ବିକି ଭାଙ୍ଗି ଗିଳି ଦେବାକୁ ବସନ୍ତି। ଏମିତି ଦିନ ଆସିବ, ଜଗନ୍ନାଥ ନକରନ୍ତୁ, ଆମ ରାଜଧାନୀ ଗୋଟାକ ବି ସରକାରୀ ନିୟନ୍ତ୍ରଣରେ ରହିବ ନାହିଁ। ଅଜଗର ଭଳି ତାଙ୍କ ହାକିମ ମାନେ ଗିଳି ପକେଇବେ।

ଦିନେ ମୋ' ମଝିଆ ପୁଅ କହିଲା। କେଇଜଣ ବାବୁ ଆସିଛନ୍ତି। କହୁଛନ୍ତି ଏତିକି ଦେଲେ ଆମର ସରକାରକୁ ଯେଉଁ ଦେୟ ଅଛି ତାକୁ ମୂଳରୁ ଉଡ଼ାଇ ଦେବେ। ପ୍ରଥମେ ମୁଁ କଥାଟିକୁ ବୁଝି ପାରିଲି ନାହିଁ। ଝାଡ଼ିଝୁଡ଼ି ହେଲି। ମୋର ସଦା ଅନ୍ୟମନସ୍କତାକୁ ଭାଙ୍ଗି କହିଲି। ଏବେ ତୁ ମୋତେ ବୁଝା। କୁମତି ଗୁଆଁରକୁ ଭାଗବତ ବୁଝାଇଲା ପରି ପୁଅ ମୋତେ ବୁଝାଇଦେଲା। ମୁଣ୍ଡରେ ହାତ ଦେଲି। ମୁଁ ତାକୁ କେବଳ ଏତକ କହିଲି ଆମେ ବାବୁ ମାନଙ୍କୁ ଦବା ବା ସରକାରଙ୍କୁ ଦବା। ଦବାତ ଦେବାରେ କିଛି ଏପଟ ସେପଟ ହେବ। ତୁ କହ ଆମର ଦେବାଟାକୁ ସବୁ ଦିନପାଇଁ ଗୋଟାପଣେ ଉଡ଼ାଇ ଦେଇ ପାରିବେ କି? ପୁଅ କହିଲା, ସେମିତି କେମିତି ହେବ? ସେମାନେ ନ ପାଇଲେ ସେ କଥା କରିବାକୁ

ଯିବେ କିଆଁ? ମୁଁ କହିଲି ତୋ' ବାବୁ ମାନଙ୍କୁ କହ ଆମେ ସରକାରଙ୍କୁ ନଦେଇ ତମମାନଙ୍କୁ ଦେବୁ କିଆଁ? ପୁଅଗଲା। ବୋଧହୁଏ ମୋ' କଥାଟି କହିଦେବାରୁ ସେମାନେ ଉତ୍ଫଣ ତେତିଲିଆ ନାଗପରି ଫଣାଟେକିଲେ। କହିଲେ, ପରେ ବୁଝିବ।"

ସବୁ ସରକାରୀ ମହଲର ଏଇ ହଉଛି ହାଲ। ଏଥିରେ ଡିମୋକ୍ରାସି ବୋଲାଉଥିବା ସରକାର ଉଠ୍‌ବସ୍ ହେଲାଣି। ତାଙ୍କର ଅନୁଗତ ବୁରୋକ୍ରାସି ଜନତାର ସକଳ ଦୁର୍ଗତିରୁ ଫାଇଦା ଉଠାଇବାରେ ଧୁରନ୍ଧର। ପ୍ରଜାଏ ସରକାର ଉପରେ ଖଡ୍ଗ ହସ୍ତ। ବାଲୁରୀ ଗାଈ ଚିରକୁ ଟାଣିଲା ପରି ବୁରୋକ୍ରାସି ସରକାରୀ ପନ୍ହାକୁ ଶୋଷି ସାରିଲେଣି। ଢୋଳ ଦୁଇଆଡୁ ପିଟା ଖାଇବାପରି ସରକାର ବାପୁଡ଼ାଟି ଏପଟେ ପୁଅ ପ୍ରଜାଠୁଁ ଅନ୍ୟପଟେ କର୍ମଚାରୀଠୁଁ ମାଡ଼ ଖାଇ ଖାଇ ନିର୍ଲଜ ହୋଇଗଲାଣି। ବାଟ ଘାଟରେ ଯିଏ ପିଲାଟି ହୁଏ ତାକୁ ତଣ୍ଡେଇର କି ଡ଼ର ହେ!

ଆମ ଅନନ୍ତ ପଟ୍ଟନାୟକ ଗୋଟାଏ ମୂଲ୍ୟବୋଧର ମଣିଷ। କାହାକୁ ଠକିବା ଜାଣି ନଥିଲେ। ସରକାରଙ୍କୁ ଠକନ୍ତେ କିପରି? ତାଙ୍କ ବିହୁନେ 'ଶିଶୁଲେଖା' ଆଜି ଶେଷ! ଚକଚକ ଚାନ୍ଦ ଯେପରି ଛିଟିକି ତରାବନି ଯାଇଛି!!!



# ୬୧. ସବୁ ସଡ଼କର ଶେଷ ଥାଏ

ଆଦ୍ୟ ବସନ୍ତର ଏକ ଉତ୍ତୀର୍ଣ୍ଣ ସକାଳ। ଫଟଫଟ ଆବାଜ ଥମିଗଲା। ଦେଖ ଦେଖ ବୋଇଲା ବେଳକୁ ଘନଶ୍ୟାମ ରଥ। ଓକିଲ। ହଠାତ୍ ଦିନେ ମୋ' ଗାଁରେ ହାଜର। କାହାକୁ ପଚାରୁଥାନ୍ତି "ମଙ୍ଗଳୁ ବାବୁ ଅଛନ୍ତି"? ପାଟିବାରି ଦାଣ୍ଡକୁ ଯାଇଛିକି ନାଇଁ ମୋତେ ଧମକାଇଲା ଭଳି କହିଲେ। "କିହୋ, ମଙ୍ଗଳୁବାବୁ ତମ ବାଡ଼ି ଚାରିପଟେ ଅକଥନୀୟ ବଢ଼ିଆଳ ଗଛ ଅଥଚ ତମେ ଆମକୁ ଦିନେ ବି ବଢ଼ିଆଳ ଖୁଏଇଲ ନାହିଁ।"

"ଗଛ ତ ଦେଖିଲେ, ଖାଇଲେ ନାହିଁ। ଜବାବ ଦେଲି। "ଦେଖୁ ନାହାନ୍ତି ଆମ୍ବ ଡ଼ାଳରେ ବସନ୍ତ ଆସିବି ଆସିବି ହେଲାଣି।" "ସେଇତ ମଜା, ବସନ୍ତରେ ବଢ଼ିଆଳ ଅବେଳରେ ଖାଇଲେ ସିନା ବେଳର ବାହାଦୁରି"। ଘନରଥେ ରସିକତା କରି କହିଲେ।

ଘରକୁ ପାଛୋଟି ନେଲି। ଗପିଲୁ। ନାନାକଥା ନାନା ଚ଼ରଚା। ମାଙ୍କଡ଼ ଡାହି ଡ଼େଇଁଲା ପରି କୋଉ କଥାରୁ ଆଉ କୋଉ କଥା। କଣ ପାଇଁ ଆଇଲେ କହିଲେ ନାଇଁ ଯେ। ସେ ତାଙ୍କ ଗଞ୍ଜାମିଆଁ ଢ଼ଙ୍ଗରେ ଖେପି ଆଇଲା ପରି କହିଲେ "କିହୋ, ତମ ପାଖକୁ ଆଇବାର କି କାରଣ ଥିବାର କି?" ମୁଁ ହସିଲି। ସେବି। ପାଖକୁ ଲାଗି ଆସି କହିଁଲେଇ କହିଲେ "ଏମ୍.ଏ ପରୀକ୍ଷା ଦେବି। ଯଦି ବହି ରଖିଛ, ଦିଅ"। "ନଉ ନାହାନ୍ତି" ଓ ଆଲମାରି ଖୋଲିଦେଲି। ଓଡ଼ିଆ ଏମ୍.ଏ. ର ଯାହା ପାଇଲେ, ନେଲେ।

ଘନଶ୍ୟାମ ରଥ ଖୁସ୍ ମିଜାଜର ଲୋକ। ଦଲେଇ ପଡ଼ାରେ ଓକିଲ କୋଠି। ଛୋଟ ସାଇନ ବୋର୍ଡଟିଏ ଥାଏ। ଯୋଗକୁ କବି ଗୋପଳକୃଷ୍ଣ ରଥ (ଏବେ ପ୍ରଫେସର) ତାଙ୍କ ଜୁନିଅର। ସିନିଅର ଓ ଜୁନିଅର ଉଭୟ ରଥେ ମୋ' ପାଇଁ ଉତ୍‌ପୀଡ଼କ ନଥିଲେ। ସାନରଥଟି ଏବେ ଆଇନର ପଣ୍ଡିତ। ବଡ଼ରଥ ଆମକୁ ସଖାହୀନ କରି ସବୁଦିନ ପାଇଁ କୁଆଡ଼େ ଛୁ'। ସେ ଦିନମୋ'ଠୁ ବିଦାୟ ନେବା ବେଳେ ରାଞ୍ଚି ରାସ୍ତାକୁ ଦେଖି ପଚାରିଥିଲେ, "ଏ ରାସ୍ତାଟି କଉଠିକି ଯାଇଛି ହେ?" ମୁଁ କହିଥିଲି, ଲଇଡ଼ାରେ ଶେଷ ହୋଇଛି।" ସୋଡ଼ାମାଲ ପାଖରେ ପୋଲ ତିଆରି ହୋଇ ନଥିଲା ସେତେବେଳେ। କଣ ଭାବିଲେ, ଚ଼ତୁର ସନ୍ୟାସୀ ଭଳି କହିଥିଲେ, "ସବୁ ସଡ଼କର ଶେଷ ଥାଏ ହେ'।

ସତକୁ ସତ ତାଙ୍କ ଚ଼ଲାପଥକୁ ଶେଷ କରି ଦେଇ ଚାଲିଗଲେ। ତାଙ୍କ କଥାରେ କେତେ ଉତ୍ତାପଥିଲା ସତେ। ମଝିରେ ମଝିରେ ଘନରଥଙ୍କ ସହ ମୋର ଦେଖା ହେଉଥିଲା। ପୀରବାବା ଛକରେ, କଚ଼େରୀରେ, ରାଜରାସ୍ତାରେ, ଗୋଲବଜାରର ସଉଦା ବଜାରରେ। ପ୍ରତିଥରର ଦେଖାରେ ସେଇ ଉଚ୍ଛୁଳା ଅଭିବାଦନ। ଗୋଟାପଣେ ସାଉଁଟି ନବାର ପାରିଲାପଣ। କଥାରେ ଶରଧାରେ ଓଜନ। କଣ୍ଠରେ ଉଲ୍ଲାସ ସତେ ଯେମିତି ଚ଼ଢେଇ ଡେଣାରେ ନୀଳ ଆକାଶର ଡ଼ାକ।

କିଛି ବର୍ଷପରେ ତାଙ୍କ ନୂଆଘର ଖୋଜି ଖୋଜି ସାକ୍ଷୀପଡ଼ାରେ ହାଜର। ଆଦ୍ୟ କାର୍ତ୍ତିକର ଏକ କଅଁଳ ସକାଳ। ଘନଶ୍ୟାମ ରଥ ସେତେବେଳେ ବେଶ ନାଁ କଲେଣି। ବଙ୍ଗଳା ବାନ୍ଧିଲେଣି। ପାହାଚ଼ ପାହାଚ଼ ଚ଼ଢି ଶିଖରକୁ ଛୁଇଁବି ଛୁଇଁବି ହେଲେଣି। ଦେଖିଲି ତାଙ୍କ ବୈଠକ ଘରେ ବସିଛନ୍ତି। ନିଜ ଭିତରେ ଗୋଟାପଣେ ହଜି ଯାଇଛନ୍ତି। ପ୍ରକାଣ୍ଡ ଘର। ଯିବି କି ନ ଯିବି ଅଟମଟ ହଉଚ଼ି କୃଷ୍ଣ ଦୁଆରେ ସୁଦାମା ପରି। ପଢୁଥିଲେ ନା କଣ' ଖଣ୍ଡି କାଶ ମାଇଲି। ଦରଜା ମେଲାଥିଲା। ପଶିଗଲି। ମୁଣାଏ ବଡ଼ିଅଳ ନେଇଛି। ଦେଖା ହେଲେ କହନ୍ତି "ଏକେଲା ଏକେଲା ଖାଉଚ଼ନା।" ତାଙ୍କୁ ଲାଜ ମାଡୁ ନ ମାଡୁ ମୋତେ ଲାଜ ମାଡ଼ି ଯାଉଥିଲା।

ଶୀତ ପଡ଼ି ନଥାଏ। ଘନରଥେ ଫିଟ୍‌ଫାଟ୍। ଗାଧୁଆ ସରିଥାଏ। କପାଳରେ ଚ଼ନ୍ଦନ ଟିପଟି ଚତୁର୍ଦ୍ଦଶୀର ଜହ୍ନ ଭଳି ସଫା ଦିଶୁଥାଏ। ବୈଦିକ ବାମୁଣଟାଏ ସତେ। "ଗୋସେଇଁ ଏତକ ତମ ଭୋଗ।" ବଡ଼ିଅଳ ମୁଣାଟା ଧରେଇ ଦେଇ କହିଲି। ହାତରୁ ମୁଣାଟି ଝାମ୍ପି ନେଇ ଭିତରକୁ ପଶିଗଲେ। ପଛେ ପଛେ ଯିବାକୁ ମୋତେ ହୁକୁମ କଲେ। ଅନୁଗତ ଚ଼େଲା ପରି ପଛେ ପଛେ ଗଲି। ଘର ନ ଦେଖାଇ ବାଡ଼ି ବଗିଚା, ଗଛଲତା, ଫୁଲ ଫଳ ଦେଖାଇଲେ। ସବୁଠୁ ମୋତେ ବେଶୀ ଭଲ ଲାଗିଲା ତାଙ୍କ ଶାଗ ପଟାଳି। ଛାତ ଉପରେ ମାଟି ବିଛାଇ ଶାଗ ଲଗାଇଥିଲେ। ମୋ' ବାଡ଼ି ବଗିଚା ଦେଖିଥିଲେ। ମୋର ମଫସଲୀ ଢ଼ଙ୍ଗ। ତାଙ୍କ ରୁଚ଼ିଥିଲା ମାର୍ଜିତ। ପାହାନ୍ତି ତାରାପରି ଆଭାମୟ, ବର୍ଣ୍ଣାଢ଼୍ୟ। ପାବନ

ବାସ୍ନାଟ'ଏ ବାତାବରଣକୁ ଗନ୍ଧ ମଧୁର କରି ରଖିଥିଲା ।

ଘନଶ୍ୟାମ ରଥ ମୋ'ଠୁ ତିନି ବର୍ଷର ବଡ଼ । ୧୯୩୦ରେ ତାଙ୍କ ଜନ୍ମ । ମାଘ ଶୁକ୍ଳ ପଞ୍ଚମୀ ପାଖରେ କଉ ତିଥି । ସଠିକ ମନେ ପଡୁନାହିଁ । ଭଲ ପଢୁଥିଲେ ସେ । ବିଜ୍ଞାନର ଛାତ୍ର । ଶିକ୍ଷକତା ବି କରିଛନ୍ତି । ପୋଲିସ ବିଭାଗରେ କିଛିବର୍ଷ ଚାକିରି କରିଥିଲେ । ଆଇନ ପାସ କଲାପରଠୁ ଓକିଲ । ନିରଳସ ଉଦ୍ୟମୀ ମଣିଷଟିଏ । ରାଜା ମି'ଦାସ ପରି ଯାହା ଛୁଇଁଲେ ସୁନା । ଲୋକେ କହନ୍ତି ସରସ୍ୱତୀ ଆସିଲେ ଲକ୍ଷ୍ମୀ ଆସନ୍ତି ନାହିଁ । ଏ କଥାକୁ ଘନରଥେ ତାଙ୍କ ଜୀବନରେ ମିଛ ପ୍ରମାଣିତ କଲେ । ଲକ୍ଷ୍ମୀ ଆଉ ସରସ୍ୱତୀ ଉଭୟେ ତାଙ୍କୁ ଆବୋରିଲେ । ଏମ୍.ଏ ପାସ କଲେ ଡକ୍ଟରେଟ୍ ଡ଼ିଗ୍ରି ହାସଲ କଲେ । ବହି ଲେଖିଲେ । ଗୀତ ଲେଖିଲେ । ରୋଟାରିଏନ୍ ହେଲେ । ଭଞ୍ଜ ଭୂଇଁର ସନ୍ତାନ ହୋଇଥିବାରୁ ତାଙ୍କର ସାରସ୍ୱତ ସୃଷ୍ଟିରେ ସେ ଭଞ୍ଜଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରି ପାରିନଥିଲେ । ଭଜନ, ଜଣାଣ, ଛାନ୍ଦ, ଚ଼ଉପଦୀ ସବୁଥିରେ ଉପେନ୍ଦ୍ର ଭଞ୍ଜଙ୍କ ଛାପ ସୁସ୍ପଷ୍ଟ ପ୍ରଣୟ ଅଙ୍କୁଶ, ଅଭିଶପ୍ତ ବିଷ୍ଣୁ, ରାସ ରସାମୃତ, ଯତ୍‌କିଞ୍ଚିତ୍, କଲ୍‌ହାର, ଭଜନମାଳା ଏପରି ବହୁ ଲେଖା ସେ ଲେଖିଛନ୍ତି । ଆକାଶବାଣୀର ଜଣେ ଗୀତିକାର ଥିଲେ ସେ । ସାହିତ୍ୟର ଅନେକ ଦିଗକୁ ଛୁଇଁଛନ୍ତି ସେ । ନିଆଁକୁ ନିଆଁ ଚିହ୍ନିଲା ପରି ସେ ମୋତେ ଚିହ୍ନିଥିଲେ । ମୂଳତଃ ସେ ଜଣେ ଲେଖକ । ଆଇନ ବ୍ୟବସାୟର ବ୍ୟସ୍ତତା ଭିତରେ ବି ସେ ସାହିତ୍ୟ ପାଇଁ ସମୟ ଦେଇ ପାରୁଥିଲେ । ଜୀବନର ଅନ୍ୟ ପାଖ ଗୁଡ଼ିକରେ ମଧ୍ୟ ନୂଆ ଉତ୍ତେଜନା ସୃଷ୍ଟି କରିଥିଲେ ।

ମୋ' ସହିତ ତାଙ୍କର ପରିଚୟ ଜଣେ ଲେଖକ ସହ ଆଉ ଜଣେ ଲେଖକର । ଅବଧୂତ ଚ଼ବିଶ ଗୁରୁଙ୍କ ଠୁ ଶିଖିବା ପରି ମୁଁ ଘନବାବୁଙ୍କ ଠୁ ଶିଖିଛି । ସବୁକାମକୁ ଠିକ୍ ଠିକ୍ କରିବ । ଶ୍ରଦ୍ଧାରେ କରିବ ।। ନିଷ୍ଠାରେ କରିବ । ନିରଳସ ଭାବେ କାମ କରି ଚାଲିଲେ ଶିଖରକୁ ଉଠିବାରେ ଡେରି ହୁଏ ନାହିଁ ।

ମୁଁ ଯେଉଠି, ଯେବେ, ଯେପରି ଘନରଥଙ୍କୁ ଦେଖିଛି । ସେ ସଦା ସର୍ବଦା ଟିପ୍‌ଟପ୍ । ବଡ଼ିଭୋରରୁ ଉଠି କାମରେ ଲାଗିଯିବେ । ପଢୁଥିବେ । ଡ୍ରାଫ୍ଟ ପ୍ରସ୍ତୁତ କରୁଥିବେ । ଭିଡ଼ ମକଦ୍ଦମାର ପ୍ରସ୍ତୁତି ପାଇଁ ଭାବୁଥିବେ । ଷ୍ଟେନୋ ଆସିଲେ ଡ଼ିକ୍ଟେସନ୍ ଦେବେ । ସଦା ଚଞ୍ଚଳ । ନିରଳସ । ନିଷ୍ଠାବାନ ଓ ଉଦ୍ୟମୀ ମଣିଷଟିଏ । ସସ୍ତ୍ରୀକ ବିଦେଶ ଯିବା ପୂର୍ବରୁ ଭେଟିଥିଲି "ବିଦେଶରୁ କଣ ଆଣିବେ? ମିଠେଇ ଆଣିବେନା?।" ସେ ହସିଦେଇ କହିଲେ, "ଆଉକିଛି ମାଗନ୍ତୁ, ସେ ସବୁତ ଏଠି ମିଳୁଛି ।"

ଆମ ସମ୍ବଲପୁର ପରି ଛୋଟିଆ ସହରର ନିଦ ଭାଙ୍ଗି ନଥିଲା ସେଦିନ । ନିଦ ମଲମଲ ଆଖିରେ ସକାଳ ଫରଚା ହୋଇନଥିଲା । ଶୁଣି କାଠପରି ରହିଗଲି । ଘନଶ୍ୟାମ ରଥ ବାରିପଦା ନିଆଁରେ କୁଆଡ଼େ ହଜିଗଷଲ । ମନକୁ ପରତେ ହେଲାନି । ମିନାକରା

ମୁଦିରୁ ଜଣା ପଡ଼ିଲା। "ଘନରଥ ଅମର ହେ"।

ଭିତରେ ଭିତରେ କାନ୍ଦିଛି। ବନ୍ଧୁପରି ବନ୍ଧୁ ଜଣେ ମୋର ମୋତେ ସଖାହୀନ କରି ଚାଲିଗଲେ। ଚିଠି ପଠାଇ ନାହିଁ କାହାପାଖକୁ। ସମବେଦନା ବାଢ଼ିନାହିଁ। ସଙ୍କୁଳିବାକୁ ବି ଯାଇ ନାହିଁ। ପଦୁଟିଏ ଲେଖିନାହିଁ କଉଠି। ଅନ୍ତରର କୋହ, ଅନ୍ତରର ବେଦନା ଖରାଟିଆ ନଈ ପରି ଆପେ ଆପେ ଶୁଖି ଯାଇଛି। ତାଙ୍କୁ ଚଉତି ମନର ଥାକରେ ଥୋଇଛି ଖାଲି। ସ୍ମୃତିର ସଙ୍ଖାଳି ସେ। ମୋ' ଜୀବନ ଇତିହାସର ସେ ଏକ ଅଧ୍ୟାୟ। ତଳୁ ଉପରକୁ ପାହାଚ ପାହାଚ ଚଢ଼ି ଉଠିଥିବାର ତାଙ୍କ ଛଡ଼ା ଅନ୍ୟ ନମୁନା ମୋ' ଆଖିରେ ନାହିଁ। ଲୁହର ଓଜନରେ ନଇଁ ଯାଏ ଆଖି।

ଏବେ ନୀରବରେ ତାଙ୍କ କଥା ମନେ ପଡ଼ିଲେ ଆକାଶରେ ମେଘ ଘୋଟିବା ପରି ବହୁ ସ୍ମୃତି ମୋତେ ଆବୋରି ରଖେ। ବରଷା ପାଣି ପରି ଏ ଘନରଥ। ଚାରିଆଡ଼କୁ ମାଡ଼ି ଯାଇଥିଲେ ତାଙ୍କୁ ସାଇତି ରଖିଲେ ସିନା। ମାଟି ଯେମିତି କରେ। ମୋ' ଭିତରର କଅଁଳ ଥାନଟିଏ ଘନଶ୍ୟାମ ରଥଙ୍କ ପାଇଁ ଅଛି। ମନ କହୁଛି। "ସେ ବଡ଼ିଅଳ ମାଗନ୍ତେ କି!"



# ୬୨. ଓଷ୍ଟା : ଇଷ୍ଟ ଆମରି

ଜୁନ ୨୪, ୧୯୫୭। ମୁଁ ଶିକ୍ଷକ ହେଲି। ମୁଁ ନୂଆଁ କି ଅନୁଷ୍ଠାନ ବି ନୂଆଁ। ନିପଟ ମଫସଲ। ଲୋକେ ଆରମ୍ଭ କରିଥାନ୍ତି। ଭୋଳାନାଥ ବେହେରା ବୋଲି ଜଣେ ମହାତ୍ମା ଦରମା ତକ ମାସକୁ ମାସ ଦଉଥାନ୍ତି। ଅନୁଷ୍ଠାନଟି ମଞ୍ଜୁରି ପାଇଲା। ସରକାରୀ ଅନୁଦାନ ମିଳିଲା। ଆଗରୁ ଗଢ଼ା ନିୟମ ଟୁଥାର୍ଡ ଗ୍ରେଣ୍ଟ ଇନ ଏଡ୍ (୨/୩ ଜୀପଲ୍-ଷଲ-ପକ୍ଷମ) ତାଳ ଗଛରେ ତାଳ ଆସିବା ପରି ବରଷକୁ ଥରେ ଆସେ। ଅନେଇଥା ପାରୁନ୍ତୁ ଯଦି। ଉପରୁ ହିସାବ ହୋଇ ଆସେ। ଅନୁମାନେ ଗାଈ ଗୋବର ହଗେ ନ୍ୟାୟରେ। ଆମେ ଭାଗ ବଣ୍ଟୁଆରା କରି ନଉ। ଦଇବ ଯୋଗକୁ ଆମ ପରିଚାଳନା କମିଟି ଭଲଥିଲା। କଦାପି ନାକ ଘଷା ହୋଇନୁ।

କଲିଆ ମଲିଆ ଦି' ଭାଇ ପରି ସରକାରୀ-ବେସରକାରୀ ଦୁଇ କିସମର ଶିକ୍ଷା ବ୍ୟବସ୍ଥା। କଲିଆକୁ ମଲିଆ ନାକ ଟେକିବା ପରି ଭଗାରିପଣ ନଥିଲେ ବି ଏକ ଆନକୁ ତଳ ଆଖିରେ ଦେଖେ। ଶିକ୍ଷା ଦପ୍ତରର ହାକିମମାନେ ପହଣ୍ଡିକୁ ଠାକୁର ବିଜେ କଲା ପରି ବିଜେ କରନ୍ତି। ଆମେ ଛତିଶା ସେବା ନିଯୋଗରେ ଲାଗିପଡୁ। ହେଲେ ସେ କାହିଁକି କେଜାଣି ଆମକୁ ଦେବଦାସୀରୁ ବି ହୀନ ଆଖିରେ ଦେଖନ୍ତି। ଆପଣା ଭିତରେ ପୂଳ କରି ରଖିଥିବା ଖାମିଦ ପଣକୁ କଚାଡ଼ି ଦିଅନ୍ତି ଆମ ଉପରେ। ଦାନ୍ତ ଚିପି ସମ୍ଭାଳି ନଉଁ। ବେଳେ ବେଳେ ଅସମ୍ଭାଳ ହେଲେ ଝଡ଼ଟାଏ ଫାଟିପଡ଼େ।

## ମଂଗଳୁ ଚରଣ ବିଶ୍ୱାଳ

୧୯୫୫ରୁ ମୁଁ କଟକ ଯା ଆସ କରୁଥିଲି। ନାଁ କରା ଆଲୋଚକ କେଶବ ମେହେରଙ୍କ ସାଙ୍ଗରେ ଯାଇଛି। ବାଙ୍କା ବଜାରର ଟିମା ନନା ହୋଟେଲରେ ରହୁ ଓ ଖାଉଁ। କଟକ ବୁଲା ଭିତରେ ପ୍ୟାରିମୋହନ ଏକାଡ଼େମିକୁ ଚିହ୍ନିଲି। ୧୯୪୬ରୁ କୁଆଡ଼େ ଓଷ୍ଟାରଭୁଣଟି ସେଇଠି ବଢ଼ିବା ଆରମ୍ଭ କରିଥିଲା। ସାଧୁଚରଣ ଦାସ ଏହାର ପ୍ରାଣ ପ୍ରତିଷ୍ଠାତା ସଭାପତି। ବସନ୍ତ କୁମାର ଦାସ ଓ ଶୈଳବିହାରୀ ଚୌଧୁରି ଦିଜଣ ପ୍ରଥମ ଯୁଗ୍ମ ସମ୍ପାଦକ ଥିଲେ। ୧୯୬୦ ପର୍ଯ୍ୟନ୍ତ ମୁଁ ଓଷ୍ଟାର ନାମ ଶୁଣି ନଥିଲି।

ଦେଶ ସ୍ୱାଧୀନ ହେଲା। ଲୋକେ ଅନୁଷ୍ଠାନ ମାନ ଖୋଲିଲେ। ଗୋରା କାଳରେ ଲୋକେ ଅନୁଷ୍ଠାନ ଚଳଉଥିଲେ। ସରକାର ଭିକ ଦେଲାପରି କିଛି ଫୋପାଡ଼ି ଦଉଥିଲା। ଏବର ସରକାରମାନେ ସେୟା କରୁଛନ୍ତି। ମଝିରେ ମଝିରେ ସରକାର ଲୋକଙ୍କ ଅନୁଷ୍ଠାନକୁ ହାତକୁ ନିଏ। ସେ ଗୁଡ଼ିକୁ ବିକୃତ ସରକାରୀ ଅନୁଷ୍ଠାନ ପାଲଟି ଯାଏ। ସିଧା ବାଟକୁ ବଙ୍କା କରି ଦିଆଯାଏ। ସେଇ ବଙ୍କା ବାଟକୁ ସିଧା କରିବା ପାଇଁ ଓଷ୍ଟାଭଳି ଲଢୁଆ ଅନୁଷ୍ଠାନର ଜନ୍ମ ଜରୁରୀ ହୋଇପଡ଼େ।

ଓଷ୍ଟାର ସମ୍ବିଧାନ ୧୯୬୦ରେ ତିଆରି ହେଲା। ବହୁବାର ମଜାଘଷା କରିବା ପରେ ଏବର ରୂପ। ଓଷ୍ଟାରେ ସର୍ବ ପ୍ରଥମ ସମ୍ବଲପୁର ପ୍ରତିନିଧି ଥିଲେ ଶଶିଭୂଷଣ ଦାଶ। ଶହେ ବୟାଳିଶ ହାଇସ୍କୁଲକୁ ସରକାରୀ କରାଗଲା। ଶଶୀ ଦାଶେ ଓଷ୍ଟା ଛାଡ଼ିଲେ। ୧୯୬୫ରେ ମୁଁ ଓଷ୍ଟାକୁ ଚିହ୍ନିଲି। ସେତେବେଳେ ପ୍ରଶ୍ନ ଛାପି ପରୀକ୍ଷା କରିବା କଷ୍ଟସାଧ ଥିଲା। ଘରୋଇ ଅନୁଷ୍ଠାନ ମାନ ପ୍ରଶ୍ନ ଛାପି ବିକୁଥିଲେ। ସେ ଗୁଡ଼ିକର ମାନ ଓ ଯୋଗାଣରେ ଅସୁବିଧା ଥିଲା। ୧୯୬୫ରେ ପ୍ରଥମ କରି ଓଷ୍ଟା ପ୍ରଶ୍ନପତ୍ର ଯୋଗାଇଲା। ପରମାଣପୁର ହାଇସ୍କୁଲ ପାଇଁ ମୁଁ ଓଷ୍ଟାରୁ ପ୍ରଶ୍ନ ଆଣିଲି। ସେଇ ଦିନରୁ ଓଷ୍ଟାସହ ମୋର ପରିଚୟ। ଓଷ୍ଟା ପ୍ରଶ୍ନର ମାନ ଓ ଯୋଗାଣର ସୁବ୍ୟବସ୍ଥା ଆଜି ପ୍ରଶ୍ନ ଯୋଗାଣରେ ତାକୁ ଅପ୍ରତିଦ୍ୱନ୍ଦୀ କରି ରଖିଛି।

ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ, ମାଧ୍ୟମିକ ଶିକ୍ଷକ ସଙ୍ଘ ଓ କଲେଜ ଶିକ୍ଷକ ସଙ୍ଘ ଆପଣା ଆପଣା ବାଟରେ ଓ ଢ଼ଙ୍ଗରେ କାମ କରୁଥିଲେ। ବନମାଳୀ ବ୍ରହ୍ମଚାରୀ, କୈଳାସଚନ୍ଦ୍ର ମହାପାତ୍ର ଓ ଅବନୀ କୁମାର ବରାଳ ଏକାଠି ମିଶି କାମ କରିବାର ଯୋଜନା କଲେ। ୨୭.୭.୧୯୬୯ରେ ସମନ୍ୱୟ ସମିତିଟିଏ ଗଢ଼ିଲେ। ୧୯୬୯ରେ ବାଷଠି ଦିନିଆ ଆନ୍ଦୋଳନ ହେଲା ଏହି ଯୋରଦାର ଆନ୍ଦୋଳନ ସବୁ ଶିକ୍ଷକ ଗୋଷ୍ଠୀଙ୍କୁ ଏକଜୁଟ ହେବାରେ ଉତ୍ସାହିତ କଲା। ଏଇ ଶାଳୀନ ସହଯୋଗରୁ ଜନ୍ମ ନେଲା 'ଶିକ୍ଷକ ମହାସଙ୍ଘ' ୧୯୭୧ ସେପ୍ଟେମ୍ବର ପାଞ୍ଚରେ ଅବନୀ କୁମାର ବରାଳଙ୍କ ଟାଣୁଆ ନେତୃତ୍ୱ, ବୌଦ୍ଧିକ ଦିଗ୍‌ଦର୍ଶନ ଓ ଭାବି ବିଚାରି କାମ କରିବାର କୌଶଳ ଶିକ୍ଷକ ସମାଜକୁ ବହୁ ପରମାଦରୁ ରକ୍ଷାକଲା। ଏକଥା କହିଲେ ହୁଏତ ନାବାଳକି ହେବନାଇଁ ଯେ ଓଷ୍ଟା 'ଶିକ୍ଷକ ମହାସଙ୍ଘ'ର

ମେଢ଼ୁହାଡ଼ । ଆନୁପାତିକ ଭାବେ ଧନ, ଜନ ଓ ମନ ବେଶୀ ଦେଇଛି ମହାସଙ୍ଘକୁ । ରାଜକିଶୋର ପଟ୍ଟନାୟକ ଓ କୈଳାସ ଚନ୍ଦ୍ର ମହାପାତ୍ରଙ୍କ ନିରଭେଜାଲ ପାରିଲା ପଣ ଓଷ୍ଟାକୁ ଭଲ ବାଟରେ ନେଇଛି ।

ସାଧାରଣ ଓଷ୍ଟାକଥା କହିବାବେଳେ, ଆମ ସମ୍ବଲପୁର ଓଷ୍ଟା ପ୍ରସଙ୍ଗ ବଳେ ବଳେ ଆସିବା । ଆରମ୍ଭବେଳେ ଆମ ଏଠିକାର ସଙ୍ଘ ଲଡ଼ବଡ଼ ଥିଲା । ମୋର ଯାହା ମନେ ପଡୁଛି ୧୯୭୦ ପରେ ପରେ ଓଷ୍ଟାର ସମ୍ବଲପୁର ଶାଖା କାମ ଆରମ୍ଭ କଲା । ଶୈଳେଶ ଚନ୍ଦ୍ର ପଟ୍ଟନାୟକ ଆବାହକ ହେଲେ ଓ ସଙ୍ଘର ପୁର୍ନଗଠନ କଲେ । ଘିଚା ଲଡ଼ବଡ଼, ପିଟାଟାନ୍ ଭଳି ସଙ୍ଘକୁ ମାଠିବାର କାମ କଲେ କେଇଜଣ । ଶୈଳେଶ ପଟ୍ଟନାୟକ, ରବିନାରାୟଣ ମିଶ୍ର, ରବି ସାମଲ, କିଶୋର ସାହୁ ଆଦିଙ୍କ ନାଁ ମନେ ପଡୁଛି । ଶୈଳେଶ ପଟ୍ଟନାୟକ ଏ ଆଲୋଚକକୁ ବି ପୂରେଇଥିଲେ ଓଷ୍ଟାରେ । ମୋ ଦେଇ କେବେ ଶାଗ ସିଝିଛି ଯେ, ସିଝିବ । 'ଏକଲା ଚଲୋ' ସ୍ୱଭାବର ଲୋକ ମୁଁ । ଏବେ ଦେଖୁଛି ଅଜିତ ଦାଶ, ରାଜେନ୍ଦ୍ର ପଣ୍ଡା, ନରସିଂହ ବିଶି ଭଳି କାମିକା ଓ ଟାଣୁଆ ଶିକ୍ଷକ ନେତା ବାହାରିଲେଣି । ଆଇଲା ପୀଢ଼ିର ନେତାଙ୍କ ପାଇଁ ଏମାନେ ନମୁନା ହୋଇ ରହନ୍ତୁ ।

ଓଷ୍ଟାସହ ସାମିଲ ନହେଲେ ବାହାରୁ ଓଷ୍ଟାକୁ ବୁଝି ହେବନାହିଁ । ସବୁ ଗଣତନ୍ତ୍ରର ଯିମିତି କିଛି ଦୋଷ ରହିଛି, ଓଷ୍ଟାର ରହିବହିଁ ରହିବ । ଆପଣା ରୁଚି ଓ ସ୍ୱାର୍ଥରେ ବାଧା ଆସିଲେ ଲୋକ ରାଗେ ଓ ଅସନ୍ତୋଷ କଚାଡ଼େ । ଏକଥା ଶହେକୁ ଶହେ ମାନିବାକୁ ହେବ ଯେ ଓଷ୍ଟା ଶିକ୍ଷକ, ଛାତ୍ର, ସମାଜ ଓ ଶିକ୍ଷାପାଇଁ କିଛି କରିଛି । ସେ ସବୁକୁ ଗଣିଲେ ଜଣାଁ ପଡ଼ିବ ।

ଓଷ୍ଟା କରିଛି : ଶିକ୍ଷକ ପାଇଁ :-

୧. ୧୯୭୨ରେ ସରକାରୀ-ବେସରକାରୀ ଦରମାର ସମୀକରଣ ।
୨. ୧୯୭୪ରେ **Direct payment**
୩. ୧୯୭୫ରେ ଶିକ୍ଷା ଟ୍ରିବୁନାଲ ଗଠନ ।
୪. ୧୯୭୮ରେ ପେନସନ୍ ବିଧିର ଘୋଷଣା
୫. ୧୯୮୨ରେ ତିରିଶ ପ୍ରତିଶତ ପେନସନର ପ୍ରୟୋଗ ।
୬. ୧୯୮୮ରେ ପଚାଶ ପ୍ରତିଶତ ପେନସନ୍ ଦାନ
୭. ୧୯୯୫ ଅକ୍ଟୋବର ପହେଲାରୁ ପେନସନ୍ ସହ ଟି.ଆଇ ।
୮ ଚାକିରି ସର୍ତ୍ତ, ଛୁଟି ନିୟମ, ଭଳି ଚୁଟୁକି ପୁଟୁକି ସୁବିଧା ମାନ ହିସାବ କରୁଛି କିଏ?
୯. ଦୁଃସ୍ତ୍ର ଶିକ୍ଷକଙ୍କୁ ଓଷ୍ଟା ପାଣ୍ଠିରୁ ସାହାଯ୍ୟ ।

ଶିକ୍ଷକ ମାନଙ୍କ ଦାନାକନା ପାଇଁ ଯେତେ ଲଢିଛି, ଛାତ୍ର ମାନଙ୍କ ବହୁବିଧ ବିକାଶ

ପାଇଁ ମଧ୍ୟ ଓଷ୍ଟା କାମ କରିଛି। ଓଷ୍ଟା ଶିକ୍ଷକ ଛାତ୍ର ସମ୍ପର୍କକୁ ମାଲିକ-ମଜଦୁରର ସମ୍ପର୍କ ବୋଲି ଭାବେ ନାହିଁ। ସେହି ଶବର ସନ୍ତାନ ଏକଲବ୍ୟ ପ୍ରତି ଦ୍ରୋଣୀୟନଜର ରଖେନାହିଁ ଓଷ୍ଟା। ଫୁଲ ଫୁଟିବା ପରି ବିକାଶର ସ୍ୱାଭାବିକ ଧାରାଟିଏ ଛାତ୍ର ଭିତରେ ପୂରେଇ ଦେବାକୁ ଚାହେଁ।

ଛାତ୍ରଙ୍କ ପାଇଁ ଓଷ୍ଟା କରିଛି :-

୧. ସମସ୍ତଙ୍କ ପାଇଁ ଶିକ୍ଷା ସାର୍ବଜନୀନ ଶିକ୍ଷା ପାଇଁ ପ୍ରତିବଦ୍ଧତା।
୨. ଦଶ ବର୍ଷିଆ ପାଠ୍ୟକ୍ରମର ଗୁଣାତ୍ମକ ପ୍ରଚଳନ।
୩. ପିଲାଙ୍କ ଫିଜ ଛାଡ।
୪. ଚାରିଟି ଭାଷା ଶିକ୍ଷାକୁ ବିରୋଧ କରି ତିନିଭାଷା ଶିକ୍ଷାର ପ୍ରଚଳନ।
୫. ପିଲାଙ୍କ ସୃଜନ ଶୀଳତା ପାଇଁ ଶିଶୁ-ଉତ୍ସବ।
୬. ବାରବାଟି ଷ୍ଟେଡ଼ିଅମରେ କିଶୋର କିଶୋରୀ ପ୍ରତିଭା-ମେଳା।
୭. ବିପର୍ଯ୍ୟୟ ବେଳେ ଛାତ୍ରଛାତ୍ରୀଙ୍କୁ ଆର୍ଥିକ ସାହାଯ୍ୟ।

ସାଧାରଣ ଲୋକେ ଅନୁଷ୍ଠାନ ଖୋଲନ୍ତି। ଖୋଲିଦେଇ ଉଦାସୀନ ରହନ୍ତି। ଫଳରେ ଶିକ୍ଷକ ବାପୁଡ଼ାର ମୁଣ୍ଡଦୁଖା ଆରମ୍ଭ ହୋଇଯାଏ। ଏଣୁ ଓଷ୍ଟା ଜନସାଧାରଣଙ୍କୁ ସଚେତନ କରାଇଛି।

୧. ଆଲୋଚନା ଚକ୍ର, ସଭାସମିତି, ଶୋଭାଯାତ୍ରାକୁ ବଛା ବଛା ଲୋକଙ୍କୁ ଡ଼ାକିଛି।
୨. ବ୍ଲକସ୍ତରରୁ ରାଜ୍ୟସ୍ତରଯାଏ ସମାବେଶମାନ କରିଛି।
୩. ସମାଜରୁ ବୁଦ୍ଧିଜୀବୀ ମାନଙ୍କୁ, ଶିକ୍ଷାବିତ୍ ମାନଙ୍କୁ ଡ଼ାକି ଜନସାଧାରଣଙ୍କୁ ସଚେତନ କରାଇଛି।
୪. ସାଧାରଣ ଲୋକଙ୍କୁ ସାମିଲ୍ କରି ଶିକ୍ଷାବିତ୍ କରାଇଛି।
୫. ଜନସାଧାରଣଙ୍କ ଶିଥିଳ ଶିରାରେ ଉନ୍ମାଦନା ଭରିଛି।

ଗୋରା ଅମଳରୁଶିକ୍ଷାକୁ ପିଲାଙ୍କ ଖେଳଣା ବୋଲି ଭାବି ଆସିଛି ପ୍ରଶାସନ। ମେରିରାୟ ରୀତିରେ ଯାହା ମନକୁ ଯାହା ଆସିଲା କରୁଛନ୍ତି। ମାଙ୍କଡ଼ ହାତେ ଶାଳଗ୍ରାମ ଭଳି ଶିକ୍ଷାକୁ ନଚେଇ ନଚେଇ ଅଧପ୍ରାଣ କଲେଣି। ପ୍ରଶାସନର ଏଇ ଔଦ୍ଧତ୍ୟକୁ ହାତୁଡ଼ି ପ୍ରହାର କରିଛି ଓଷ୍ଟା ବାରବାର।

ଶିକ୍ଷାପ୍ରତି ସରକାରୀ ଉଦାସୀନତା ସବୁ ଅସନ୍ତୋଷର ମୂଳ କାରଣ। ହାରି ଗୁହାରିରେ ଏ ଉଦାସୀନତା ସହଜରେ ଭାଙ୍ଗେ ନାହିଁ। ଏଣୁ କଠୋର ହବାକୁ ହୁଏ। ଶିକ୍ଷକ ବାପୁଡ଼ା ରାଜରାସ୍ତାକୁ ଓହ୍ଲାଏ। ଲଢ଼େଇର ମଏଦାନକୁ କୁଦେ। ପ୍ରଶାସନ ଅସନ୍ତୋଷର ମୂଳକୁ ନ ଖୋଜି ବିଶୃଙ୍ଖଳା ବୋଲି ଘୋଷଣା କରେ। ପ୍ରଶାସନର ମୋହଭଙ୍ଗ କରିବାକୁ 'ଅବୁଝା

ରଜାକୁ ପୁଆଲଢୁଟା ମନ୍ତ୍ରୀ' ନ୍ୟାୟରେ ଓଷ୍ଟା ବାଟ ଅବାଟ ନମାନି ମାଡ଼ିଯାଏ ଆଗକୁ। ପ୍ରଶାସନର ପ୍ରକୋପକୁ କଦାପି ଡ଼ରିନାଇଁ ଓଷ୍ଟା। ଓଡ଼ିଶାର ଶିକ୍ଷା ସରହଦ୍‌କୁ ମୂଳରୁ ଚୂଳଯାଏ ସଜେଇବାରେ ସଂଗ୍ରାମୀର ଭୂମିକା ଗ୍ରହଣ କରିଛି।

ଓଡ଼ିଶାର ଶିକ୍ଷାପାଇଁ ଏ କାମ ମାନ କରିଛି :-

୧. ମାଧ୍ୟମିକ ଶିକ୍ଷା ବୋର୍ଡ଼ର ବିକେନ୍ଦ୍ରୀ କରଣ କରାଇଛି।

୨. ମାଧ୍ୟମିକ ଶିକ୍ଷା ପାଇଁ ସ୍ୱତନ୍ତ୍ର ନିର୍ଦ୍ଦେଶକ ପଦ ସୃଷ୍ଟି କରାଇଛି।

୩. ଶିକ୍ଷା ପ୍ରଶାସନର ବିକେନ୍ଦ୍ରୀ କରଣ କରାଇଛି।

୪. ଶିକ୍ଷକ ଆଚରଣ ବିଧି ତିଆରିରେ ସହାୟତା କରିଛି।

୫. ଧନ୍ଦାମୂଳକ କର୍ମାଭିମୁଖୀ ଶିକ୍ଷା ଉପରେ ଯୋର ଦେଇଛି।

୬. ୧୯୬୮ର ଶିକ୍ଷାନୀତି ପ୍ରଣୟନରେ ସହଯୋଗ କରିଛି।

୭. ୧୯୭୪ ଦଶ ବର୍ଷିଆ ପାଠ୍ୟକ୍ରମ ପ୍ରଚଳନକୁ ମାର୍ଗ ଦର୍ଶନ ଦେଇଛି।

୮ ୧୯୮୬ ଜାତୀୟ ଶିକ୍ଷା ନୀତିର ସଫଳ ପ୍ରୟୋଗ ପାଇଁ ଓଷ୍ଟା ଅକ୍ଳାନ୍ତ ଚେଷ୍ଟା କରିଛି।

୯. ଓଡ଼ିଶାର ଶିକ୍ଷା ବିକାଶ ବାଟରେ ଓଷ୍ଟାର ପଦଚିହ୍ନ ସୁସ୍ପଷ୍ଟ।

ମାଧ୍ୟମିକ ଶିକ୍ଷାବୋର୍ଡ଼ ମାଧ୍ୟମିକ ସ୍ତରରେ ବହୁ ଦାୟିତ୍ୱ ନେଇଛି। ଓଷ୍ଟା ମାଧ୍ୟମିକ ଶିକ୍ଷକମାନଙ୍କ ପ୍ରତିନିଧିତ୍ୱ କରୁଅଛି। ଭାତ ସହିତ ତରକାରୀ ପରି ଉଭୟେ ଉଭୟ ପାଇଁ ଦରକାରୀ। ଏଣୁ ଓଷ୍ଟା ମାଧ୍ୟମିକ ବୋର୍ଡ଼ର ସବୁ କ୍ରିୟାକଳାପରେ ସଂପୃକ୍ତ। ବୋର୍ଡ଼ସହ ଓଷ୍ଟାର ମୁକାବିଲା ସ୍ୱାଭାବିକ। ଦରକାର ପଡ଼ିଲେ ହାତୁଡ଼ି ପ୍ରହାର କରିବାକୁ ଡ଼ରିନାହିଁ। ଓଷ୍ଟାବୋର୍ଡ଼କୁ ଏଇ ଏଇ ଦିଗରେ ସହଯୋଗ କରିଛି :-

୧. ମାଧ୍ୟମିକ ବୋର୍ଡ଼ର ସିଲାବସ ତିଆରି। ପରୀକ୍ଷା ପରିଚାଳନା, ପାଠ୍ୟ ପୁସ୍ତକ ପ୍ରସ୍ତୁତି ଓ ବିକାଶ ଦିଗରେ ସହଯୋଗ କରିଛି।

୨. ମାଧ୍ୟମିକ ସ୍ତରରେ ନୀତି ନିର୍ଦ୍ଧାରଣରେ ପରାମର୍ଶ ଦେଇଛି।

୩. ମାଧ୍ୟମିକ ଶିକ୍ଷାବୋର୍ଡରେ ଶିକ୍ଷକ-ପ୍ରତିନିଧିତ୍ୱ ପାଇଁ ଦାବି କରିଛି।

୪. ଶିକ୍ଷାବୋର୍ଡ଼ର ଶାଖା ଅଫିସ୍ ମାନ ଓଡ଼ିଶା ସାରା ଖୋଲିବାରେ ଓଷ୍ଟା ଦାବୀ ଜଣାଇଛି।

୫. ବିଷୟ ଭିତ୍ତିକ କର୍ମଶାଳା ଓ ଶିକ୍ଷକଙ୍କ ଶିକ୍ଷାଦାନକୁ ସତେଜ କରିବାରେ ଯୋଜନାମାନ ପ୍ରସ୍ତୁତ କରିଛି।

୬. ପରୀକ୍ଷା ସଂସ୍କାର ପାଇଁ ନିରବଚ୍ଛିନ୍ନ ଲଢ଼େଇ କିର ଆସୁଛି।

ଓଷ୍ଟା ଖାଲି ଦାବି କରେନାହିଁ। ଦାୟିତ୍ୱକୁ ବି ବୁଝେ। ଓଷ୍ଟାର ମାର୍ଜିତ ରୁଚିଟାଏ ଅଛି। ନହେଲେ 'ଶିକ୍ଷାପ୍ରଦୀପ' ଭଳି ବ୍ୟୟ ବହୁଳ ମାସିକ ପତ୍ରିକାଟିଏ ଛାପନ୍ତା କାହିଁକି?

'ଶିକ୍ଷାପ୍ରଦୀପ' ପ୍ରେରଣା ଦେଇଛି ଅନେକଙ୍କୁ। ଛାତ୍ର, ଶିକ୍ଷକ ଓ ଅନ୍ୟମାନଙ୍କ ଲେଖାଛାପି ସାହିତ୍ୟ ଓ ସମ୍ବାଦର ମାଧମ ହୋଇଛି। ଖୋଦ ଶିକ୍ଷା ବିଭାଗ ଓଷ୍ଟାରୁ ପ୍ରେରଣା ପାଇ ପ୍ରକାଶ କରିଛି। ଶିକ୍ଷା ପ୍ରଦୀପ ପ୍ରକାଶନର ଦଶବର୍ଷ ପରେ ବୋର୍ଡ଼ ତାର ବାହାର କରିଛି 'ଶିକ୍ଷାଲୋକ'। 'ଶିକ୍ଷାପ୍ରଦୀପ'ର ପ୍ରେରଣାରେ। ମଣିଷ ଭିତରର ସୃଜନଶୀଳତାକୁ ଓଷ୍ଟା ସମ୍ମାନ କରେ।

ଯେଉଁ ଗାଈ ଯେତେ କ୍ଷୀର ଦିଏ, ସେତେ ମାଡ଼ ବି ଖାଏ। ସେଇମିତି ଓଷ୍ଟା ମାଡ଼ବି ଖାଇଛି, ଲାତ ବି ମାରିଛି। ଓଷ୍ଟାସହ ମୋର ଯେତିକି ସମ୍ପର୍କ ସେଥିରେ ଓଷ୍ଟା ମୋତେ ଦେଇଛି ବେଶୀ, ନେଇଛି କମ୍। ବନ୍ଧୁ ଶୈଳେଶ ପଟ୍ଟନାୟକ ବରାବର କହୁଥିଲେ। 'ଆନ୍ଦୋଳନର ଚିଠି ଆସିଲେ ପାଅ ନାହିଁ। ଅନ୍ୟ ଚିଠି ସବୁ ପାଅ''। ସତ କହୁଛି ମୁଁ ସବୁ ଚିଠିପାଏ। ହେଲେ ମୋ' ଭିତରେ ଏମିତି ଏକ ମେଣ୍ଢାଛୁଆଥିଲା, ସେ ସବୁ ସହି ଜାଣେ, କହି ଜାଣେନା। ସଂଗ୍ରାମ କରିବାର ଦୁଇଟି ବାଟ। ନରମ ଓ ଚରମ। ମୁଁ ତ ନରମପନ୍ଥୀ। ଫଁ କରବା ଜାଣିନାହିଁ। ଆପଣ ମୋତେ ନିର୍ଲଜ କି ଭୀରୁ କଉଠିକାର କହନ୍ତୁ, ଦୁଃଖ ନାହିଁ। ସମ୍ବଲପୁର ଶିକ୍ଷକ ସଙ୍ଗଠନ ଓଡ଼ିଶାର ବହୁ ଶାଖାରୁ ଶାଖାଏ। ଗତ ପଚିଶ ବର୍ଷର ସଂଗ୍ରାମ ଆମ ସ୍ମାରକୀ ହୋଇ ରହୁ। ଆଜି ଯେତେବେଳେ ଶୀଥିଳ ହାତରେ ପେନ୍‌ସନ୍ ନେଇ ଫେରେ ମୋ ଭିତରୁ ଶିକ୍ଷକଟିଏ ନତଜାନୁ ହୋଇ ଯାଏ ଓଷ୍ଟା ଆଗରେ!!!



## ୬୩. ନାଆ ଟଳମଳ ନାଉରୀ ନୂଆଁ

ଶିକ୍ଷକ ତାଲିମ ପରେ ପରମାଣପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଯୋଗଦେଲି। ୧୩.୫.୧୯୬୪ ଦିନ ମୁଁ ମୋ କାମରେ ବାହିଲ ହେଲି। ମଝିରେ ମଝିରେ ଦେଖା ହେଲେ ଆର୍ତ୍ତକାକା ବରାବର କହୁଥିଲେ "ବାବୁ, ତୁ ଅନୁଷ୍ଠାନଟିକୁ ସମ୍ଭାଳ।" ସେ ପଟେ ଶ୍ରୀପୁରା ଲୋକେ ମୋତେ ଛାଡ଼ିବାକୁ ନାରାଜ। ବିଷମ ଅଡୁଆରେ ପଡ଼ିଥାଏ ମୁଁ।

ମୋ' ଉପରେ ମୋର ବାପାମାଆ, ଶାଶୂ, ଶ୍ୱଶୁର, ମାଇଁ ମାମୁ ଓ ମୋର ମା'ର ମା' ଆଈ ବୁଢ଼ୀର ବୋଝଥାଏ। ଏଇ ତିନୋଟି ପରିବାରର ଭରଣ ପୋଷଣ ମୋ' ଉପରେ ଥିଲା। ମୋର ଶ୍ୱଶୁର ବୈକୁଣ୍ଠ ନାଥ ତ୍ରିପାଠୀ (କାହ୍ନୁ) ମୋର ବିବାହ ଆଗରୁ ଛାଡ଼ି ଚାଲିଯାଇଥାନ୍ତି। ମୋର ମା' ୧୯୬୩ ପ୍ରାରମ୍ଭରେ ମାଘକୃଷ୍ଣ ଚତୁର୍ଦ୍ଦଶୀରେ ସଂସାର ଛାଡ଼ିଲେ। ମାସେ କାଳ ଟ୍ରେନିଙ୍ଗ କଲେଜକୁ ଗଲି ନାଇଁ। ଅଧକ୍ଷ ଡ଼ଃ ଗୌରୀ ଶ୍ୟାମ ମହାନ୍ତି ସମ୍ଭାଳି ନେଲେ। ଲେସନ ପ୍ଲାନ ପ୍ରସ୍ତୁତି ଓ ପ୍ରାକ୍ଟିକାଲ କ୍ଲାସ ନେବାରେ ଅନେକ ସାହାଯ୍ୟ କଲେ ଅଧ୍ୟାପକ ମାଧବ ଚନ୍ଦ୍ର ଶତପଥୀ, ପୁଅକୁ ବାପ ସମ୍ଭାଳିଲା ପରି। ଜୁଲାଇରୁ ମଇ ମଧଭାଗ ପର୍ଯ୍ୟନ୍ତ ତାଲିମ ସମୟ। ବି.ଇଡ଼ି ପରୀକ୍ଷା ମଇ ପ୍ରଥମ

ସପ୍ତାହରେ ପ୍ରାୟ ହେଉଥିଲା। ଅନୁଷ୍ଠାନ ମାନଙ୍କର ଖରାଛୁଟି ପ୍ରାୟ ମଇ ପନ୍ଦର ପୂର୍ବରୁ ଆରମ୍ଭ ହୋଇ ଯାଉଥିଲା। ଏବେ ବର୍ଷ ସାରା ପରୀକ୍ଷା। ଏ ବର୍ଷର ଫଳ ବାହାରିବାକୁ ଆଉ ଗୋଟାଏ ବର୍ଷ ଲାଗି ଯାଉଛି। ଅନୁଷ୍ଠାନ ଯେମିତି ବଢୁଛି ବିଶ୍ୱବିଦ୍ୟାଳୟ ସେମିତି ବଢୁଛି। ହେଲେ କାମ ସରୁନି। ଦପ୍ତର ସାଙ୍ଗକୁ ଦୌରାତ୍ମ୍ୟ ବି ବଢୁଛି। ମୋର ମେଟ୍ରିକ ପରୀକ୍ଷାଠୁ ସକଳ ପରୀକ୍ଷା ଦେଇଛି ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ। ମେଟ୍ରିକଠୁ ମେଡ଼ିକାଲ ଓ ଇଞ୍ଜିନୟରି ଠୁ ଆଇନ ସବୁ ପରୀକ୍ଷା ସମ୍ଭାଳୁଥିଲା ମାତ୍ର ଗୋଟିଏ ବିଶ୍ୱବିଦ୍ୟାଳୟ। ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରାର ଥିଲେ ଗୋରାଚାନ୍ଦ ରଥ। ମଝିରେ ୧୯୭୨ ଆଡ଼କୁ ପାରଳାଖେମୁଣ୍ଡିର ମୋର ପନ୍ଦରଦିନିଆଁ ଏକ କାର୍ଯ୍ୟକ୍ରମ ଥିଲା। ପାରଳାଖେମୁଣ୍ଡିରେ ଗୋରଚାନ୍ଦ ରଥଙ୍କ ଘର। ଅନେକ ବର୍ଷ ସେ ରେଜିଷ୍ଟ୍ରାର ଦାୟିତ୍ୱରେ ଥିଲେ। ତାଙ୍କୁ ମୁଁ ତାଙ୍କ ପାରଳାଖେମୁଣ୍ଡି ଘରେ ଦେଖାକଲି। ସେ ଭାରି ଖୁସି ହେଲେ। ତାଙ୍କୁ ପ୍ରଶ୍ନ କରିଥିଲି "ରେଜିଷ୍ଟ୍ରାର ଭାବେ କେମିତି ସମ୍ଭାଳୁଥିଲେ ଏତେ କାମ?" ସେ କହିଥିଲେ, "କାମ କରିବା ପାଇଁ ପ୍ରଥମେ ମନଟିଏ ଲୋଡ଼ା। ମନ ରାଜିହେଲେ କାମ ବାକି ରହିବ କେମିତି?" ସେ ମହାଶୟ ଏବେ ଆରପୁରରେ। ତାଙ୍କୁ ମୋର ଶତଶତ ପ୍ରଣାମ। ତାଙ୍କ ଭଳି ମଣିଷଙ୍କ ନିଷ୍ଠା ଏବେ ଆଉମାନଙ୍କୁ ଉଦ୍‌ବୁଦ୍ଧ କରୁ।

ପାରଳାଖେମୁଣ୍ଡି କଥା ମନେପଡ଼ିଲେ ଅନେକ ପଛକଥା ଭାସିଆସେ। ଓଡ଼ିଶା ସୀମାନ୍ତର ସବୁଠୁ ଛୋଟ ସହର। ଡ଼ାକେ ବାଟରେ ଆନ୍ଧ୍ର ପ୍ରଦେଶ। ଚ଼ଳଣି, ଖାଦ୍ୟପେୟ ଓ ଜୀବନଯାତ୍ରାରେ ଆନ୍ଧ୍ରବାସୀଙ୍କର ଗଭୀର ପ୍ରଭାବ। ପାରଳାଖେମୁଣ୍ଡିର କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟରେ ଦେଖିଲି ଏକ ବିରାଟ ଲାଇବ୍ରେରୀ। ଲାଇବ୍ରେରୀକୁ ଶୀତତାପ ନିୟନ୍ତ୍ରିତ ଅନ୍ଧାରରେ ରଖିବାର ଅଭ୍ୟାସ ପ୍ରାୟ ସବୁଠି ବିଦ୍ୟମାନ। ଏଇ ସେଇ ପାରଳାଖେମୁଣ୍ଡି। କବି ଗୋପାଳକୃଷ୍ଣ, ଗୌରଚନ୍ଦ୍ର ପରିଚ୍ଛା ପରି କବିଙ୍କର ଜନ୍ମଜାଗା। ଶିକ୍ଷା, ସାହିତ୍ୟ, ସଂସ୍କୃତିରେ ସଦା ଉଚ୍ଚାଟ। ଦକ୍ଷିଣୀ ଭୋଜନର ବାସ୍ନାରେ ସଦା ମହମହ ଏକ ସହର।

୧୯୬୦ରୁ ଆରମ୍ଭ ହୋଇଥାଏ ପରମାଣପୁର ହାଇସ୍କୁଲ। ପ୍ରଥମେ ପ୍ରଥମେ ପରମାଣପୁର ଦାମୋଦର ମି:ଇ: ସ୍କୁଲ ଘରେ ମାଗଣାରେ ଚ଼ଲୁଥାଏ। ସେତେବେଳର ପ୍ରଧାନ ଶିକ୍ଷକ ବିଦ୍ୟୁତ କୁମାର ପ୍ରମାଣିକ, ଉମାକାନ୍ତ ପାଣିଗ୍ରାହୀ, ଗୌରାଙ୍ଗ ଚ଼ନ୍ଦ୍ର ବେହେରା ସେଇ ଅନୁଷ୍ଠାନଟିର ଜୀବନ୍ୟାସ କରିସାରି ଥିଲେ। ମୋର ଯୋଗ ଦେବା ବେଳକୁ ବର୍ତ୍ତମାନ ଡ଼: ଝସକେତନ ସାହୁ କଲେଜର ସେଇ ଛଅଟି କୋଠରୀର ଲମ୍ବା ଉତ୍ତର-ଦକ୍ଷିଣ ଧାଡ଼ିଏ ଘରଥିଲା। ଲମ୍ବାରେ ପଚ଼ିସ ଓ ଚ଼ଉଡ଼ାରେ ଷୋହଳ ଫୁଟିଆ ଘର। ଧନକଉଡ଼ା ଟାଇଲ ଛପର। ନିଆଁକୁ ଡ଼ର ଥାଉକି ନଥାଉ ପାଣିକୁ ଡ଼ର ଥିଲା ନିଶ୍ଚୟ। ଆଉ ଦୁଇଟି କୋଠରୀ (ପୂର୍ବ-ପଶ୍ଚିମ) କୁ ତିଆରି କରିଥିଲେ ଉଗ୍ରସେନ ପ୍ରଧାନ।

ପରମାଣପୁର ହାଇସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ଶ୍ରୀ ବିଦ୍ୟୁତ କୁମାର ପ୍ରମାଣିକ

ସମ୍ବଲପୁର ସହରର ପିଲା। ଓଡ଼ିଶା ସରକାରଙ୍କ ଅର୍ଥ ବିଭାଗରେ ଚାକିରୀ କଲାପରେ ଖ୍ରୀଷ୍ଟଧର୍ମର ଜଣେ ବଡ଼ ପଦାଧିକାରୀ ହେଲେ। ତାଙ୍କର ବର୍ଷକର କାମରେ ତାଙ୍କ ନିଷ୍ଠା ଓ ପାରିଲାପଣ ବାରି ହୋଇଯାଏ। ତାଙ୍କ ପରେ ମୁଁ ଥିଲି ଅନୁଷ୍ଠାନର ସତର ନମ୍ବର ପ୍ରଧାନ ଶିକ୍ଷକ। ତାଙ୍କ ଓ ମୋ ମଝିରେ ପନ୍ଦର ଜଣ ପ୍ରଧାନ ଶିକ୍ଷକ କ୍ରିକେଟ୍ ଉଇକେଟ୍ ପଡ଼ିଲା ପରି ପେଭିଲିଅନକୁ ଚାଲିଗଲେ। ଯିଏ ଯଉଠୁ ଆସିଲା ପ୍ରଧାନ ଶିକ୍ଷକ ହେଲା। ପରମେଶ୍ୱର ଦାସ, ତ୍ରିଲୋଚନ ପଟ୍ଟନାୟକ, ସୁରେନ୍ଦ୍ର କୁମାର ବିଶ୍ୱାଳ ପରି ଆଉ ଅନେକ ଆସିଲେ ଓ ଗଲେ।

ଅନୁଷ୍ଠାନଟି ଯେମିତି ଝଡ଼ ମଝିରେ ଟଳମଳ ନାଆଁଟିଏ। ଅସ୍ଥିରତାରେ ଉଠବସ ହଉଛି। ସରକାର ଖାଲି ଅନୁଷ୍ଠାନ ଖୋଲିବାକୁ ଅନୁମତି ଦେଇଥାନ୍ତି। କଣା ପଇସାଟିଏ ବି ସାହାଯ୍ୟ ମିଳି ନଥାଏ। ପରିଚାଳନାରେ ଥାଆନ୍ତି ଚକ୍ରଧର ମିଶ୍ର, ଆର୍ତ୍ତତ୍ରାଣ ବାରିକ, ବାବାଜୀ ନାଥ, ଉଗ୍ରସେନ ପ୍ରଧାନ, ଚିରଞ୍ଜିଲାଲ ଅଗ୍ରୱାଲ, ଦୁର୍ଗାମାଧବ ପୁରୋହିତ, ଭାଗିରଥୀ ନାଥ, ତେଜରାମ ବେହେରା, ଭଗବାନ ପ୍ରଧାନ, ଅର୍ଜୁନ ବେହେରା ଭଳି ଅନେକ ଗଣ୍ୟମାନ୍ୟ ବ୍ୟକ୍ତି। ଅନୁଷ୍ଠାନକୁ ହାତରୁ ଦେବକିଏ? ଏଣୁ ପଞ୍ଚାୟତ ତା'ର ସୀମା ଭିତରେ ସାହାଯ୍ୟ କରୁଥାଏ। ଆମ ଜିଲ୍ଲାର ଅନୁଷ୍ଠାନମାନ କେନ୍ଦୁପତ୍ର ଗ୍ରାଣ୍ଟରୁ ଢୋକେ ପିଇ ଦଣ୍ଡେ ଜୀଇଁ ରହିଥାନ୍ତି।

ଖରାଛୁଟିତ ହେବ। ଖରାଛୁଟି ପରେ ପ୍ରଧାନ ଶିକ୍ଷକଙ୍କୁ ନିଯୁକ୍ତି ଦେବାକଥା ବୋଲି ଅନେକ ପରାମର୍ଶ ଦେଲେ। ହେଲେ ଜୁଲାଇରୁ ପଢ଼ାବର୍ଷ ଆରମ୍ଭ ହେବା ପୂର୍ବରୁ ଅନୁଷ୍ଠାନଟିକୁ ସଜାଡ଼ିବାକୁ ହେବ। ଏଣୁ ମୋତେ ଖରାଛୁଟି ପୂର୍ବରୁ ନିଯୁକ୍ତି ଦିଅନ୍ତୁ ଓ ଅଖଣ୍ଡ କ୍ଷମତା ଦିଅନ୍ତୁ। ଧନ୍ୟ କହିବି ମୁଁ ମୋ ପରିଚାଳନା କମିଟିକୁ ସେମାନେ ମୋତେ ସେତକ ଦେଲେ।

ହାଇସ୍କୁଲ ମାନଙ୍କରେ ସେତେବେଳେ ଉପକୂଳିଆ ସଂସ୍କୃତ ପଣ୍ଡିତଙ୍କ ଦୌରାତ୍ମ୍ୟ ବେଶୀଥିଲା ବୋର୍ଡ ଗଣ୍ଡେଇଥିଲା ସଂସ୍କୃତ ପଣ୍ଡିତ ନାଇଁତ ପିଲାଏ ପରୀକ୍ଷା ଦେଇ ପାରିବେ ନାଇଁ। ପରିଚାଳନା କମିଟି ନାକେଦମ୍। ଏଣୁ ସଂସ୍କୃତ ପଣ୍ଡିତଙ୍କ ଭାଉ କହିଲେ ନ ସରେ। ସେବେଳର ପରିଦର୍ଶକମାନେ ଏପରି ନଛୋଡ଼ ବନ୍ଧା ଥିଲେ ଯେ ମେପ କେଇଟା ନହେଲେ ମଞ୍ଜୁରି ମିଳୁନଥିଲା। ଏବେ କୁଆଡ଼େ ଅନୁଷ୍ଠାନର କିଛି ନଥିଲେବି ମଞ୍ଜୁରି ମିଳୁଛି। ହାତରେ କଉଡ଼ି ଥିବା ଦରକାର। ଏବେ ବିନା ଦରମାରେ ହାତରୁ କୋଡ଼ିଏ ପଚିଶ ହଜାର ଟଙ୍କା ପଗଡ଼ି ଦେଇ ଲୋକ ଚାକିରି କରିବାକୁ ଠିଆ ହେଲେଣି। ସେତେବେଳେ ମାସ ଶେଷ ନହଉଣୁ ଦରମା ନଦେଲେ ମାଷ୍ଟର ବାପୁଡ଼ାଟି ସ୍କୁଲ ଛାଡ଼ି ପଳଉଥିଲା। ହେଡମାଷ୍ଟର ବାପୁଡ଼ା କରିବ କଣ? ଏମିତିଆ ନଡ଼ବଡ଼ିଆ ଅସ୍ଥିରତା ଭିତରେ ଅନୁଷ୍ଠାନ ମାନ ଚାଲୁଥିଲା।

ସେ ବେଳର ଶିକ୍ଷକମାନଙ୍କୁ ଡ଼ାକି ମୁଁ ପ୍ରଶ୍ନକଲି ଯିଏ ରହି ଏଠି କାମ କରିବେ ତାଙ୍କୁ ମାସର ଠିକ୍ ଶେଷଦିନ ଆମେ ଦରମା ଦବୁ। ଯାହାର କାମ କରିବାକୁ ମନ ନାହିଁ, ସିଏ ଚାଲି ଯାଆନ୍ତୁ। କହିସିନା ଦେଲି, ଯିଏ ଚାଲି ଯିବ, ତାର ପ୍ରାପ୍ୟ ତୁଟାଇବାକୁ ହେବ। ଏଣୁ ଗ୍ରା:ପ: ସରପଞ୍ଚ ତଥା ସ୍କୁଲ ସମ୍ପାଦକ ଆର୍ତ୍ତତ୍ରାଣ ବାରିକଙ୍କୁ କହିଲି "ତମେ ମୋତେ ପରମାଣପୁର ବଡ଼କଁଟାର ମାଛ ମରାଇବାର କ୍ଷମତା ଦିଅ।" ଆର୍ତ୍ତକାକା ହଁ କଲେ। ମାଛ ମରାରୁ ପ୍ରାୟ ଦୁଇ ହଜାର ଟଙ୍କା ସଂଗ୍ରହ କଲୁ। ଝାମେଲା କରୁଥିବା ପଣ୍ଡିତଙ୍କୁ ଦରମାଦେଇ ବିଦାକଲୁ ବାକି ଟଙ୍କାରେ ଅଫିସର କାମ ଚଳେଇବା ପାଇଁ ଜରୁରୀ ସାମାନ କିଣିଲୁ। ବିଦ୍ୟୁତ ପ୍ରମାଣିକଙ୍କ ପରେ ମୋର ରେକଡ଼ ପତ୍ର ଆରମ୍ଭ କଲି। ମହିଁ ପନ୍ଦର ଜଣ ପ୍ରଧାନ ଶିକ୍ଷକଙ୍କ ରେକର୍ଡକୁ ପୁଟୁଳା ବାନ୍ଧି ରଖିଦେଲୁ। କାଳେ କାମକୁ ଆସିବ। ବିଭୁତି ଭୂଷଣ ନାଥ ଥିଲେ ପ୍ରଥମ କିରାନୀ। ପରେ ସେ ଶିକ୍ଷକ ହେଲେ। ଚ଼ମାର ପ୍ରଧାନ ଓ ଜୟରାମ ମରାଇ ଦପ୍ତରର କର୍ମଚାରୀ ରୂପେ କାମକଲେ। ସେମାନଙ୍କୁ ଆମେ ଯାହା ଦେଉଥିଲୁ କହିବାକୁ ଲାଜ ମାଡୁଛି। ମୁଁ ଯେତେବେଳେ ଜୟରାମ ମରାଇକୁ ପନ୍ଦର ଟଙ୍କା ମାସ ଶେଷରେ ତା ହାତକୁ ଦିଏଁ। ସେ ହୁଏତ ଅପୂର୍ବ ଅସର୍ପି ପାଇଲା ପରି ଗ୍ରହଣ କରେ। ହେଲେ ଚ଼ବିଶ ଘଣ୍ଟା ଅହୋରାତ୍ର କାମ କରୁଥିବା ଲୋକକୁ ଦିନକୁ ମାତ୍ର ଆଠଅଣା ଦଉଥିବାରୁ ଅନୁଭବ କରେଁ ହୁଏତ ସେ ପନ୍ଦର ଟଙ୍କା  କେହିଜଣେ ଯେପରି ମୋ ମୁହଁ ଉପରକୁ ଫିଙ୍ଗି ଦେଇ ପ୍ରତିବାଦ କରୁଛି। ବିବେକକୁ ପୋଡ଼େଇ ଖାଇବା ଭଳି ମାନସିକତାରେ ମୁଁ ସଦା ସନ୍ତୁଳିତ ହେଉଥିଲି। ପଚାରୁ ପଚାରୁ ପଚାରିଦେଲି, "ଏତିକିରେ ତମକୁ ପୁଷୋଉଛି?" ଜବାବ ଦେଲା, "ତୁଠ ଜଗିଥିଲେ, ଦିନେ ନା ଦିନେ ଧୋବ ହେବିଯେ!" ତାର ଉତ୍ତର ମୋର ଦୁଇଗାଲରେ ଦୁଇଟି ମସ୍ତବଡ଼ ଥାପଡ଼ପରି ଲାଗିଲା। ହେଲେ କେତେ ସହଜରେ କେତେ ଅନୁରକ୍ତିରେ ସେ କହି ପାରିଲା। ବିନାକାମରେ ସେ ବସି ପାରେନା କିଛି କାମ ଦବାକୁ କହେ। ଶେଷରେ ମୁଁ ତାକୁ ଏକରୁ ଶହେ ଓ ତା'ର ଦସ୍ତଖତ ଶିଖିବାକୁ ଆଦେଶ କଲି। ଘଣ୍ଟା ପିଟିବାରେ ସହଜ ହେବ ବୋଲି କୋଡ଼ିଏ ଇଂରାଜୀ ଅଙ୍କ ଶିଖିଲା। ନିରକ୍ଷର ଜୟରାମ ସାକ୍ଷର ହେଲା। ଅଦ୍ଭୁତ ତା'ର କର୍ମ ପ୍ରବଣତା। ବାପର କର୍ମ ନିଷ୍ଠା ପାଇଁ ପୁଅ ଚ଼ନ୍ଦ୍ର ମରାଇ ଚାକିରି ଖଣ୍ଡିକ ପାଇଲା। ଏବକାର ସମୟ ହୋଇଥିଲେ ଆମ ପ୍ରଶାସନିକ ଦପ୍ତର କିଛି ପଇସା ଝଡ଼େଇଥାନ୍ତେ ତା'ଠୁ। ଏବେ କୁଆଡ଼େ ଦରମା ଗଣ୍ଡିକ ଗଁଠେଇବାକୁ ହାତଗୁଞ୍ଜା ଦେବାକୁ ପଡୁଛି।

ଗାଏ ମୋଟ ଚାରିବର୍ଷର ଅନୁଷ୍ଠାନରେ ମୁଁ ସତର ନମ୍ବରର ହେଡ଼ ମାଷ୍ଟର। ବୟସ ବା କେତେ? ଅଠେଇଶ ବର୍ଷର ଯୁବକ। ଏପରି ଟଳମଳ ଅବସ୍ଥାରେ ଅନୁଷ୍ଠାନକୁ ସମ୍ଭାଳିବାରେ ମୋର ମେନେଜମେଣ୍ଟ ମୋତେ ପୁରା ସହଯୋଗ କରିଛି। ଧନ୍ୟବାଦ ଦେବି ଆର୍ତ୍ତତ୍ରାଣ ବାରିକଙ୍କୁ, ଚ଼କ୍ରଧର ମିଶ୍ରଓ ବାବାଜୀ  ନାଥଙ୍କୁ, ବ୍ରଜମୋହନ ବାରିକ ଓ ଦୁର୍ଗା ପୁରୋହିତଙ୍କୁ,

ମୁଁ ଯାହା କହିଛି, ସେମାନେ ହଁ କରନ୍ତି। ମୁଁ ବି ସେମାନଙ୍କୁ ଅବାଟରେ ନେଇନାହିଁ। ସେପରି ଏକ ଝଡ଼ର ଲଗନରେ ସଭିଏଁ ମୋତେ ସହଯୋଗ କରିଥିବାରୁ ମୁଁ ସେ ବେଳର ଛାତ୍ର, ଶିକ୍ଷକ, ପରିଚାଳନାରେ ଥିବା ବ୍ୟକ୍ତିମାନଙ୍କୁ ଧନ୍ୟଧନ୍ୟ ନ କହିବି କାହିଁକି?



# ୬୪. ନା ଗୋଠରେ ନା ମଠରେ

ଟ୍ରେନିଙ୍ଗ କଲେଜରେ ଥିବା ବେଳେ ମୁଁ ଏମ୍.ଏ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲି। ପରମାଣପୁର ଆସିବା ପରେ ବି ପରୀକ୍ଷାର ବୋଝ ଥାଏ ମୋ ମୁଣ୍ଡରେ ଗୋଠିଏନ ପାଖ ଆଦି ବଏଦାର ଘରେ ରହି ପଢାପଢି କଲି। ଜୟ ବିହାରି ପୁଜାରୀ ମେଟ୍ରିକ ପାସ କରି ବେକାରଥାନ୍ତି। ତାଙ୍କୁ ଅନୁରୋଧ କଲି ମୋତେ ସାହାଯ୍ୟ କରିବାକୁ। ତାଙ୍କର ଅକ୍ଷର ସୁନ୍ଦର। ଏଣୁ ମୋର ନୋଟ ପ୍ରସ୍ତୁତିରେ ବିଶେଷ ସହାୟକ ହେଲେ। ଆମ ଦୁଇଜଣଙ୍କର ଚଳିବାର ବ୍ୟବସ୍ଥା କରୁଥିଲେ। ଅଳ୍ପ ସମୟର ପ୍ରସ୍ତୁତିରେ ମୁଁ ଏମ୍.ଏ ପାସ କରିଗଲି। ଏମ୍.ଏ ପାସ ପରେ ନାନା ଆଡୁ ଅଧ୍ୟାପକ ଚାକିରି ପାଇଁ ଆମନ୍ତ୍ରଣ ଆସିଲା। ସର୍ବପ୍ରଥମେ ଲରମ୍ଭା କଲେଜରୁ ଡ଼ାକରା ପାଇଲି। ମାତ୍ର ଲରମ୍ଭାର ଛାତ୍ରଥିବାରୁ ସେଠି ଶିକ୍ଷକ ହେବାର ଆକର୍ଷଣ ପ୍ରାୟ ନଥିଲା। କାରଣ ଲରମ୍ଭାର ମୁଁ ଜଣେ ପ୍ରଥମ ଧାଡ଼ିର ଛାତ୍ର ଥିବାରୁ ତା ପ୍ରତି ମୋର ଅନ୍ୟ ରକମର ସମ୍ମାନ ଥିଲା। ଚାକିରି କାଳର ନାନା ଘଟଣା ହୁଏତ ମୋର ସେଇ ଶ୍ରଦ୍ଧାକୁ କ୍ଷୁର୍ଣ୍ଣ କରିପାରେ। ଏଇ ଭୟ ଥିଲା। ମୁଁ ନ ଯିବାରୁ ସରୋଜ ସୁଆରଙ୍କୁ ନିଯୁକ୍ତି ଦେଲେ।

ତାପରେ ସୋନପୁର କଲେଜ, ଦେବଗଡ଼ କଲେଜ, କୁଚିଣ୍ଡା କଲେଜ, ଝାରସୁଗୁଡ଼ା ଏଲ୍.ଏନ୍ କଲେଜ ମାନଙ୍କରୁ ଡ଼ାକରା ଆସିଲା। ଆମ ବେଳେ ଚାକିରି କରିବାକୁ ଡ଼ାକି ଆସୁଥିଲେ। ଏବେ ପିଲାଙ୍କୁ ଚାକିରି ପାଇଁ କିଛି ହାତରୁ ଦେବା ସହିତ ଦଶଥର ଯା ଆସ କରି ଚଟି ଛିଡ଼େଇବାକୁ ପଡୁଛି। ଆମ ବେଳେ ଚାକିରି ପାଇଁ ବ୍ୟକ୍ତିର ସମ୍ମାନଥିଲା। ଏବେ ସବୁ ରକମର ଅପମାନ ଭିତରେ ଚାକିରି। ଲାତେ ପଛେ ମାର ଚାକିରି ଦିଅ। ପଇସା ନିଅ ଚାକିରି ଦିଅ। ଚାକିରିଟାଏ ପାଇଁ ଏବେ ଲୋକେ ନିଜ ମାଇପକୁ ଟେକି ଦେବାରେ ଲାଜ କରୁନାହାନ୍ତି।

ଏମ୍.ଏ ପାସ କଲା ପରେ ମୁଁ ଏକ ମାନସିକ ଅସ୍ଥିରତା ମଧ୍ୟରେ ଚାଲିଥାଏ। ମନ କହୁଥାଏ ଅଧ୍ୟାପକଟିଏ ହବା। ଘର ଟାଣୁଥାଏ ଘରେ ରହ। ତିନି ତିନିଟି ପରିବାରର ବୋଝ। ବୁଢ଼ା ବୁଢ଼ୀ ବୟସର ସେ ସବୁ ଲୋକ ମୋତେ ଭରସା କରି ଗାଁ ଛାଡ଼ି ଆସିଛନ୍ତି। ନିଜ ସୁଖ ସମୃଦ୍ଧି ପାଇଁ ସେମାନଙ୍କୁ ଅନାଥ କରି ଚାଲିଗଲେ ବିଶ୍ୱାସଘାତକତା ହେବ। ସେ ସବୁଲୋକଙ୍କୁ ମୋ ଚାକିରି ଜାଗାକୁ ନେଇ ହେବନାହିଁ ଏକାଠି ରଖିହେବ ନାହିଁ। ଭିନ୍ନ ଭିନ୍ନ ରୁଚିଥିବା ତିନୋଟି ପରିବାରର ଆଠପ୍ରାଣୀ। ସାରା ଜୀବନ ଗାଁ

ପରିବେଶରେ ରହିଛନ୍ତି। ଜଳ ବନ୍ଧୁନେ ଝସଭଳି ଖାପଛଡ଼ା ଅନୁଭବ କରିବେ ସହରରେ। ମୋର ମାନସିକ ଅସ୍ଥିରତା ମୂଳରେ ଏଇ କାରଣଟି ଥିଲା।

ଏଣୁ ମାନସିକ ଭାବେ ମୁଁ କଣ କରିବି ଠିକ୍ କରି ପାରୁନଥିଲି। ମୋର ମାନସିକ ସ୍ଥିତି ମୋତେ ନା ଗୋଠରେ ନା ମଠରେ ରଖାଇ ଦଉ ନଥିଲା। ଘରକୁ ଆଇଲେ ଘର ବାନ୍ଧି ରଖୁଥିଲା। ଘର ବାହାରକୁ ଗଲେ ମନ ଦଉଡୁଥିଲା ଅଧ୍ୟାପକ ହେବାକୁ। ଫଳରେ ନା ଗୋଠ ଛାଡ଼ିପାରୁଥିଲି ନା ମଠକୁ ଯାଇ ପାରୁଥିଲି।

ଅଧ୍ୟାପକଟିଏ ହବାପାଇଁ ପ୍ରବଳ ଆଗ୍ରହଥିଲା। ବୃହତ୍ତର ପରିବେଶରେ ହୁଏତ ଅନେକ ସୁଯୋଗ ପାଇଥାନ୍ତି। ଓଡ଼ିଶା ପବ୍ଲିକ ସର୍ଭିସ କମିଶନଙ୍କ ବିଜ୍ଞପ୍ତି ବାହାରିଲା। ଆବେଦନ କଲି। ସେତେବେଳେ କେ.କେ. ସାମଲ ବୋଲି ଜଣେ ଆଇ.ଏ.ଏସ୍ ଅଫିସର କମିସନର ସଭ୍ୟଥିଲେ। ସେ ମୋତେ ପ୍ରଥମ ପ୍ରଶ୍ନ କରିଥିଲେ "ମୋ ପରି ଜଣେ ବିଚକ୍ଷଣ ଛାତ୍ର କାହିଁକି ଏ ଚାକିରିକୁ ଆଇଲା?" ଆଇ.ଏ.ଏସ୍, ଆଇ.ଏଫ୍.ଏସ୍ ଦେଇ ପାରିଥାନ୍ତା। ମୋର ଏକମାତ୍ର ଉତ୍ତର ଥିଲା ସବୁ ଲୋକଙ୍କ ଭାଗ୍ୟରେ ସବୁକଥା ଥାଏନା। ତାଙ୍କର ଦ୍ୱିତୀୟ ପ୍ରଶ୍ନଥିଲା ମୁଁ ଯେହେତୁ ହୀରାକୁଦ ବୁଡ଼ି ଅଞ୍ଚଳର ପିଲା। ମୋ ଗାଁର ପିତାପାଲିର ୟୁନିଟ୍ କଣ? ଏ ପ୍ରଶ୍ନଟି ମୋତେ ହତବାକ୍ କଲା। ମାତ୍ର ହଠାତ୍ କେମିତି ମନେ ପଡ଼ିଗଲା। ଆମ ଗାଁ ଲୋକେ ଷାଠିଏ, ଅଣି, ନବେ ୟୁନିଟ୍‌ର ଗାଁ ବୋଲି କଥା ହେଉଥିଲେ। ବୋଧହୁଏ ଜମି କିସମକୁ ନଜର ରଖି ଏମିତି ୟୁନିଟ୍ ସବୁ ବନ୍ଧା ହୋଇଥିଲା। କହୁଁ କହୁଁ କହିଦେଲି ନବେ। ସେ ଖୁସିରେ ଫାଟି ପଡ଼ିଲେ। କିଛି ଦିନ ପରେ ମୁଁ ସରକାରଙ୍କଠୁ ସରକାରୀ ଅଧ୍ୟାପକ ଚାକିରୀର ନିଯୁକ୍ତି ପାଇଲି ହେଲେ ଗଲିନାଇଁ। ବୁଢ଼ୀକି ପୁଟେଇ ଦେଇ କହିଲି। ଯାଃ ଆଉ ଅଧ୍ୟାପକ ହେବିନାଇଁ। ସାରା ଜୀବନ ଶିକ୍ଷକ ହୋଇ ରହିଗଲି। ଯେଉଁ ପ୍ରଧାନ ଶିକ୍ଷକ ରୂପେ ପ୍ରଥମ ନିଯୁକ୍ତି ପାଇଥିଲି ସେଇ ପ୍ରଧାନ ଶିକ୍ଷକ ପଦବିରୁ ଅବସର ନେଲି। ମାତ୍ ଦୁଇଟି ଅନୁଷ୍ଠାନରେ ଅଠତିରିଶ ବର୍ଷର ଶିକ୍ଷକତା ସରିଗଲା। ଚାକିରିର ୨ୟ ପର୍ଯ୍ୟାୟରେ ଯେଉଁ ଦ୍ୱିଧା, ଦ୍ୱନ୍ଦ ଓ ଅସ୍ଥିରତାରେ ଥିଲି ତାହା ସବୁଦିନ ପାଇଁ ଶେଷ ହୋଇଗଲା। ଧରିନେଲି ମୁଁ କେବଳ ସାରା ଜୀବନ ଶିକ୍ଷକ। ଅଧ୍ୟାପକ ନୁହେଁ। ଅଧ୍ୟାପକର ଅଭିଳାଷ ମୋ' ମନରୁ ମରିଗଲା।

କଲେଜ ସ୍ତରକୁ ଯାଇଥିଲେ ହୁଏତ ଜୀବନରେ ବହୁ ସମ୍ଭାବନାକୁ ଆଦରି ନେଇ ପାରିଥାଆନ୍ତି। ହେଲେ ସ୍କୁଲ ମାଷ୍ଟରରେ ମୁଁ ମୋର ଶକ୍ତି କୁ ଖଟାଇବାର ସୁଯୋଗ ପାଇଛି। ମୋତେ ମାଧ୍ୟମିକ ଶିକ୍ଷା ବୋର୍ଡ଼ **NCERT, SCERT** ଓ **SRC** ଭଳି ସଂସ୍ଥା ମାନେ ସୁଯୋଗ ଦେଇଛନ୍ତି।

ଦୁଇ ନାଆଁରେ ଗୋଡ଼ ଦେଲେ ବୁଡ଼ି ମରନ୍ତି। ଦୁଇ କୂଳକୁ ଆବୋରିଲେ ଲୋକ ଭାସିଯାଏ। ଭଲ ହେଉ ମନ୍ଦ ହେଉ ଗୋଟାକୁ ଆଶ୍ରାକଲେ ତରିଯିବାକୁ ହୁଏ। ମୁଁ ମୋ ଜୀବନରେ ଅମୁକସମୁକ ହେବି ବୋଲି ଗୋଡ଼ କାଢୁଥିଲି। ଶେଷକୁ ଏକନାଆଁରେ ଗୋଡ଼

ଦେବାରୁ ଜୀବନନଈ ପାରି ହୋଇଗଲି । ନ ହେଲେ ନା ଗୋଠର ନା ମଠର ହୋଇ ପାରି ନଥାନ୍ତି । ଗୋଟିକର ଭାଜନ ହେବା ଜୀବନ ।

ଜୀବନରେ ଯେଉଁ ଗୋଟାଏ କାମକୁ ଆଶ୍ରାକଲ । ସେଥିରେ ନିଜର ପାରିଲା ପଣ ପ୍ରମାଣ କରି ପାରିଲେ ହେଲା । ବହୁ ବାଟରେ କେହି ଏକାଥରକେ ଯାଇ ପାରେନା ଗୋଟାଏ ବାଟ ଧରିଲେ ବାଞ୍ଛିତ ଜାଗାରେ ପହଞ୍ଚ ହୁଏ ।

ଅବସର ପରେ ମୁଁ ମାନେଶ୍ୱରର ମାନଧାତା ବାବା ମହାବିଦ୍ୟାଳୟରେ ଅଧ୍ୟକ୍ଷ ହୋଇ ରହିଲି ଦୁଇବର୍ଷ । ମୋ' ମନଭିତରର ସେଇ 'ସଧ' ମେଣ୍ଟିଲା । ସେ କଲେଜର କିଛି ବୋଲି କିଛି କଲିନାଇଁ । ମନ ନଥିଲା । ଶେଷକୁ ଡ଼ଃ ବିଭୂତି ଭୂଷଣ ମିଶ୍ର ଏକ ପ୍ରତିଶ୍ରୁତି ହୋଇ ଆସିଲେ । ମାନଧାତା ବାବା ତାଙ୍କୁ ଦମ୍ଭ ଦିଅନ୍ତୁ ।



## ୬୪. ଝଡ଼ର ଏକରାତି

କାହିଁକି କେଜାଣି ପରମାଣପୁର ହାଇସ୍କୁଲ ବହୁ ଯୁବକଙ୍କ ଏକ ରେଢ଼ିରେଁଟା ପଥର (ଷ୍ଟେପିଙ୍ଗ ଷ୍ଟୋନ) ପାଲଟି ଯାଇଥିଲା । ଗୋଟାଏ ଦିନରୁ ଯୁଗଟାଏ ପର୍ଯ୍ୟନ୍ତ ପିଲାଏ ଏଠି ଶିକ୍ଷକତା କରିଛନ୍ତି । ମୋ' ଆଗରୁ ମୋ କାକାପୁଅ ଭାଇ ସ୍ୱର୍ଗତ ସୁରେନ୍ଦ୍ର ବିଶ୍ୱାଳ, ଭୋଳାନାଥ ପାଣ୍ଡେ, ତ୍ରିଲୋଚନ ପଟ୍ଟନାୟକ, ପରମେଶ୍ୱର ଦାସ, ସୁରେନ୍ଦ୍ର ପ୍ରସାଦ ପଣ୍ଡା, ପୂର୍ଣ୍ଣଚନ୍ଦ୍ର ନାଥ (ଦୁଇଥର), ରତନଲାଲ ଖମାରୀ, ନିକୁଞ୍ଜ କିଶୋର ପୂଜାରୀ, ମାନଭଞ୍ଜନ ନାୟକ, ଶିଶିର କୁମାର ଧର, ରମାକାନ୍ତ ମିଶ୍ର, ବିକ୍ରମାଦିତ୍ୟ ମିଶ୍ର, ବାଞ୍ଛାନିଧି ବାଗ, ସତ୍ୟ ନାରାୟର ମହାରଣା, ରମାକାନ୍ତ ଶୁକ୍ଳା, ନୀଳମଣି ନନ୍ଦ ପ୍ରମୁଖ ମନ ଖୁସିରେ ଆସିଲେ ଓ ମନ ଖୁସିରେ ଗଲେ ।

ଅନୁଷ୍ଠାନ ମାନେ ଲୋକେ ଆରମ୍ଭ କରୁଥିଲେ । ସରକାର କିଛି କିଛି ଅନୁଦାନ ଦେଉଥିଲେ, ଚୋକେ ପିଇ ଦଣ୍ଡେ ଜୀଇଁବାର ବ୍ୟବସ୍ଥା ଥିଲା । ଘରୋଇ ଅନୁଷ୍ଠାନ ଚଳେଇବା ପାଇଁ ବିହାର – ଓଡ଼ିଶା ଅମଳର ଶିକ୍ଷାକୋର୍ଡ଼ ଟାଏ ଥିଲା । ସେଥିରେ ବିଟ୍ରିଶ ଅମଳର ଯେଉଁ ନିୟମ ମାନଥିଲା । ତାକୁ ଚୋବେଇ ଚୋବେଇ ରୋମନ୍ଥନ କରୁଥିଲେ ଶିକ୍ଷା ବିଭାଗର ହାକିମମାନେ । ସେ ନିୟମ ଗୁଡ଼ିକୁ ଯେନତେନ ପ୍ରକାରେଣ ଗୁନ୍ଥାଗୁନ୍ଥି କରି ଚଳାଇ ନଉଥିଲେ । ଉପର ହାକିମ ମାନଙ୍କ ବ୍ୟକ୍ତିଗତ ନିର୍ଦ୍ଦେଶହିଁ ବେଶୀ କାମ କରୁଥିଲା । ଏକଥା ଏଠି କହିଦେବା ଠିକ୍ ହେବଯେ ସେ କାଳରେ ହାକିମମାନେ ଡ଼ି.ଆଇ., ସି.ଆଇ କି ଡ଼ି.ପି.ଆଇ ନିୟମକୁ ମାନୁଥିଲେ । ମାର୍ଜିତ ରୁଚିର ଲୋକଥିବାରୁ ଅମାର୍ଜିତ ତୁଛତା ଭିତରକୁ ଧସେଇ ପଶୁନଥିଲେ । ଏବର ସାହେବମାନେ ଯେମିତି କରୁଛନ୍ତି । ଏବେ ସକଳ ତୁଛତା ଶୁଣିବା ଲୋକକୁ ବି ଲାଜରେ ବୁଡ଼େଇ ଦେବ । ମୋର ପରମାଣପୁର ସ୍କୁଲକୁ ଆସିବା ପରେ ଅନୁଷ୍ଠାନଟି ମଞ୍ଜୁରି ପାଇଲା । ପିଲାଏ ପରୀକ୍ଷା ଦେବାକୁ ବୋର୍ଡ଼ ବି ମଞ୍ଜୁରି

ଦେଲା । ମୋ ଆସିବା ଆଗରୁ ପରମାଣପୁର ପିଲାଏ ଲଇଡ଼ା ହାଇସ୍କୁଲରେ ପରୀକ୍ଷା ଦେଉଥିଲେ । ସେତେବେଳେ କନ୍‌ହେଇ ସିଂ ଲଇଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକଥିଲେ । ପରେ ଏମ୍.ଏଲ୍.ଏ ହେଲେ । ଆମ ଅନୁଷ୍ଠାନ ଅନୁଦାନ ପାଇଲା । ସେତେବେଳେ କଳାହାଣ୍ଡି, ବଲାଙ୍ଗୀର, ସମ୍ବଲପୁର ଓ ସୁନ୍ଦରଗଡ଼ ଏଇ ଚାରୋଟି ଅବିଭକ୍ତ ଜିଲ୍ଲାକୁ ନେଇ ଗୋଟିଏ ସର୍କଲ ଥିଲା । ପରେ ସୁନ୍ଦରଗଡ଼, ସମ୍ବଲପୁର ଅନ୍ୟ ସର୍କଲ ହେଲା । ସି.ଆଇ ଅଫିସ ଥିଲା ସୁନ୍ଦରଗଡ଼ରେ । ୧୯୭୦ ବେଳକୁ ପରମାଣପୁର ହାଇସ୍କୁଲ ଫୁଲ ଡେଫିସିଟ୍ ଘୋଷିତ ହେଲା । ୧୯୭୨ ପର୍ଯ୍ୟନ୍ତ ଆମ ପରମାଣପୁରରେ କାର୍ଯ୍ୟକାରୀ କମିଟି ପ୍ରତି ମାସର ଶେଷଦିନ ତାର ଶିକ୍ଷକ ଓ କର୍ମଚାରୀ ମାନଙ୍କୁ ଦରମା ଦଉଥିଲା । ଶିକ୍ଷକମାନେ ମଧ୍ୟ ନିଷ୍ଠାବାନ ଥିଲେ । ୧୯୭୨ ପରେ ଅନୁଦାନ ସିଧା ସଳଖ ଶିକ୍ଷକମାନଙ୍କୁ ଦିଆଗଲା । ଫଳରେ ଶିକ୍ଷକମାନେ ପରିଚାଳନା କମିଟିର ପଂଝାରୁ ମୁକୁଳିବା ଆରମ୍ଭ କଲେ । କ୍ରମେ କ୍ରମେ ଡ଼ି.ଆଇ. ଓ ସି.ଆଇ ଅଫିସ ମାନଙ୍କ ହାବୁଡରେ ଶିକ୍ଷକ ଓ କର୍ମଚାରୀ ମାନେ ପଡ଼ିଲେ ।

ମୁଁ ଯାହା ଅନୁଭବ କରିଛି ଓଡ଼ିଶାରେ ବିକୃତ ବ୍ୟବସ୍ଥା ସବୁ ଜାତ ହେଲା ଶିକ୍ଷା ବିଭାଗରେ । ଡାଇରେକ୍ଟ ପେମେଣ୍ଟ ଆରମ୍ଭ କଲେ ସେ କାଳର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି । ଉଦ୍ଦେଶ୍ୟ ଥିଲା ପରିଚାଳନା କମିଟିର ଦାଉରୁ ଶିକ୍ଷକମାନଙ୍କୁ ରକ୍ଷା କରିବା ହେଲେ ଏ ପଦକ୍ଷେପଟି ଯେତିକି ସୁଯୋଗ ଆଣିଲା ସେଇ ପରିମାଣରେ ଦୁର୍ଯୋଗ ବି ଭରିଦେଲା ।

ଅନୁଷ୍ଠାନରେ ପ୍ରଥମେ ପୋଷ୍ଟ ବା ଚାକିରି ସୃଷ୍ଟି ହବାକଥା । ତା'ପରେ ସେଇ ଚାକିରିରେ ବ୍ୟକ୍ତିକୁ ଭରିବା କଥା । ମାତ୍ର ଓଡ଼ିଶାରେ କେତେବେଳେ ବ୍ୟକ୍ତି ପାଇଁ ଚାକିରି ତିଆରି ହେଲାତ ଆଉ କେତେବେଳେ ଚାକିରି ପାଇଁ ବ୍ୟକ୍ତି ବିଶେଷଙ୍କୁ ଭର୍ତ୍ତି କରାଗଲା । ଖାମଖିଆଲି ଚିନ୍ତନ ପ୍ରଭାବଶାଳୀଙ୍କ ଚାପ, ସ୍ଥାନୀୟ ଯୁବକଙ୍କ ପାଇଁ ଅନୁଷ୍ଠାନରେ ଚାକିରୀ ସୃଷ୍ଟି ପରିବହୁ ବିଲକ୍ଷଣ ଭିତରେ ଅନୁଷ୍ଠାନ ମାନ ବଢ଼ିଗଲା । ଗୋଟିଏ ହାଇସ୍କୁଲରେ କେଉଁ କେଉଁ ପୋଷ୍ଟ ରହିବ ଏହାର କୌଣସି ବିଧିବଦ୍ଧ ନିୟମ ନଥିଲା । ସ୍ୱାଧୀନତା ପୂର୍ବର ଶିକ୍ଷା କୋର୍ଡ଼ ଖଣ୍ଡିକ ସ୍ୱାଧୀନତା ପ୍ରାପ୍ତିର ଅନେକ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ବ୍ୟବସ୍ଥାକୁ ଚ଼ଳେଇ ନେଲା । ଅନୁଷ୍ଠାନ ମାନେ ପିଲା ମୁହଁକୁ ଚାହିଁ ଶିକ୍ଷକ ରଖିବା ଆରମ୍ଭ କଲେ । ୧୯୭୨ରେ ଡ଼ାଇରେକ୍ଟ ପେମେଣ୍ଟ ଲାଗୁ ହେବାରୁ ଡ଼ି.ଆଇ., ସି.ଆଇ ଅଫିସ ଦରମା ଦବା ଆରମ୍ଭ କଲେ ଆଗରୁ ମେନେଜମେଣ୍ଟ ଦରମା ଦଉଥିଲା । ସରକାର ମେନେଜମେଣ୍ଟକୁ ବାର୍ଷିକ ଅନୁଦାନ ଦଉଥିଲେ ଗୋଟିଏ ମୋଟା ରକମ ଆକାରରେ । ଫଳରେ ଦରମା ଦେବାକୁ ସି.ଆଇ ଅଫିସ ଶିକ୍ଷକମାନଙ୍କ ନିଯୁକ୍ତି, ଯୋଗଦାନ, ପୋଷ୍ଟ ଆଦି ପ୍ରସଙ୍ଗରେ ସଚେତନ ହୋଇଗଲେ । ଏହା ଆଗରୁ ବୋଧହୁଏ କୁମ୍ଭକର୍ଣ୍ଣ ନିଦରେ ଶୋଇଥିଲେ ।

୧୯୭୨ ବେଳକୁ ପ୍ରତି ହାଇସ୍କୁଲରେ ତିନୋଟି ଟ୍ରେଣ୍ଡ ଗ୍ରାଜୁଏଟ୍ ଶିକ୍ଷକ ନିଯୁକ୍ତିର ନିୟମଥିଲା। ପ୍ରଧାନ ଶିକ୍ଷକ ଭାବେ ମୁଁ ଜଣେ, ବିଜୟ କୁମାର ନାଥ ବି.ଏ, ବି.ଇ.ଡ଼ି ହୋଇ ଯୋଗଦେଲେ। ଏବଂ '୩ୟ' ଟ୍ରେଣ୍ଡ ଗ୍ରାଜୁଏଟ୍ ପୋଷ୍ଟ ପାଇଁ ଜଣେ ଦରକାର। ଆମ ଅନୁଷ୍ଠାନରେ ସେତେବେଳେ ବିଭୂତି ଭୂଷଣ ନାଥ, ବନମାଳୀ ମିଶ୍ର, ଗୌରାଙ୍ଗ ଚନ୍ଦ୍ର ପ୍ରଧାନ ଏ ତିନିହେଁ ଚାକରି କଲା ଭିତରେ ତାଲିମ ପାଇଲେ। ଏଣୁ ଏତିନି ଭିତରୁ କିଏ ରହିବ? ଭାଳେଣି ପଡ଼ିଲା। ସି.ଆଇ ଏ ଅଡୁଆକୁ ପଶୁଛି କିଏ ଭାବି ମେନେଜମେଣ୍ଟକୁ କହିଲେ, କାହାକୁ ରଖିବ କୁହ। ଏ ଅଡୁଆ ଭିତରେ ମୁସ୍କିଲ ପଶି ଆସିଲା। ତେଣୁ ଏ ତିନିଜଣ ଶିକ୍ଷକ ତାଲିମ ପ୍ରାପ୍ତ ପୋଷ୍ଟ ପାଇଁ ଟଣା ଓଟରା ଲାଗିଲେ। ମେନଜମେଣ୍ଟର ପ୍ରଭାବଶାଳୀ ଲୋକଙ୍କୁ ଧରିଲେ। ପ୍ରଧାନଶିକ୍ଷକ ପାଇଁ ଏ ପରିସ୍ଥିତି ନିଶ୍ଚିତ ଏକ ଝଡ଼। ତାଲିମ ଅନୁସାରେ ସିନିଅରଟି ନା ଜଏନିଙ୍ଗ ଅନୁସାରେ ସିନିଅରିଟି ବିଚାର କରିବା କଥା। ଏକଥାଟି ବିବାଦ ଆକାର ଧାରଣ କଲା। ବିବାଦକୁ ଯାହାକୁ ଭଲ ଲାଗେ ସେମାନେ ଏଥିରେ ରୁଚି ନେଲେ। ବନମାଳୀ ମିଶ୍ର ଫଁ ଫଁ କଲେ ନାଗସାପ ପରି। ବିଭୂତି ନାଥ ପ୍ରଥମରୁ କିରାଣୀ ଥିଲେ। ପରେ ଶିକ୍ଷକ ହେବାରୁ ତାଙ୍କ ଦାବୀ ପ୍ରଥମ ବୋଲି କହିଲେ। ଯାହା ହବାର ହବ। ଏ ମହା ମନ୍ଥନରେ କ୍ଷତିଗ୍ରସ୍ତ ପ୍ରାର୍ଥୀ ପ୍ରଧାନ ଶିକ୍ଷକଙ୍କୁ ଶୋଧିବା କଥା। ଶିକ୍ଷକମାନେ ଶୋଧିଲେ ତାଙ୍କ ମନକୁ ଯାହା ଆଇଲା। ମୁଁ କିନ୍ତୁ ନୀରବରେ ପରିସ୍ଥିତିକୁ ସମ୍ଭାଳି ନେଲି। କାହା ପଟରେ ଢଳିଲି ନାଇଁ। ନିୟମ ଆପେ ଆପେ ବାଟ ଫିଟାଇ ଦବ। ହେଲେ ମୋର ସାମାଜିକ ଜୀବନରେ ଏ ପରିସ୍ଥିତି କିଛି ଦିନ ଏକ ଝଡ଼ ରାତି ପରି ଘେରି ରହିଲା।

ବନମାଳୀ ମିଶ୍ର ଯୁଯୋମୁରା ହାଇସ୍କୁଲର ପ୍ରଧାନ ଶିକ୍ଷକ ହୋଇ ଗଲେ। ବିଭୂତି ଭୂଷଣ ନାଥ ଏକ ୟୁ.ଜି.ଏମ୍.ଇ ସ୍କୁଲର ପ୍ରଧାନ ଶିକ୍ଷକ ହୋଇଗଲେ। ପରେ ସେମାନେ ପରିସ୍ଥିତି ବୁଝିଲେ। ଗୌରାଙ୍ଗ ପ୍ରଧାନ ତୃତୀୟ ତାଲିମ ପ୍ରାପ୍ତ ପୋଷ୍ଟରେ ରହିଲେ। ହେଲେ ସି.ଆଇ ଅଫିସ ତାଙ୍କ ସିଦ୍ଧାନ୍ତ ଆଗରୁ ଦେଇ ପାରିଥାନ୍ତେ ଯେଉଁ ସି.ଆଇ ଅଫିସ କ୍ଷମତା ନ ଥାଇ ବନମାଳୀ ବାବୁଙ୍କୁ ଯୁଯୋମୁରା ହାଇସ୍କୁଲରେ ଏଡ଼ଜଷ୍ଟ କରି ପାରିଲା। ଏ ୩ୟ ଟ୍ରେଣ୍ଡ ଗ୍ରାଜୁଏଟ୍ ପୋଷ୍ଟ ପାଇଁ ସିଦ୍ଧାନ୍ତ ଦେବାରେ କି ଅସୁବିଧା ଥିଲା? ସେତକ କରିଥିଲେ ଆମ ପରମାଣପୁର ହାଇସ୍କୁଲ ଭଳି ଏକ ଶାନ୍ତ ପରିବେଶରେ ସେ ପ୍ରକାର ଅବାଞ୍ଛିତ ପରିସ୍ଥିତି ଆସି ନଥାନ୍ତା। ଆଜି ଶିକ୍ଷା ବିଭାଗରେ ଯେଉଁ ସବୁ କଳହ ରହିଛି ଓ ହଜାର ହଜାର ସଂଖ୍ୟାରେ ମକଦ୍ଦମା ହାଇକୋର୍ଟକୁ ଯାଉଛି ତା ମୂଳରେ ଡ଼ି.ଆଇ ଓ ସି.ଆଇ ଅଫିସର ଅପରିଣାମ ଦର୍ଶୀତା ବେଶୀ ମାତ୍ରାରେ ଦାୟୀ। ଆଜି ଅନୁଷ୍ଠାନ ମାନେ ବିବାଦର ଆଖଡ଼ାଘର ପାଲଟିଗଲେଣି। ଏଥିରୁ ପ୍ରଶାସନ ତାର ଲାଭ ନ ଖୋଜିବ କିଆଁ?



# ୬୬. ହେ ଧର୍ମ ତୁ ବୁଝିବୁ

ଏକମାତ୍ର ଦୃଶ୍ୟ ମୋତେ ବାଟ ବତାଇଛି। ସେ ଛବି ଗୋଟାକ ସଦା ମୋତେ ପ୍ରେରଣା ଯୋଗାଇଛି। କୌଣସି ଦ୍ୱିଧାରେ କୌଣସି ଦ୍ୱନ୍ଦ୍ୱରେ ପଡ଼ିଲେ ମୁଁ ସେଇ ଦୃଶ୍ୟକୁ ମନେ ପକାଏ ସାଙ୍ଗେ ସାଙ୍ଗେ ମୋ' ଭିତରୁ ଉତ୍ସାହଟିଏ ବାହାରେ, ଭାବନାଟିଏ ଫୁଟିଉଠେ। ମୋତେ କହେ ଏଇଥି ପାଇଁରେ ବାୟା, ଏତେ ଚିନ୍ତା? ଏତେ ହୁରଗୁନି। ସଳଖ ବାଟ କୁ ଚାହାଁ ବାଞ୍ଛିତ ଜାଗାରେ ପହଞ୍ଚିଯିବୁ" ସତକୁ ସତ ମୁଁ ବାଟ ହୁଡ଼ିନାହିଁ କି ଅବାଟରେ ଯାଇ ନାହିଁ। ଜୀବନର ଚଉମୁହାଣିରେ ଠିଆ ହୋଇ ଯେତେବେଳେ କଉ ବାଟରେ ଯିବିବୋଲି ଅନାଇଁ ରହିଛି, ସେଇ ଦୃଶ୍ୟଟି ମୋତେ ସଙ୍କେତ ଦେଉଛି "ଏଇଟା ତୋ ବାଟ"।

ବାଲୁତ ବେଳରେ ମୁ ମୋର ଆଇ ସାଙ୍ଗରେ ପୋଖରୀକୁ ଯାଏଁ। ପିଲାଦିନରୁ ପାଣି ଡ଼ରୁଆ ଟାଏ ମୁଁ। ମରିବାକୁ ହେଲିଣି ଏଯାଏଁ ପହଁରା ଶିଖିନାହିଁ। ମୋ ଆଇ (ମା'ର ମା) ପାଖରେ ମୋର ସବୁ ଅର୍ଦ୍ଦଳି। ବାପାଙ୍କର ମାକୁ ମୁଁ ଦେଖିନାହିଁ। ସେ କୁଆଡ଼େ ବାପାଙ୍କୁ ତିନି ବରଷରୁ ଛେଉଣ୍ଡ କରି ଆରପୁରକୁ ଚାଲିଯାଇଥିଲେ।

ଆଇ ରୋଜ ରୋଜ ଆମକୁ ସିଆଁ ବନ୍ଧକୁ ନିଅନ୍ତି। ଆମେ ନାତି ନାତୁଣୀ ଦି'ଜଣ ଯାଉଁ। ସେଇ କୁନି ନାତୁଣୀଟି ଏବେ ଆମ ସାଆନ୍ତାଣୀ। ବୁଢ଼ୀ ଆଇ ଆମକୁ ମାଜିଘଷି ଗାଧାଏ। ଆମକୁ ହିଡ଼ ମଝିରେ ଠିଆ କରାଇ ସେ ଆପଣାର ସ୍ନାହାନ ସାରେ। ଆମେ ତାକୁ ଅନାଇ ଥାଉଁ। ବୁଢ଼ୀ ପୂରୁବକୁ ମୁହଁ କରି ଆଣ୍ଠୁଏ ପାଣିରେ ଠିଆ ହୁଏ। ଆଞ୍ଜୁଳା ଆଞ୍ଜୁଳା ପାଣି ଟେକେ। କେଇ ବୁନ୍ଦା ପାଣି ମୁହଁରେ ପକାଇ କୁହେ, "ହେ ଧର୍ମ, ତୁ ବୁଝିବୁ" ଆପଣାକୁ ଗୋଟାପଣେ ସମର୍ପି ଦବାର ଏ ନିବେଦନ ଦୃଶ୍ୟ ମୋତେ ଏଯାଏଁ ଆବୋରି ରଖିଛି। ସେ ଦୃଶ୍ୟ ଓହ୍ଲାଇ ଆସେ ମୋ ଆଖିରେ। ଏଥିରୁ ସେତେବେଳେ ମୁଁ କିଛି ବୁଝି ପାରୁ ନଥିଲି। ଏବେ ବୁଝୁଛି ସେ କଥାର ମରମ। ସେ ଧରମ, ମୋ ଆଇ, କି ଛେନାଗୁଡ଼ ବୁଝୁଥିଲା କେଜାଣି ହେଲେ ଏବେ ସେ ଧରମ ମୋର ବହୁ କଥା ବୁଝୁଛି। ଏତକ ମୁଁ ବାଜି ମାରି କହିପାରେଁ।

ମୁଁ ଟ୍ରେନିଙ୍ଗ କଲେଜରେ ଥାଏଁ। ଖବର ଆସିଲା ମାଁ ଅଚେତ ଅବସ୍ଥାରେ। ପହିଲୁ ବାତ ରୋଗୀଟାଏ ମୋ ମା'। ପଦାକୁ ଯାଇଥିଲେ କଣ ହେଲା କେଜାଣି, ପଡ଼ିଗଲେ ଘରକୁ ବୋହି ଆଣିଲେ। କଥାଭାଷା କିଛି ନାହିଁ। କାଠପରି ପଡ଼ିଥାନ୍ତି। ପବନ ଟିକକ ଯା'ଆସ କରୁଥାଏ ମାତ୍ର। ଏବକାର ପରି ଚିକିତ୍ସା ସୁବିଧା ଥିଲା କଉଠି? ଥିଲା ଯେ! ପରମାଣପୁର ଡ଼ାକ୍ତରଖାନାର ଡ଼ାକ୍ତର ବି ବୁଢ଼ା। ତାଙ୍କୁ ଗୁହାରି କଲାରୁ ସେ କହିଲେ ରୋଗୀକୁ ଆଣ। ମୁଁ ଯିବି ମାନେ ମରିବି। ମା' ଆମକୁ ଛେଉଣ୍ଡ କରି ଚାଲିଗଲେ।

ସେତେବେଳକୁ ମୋର ଚଉଦିଗ ଅନ୍ଧାର ଏମିତି ଅନ୍ଧାର ଯେ ଗୋଟିଏ ସୂର୍ଯ୍ୟ କଣ

ଶହେଟି ସୂର୍ଯ୍ୟ ଉଇଁଲେବି ଅନ୍ଧାର ଯିବନାହିଁ।

ବୁଡ଼ି ଅଞ୍ଚଳରୁ ଆସିଥାଉଁ। ନୂଆ ଜାଗାରେ ଜମିକିଣା ହୋଇଥିଲା। ହେଲେ ଆମ ଜମିରେ ଗୋଳମାଳ। କଚେରୀରେ ମକଦ୍ଦମା ଚାଲୁଥାଏ। ଟ୍ରେନିଙ୍ଗରେ ଥିବାରୁ ଦରମା ମିଳିବାର ପ୍ରଶ୍ନ ହିଁ ନାଇଁ। ହାତରେ କାଣୀ କଉଡ଼ିଟାଏ ବି ନଥାଏ। ବାପାଙ୍କ ବହୁଦିନର ପୁରୁଣା ପେଟବେମାରି। ସେ ବି ଦିନେ ଜୀଇଁଲେ ଆଉଦିନେ ମରିବା ପରି। ସାନ ଭାଇ ପଢୁଥାଏ ଲରମ୍ଭାରେ। ମୁଁ ବାଟ ପାଉନଥାଏଁ କଣ କରିବି? ମନର ଏପରି ସନ୍ତୁଳିତ ଅବସ୍ଥାରେ ସଦା ମୋ' ଆଈଙ୍କ ସେ ଦୃଶ୍ୟଟି ମନେ ପକାଏଁ। "ହେ ଧରମ ତୁ ବୁଝିବୁ" ସତକୁ ସତ  ସେ ଦୃଶ୍ୟଟି ଆଲୁଅ ବନ୍ୟାଟିଏ ହୋଇ ମୋ' ଚଉକତିର ଅନ୍ଧାରକୁ ଦୂରେଇ ଦେଲା। ଦୁର୍ଦ୍ଦିନକୁ ଘୁଞ୍ଚାଇ ଦେଲା। ସକଳ ଅସହାୟତାରୁ ମୋତେ ରକ୍ଷାକରେ। ଏଥରବି ରକ୍ଷାକଲା।

ମା' ସିନା ଚାଲିଗଲେ। ହେଲେ ଚଉଦିଗରୁ ସହାୟତାର ହାତ ଲମ୍ବି ଆସିଲା। ସୁଦିନ ଯେମିତି ଗଡ଼ିଚାଲେ, ଦୁର୍ଦ୍ଦିନ ବି ସେମିତି ଗଡ଼ିଗଲା। ମା' ମଲା ସହିତ ମାମଲା ବି ତୁଟିଗଲା। ଆମ ଜମି ଆମେ ପାଇଲୁ। ଚାଷକଲୁ ହେଲେ "ମଙ୍ଗଳୁ" ବୋଲି ମା'ର ଡ଼ାକଟି ସବୁଦିନ ପାଇଁ ଲୋପ ପାଇଗଲା।

ଆଉ ଥରକର କଥା। ମୁଁ ଥାଏ ଭୁବନେଶ୍ୱରରେ, ରିଜିଓନାଲ ଟ୍ରେନିଙ୍ଗ କଲେଜରେ କଣ ଗୋଟିଏ ଟ୍ରେନିଙ୍ଗ ଚାଲିଥାଏ। ଏନ୍.ସି.ଇ.ଆର୍.ଟି ତରଫରୁ। ଘରୁ ତୁହାକୁ ତୁହା ଟେଲିଗ୍ରାମ ଗଲା। ମଝିଆ ପୁଅକୁ ପୋଲିସ ଧରିନେଇଛି। ଆମ ଗୋରୁ ଚୋରେଇ ନେଇଥିଲା ଜଣେ। କଣ ଗଣ୍ଡଗୋଳ ହେଲା କେଜାଣି କାହାକୁ ଜଣକୁ ହାଣି ପକାଇଲା ସେ ଚୋର।

ମୋ' ବାପା କେବେ ଥାନା ଦେଖି୍ନଥିଲେ। ମୁଁ ବି ଥାନାର ହତା ମାଡ଼ି ନାହିଁ। ମୋ' ପୁଅକୁ ପୋଲିସ ଧରିନେଲା କିଆଁ? ମୋତେ ନିଦ ହେଲା ନାଇଁ। ମୁଁ ଭୁବନେଶ୍ୱରରେ ବେଳା ଗଣି ବଞ୍ଚୁଥାଏ। ମନରେ ତୀବ୍ର ବେଦନା। ଆଖିକୁ ନିଦ ନାଇଁ। ପେଟକୁ ଭୋକନାଇଁ। ଗଭୀର ଯନ୍ତ୍ରଣା ଭିତରେ ବିତଉଥାଏ ଦିନ ଆଉ ରାତି। ହଠାତ୍ କେମିତି ମନେ ପଡ଼ିଗଲା ସେଇ ଦୃଶ୍ୟଟି। ମୋ' ଆଇ ଆଞ୍ଜୁଳା ଆଞ୍ଜୁଳା ପାଣି ଟେକି କହୁଥାନ୍ତି "ହେ ଧର୍ମ ତୁ ବୁଝିବୁ"। ମୋର ଯନ୍ତ୍ରଣା ଜର୍ଜରିତ ମନ ଭିତରକୁ ସେଇ ଦୃଶ୍ୟଟି ଆଭାମୟ ହୋଇ ପଶି ଆସିଲା। ଘରକୁ ଆସି ଦେଖେଁତ ମୋର ଆବର୍ତ୍ତମାନରେ ସବୁ ଠିକ୍ ହୋଇ ଯାଇଛି ଧର୍ମ ଦୋଷୀକୁ ଦଣ୍ଡ ନିର୍ଦ୍ଦୋଷକୁ ନ୍ୟାୟ ଦେଇ ସାରିଛନ୍ତି।

ବଡ଼ ପୁଅ ପାଇଁ ଗୋଟିଏ ଦେଖାରେ ବୋହୂ ପାଇଗଲି। ହେଲେ ମଝିଆ ପୁଅ ପାଇଁ ଏଗାରଟା ଜାଗାକୁ ଧାଇଁଛି। ବହୁ ଝିଅ ଦେଖିଛି। ଆମ ମନ ପାଇଲେ ପୁଅ ମନ ପାଉନାହିଁ। ପୁଅ ମନକୁ ଆସିଲେ ଆମ ମନକୁ ଆସୁନାହିଁ। ଏମିତି ଦେଖା ଦେଖିରେ ଦୁଇ ବରଷ କଟିଗଲା। ମୁଁ ବ୍ୟସ୍ତ ହୋଇ ପଡ଼ିଲି। ଅବସର ନବା ଆଗରୁ ମଝିଆର ବାହା

ସାରିଦେବି। ଏ ଝାମେଲା ସବୁ ଅବସର ଆଗରୁ ସାରିଲେ, ଭଲ। ଏ ମଝିଆ ପୁଅରେ ବାହାପାଇଁ ମୁଁ ନ ଭେଟିବା ଲୋକକୁ ଭେଟିଲି। କଥା ନ ହେବାର ଲୋକସହ କଥା ହେଲି। ଅଜାଗାକୁ ଗଲି। ନ ହେଲା ଲୋକ ସହ ମିଶିଲି। ଦୂରର ଲୋକ ପାଖ ହେଲେ। ପାଖର ଲୋକ ଦୂରହେଲେ। ଏ କନିଆଁ କରା ଏପରି ଏକ ବିଷମ ବ୍ୟାପାର ଯେ ନ କରିଛି ସେ ବୁଝି ପାରିବ ନାହିଁ। ପାଖକୁ ଗଲି, ଦୂରକୁ ଗଲି। ମଧ୍ୟପ୍ରଦେଶ ଗଲି। ବରଗଡ଼ ବାହିକୁ ଗଲି। ହେଲେ କଉଠି ବି ଠିକଣା ହୋଇ ପାରିଲା ନାଇଁ। କନ୍ୟା ବରଯତି ଭୃଙ୍ଗ କଥାଟି ହଁ ହେଲା। ଏପରି ଏକ ମାନସିକ ଅବ୍ୟବସ୍ଥିତ ଅବସ୍ଥାରେ ମୁଁ ଅଡୁଆରେ ପଡ଼ିଥାଏ। ଦିନେ ରାତିରେ ନିଦ ଭାଙ୍ଗିଗଲା ମନେ ପଡ଼ିଲା ମୋ' ଆଇଙ୍କ ସେ ଦୃଶ୍ୟଟି। "ହେ ଧରମ, ତୁ ବୁଝିବୁ"। ସକାଳ ହୋଇଛି କି ନାଇଁ ଥିଲା ଥିଲା ଖବର ଆସିଲା। ଅମୁକ ଜାଗାର ଝିଅକୁ ଦେବା ପାଇଁ ସେମାନେ ରାଜି। କଥା ପଟିଲା ବାହାବି ସରିଗଲା। ଏବେ ସେ ପୁଅ ତା' ପରିବାର ନେଇ ସୁଖରେ ଅଛି।

ମୁଁ ମୋ' ଜୀବନରେ ଯେତେବେଳେ କୌଣସି ଅଡୁଆରେ ପଡ଼ିଥାଏଁ, ସଙ୍କଟ ମୋତେ ମାଡ଼ି ବସିଥାଏ, ସମସ୍ୟା ଘେରି ରହିଥାଏ, ମୁଁ ଅନୁଭବ କରିଛି, ସେଇ ମହାନ ନିବେଦିତ ଦୃଶ୍ୟଟି ଏକ ଆଭାମୟ ଆଲୁଅ ରେଖାଟିଏ ହୋଇ ମୋତେ ବାଟ ବତାଇଛି। "ହେ ଧରମ, ତୁ ବୁଝିବୁ"।

ବସିଥିବା ଆସନରୁ ହଠାତ୍ ନାରାୟଣ ଉଠିଗଲେ। ଲକ୍ଷ୍ମୀ ପଚାରିଲେ, "କୁଆଡେ?" "ମୋ ଭକ୍ତ ଡ଼ାକୁଛି।" କଣ ହେଲା କେଜାଣି ନାରାୟଣ ସହଳ ଫେରି ଆସନ୍ତେ ଲକ୍ଷ୍ମୀ ପଚାରିଦେଲେ "ଫେରି ଆସିଲ ଯେ!" ନାରାୟଣ କହିଲେ ଭକ୍ତ ମୋ' ଉପରେ ନିର୍ଭର ନକରି ନିଜେ ତା' ଆତ୍ମରକ୍ଷାର ଚେଷ୍ଟାକଲା।"

ମୋ' ଆଇଙ୍କ ସେଇ ଈଶ୍ୱର ନିର୍ଭରଶୀଳତା "ହେ ଧରମ, ତୁ ବୁଝିବୁ"। ଯାଠୁ ବଳି ଆଉ କେଉଁବାଣୀ କଉଁଠି ଅଛି, କୁହନ୍ତୁ ନା?

ବିଶ୍ୱାସେ ମିଳଇ କୃଷ୍ଣ, ତର୍କେ ବହୁଦୂର। ସେଇ ଦୃଶ୍ୟଟି ସଦାସର୍ବଦା ମୋ ଜୀବନର ବତୀଘର ହୋଇ ରହିଛି।



# ୬୭. ମନା କରୁଥିବା ସେ ମୁହଁଟି

ଗୁମ୍‌କାରମାର ଅଚ୍ୟୁତାନନ୍ଦ ପଟ୍ଟନାୟକ ଥିଲେ ଜଣେ ଟିମ୍ବର ମାରଚେଣ୍ଟ। କାଠ ବ୍ୟବସାୟୀ। ବେଲପାହାଡ଼ ଓ ଲପଙ୍ଗା ରେଲ ଷ୍ଟେସନରେ ତାଙ୍କର ଡ଼ିପୋଥିଲା। ସେ ବରାବର କଲିକତା ଯାଆନ୍ତି। ତାଙ୍କ ପୁଅ ଅଶୋକ ପଟ୍ଟନାୟକ ସେତେବେଳେ ଶ୍ରୀପୁରା ସ୍କୁଲରେ ମୋର ଛାତ୍ର। ପୃଥ୍ୱୀପାଲ ତ୍ରିପାଠୀ, ଅଚ୍ୟୁତା ପଟ୍ଟନାୟକ ଓ ମୁଁ ସାଙ୍ଗ ହୋଇ କଲିକତା ଗଲୁ। ସେଇଟା ଥିଲା ମୋର ପ୍ରଥମ କଲିକତା ଯାତ୍ରା। ୧୯୬୦ ପୂର୍ବର

କଥା । ତିନିହେଁ ଯୁବକ ସେ ଦୁହିଙ୍କଠୁ ମୁଁ ବୟସରେ ସାନ ।

କଲିକତାର ମହାତ୍ମା ଗାନ୍ଧି ରୋଡ଼ରେ ଥିବା ଏକ ହୋଟେଲରେ ଆମେ ରହିଲୁଁ । ଠିକାଦାର, ବ୍ୟବସାୟୀ ଲୋକେ ଦିନବେଳେ ବ୍ୟବସାୟ କାମରେ ବୁଡ଼ି ରହନ୍ତି । ରାତି ଆସିଲେ ଏଠି ସେଠି ମଉଜ ମଜଲିସ କରନ୍ତି । ପଟ୍ଟନାୟକ ବାବୁ କଲିକତା ଯାଇ ଯାଇ ବୁଢ଼ା, କଉ ଜାଗା ତାଙ୍କୁ ଅଜଣା ଯେ! କଲିକତା ସହରଟି ଯେପରି ତାଙ୍କର 'ଘରକା ମୁରଗୀ' ।

ସେତେବେଳକୁ ମୁଁ 'ଆସନ୍ତା କାଲି' ପତ୍ରିକାରେ ବରାବର ଲେଖୁଥାଏଁ । କଲିକତା ଯିବାର ମୋର ମୁଖ୍ୟ ଆକର୍ଷଣ ଥାଏ ''ଆସନ୍ତାକାଲି ।'' ସେତେବେଳେ ଲେଖକ ପାଇଁ ସମ୍ପାଦକଟି ଦେବତାଟାଏ । ମୋ' ଭଳି ଦରିଦ୍ର ପାଇଁ କଲିକତା ବୁଲି ଯିବାର କିଛି ମାନେଥାଏ ନା । କଲିକତା–୧୨ରେ ଥିବା ବହୁବଜାର ଅଞ୍ଚଳର 'ଆସନ୍ତାକାଲି' ଅଫିସ ଗୋଟାକ ହିଁ ମୋର ତୀର୍ଥ ।

ତିନି ଦିନର ରହଣି ଭିତରେ ଆମେ ବହୁ ଜାଗା ଦେଖିଲୁ । କାଳୀ ମନ୍ଦିର, ରବୀନ୍ଦ୍ର ନାଥଙ୍କ ଯୋଡ଼ାଶଙ୍ଖ, ଚଉରଙ୍ଗୀର ନବରଙ୍ଗ । ଟ୍ରାମ ଚଢ଼ିଲୁ । ଚିଡ଼ିଆଖାନା ଦେଖିଲୁ । ଦମ୍ ଦମ୍ ବିମାନ ବନ୍ଦର ଦେଖିଲୁ । ଶନିବାର କୋ ଚଲା ସବେରେ ହାବଡ଼ା ଷ୍ଟେସନ ଦେଖାହେଲା । ମଙ୍ଗଳବାର ଦିନ ହାବଡ଼ା ବଜାର ଦେଖିଲୁ । କଲିକତା ବନ୍ଦରକୁ ଗଲୁ । ନଈ, ନାରୀ ଓ ନଉକାର ପ୍ରସିଦ୍ଧ ବଙ୍ଗଭୂମି ଦେଖିଲୁ । ସୁଜଳା, ସୁଫଳା ମାଟିର ବାସ୍ନାରେ ହଜିଗଲୁ ।

ହେଲେ ମୁଁ ଏଠି ସେଠି ସବୁଠି ଯାହା ସବୁ ଦେଖିଲେ ବି ମୋ' ମନ ମାନୁ ନଥାଏ । ସଦାବେଳେ ମୋ' ଆଖି ଖୋଜୁଥାଏ ବହୁ ବଜାରର ସେ 'ଆସନ୍ତା କାଲି'ର ଅଫିସ୍ । ହେଲେ କାହିଁକି କେଜାଣି ଅଚ୍ୟୁତା ବାବୁ ସେ ଜାଗାକୁ ଯିବା ପାଇଁ ସେତେ ଆଗ୍ରହ ପ୍ରକାଶ କରୁ ନଥାନ୍ତି । କାରଣଟି ବି ଖୋଲି କହୁନାହାନ୍ତି । ସେ ଯେତେ ଲୁଚେଇବାକୁ ଚାହାନ୍ତି ମୋ ଆଗ୍ରହ ସେତେ ବଢି ଚାଲିଥାଏ । ମୁଁ ଆକଟ କରି ଜିଦ୍ ଧଇଲି । ଯିବା ନିଶ୍ଚୟ ଯିବା । ସେ ବାଧ୍ୟ ହୋଇ ଆମକୁ ନେଲେ ।

ଚୌରଙ୍ଗି ପାରହେବା ବେଳକୁ କେହି ଜଣେ ଅଚ୍ୟୁତ ବାବୁଙ୍କୁ 'ସଲାମ ସାହେବା' କହି ସାରିଲେଣି । 'ଆଇଏ ସା'ବ ବଡ଼ାବଜାର ।' ଆମେ ଚାଲି ଥାଉ ଆଗକୁ ଆଗକୁ । ମୁଁ କିଛି ବୁଝି ପାରୁ ନଥାଏ । ଅଚ୍ୟୁତା ବାବୁ ଏସବୁ ଅଞ୍ଚଳର ଖୁବ୍ ଜଣାଶୁଣା ଲୋକ । ଆଗରୁ ଦେଖି ସାରିଛନ୍ତି ବୋଧହୁଏ । ମୁଁ ଗଳି କନ୍ଦିର, ଗଳି ଉପଗଳିର ସାଇନବୋର୍ଡ଼ ସବୁକୁ ଅନେଇ ଥାଏଁ । କାଳେ ଦିଶିଯିବ ମୋ 'ଆସନ୍ତାକାଲି' । ଦହଦହ ଦିନବେଳା । ରାଜରାସ୍ତାରୁ ସାନ ରାସ୍ତାକୁ ଯାଉଛୁ । ଟ୍ରାମ, ଡ଼ବଲଡେକର, ବସ, କାର ତା ପଛକୁ ପହଁରି ଯାଉଛନ୍ତି ; ସେତେବେଳକୁ କଲିକତା ରବୀନ୍ଦ୍ର ନାଥଙ୍କ କବିତା ପରି ଥିଲା ରସାଳ ଓ ଛଳଛଳ ।

ବଙ୍କୀମ ଚନ୍ଦ୍ରଙ୍କର ଦେବୀ ଚଉଧୁରିଆଣୀ ପରିଥିଲା ଗରୀୟସୀ। ଆଜିକାର କଲିକତା ପରି ଉଗ୍ରନଥିଲା।

ଗୋଟାଏ ଗଳି ପାରହେଲୁ।। ଉପଗଳି ବି ଶେଷ ହେଲା। ଦୁଇ ମହଲାର ଘର। ମୋଡ଼ରେ ଲୋକଟିଏ ପ୍ରଶ୍ନକଲା। 'କ୍ୟା, ଛୋକରୀ ଚାହିହେ, ସା'ବ।' ଅଚ୍ୟୁତା ବାବୁ କିଛି ନକହି ଧସଧସ ପଶିଗଲେ ଗୋଟାଏ କୋଠରୀ ଭିତରକୁ। ମୁଁ ପଚାରି ଦେଲି କାହିଁ 'ଆସନ୍ତାକାଲି'ତ ଦିଶୁନାହିଁ। ଏଇ ପରା ବହୁବଜାର। କେତେ ମୋଡ଼ କେତେ ବାଙ୍କ। ରୂପସୀ କଲିକତା ରାତିରେ କୁଆଡ଼େ ଝଲସେ। ତାରାପରି,। ମୋ ଆଖିରେ ଦିନବେଳାବି ଝଲସି ଉଠୁଥିଲା।

ମୋର ଖୋଜିଲା ଖୋଜିଲା ଆଖିରେ କେବଳ ସେଇ ଖୋଜିବା। 'ଆସନ୍ତାକାଲି' କାହିଁ? କଉଠି ପାଇଲି ନାହିଁ। ଆସନ୍ତାକାଲି ତ ନଥିଲା, ଥିଲା ଆଜିକାଲି। ଛୋଟ ଛୋଟ ଅନେକ କୋଠରୀ ଘେରା ଏକ ଅଞ୍ଚଳ। ପ୍ରତିଟି କୋଠରୀ ମୁହଁରେ ଜଣେ ତରୁଣୀ।

ଆମେ ତିନିଜଣ ଗୋଟିଏ ଖଞ୍ଜା ଭିତରକୁ ପଶିଗଲାରୁ ଦରବୁଢ଼ୀଟିଏ କର୍କଶ କଥାରେ କହିଲା "ଓ ଗୋ ଅତିଥି ଏସେଛେନ୍" ପୃଥିପାଲ ବାବୁ ଗୋଟିଏ କୋଠରୀକୁ ପଶିଲେ ଭିତରୁ ଦରଜା ବନ୍ଦ ହୋଇଗଲା। ଅଚ୍ୟୁତା ବାବୁ ବି ସେଇପରି ହଜିଗଲେ ଆଉ ଏକ କୋଠରିରେ। ମୁଁ ବୁଝିଗଲି। ସୁରେନ୍ଦ୍ର ମହାନ୍ତିଙ୍କ 'ମହାନଗରୀର ରାତ୍ରି' ମୋ' ଆଗରେ ମୂର୍ତ୍ତିମନ୍ତ ହୋଇ ଉଠିଲା। ଏଇଥିପାଇଁ ସେ ଦଲାଲ ଲୋକଟା ରାସ୍ତା ମୋଡ଼ରେ ଆମକୁ ପଚାରୁଥିଲା, 'ଛୋକରି ଚାହିୟେ ସା'ବ। ଦେଶ ଆଉ ମଣିଷ ଭିତରେ ଦଲାଲି କରେ ନେତା ନ୍ୟାୟ ଓ ଆଦମି ଭିତରେ ଦଲାଲି କରେ ଓକିଲ। ଭକ୍ତ ଓ ଭଗବାନ ମଝିରେ ଦଲାଲି କରେ ବାବାଜି। କଉ ଝିଅର ଦେହ ଆଉ ଲମ୍ପଟ ମଧ୍ୟରେ ଦଲାଲି କରି ଏମାନେ ପେଟ ପୋଷିବାରେ ଦୋଷ କଣ?

ମୋର ଦେହ ଥରୁଥାଏ। ସହର ମଝିର ଟ୍ରାମ୍ ଦଉଡୁଥାଏ ମୋ' ଛାତିରେ। ସୁନ୍ଦର ଝିଅଟିଏ ଆସି ଉଭାହେଲା ପାଞ୍ଚହାତିଆ ଲମ୍ବା ଚଉଡ଼ାର କୋଠରୀଟିଏ।

କାନ୍ଥରେ ରାମକୃଷ୍ଣ ପରମହଂସଙ୍କ ଫଟୋ। ପାଖରେ ମା' ସାରଦାମଣି। ଝିଅଟି ନରଭସନେସ୍‌କୁ ଠଉରେଇଲା, ହସିଲା। ସୁନ୍ଦର ସୁନ୍ଦର କଥା କହିଲା। ମୁଁ ପିପଳ ପତ୍ର ପରି ଥରୁଥାଏ। ମୁଁ ତାର ଡ଼ିମାଡ଼ିମା ଆଖିକୁ ଦେଖି ପାରୁନଥାଏ। ମୋର ଜୀବନର ଏକମାତ୍ର ସାଥି ଶୈଳ, ତାର ଗୋରା ମୁହଁ, ତା' ଆଖି ଭିତରେ ବିରାଜମାନ ହୋଇ କହୁଥାଏ। 'ଶେଷକୁ ଏୟାକଲ' ଏତେ ପ୍ରୟୋଜନ ରହିଛି ବୋଲି ଆଗରୁ କେବେ ତ କହିନଥିଲ?"

ଝିଅଟି ମୋ' ଅବସ୍ଥା ବୁଝିଲା ମୋ' ଘାଏଲା ମନକୁ ପଢ଼ିନେଲା। ଦରଜା ମେଲାକରି କହିଲା 'ଆବାର ଆସବେନ।" ମୁଁ ବନ୍ଧନ ମୁକ୍ତ ହରିଣ ପରି କୁଦାମାରି ପଳେଇଗଲି

ଗଳିର ମୋଡ଼କୁ। ମୋର ଛାତି ଉଠୁଥାଏ, ପଡୁଥାଏ। ମୋର ଶୈଳର ନିଷ୍କଳୁଷ ମୁହଁ ମୋତେ ଏକ ମହାଗ୍ରାସ କବଳରୁ ରକ୍ଷା କଲା। ଜୀବନର କେବେ କୌଣସି ଦୁର୍ବଳ ମୁହୂର୍ତ୍ତ ଆସିଲେ ମୁଁ ଶୈଳବାଳାର ସେଇ ସଦା ହସହସ ମୁହଁକୁ ସ୍ମରଣ କରେଁ। ମୋ' ପାଦ ଘୁଞ୍ଚିଯାଏ। ହାତ ଥରିଯାଏ ଜଗତର ଆଉଆଉ ଝିଅମାନେ କ୍ରମେକ୍ରମେ ମୋର ମା' ପାଲଟି ଯାଉଛନ୍ତି। ମୋର 'ଶଇଳ'କୁ ଡ଼େଇଁ ନପାରି ମୋର ଆତ୍ମା ଅଟକିଯାଏ। ତା' ମନାକଲା ମୁହଁଟି ସଦା କହେ "ମୋତେ ପାଶୋରି ଆଉ କା' କଥା ଭାବି ପାରିଲ କେମିତି?"



# ୬୮. ନିକମାର ନୈପୁଣ୍ୟ

"ସେ ଅନ୍ଧକୁ ଖାଇବାକୁ ଦେ"

"କଉଠି ଅଛି ଯେ ଦେବି? ପିଲାଏ ଖାଇଲେଣି, ଆମ ଦୁହିଁଙ୍କ ପାଇଁ ଯାହା ଅଛି।"

"ମୋ ଭାଗରୁ ଦେଇଦେ ତାକୁ, ଯାହା ଖାଇବ। ବଳକାତକ ଖାଇଲେ ଚଳିବ। କଉ ଭୋକ ହଉଛି ଯେ।"

ଏଇମିତି କଉଠୁ କାହାକୁ ଘେନିଆସି ଭାରିଯାକୁ ହୁକୁମ କରିବ ଖାଇବାକୁ ଦେ। ଦେଲେ ମଲ, ନଦେଲେ ମଲ। ବେଶୀ ରାନ୍ଧିଲେ କହିବେ। "ଭାତ କ'ଣ ଖତ ଗଦା ଖାଇବ? ମଣିଷକୁ ଦଉନ। ମଣିଷକୁ ନଦେଇ ଉରୁକୁଳା ଗଦାକୁ ଫୋପାଡ଼ିଲେ କଉ ଧରମ ଉଛୁଳି ପଡ଼ିବ ଯେ।"

"ଆଗରୁ କହିଥାନ୍ତ, ଅନ୍ଧ ପାଇଁ ପଣେ ଲଗେଇଥାନ୍ତି।" କେବେଠୁ ବିଚାରା ଜରରେ ପଡିଛି କଉ ହାଣ୍ଡିଏ ଖାଇଦେବ ଯେ।"

ଏମିତି ସେ ଦାଣ୍ଡରୁ ଭିଡି ଆଣିବ କଉ ଅରଖିତ, ଅନ୍ଧ, ଛୋଟା, ବୁଢ଼ା ଭିକାରୀ, ପଙ୍ଗୁ ଅସହାୟ କାହାକୁ ନା କାହାକୁ ଭାରିଯାକୁ ହୁକୁମ କରେ ପରଶି ଦେବାକୁ। କେତେବେଳେ କାହାକୁ ଭୁଜା ଗଣ୍ଡେଚ ଆଉ କେତେବେଳେ କାହାକୁ ପଇସେ ଅଧଲେ ଦବ।

ବସା, ବିପର୍ଯ୍ୟସ୍ତ ବିରୁଡ଼ି ପରି ତା ଭାରିଯା ବିରଝି ଉଟରି ଉଠିବ। କେତେ କଥାରେ ଫୋଡ଼ି ପକାଇବ ଗେରସ୍ତକୁ। କମେଇଲା ହାତ ସିନା ଦାନଧରମ କଲେ ସୁନ୍ଦର ଦିଶିବ ସଂସାରକୁ ନିକମାର ଦାନଧରମକୁ ଲେକେ ହସିବେ ନାଇଁତ କ'ଣ କରିବେ?"

ନିତିପ୍ରତି ଗେରସ୍ତ ଭାରିଯା ଭିତରେ ଏଇମିତି ଲଢେଇ। ମା' ବାପା, ଦିଅର, ଦେଢସୁର, ବଡ଼ ଜା' ସାନ ଜା ଶୁଣି ଶୁଣି ଆପଣା କାନକୁ ଭଏଁରା କରି ସାରିଲେଣି। ଯା' ଭାଗ୍ୟରେ ଯା' ଅଛି କହି ବାପ ମା' ଆପଣା ଭାଗ୍ୟକୁ ପ୍ରବୋଧନ୍ତି। ସାଇ ପଡ଼ିଶା କହିବା

ଆରମ୍ଭ କଲେଣି ପିଲାଟି ଭଲ ଯେ ନିକମା। କଉ କାମକୁ ହାତ ବଢଉନି। ବସି ଖାଇଲେ ନଈବାଲି ସରେ। ଢଭା ପୋତା ଯେତେ ଯାହା ଅଛି କେତେଦିନ ଅଣ୍ଟିବ? ଅନେକେ ପିଲାଟିକୁ ଝିଙ୍ଗାସନ୍ତି। ନାନା ଉପଦେଶ ଦିଅନ୍ତି। ଜମି ଅଛି, ଚାଷକର। ବାଡ଼ିଅଛି, ବେଉସା କର। ବଗିଚା ଅଛି, ଗଛଲଗା। ଘର ଅଛି ପସରାଟାଏ ମେଲା। ଏଇମିତି ଅଳସ ପଣ କୋରି କୋରି ଖାଇଯାଏ। ଅଳସୁଆମି ଖେଚଡ଼ଙ୍କ ଆଖଡ଼ା। ଏମିତି ମଜାରେ ଗଜା ବଅସ କଟିଗଲେ ବୁଢ଼ା ବେଳକୁ ଚଳିବୁ କେମିତି? ଯାହା ନକରିବୁ ଯୁବାକାଳେ କରି ପାରିବୁ କି ପାଚିଲା ବାଳେ?

ଏଇମିତି ଉପଦେଶ ମାଳ ମାଳ ଶୁଣି ପିଲାଟି ତା' ମନକୁ କଠୋର କରିସାରିଲାଣି। ଏଇମିତି ଚଳିବାର ଥିଲା ତ ବାହା ହେଉଥିଲ କିଆଁ? ଭାରୀଯା ଗରଜେ। ପୁଅଝିଅ ହେଲେଣି ସେମାନଙ୍କ ଆଗ କଥା ବୁଝିବ କିଏ? ବାପ ମା କଣ ସବୁଦିନ ଥିବେ ଯେ ତାଙ୍କ ଆଗେ ଦିନ ସରିଯିବ? ବାପଟା ସାଇତି ଥିଲା ବୋଲି ସିନା। ପେଟରୁ କାଟି କଷ୍ଟେମଷ୍ଟେ ଚଳଉଛି। ଘର ଦୁଆର ନକରି ବାବାଜି ହୋଇଥାନ୍ତୁ ଭଲା। ସଂସାର ତ କଲ ଏଇମିତି ସଂସାର ଛଡ଼ା କାମକଲେ ଚଳିବ?

ପିଲାବେଳରୁ ମୁଁ ତାକୁ ଅନୁଭବିଛି। ନିଠେଇ ନିରେଖିଛି। ସେ ଅନ୍ୟମାନଙ୍କଠୁ ଅଲଗା ସଭିଙ୍କୁ ଯାହା ଭଲଲାଗେ, ତାକୁ ତାହା ଲାଗେନା। ଯାହାକୁ ସଭିଏଁ ଭଲ କହିବେ ସେ ତାକୁ ମନ୍ଦ ବୋଲି ବିଚାରିବ। ଗୋଟିଏ ଅଲଗା ପଣ, ଭିନ୍ନ ଢ଼ଙ୍ଗ ମୁଁ ତାଠି ବାଳୁତ ବେଳରୁ ଠଉରେଇଛି। ତା'ର ସବୁ ଗୁଣ, ଅବିଗୁଣ ଭିତରେ ମୁଁ ଗୋଟିଏ ବିଶେଷ ଗୁଣ ଦେଖିଛି। ସେ ମଣିଷକୁ ମଣିଷ ବୋଲି ଦେଖେ। ମଣିଷକୁ ଠକି ବଡ଼ ହେବାର ପ୍ରବୃତ୍ତି ତା'ର ନାହିଁ। କାମ ଧନ୍ଦାରେ ମନଦେବ ବୋଲି ପସରାଟିଏ ଧରେଇ ତାକୁ ବସେଇଲି। ବିକାବିକି କଲାବେଳକୁ କେବେ କା'ଠୁ ଦଶ ପଇସିଟିଏ ଯଦି ଅଧିକା ନେଇଥିବ ଦୋକାନ ମେଲା ରଖି ଧାଇଁବ ସେ ଦଶ ପଇସା ତାକୁ ଫେରେଇବ ବୋଲି। ପରେ ଫେରେଇଥିଲେ ଚଳି ନଥାନ୍ତା ବୋଲି ଯୁକ୍ତି କଲେ ସେ କହିବ ଗରିବ ପାଇଁ ତା ଦଶ ପଇସା ଅନେକ ସମ୍ପତ୍ତି। କାହାକୁ ଠକିବା କି କାହା ପାଖରେ ଠକେଇବା ତା' ଜାତକରେ ନାହିଁ। ଏଇପରି ବିଚାର ଯୋଗୁଁ ଦୋକାନ ଛାଡ଼ିଲା।

କ୍ରମେ କ୍ରମେ ସେ ଅନ୍ୟମାନଙ୍କ ଆଖିରେ ଏକ ଅଳସୁଆ, ନିକମା, କଉ କାମର ନୁହେଁ ରୂପରେ ଠିଆ ହେଲା। ସଭିଏଁ ତାକୁ ଛୋଟ ନଜରରେ ଦେଖିଲେ। ଟାହି ଟାପରା କଲେ। ଘରେ ବାହାରେ ବେକାର ପିଲାଟିଏ ବୋଲି ହୁରି ପଡ଼ିଲା।

ସଭିଏଁ ଯାହା କରନ୍ତି, ଦୁନିଆଁ ଚାହେଁ ସେ ତାହାକରୁ। ମଣିଷ ଜନମ ହୁଏ। ସୁଖ ଦୁଃଖ ଭିତରେ ବଂଢ଼େ। ବାପ ମା'ର ଆଦର ପାଏ। ପରିବାର ସ୍ନେହ ପାଏ। ପିଲାକାଳ କଟେ।। ବଅସ ବଢ଼େ। ବାହା ହୁଏ। ଘର କରେ। ପିଲାଛୁଆର ବାପ ହୁଏ। କାମ କରେ।

ଚାକିରୀ କରେ। ଚାଷ କରେ। ବଣିଜ କରେ। ଯଉ କାମ ପା'ଏ କରେ। କୁଟୁମ୍ବ ପୋଷେ। କୁଟୁମ୍ବ ପୋଷ, ନାହିଁ ଦୋଷ ଭାବି ଭଲମନ୍ଦ ସବୁ କାମକରେ। ଜଗତରେ ସେଇପରି ଲୋକଙ୍କୁ ସିଦ୍ଧ ସଂସାରୀ ବୋଲି ଧରିନିଅନ୍ତି। ଅନେକଙ୍କ ଭିତରେ ଏମିତି ଜଣେ ଅଧେ ବାହାରନ୍ତି ଯଉମାନେ ସଭିଏଁ ଧରିଥିବା ବାଟକୁ ନଧରି ବାଟ ଭାଙ୍ଗି ଅନ୍ୟବାଟ ଧରନ୍ତି।

ଜଗତ ଆଖିରେ ଏମାନଙ୍କ ବାଟଟି ସମସ୍ତଙ୍କ ବାଟଭଳି ନହେଲେ ବି ଏ ବାଟଟି ଅନ୍ୟମାନଙ୍କ ଆଖି ଫିଟାଏ। ଅନ୍ୟମାନଙ୍କ ରକତରେ ଛୁଙ୍କ ଦେବାଭଳି ଚଟ୍ ଚେତନାଟିଏ ପୂରେଇଦିଏ।

ଛୋଟା ଲୋକଟିଏ ମୋ ଘରବାଟ ଦେଇ ବରାବର ଯା' ଆସ କରେ। ପ୍ରଥମରେ ଭିକମାଗି ପେଟ ପୋଷୁଥିଲା। ଏଣୁ ତାକୁ ଦେଖିଲେ ଘରଣୀମାନେ ଚାଉଳ ମୁଠିଏ ଧରି ଦାଣ୍ଡକୁ ଆସୁଥିଲେ। ସେ ଅଣ୍ଟିମେଲା କରୁଥିଲା। ଚାଉଳ ମୁଠାକୁ ପାଇ ତା" ବାଟରେ ହଜିଯାଉଥିଲା। ଯା ଭିତରେ ସେ ଛୋଟା ଲୋକକୁ ମୁଁ ପ୍ରାୟ ଦେଖିନଥିଲି। ଥିଲା ଥିଲା ଦିନକର ଦିନେ ସେ ଆମ ଦାଣ୍ଡ ଦୁଆରେ ଉଭାହେଲା। ଆମ ମଝିଆ ବୋହୂଟି ଚାଉଳ ମୁଠିଏ ଧରି ଆଇଲା। ଚାଉଳ ମୁଠାକ ଦବାପାଇଁ ହାତ ବଢ଼ାଇବା ବେଳକୁ ଲୋକଟି କହିଲା, "ନା' ମା' ମୁଁ ଆଉ ଭିକ ମାଗୁନାଇଁ", ଆମ ଟିକି ବାବୁଙ୍କୁ ଟିକିଏ କହି ଦେବେ କି? ତାଙ୍କ ପାଖକୁ ଆସିଛି। ସେ ମୋ ଦେବତା। ସେ ମୋତେ ଅକ୍ଷର ଶିଖେଇଲେ ନିରକ୍ଷର ଥିଲି ମୁଁ। ମୋ ଭିତରେ ନୂଆ ଆଗ୍ରହଟିଏ, ବିଶ୍ୱାସଟିଏ ପୂରେଇଦେଲେ ସେ। ସେଇଟାକୁ ପୁଞ୍ଜିକରି ମୁଁ ଏବେ ମେଟ୍ରିକ ପାସ୍ କଲିଣି। ପଙ୍ଗୁ ବୋଲି ଚାକିରି ଖଣ୍ଡେ ପାଇଲି। ଏବେ ମୁଁ କ୍ଷମ। ନିଜ ଗୋଡ଼ରେ ଠିଆ। ଆମ ଟିକି ବାବୁଙ୍କୁ ବଧେଇ ଜଣାଇବାକୁ ଆସିଛି। ଜାଣିଛି ଆମ ଟିକି ବାବୁଙ୍କ ଚେଷ୍ଟାରୁ ଏବେ ବହୁ ବୁଢ଼ା ଲୋକ ଅସହାୟ ଲୋକ, ବଞ୍ଚିବାର ମାନେ ବୁଝିଲେଣି। ସେ ଅସହାୟର ସହାୟ ବିପଦର ବନ୍ଧୁ। ମଣିଷକୁ ଭଲ ପାଇବାର କଳା ଭଲ ଭାବରେ ଜଣା ତାଙ୍କୁ।

ମଝିଆଁ ବୋହୂଟି ତା ଗେରସ୍ତର ଏ ପ୍ରକାର ମହତ ପଣଟି ଅନ୍ୟ ମୁହଁରୁ ଶୁଣି କାବା ହୋଇଗଲା। ସେ ଦିନଠୁ ଗେରସ୍ତ ଭାରିଯାଙ୍କ ଲଢେଇ ପ୍ରାୟ ବନ୍ଦ।



# ୬୯. ବିଷ କନ୍ୟାର ଆଲିଙ୍ଗନ

ଭବିଷ୍ୟତ ନିଧି ପାଣ୍ଠିରୁ ଟଙ୍କାଟକ ଆଣିବାକୁ ପ୍ରାୟ ତିନିବର୍ଷ ବିତିଗଲା। ଶୁଣିଥିଲି ତାଲବ ଗାଁର ପ୍ରସିଦ୍ଧ ବିଜ୍ଞ ଓ ସାଧୁ ବ୍ୟକ୍ତି ଦେବାର୍ଚ୍ଚନ ଭୋଇଙ୍କର ପୁଅମାନେ, ତାଙ୍କ ବାପାଙ୍କ କଷ୍ଟାର୍ଜିତ ପଇସା ସହଜରେ ଉଠାଇପାରୁ ନାହାନ୍ତି। ଏଣୁ ମନରେ ଶଙ୍କା ପଶିଲା, କାଳେ ମୋ ସନ୍ତାନ ମାନେ ମୋ ଦୁଃଖଭୁତିକୁ ପାଇ ପାରିବେ ନାହିଁ। କେତେବେଳେ କଣ

ହେବ କିଏ ଜାଣେ? ଏଣୁ ଟ୍ରେଜେରିରେ କାମ କରୁଥିବା ମୋର ଜଣେ ଛାତ୍ରଙ୍କୁ କହିଲି ଏଇ ଟଙ୍କା ତକ ନିଅ ଆଉ ଭୁବନେଶ୍ବରର କୌଣସି ବାବୁଙ୍କୁ କହି ମୋ' ଟଙ୍କାତକ ବାହାର କରି ଦବାକୁ କହିବ। ଛାତ୍ରଜଣକ ପ୍ରଥମେ ମୋଠୁ ଟଙ୍କା ଛୁଇଁବାକୁ ଥତମତ ହଉଥିଲେ। ମୁଁ ବଳେଇ କହିବାରୁ ଟଙ୍କା ଛୁଇଁଲେ। ସେ ତାଙ୍କ ସୁବିଧାରେ କାମଟି କରେଇ ନେବାକୁ ଅନୁରୋଧ କଲି। ସେ ହଁ କଲେ, ପ୍ରାୟ ଚାରିମାସ ପରେ ସେ ଛାତ୍ରବାବୁଟି ମୋ' ଟଙ୍କା ମୋତେ ଲେଉଟାଇ ଦେଲେ। କହିଲେ, "ମୁଁ ଯଉ ବାବୁଙ୍କୁ ଏ ଟଙ୍କା ଯାଚିଲି, ସେ କୁଆଡେ ଆପଣଙ୍କଠି ବହୁ ଭାବରେ କୃତଜ୍ଞ। ମୁଁ ବିରକ୍ତ ହୋଇ କହିଲି, କୃତଜ୍ଞ ବୋଲି କହିଲେ କଣ ହେବ? କାମଟି କଲେ ସିନା। ସେ ଦୃଢ଼ୋକ୍ତି ଦେଇ କୁଆଡ଼େ ଛାତ୍ରଙ୍କୁ କହିଥିଲେ ମୋର ଜି.ପି.ଏଫ୍ କାମ ଠିକ୍ ଠାକ୍ କରି ଏତେ ତାରିଖ ଭିତରେ ନିଜେ ଆସି ଦେଇ ଯିବେ। ଅନ୍ୟଥର ଭଳି ପ୍ରତିଶ୍ରୁତିର ଭରସା ରଖି ଫେରି ଆସିଲି। ସତକୁ ସତ ପ୍ରତିଶ୍ରୁତି ଅନୁସାରେ ସେଇ ତାରିଖରେ ବାବୁ ଜଣକ ଜି.ପି.ଏଫ୍‌ର କାମକରି ଦେଇଗଲେ। ମୋତେ କଉଠି ବି ହଇରାଣ ହେବାକୁ ପଡ଼ିଲା ନାହିଁ। ଶେଷ ଦିନ ଆମସହ ସଂପୃକ୍ତ ଅଫିସର ବାବୁ ଜଣେ ମୋଟା ଅଙ୍କର ଚେକ୍‌ଟାଏ ଦେବା ବେଳେ ସୂଚାଇ ଦେଲେ "ଆଜ୍ଞା, ଏତେ ଟଙ୍କା ଲାଗିବ, ଟ୍ରେଜେରୀରେ ଦେବାକୁ ପଡ଼ିଛି। କିଛି ନ କହି ମୁଁ ହସି ଦେଲି କାରଣ ମୁଁ ଜୀବନରେ କେବେ କାହାକୁ ଉପୁରି ଦେଇ ନାହିଁ। ଆଗକୁ କଣ ହେବ କେଜାଣି? ମୋର ବନ୍ଧୁ ମାନେ ବେଳେବେଳେ ଥଟ୍ଟା କରନ୍ତି, କେତେ ଝଡ଼େଇଲେ କଉକାମ ଯଦି ସୁବିଧାରେ ହୋଇ ଯାଇଥାଏ!

ଏଣୁ ଆଜି ବି ମୋ ଭିତରେ ବିଶ୍ବାସଟିଏ ବଞ୍ଚିଛି। ଆମ ଭିତରେ ମୂଲ୍ୟବୋଧର ଲୋକେ ଏବେ ବି ଅ[illegible]ଂସାର ଠିକ୍‌ଠାକ୍ ଚାଲିଛି ସେଇ କେତେ ଜଣଙ୍କ ପାଇଁ। ଏ ପ୍ରସଙ୍ଗ ଲେଖୁଥିଲା ବେଳକୁ ମୋର ବୟସ ୬୬। ଏଇ ଛୟଷଠି ବର୍ଷ ଭିତରେ ସମୟର ଯେଉଁ ଆଲିଙ୍ଗନ ପାଇଛି, ତାର ଭଷ୍ମତା ବଖାଣିବି।

ମୋ ପିଲାବେଳେ ମୁଁ ଦେଖିଛି ମୋ' ବାପ ଅଜା ମାନେ ପଣିଅଜା ମାନେ ଲୋକଙ୍କୁ ପେଟେ ଖୁଆଇ କାମ କରେଇ ନେଉଥିଲେ। ତାଙ୍କର ଯୁକ୍ତିଟି ଥିଲା। ଲୋକଙ୍କୁ ଖାଇବାକୁ ଦେଲେ କେତେ ଖାଇବେ? ପେଟକୁ ଯାହା ଧରିବ ସେତକତ? ଯଦିକିଛି ଦବ; ତେବେ ସେ ହୁଏତ ଭାବିବ ଆଉ ଏତିକି ଦେଇ ଥିଲେ ମୋ' କାମଟା ହୋଇଯାଇ ଥାଆନ୍ତା। ପ୍ରାପ୍ୟରୁ ଅତିରିକ୍ତକୁ ମନ ବଳାଇବ। ପଇସା ବାହାରେ ଆଉ କିଛି ଆଶା ରଖିବ। ଏଇ ଆଶାରୁ ଜନ୍ମ ନେଲା ଲାଞ୍ଚନବାର ପ୍ରବୃତ୍ତି। ଏଣୁ ଆଗେ ଲୋକେ ଭୁଞ୍ଜିବାକୁ ଦେଇ ଭାଜନ ହେଉଥିଲେ। ଏଥିରେ ଥିଲା ଦେବା ନେବାର ମହତ୍ୱ ଓ ମାନବିକତା। କଣ ହେଲା କେଜାଣି ମଧ୍ୟବିତ୍ତ ଶ୍ରେଣୀର ପିଲାଏ ପଶି ଆସିଲେ ପ୍ରଶାସନ ଭିତରକୁ। ଉପରକୁ ଚାହିଁଲେ ଉପରଥାକର ଲୋକେ ଯେମିତି କୋଠା ପିଟିଲେଣି। ତଳବାଲାଙ୍କୁ ଅନେଇଲେ।

ସେମାନେ କୁଆଡ଼େ ଜନ୍ମ କାଙ୍ଗାଳ। ସଦା ରଙ୍କ। ଏଇ ମଝି ମଝିଆଙ୍କୁ ବି ଭୂତ ଧଇଲା କି ଡାହାଣୀ ଧଇଲା ଯେ ଖାଲି ଉପରମୁହାଁ ହେଲେ। ଘୋଡ଼ା ନ ଥାଇ ଘୋଡ଼ାଗାଡ଼ି ଚଢ଼ିବାକୁ ମନ ଛନଛନ। ସେମାନେ ଯାହା ତାହାଠୁ ଅଧିକ ଦିଶିବାକୁ ଚାହିଁଲେ। ଫଳରେ ଧନ ଦରକାର ପଡ଼ିଲା। ହାତରେ ନାଇଁ ଧନ ରଜା ଝିଅକୁ ମନ"। ମଧ୍ୟମ ଗୋଷ୍ଠୀର ରକ୍ତ ଭିତରେ କେମିତି କିଏ ସେ ମଞ୍ଜି ବୁଣିଦେଲା ଯେ ଆଜି ମୂଳରୁ ଚୂଳଯାଏ ସଭିଏଁ ଗୋଟା ପଣେ ଗିଳିବାକୁ ଠିଆ। ପିଅନଟିଏ ଷ୍ଟାମ୍ପଟିଏ ବାଡ଼େଇ ଦେଲେ କହୁଛି, 'ଦିଅ'। ବଡ଼ବାବୁଙ୍କୁ ଚିଠି ଖଣ୍ଡେ ଧରେଇଦବା କ୍ଷଣି କହନ୍ତି "ଦଶଟିଏ ଆଣ। ଯଉଠିକି ଯାଅ, କିଛି ନ ଦେଲେ ପତର ବି ହଲୁନାଇଁ। ଦାନଗଦିରୁ ରାଜଧାନୀ ଯାଏଁ ଦିଅ ଦିଅ'ର କାଙ୍ଗାଳି ପଣ। ମାଗିବାର ଏକ ଲମ୍ବା ପଙ୍ଗତ ନିଠେଇ ବସିଛନ୍ତି ପରା! ଏଇ ଦବା ନବା ଭିତରେ ପୂର୍ବର ସେ ଶ୍ରଦ୍ଧା ନାଇଁ। ଏବେ ଦବାନବା ଏକ ରାହାଜାନି। ଅଣ୍ଟାରୁ ଖୋଷଣିରୁ ଠେଣ୍ଟ ଲୁଟିଲା ପରି ଲୁଟତରାଜ ଲାଗିଛି ବୋଲିବାକୁ ହେବ। ଗିରାମପତିରୁ ଦେଶପତି ପର୍ଯ୍ୟନ୍ତ ବାଟ ମାରଣାରେ ମାତିଛନ୍ତି। ଗୋଟିଏ କଥାରେ ଚଉଦିଗ ହୁରି ପଡ଼ିଛି ଦୁର୍ନୀତି। ଦୁର୍ନୀତି!

ଏହା ଏପରି ପ୍ରବଳ ହେଲାଣି ଯେ ଏଇ ସ୍ୱରୂପଟିକୁ ଚିହ୍ନିବା କାଠିକର କଥା। ପିଅନଟିଏ ଦିନେ ଅଚାନକ ବାରଟା ବେଳକୁ ମୋଠି ହାଜର। ମୋତେ ଗୁହାରିଲା 'ଆଜ୍ଞା, ଝିଅ ବାହାଘର ଦି ହଜାର ଦିଅନ୍ତୁ। ମାସ ଶେଷକୁ ଫେରାଇବି"। ଝିଅବାହା କଥା ଶୁଣିଲେ କାହିଁକି ମୋ' ମନ ତରଳି ଯାଏ। ମୁଁ ଝିଅ ବାହା କରି ସାରିଛି। ଏଣୁ ଝିଅ ବାପର ଦରଦ ବୁଝେ। ମଝିଆ ପୁଅକୁ କହିଲି, ତାକୁ ପନ୍ଦର ଶହ ଟଙ୍କାଦେ। ପୁଅ ସହିତ ସାରା ପରିବାର ମନା କରୁଥିଲେ। ଲୋକଟା ଭଲ ଜଣାପଡ଼ୁନାହିଁ। ଟଙ୍କା ଦିଅନା। ହେଲେ କଥା ଦେଲିଣି। ଲୋକଟା ମୋ' ସହ ବେଶୀ ଜଣାଶୁଣା ନହେଲେ ବି ନା'ଟି ଜାଣିଛି। ସେ ଧୂର୍ତ୍ତଟା ପଇସା ଫେରେଇବ କଣ, ଏବେ ମୋତେ ନାଲି ଆଖି ଦେଖଉଛି। ମୋ' ବୁଢୀ ଆଈ ସଦା କହୁଥିଲା "ହେ ଧରମ, ତୁ ବୁଝିବୁ"। ଶୁଣି ଦୁଃଖ ଲାଗିଲା। ସେ ଧୂର୍ତ୍ତର ସେଇ ସୁକୁମାରୀ ଝିଅଟି ବିଧବା ହୋଇଗଲା। ହଇରେ ଧରମ ତୁ ସେଇ ଧୂର୍ତ୍ତ ଚପରାଶିଟାକୁ ନବୁଝି ନିର୍ଦ୍ଦୋଷ ଝିଅକୁ ବୁଝିଦେଲୁ? ହେ ଧରମ ତୁ ଯଦି ସତରେ ଅଛୁ ସେଇ ଅଧମକୁ କ୍ଷମାକର, କ୍ଷମା କର!

ଆମ ନୂଆ ମୂରା ଆଡ଼କୁ ବସଟିଏ ଯାଏ। ସେଇ ବସରେ କଣ୍ଡକ୍ଟର କାମ କରୁଥାଏ ପିଲାଟିଏ। ସେ ମୋତେ ଜାଣିଥିଲା। 'ହଠାତ୍ ଦିନେ କିଛି ବୋଲି କିଛି ନାଇଁ ମଢ଼ା ଉଠାଇବାକୁ କିଛି ଟଙ୍କା ଦରକାର। ପୁଅକୁ କହିଲି ପଚାଶ ଟଙ୍କା ଦେଲା। ଆଉ ଆଉ ମାନେ ବି ପାଞ୍ଚ ଦଶ କରି ଦେଲେ। କିନ୍ତୁ ଟଙ୍କା ସଂଗ୍ରହ କରି ପିଲାଟିକୁ। ଶୁଣିଲି ସେ କୁଆଡ଼େ ମଦଖାଏ। ସେଇ ମଦ ପାଇଁ ଏ ଅଭିନୟ।

ମଣିଷକୁ ଭଲ ପାଇବାରେ ଆମର କଉଠି କିଛି ଭୁଲ ରହିଯାଇଛି କି? ଅନେକେ ଆମର ଦୂର୍ବଳତା ପାଇଁ ଆମକୁ ଭକୁଆ କହନ୍ତି। ମୋର ପ୍ରାର୍ଥନା ଈଶ୍ୱର ଆମକୁ ଭକୁଆ

କରି ରଖିଥାନ୍ତୁ ।

ଏବେ ରୋଜରୋଜ ବହୁ ଛାତ୍ର ଶିକ୍ଷକ ଅଭିଭାବକ ଆସି କହନ୍ତି ଆମ ଶିକ୍ଷା ବିଭାଗ ସବୁଠୁ ବେଶୀ ଦୁର୍ନୀତିରେ ପୋତି ହୋଇଗଲାଣି । କଥା କଥକେ ଦିଅ । ଏତେ ସେତେ ବୋଲି କହି ହଉନାହିଁ ହଜାର ଉପରେ କଥା । ଯଉ କେତେ ଜଣ ଗୋଟାଏ ମୂଲ୍ୟବୋଧରେ ବିଶ୍ୱାସ କରୁଥିଲେ ସେମାନେ ବି କୁଆଡ଼େ ବିଷକନ୍ୟାର ଆଲିଙ୍ଗନ ସୁଖ ପାଇଲେଣି । ଗୋଟାଏ ସ୍ଖଳିତ ବ୍ୟକ୍ତିତ୍ୱକୁ ନେଇ ଆମେ ଅବସର ପରେ ବଞ୍ଚିବା କିପରି? ଯିଏ ଆଜି କର୍ମରତ ସିଏ ଦିନେ ଅବସର ନେବେ । ବିବେକର ପ୍ରହାର ଯେ ସହିପାରେ ପ୍ରଶାସନର ପ୍ରହାର ତାକୁ ବାଧିବ କଣ? କେତେ ମିଠା ସତେ ବିଷକନ୍ୟାର ଆଲିଙ୍ଗନ! ଦବାନବାର ଉଭୟ ପଟେ ଚରିଚରି ଯାଉଛି ସେ ବିଷ ।



# ୭୦. ଗାରର ଗରିମା

ଲୋକଟି ସେଇମିତି ବସିଥାଏ । କି କାମ ଯେ କରେ, କେଜାଣି । ଯେତେବେଳେ ଦେଖିବ ବସିଛି ଯେ ବସିଛି । କେବେ ଶୂନ୍ୟକୁ ଅନାଇ ଥାଏତ ଆଉ କେବେ ପାହାଡ଼କୁ । ମେଲା ଆକାଶଟାକୁ ଦେଖୁଛିତ ଦେଖୁଛି । ପାହାଡ଼ ଉପରୁ ଉଠିଆସୁଥିବା ସୁରୁଯକୁ ନିରେଖେ । କଳାକଳା ମେଘତଳେ ଧଳାଧଳା ବଗ ବଗୁଲୀମାନଙ୍କୁ ଅନାଇଁ ବାକୁ ତା'ର ଭାରି ଶରଧା । କିଛି ବୋଇଲେ କିଛି କରେ ନାଇଁ । ଗୋଟାଏ ଝୁଲା ମୁଣାରେ କେତେ କଣ ଆଲୁକୁଚି ମାଲୁକୁଚି ପୂରେଇଛି ।

କଉଠି ତା'ଘର କେହି କହି ପାରନ୍ତିନି । ସେ କୁଆଡ଼େ କଣସବୁ ଶିଖାଏ । ପର୍ବତ ମଝିରୁ ଲମ୍ଫ ଦେଉଛି ଝରଣାଟିଏ । ସୁନ୍ଦର ଜାଗା । ମନୋରମ ପରିବେଶ । ଆମ ପ୍ରଧାନପାଟପରି । ପାହାଡ଼ ତଳକୁ ଗାଁ । ସବୁ ଗାଁ ପରି ଝାଟିମାଟିର କେଇ ଗୋଟା ଘର । ପାଉଁଶିଆ ପାଉଁଶିଆ ଛାତରେ ଲାଉଲହ କି କଖାରୁ ଡ଼ିର ଲଟେଇ ଯାଇଛି ।

ଲୋକଟି ବଇଁଶୀ ଫୁଙ୍କେ । ତା'ର ସୁର ନିରୋଳା ପାହାଡ଼ର ଛାତିକୁ ଥରାଇ ଦିଏ । ନୂଆ କମ୍ପନଟିଏ ପତରେ ପତରେ ଶିରିଶିରେଇ ଉଠେ । ଅନ୍ଧାର ଘୋଟିଲେ ଖଞ୍ଜଣି ମାଡ଼ ଶୁଭେ । ଭୀମଭୋଇ ଭଜନର ଖଞ୍ଜଣି ମାଡ଼ ବାରି ହୋଇଯାଏ । କାନ୍ଥରେ କେତେ କଣ ଗାରାଏ । ସେଇ ଗାର ଗୁଡ଼ିକରୁ କିମିତିଆ ଭାବଟିଏ ଫୁଟିଉଠେ । ବୁଝିବା ଲୋକ ବୁଝେ । ନ ବୁଝିବା ଲୋକ ପଦୁଟିଏରେ ଛିଣ୍ଡେଇ ଦିଏ । "ପାଗଳଟାଏ"!

ମଧୁ, ମଧୁମତୀ ମା! ସେଇ ପାହାଡ଼ତଳ ଗାଁର ଝିଅ । ରୋଜରୋଜ ଝରଣାରୁ ପାଣିବୁହେ । ନହକା କିଶୋରୀ ଝିଅଟାଏ । ତରତର ଆସେ, ତରତର ଯାଏ । ମୁହଁମୋଡ଼ି ଅନାଇବାକୁ ଯେମିତି ତା'ର ତରନାଇଁ । ସକାଳ ପହରୁ ଉଠେ ଯେ ସଞ୍ଜକୁ ପାଇଟି ସାରେ । ସୁରୁଯ ଉଇଁବା ଆଉ ବୁଡ଼ିବା ଭିତରେ ତା'ର ପାଦ ଅଟକେ ନାଇଁ । ନିଜ

କରମରେ ନିଜକୁ ବୁଡ଼ାଇ ରଖେ। ଆନ୍ କଥାରେ ମନ ଦବାକୁ ତା'ର ବେଳକାହିଁ?

ଜଣ ଭାବିଲା କେଜାଣି ଦିନେ ମଧୁ ମୁହଁ ଖୋଲିଲା। ସେଇ ଲୋକଟାକୁ ପଚାରିଲା "ତମର କିଛି କାମ ନଥାଏ? ଏମିତି ବେକାର ବସିଛ ଯେ?" "କାମ ଖଣ୍ଡେ ଦଉନ"। ଲୋକଟି କହିଲା। "କି କାମ କରିବ"? ଉତ୍ତରିଲା ମଧୁ। "ଘଉକାମ ଦେବ।" ଖୁବ୍ ସହଜ ଭାବରେ ଜଣାଇଲା ଲୋକଟି। ଆଉ ଦି'ପଦ କଥା ହବାକୁ ମଧୁର ବେଳକାହିଁ? "ଯାଏଁ ଲୋ ମା', ଏଠି ଗପିଲେ ପାଇଟି ରହିଯିବ।

ଅରଣା ହରିଣୀ ପରି ଝିଅଟି ଧାଇଁ ପଳେଇଲା। ଲୋକଟି ମୁହଁଟେକି ଅନେଇଲା ତା'ର ଚାଲିରେ ଅପୂର୍ବ ଛନ୍ଦଟାଏ ଉଚ୍ଛୁଳି ପଡୁଛି।

ସୁରୁଯ ପାହାଡ଼ ଆରକଡ଼ିକୁ ଯିବି ଯିବି ହେଲେଣି। କମଳା ରଙ୍ଗର ଖରା ଆଉଟା ସୁନାର ଆଭାରେ ପଖାଳି ଦଉଛି ପାହାଡ଼କୁ। ଥିଲା ଥିଲା ଜଣ ଭାବିଲା ଝିଅଟି ତା' ମାଠିଆଟି ଲୋକଟି ଆଗରେ ଥୋଇ ଦେଇ କହିଲା "ଏଇ ନିଅ ପାଣି ବୋହିବ"। ଲୋକଟି ହଁ କଲା। "ହେଲେ ମାଠିଆଟି ଆଜି ରାତିକ ମୋ' ପାଖରେ ରହିବ।" ଗୋଠ ଫେରନ୍ତା ଗାଈପରି ଝିଅଟି ଫେରି ଆସିଲା ତା'ଘରକୁ।

ତା' ପରଦିନ ଝିଅଟି ଲୋକଟି ପାଖରୁ ତା' ମାଠିଆଟି ନେଲା। ମାଠିଆକୁ ଏପଟ ସେପଟ କଲା କି ଛେନା ଗୁଡ଼ ବୁଝନ୍ତା ଯେ! "ଧେତ୍ ତେରିକା, ଏଇମିତି ଗାରେଇବାକୁ ଦେଇଥିଲି ଅଧମକୁ!" କାମରେ ଦିନଟା କଟିଲା। ରାତିଟା ଯେମିତି ଡାଆଣୀ ପରି ମାଡ଼ି ମାଡ଼ି ଆସିଲା। କେମିତି କେଜାଣି ମାଠିଆ କଥା ତା'ର ମନେପଡ଼ିଗଲା ଆଲୁଅ ଜାଳିଲା। ନିଠେଇ ଦେଖିଲା ମାଠିଆକୁ। କି ସୁନ୍ଦର ଗାରସବୁ! ଗୋଳଗୋଳ। ଠାକୁରଙ୍କ ଚକା ଚକା ଆଖିପରି। ସେଇ ଗାରଗୁଡ଼ିକ ଉପରେ ଖଡ଼ି ମଡ଼ାଇ ଗେରେଇଲା। କଣଥିଲା ସେ ଗାରମାନଙ୍କରେ ଠାକୁରଙ୍କୁ ଜଣା। ମଧୁ ଅନୁଭବ କଲା ସେ ଗାରଗୁଡ଼ିକ ତା' ରକତରେ ଗେରା ହୋଇଛି, ମାଠିଆରେ ନୁହଁ।

ମଧୁ ଭିତରେ ନୂଆ ଆଗ୍ରହଟିଏ ଦାନାବାନ୍ଧିବା ଆରମ୍ଭକଲା। ନୂଆ ମହକ ଟିଏ ତା'ଭିତରେ ଭୁରୁଭୁରୁ ହବାକୁ ଲାଗିଲା। କେମିତିଆ ଗୋଟାଏ ନୂଆଭାବ ତା' ଭିତରେ ଖୁନ୍ଦି ହଉଛି। ଯେମିତି।

ଝିଅଟିର ମାଠିଆ ଦେହରେ ସେ ଅଳସୁଆ ନିକମା ମଣିଷଟି କି ଗାର ଗାରେଇଲା ଯେ ଝିଅଟି ସେଇଠୁ କେତେ କଣ ଶିଖିଲାଣି। ସାଇ ମାଇପଙ୍କ ମେଳରେ ଭାଗବତ ପୁରାଣ ମେଲୁଛି। ପାଁ ଜଣଙ୍କୁ, ମଲାମୋର, କେତେ କଣ ବୁଝଉଛି। ସାଇ ମାଇପେ କହୁଛନ୍ତି। ମଧୁ କୁଆଡ଼େ ବେଶ ଦେବୀ ହୋଇ ବିଜେ କଲାଣି। ଠିକ୍ ଗାରେଇ ଜାଣିଲେ କୁଆଡ଼େ ଅକ୍ଷର ହୁଏ, ଛବିହୁଏ ଆଉ କେତେ କଣ ହୁଏ।

ଆମ ଶିକ୍ଷକ ମଧୁପରି ଅବୋଧ ପିଲା ଭିତରେ ଗୋଟାଏ, ଆଗ୍ରହ ଫୁଟାଇ ପାରିଲେ ହେଲା। ଆମ ଡ଼ି.ପି.ଇ.ପି କଉ ନୂଆ କଥାଟା କହୁଛି ଯେ! ଏଇ କଥାଟି ତ!



# ୭୧. ଧାଇଁଧୁପି ବାର ବସିଥାଇ ,ତେର

ପରମାଣପୁର ହାଇସ୍କୁଲ ଅଫିସରେ ବସିଥାଏଁ। ଶଙ୍କର ମେକାନିକ ପ୍ରଧାନ ଶିକ୍ଷକଙ୍କୁ ଦେଖା କରିବାକୁ ଚାହାନ୍ତି। ହଁ କଲାରୁ ସେ ଆସି ମୋ ସାମନାରେ ଚୌକିରେ ବସିଲେ। ଅଭିଯୋଗ ମିଶା କଣ୍ଠରେ କହିଲେ "ହେଡ଼ମାଷ୍ଟ୍ରେ ଆଜ୍ଞା, ଆପଣ ମୋର ପୁଅକୁ ବୁଡ଼େଇ ଦେଲେ, ଆପଣ ତାକୁ ମେଟ୍ରିକ ପାସ୍ କରେଇ ଦେଇ ତା'ର ସର୍ବନାଶ କରିଛନ୍ତି।"

"ଆପଣଙ୍କ ପୁଅତ ମେଟ୍ରିକ ଭଲଭାବରେ ପାସ୍ କରିଛି। ଉପରକୁ ଉପରକୁ ପଢ଼ିବ। ତାକୁ ମୁ ବୁଡ଼େଇଲି କେମିତି?" ଅତି ସାଧାରଣ ଭାବେ କହିଲି। ଶଙ୍କର ମେକାନିକ୍ ଖୁବ୍ ସିରିୟସ କଣ୍ଠରେ କହିଲେ, "ମେଟ୍ରିକ ପାସ୍ ନକରିବା ଆଗରୁ କେବେ କେମିତି ମୋ ସହିତ ହାତେପାତେ କାମ କରୁଥିଲା। ପାସ୍ କଲା ଦିନଠୁ କୁଟା ଖଣ୍ଡିକୁ ଦିଖଣ୍ଡ କରୁନାହିଁ। ପାଠ ପଢ଼ିଲେ କୁଆଡ଼େ କାମ କରିବାଟା ଅପମାନ ଜନକ। ଏଇମିତି କଥା ଆପଣମାନେ ଦେଉଥିବା ଶିକ୍ଷାରେ ଅଛିକି? ପ୍ରଶ୍ନକଲେ ଶଙ୍କର ମେକାନିକ। ମୁଁ ହସିବି କି କାନ୍ଦିବି ଭାବି ପାରିଲିନି। ଶଙ୍କର ମେକାନିକ୍‌ର ଏ ବ୍ୟକ୍ତିଗତ ପ୍ରଶ୍ନ ଅଗଣିତ ପିତାମାତାଙ୍କ ସାମୁହିକ ପ୍ରଶ୍ନ। ଆମ ଶିକ୍ଷାର ଯାବତୀୟ ବିଫଳତାମୂଳରେ ଏ ଶ୍ରମ ବିମୁଖତା ନିଶ୍ଚିତ ଏକ କାରଣ ଏ ବିଫଳତା ଆମ ମେରୁ ହାଡ଼କୁ ଝୁଣି ପକାଉଛି।

ଏ ବିଫଳତା ଏକମାତ୍ର କାରଣ ନହେଲେ ବି ଶ୍ରମକୁ ଆମ ଶିକ୍ଷା ସମ୍ମାନ ଦେଇ ଜାଣିନାହିଁ। ଆମେ ଆମ ପ୍ରାତ୍ୟହିକ ଜୀବନରେ ଦେଖୁଛୁ ଯେ, ଯେ ଯେତେ କମ୍ କାମ କରେ ସେ ସେତେ ବଡ଼ ଲୋକ। ନିଜ ଦାନ୍ତକାଠିକୁ ଦି'ଫାଳ କରୁ ନଥିବା ବ୍ୟକ୍ତି ଜଣକ ଆମ ସମାଜର ସବୁଠୁ ସମ୍ଭ୍ରାନ୍ତ ବ୍ୟକ୍ତି। ଚବିଶ ଘଣ୍ଟାରୁ ବାଇଶ ଘଣ୍ଟା ଖଟୁଥିବା ଲୋକଟି ମ୍ଳେଚ୍ଛ। ଏଇ ଧାରଣାରୁ ଶତକଡ଼ା ନବେ ଜଣଙ୍କୁ ଆମେ କର୍ମକୁଡ଼ି କରି ସାରିଲୁଣି। ଶତକଡ଼ା ମାତ୍ର ଦଶଜଣଙ୍କ ପରିଶ୍ରମରେ ଏଦେଶ ଚଳୁଛି। ଶ୍ରମକୁ ସମ୍ମାନ ଦେବାର ପରମ୍ପରା ଆମ ସମାଜ ବ୍ୟବସ୍ଥାରେ ଏବେ ଆଉନାହିଁ। ଆଗେ ଏ ଅନୁପାତତ ଠିକ୍ ଓଲଟାଥିଲା। ଶତକଡ଼ା ନବେ ଖଟୁଥିଲେ ବାକି ଦଶଜଣ ସେଇ ନବେ ଜଣଙ୍କ ଉପରେ ଉକୁଣୀ ପରି ପରିପୁଷ୍ଟ ହେଉଥିଲେ।

ସ୍ୱାଧୀନତା ପରେ ସେଇ ନିର୍ବୋଧକାମକରା ଲୋକଙ୍କ ପାଖରୁ ଭୋଟ୍ ଖଣ୍ଡିକ ଛଡ଼ାଇ ନେବା ପାଇଁ ଆମେ ନାନା ବାଟ ଫିଟାଇଛୁ। ସେମାନଙ୍କୁ ଅକାମୀ ସୁଖ ଚଖାଇଲୁ। "ନିର୍ବୋଧଙ୍କ ଭଳି ଖଟୁଛ କିଆଁ ଆସ, ଆମ ପଙ୍ଗତରେ ବସ। ସୁଖ ଚାଖ। ମଉଜକର। ସେଇ ଖଟିଲା ବାଲାଙ୍କ ଅଶିକ୍ଷା, ଅଭାବ, ଅସୁଖ ସବୁ ଦୂର ନକରି ଆମେ ସେମାନଙ୍କୁ ନାନା ଅସ୍ଥାୟୀ ସୁଖ ଓ ସୁଯୋଗମାନ ଦେଲୁ। କହିଲୁ ଋଣନିଅ, ସୁଝ ନାଇଁ। ଖଟନାଇଁ, ଠକ। ଏଇମିତି କେତେ ବାଗରେ ସେମାନଙ୍କ ସ୍ୱାଭାବିକ ପ୍ରକୃତିରେ ଆମେ

କିଛି ଅସ୍ୱାଭାବିକ ଧାରଣା ପୋଡ଼ି ଦେଲୁ ଇଞ୍ଜେକ୍ସନ ଫୋଡ଼ିବାପରି। ସେମାନେ ଶତକଡ଼ା ନବେରୁ ଶତକଡ଼ା ଦଶକୁ ଖସି ଆସିଲେ। ଏବେ କେବଳ ଶହେରେ ଦଶଜଣ କାମ କରନ୍ତି ବାକି ନବେ ଜଣ ମଉଜ କରିବାରେ ମସ୍‌ଗୁଲ୍। ଏପରି ଦଶାରେ ସମାଜରେ ବିପର୍ଯ୍ୟୟ ନଘଟିବତ ଆଉ କଉଠି ଘଟିବ? ଆମେ କହୁଛୁ ସମାଜରେ ଚଉଡି ନିଆଁପରି ଦୁର୍ନିତି ବ୍ୟାପି ଗଲାଣି। ଲୋକେ ଖରାପ ହେଲେଣି। ଦରଦାମ ହୁହୁ ବଢୁଛି। ଏଇସବୁ ହୋ'ହଲ୍ଲା ଓ ଆର୍ତ୍ତନାଦ ଭିତରେ ସେଇ ମୂଳ କାରଣଟି ରହିଛି। ଆମେ ତଥାପି ଶ୍ରମକୁ ମର୍ଯ୍ୟାଦା ଦଉନାହୁଁ।

ଆମ ସମାଜରେ କିଛି ନିରକ୍ଷର ଅଛନ୍ତି। ସେମାନଙ୍କ ଭିତରେ ମିସ୍ତ୍ରୀ ଅଛନ୍ତି ଯେଉଁମାନେ ଉଆସ ତୋଳନ୍ତି। ବଢ଼େଇ ଅଛନ୍ତି, ଆଖି ଟାଣିନବା ଭଳି କାଠ ସାମାନ ତିଆରି କରନ୍ତି। ପଥରରେ ମୂର୍ତ୍ତି ଗଢ଼ନ୍ତି। ତାରକସି କାମ କରନ୍ତି। ଲୁଗା ବୁଣନ୍ତି। ସିଙ୍ଘକାମ କରନ୍ତି। ଏ କାରୁଶିଳ୍ପୀ ମାନଙ୍କ କୃତି ଆମକୁ ଦୁନିଆରେ ମୁଣ୍ଡ ଟେକିବାକୁ ପ୍ରେରଣା ଦେଇଛି। ଏଇ ନିରକ୍ଷର ଶିଳ୍ପୀ ମାନଙ୍କୁ ଡ଼ାକି ଆମ ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ କି ଆଉ କେଉଁ ସଂଗଠନ ସ୍ୱୀକୃତି ଦେଇଛି କି? ପ୍ରମାଣ ଥିବା କାଗଜ ଖଣ୍ଡେ ଧରେଇଛି? କାନକୁ ମକର କୁଣ୍ଡଳ କି ଶିରକୁ ଶିରପା ଦେଇଛି? ଅକ୍ଷରକୁ ବେଣୀ ପେଣ୍ଡାପେଣ୍ଡି କରିଥିବା ବ୍ୟକ୍ତିକୁ ଆମେ ଯେତେ ଅନୁରାଗରେ ଡ଼ିଗ୍ରୀଟାଏ ଦେଉଁ ଜଣେ କମାରକୁ, ବଢ଼େଇଟାକୁ, ତନ୍ତୀକୁ, ମିସ୍ତ୍ରୀକୁ ସମ୍ମାନିତ କରୁକି? କିଛି ଚତୁର ଲୋକ ସମାଜକୁ ଫୁଲ ଶୁଙ୍ଘେଇ ମେଣ୍ଢା କରିବାକୁ ଚାହାନ୍ତି। ଅନେକ କାମ ଜାଣିଥିବା ନିରକ୍ଷର ଦିନ ମଜୁରିଆକୁ ମୋର ଗଭୀର ଶ୍ରଦ୍ଧା ନିବେଦନ ବାଢୁଛି। ସେମାନଙ୍କ ଶ୍ରମ ମୋର ସମଗ୍ର ଚେତନାକୁ ଆହ୍ଲାଦିତ କରି ରଖିଛି। ମୁଁ ସେଇ ଶ୍ରମ ସମ୍ରାଟମାନଙ୍କୁ ନତଜାନୁ ହୋଇ ମୋର ସାକ୍ଷର – ସାମର୍ଥ୍ୟକୁ ସମର୍ପଣ କରୁଛି। (୧.୧.୯୯ ଦିନ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିବସରେ ପ୍ରଦତ୍ତ ଅଭିଭାଷଣର ସମ୍ପାଦିତ ଅଂଶ)



# ୭୨. ନଈ ମଝିର ମାଝି

ଦେଖ କହି ଦଉଛି ଆଜି ଦଶଟା ସୁଦ୍ଧା ମୋତେ ଏତିକି ଟଙ୍କା ଦରକାର। ପୁଅ ହୁକୁମ କଲାଭଳି କଣ୍ଠରେ ମା'କୁ କହିଲା। "କଉଠୁ ପାଇବିରେ ଏତେ ଗୁଡାଏ ଟଙ୍କା" ମା' ବିଚାରୀ ଖୁବ୍ ସହଜ କଣ୍ଠରେ କହିଲେ "କଉ ଚାକିରୀ କରୁଛି ଯେ ମୋ' ହାତକୁ ପଇସା ଆସିବ।" ପଇସାଟ ଦେଇ ପାରିବୁନି। ତା ହେଲେ ସୁଖ ଲାଗୁଥିଲା ଜନମ କରିବାକୁ। ପୁଅ ତାଚ୍ଛଲ୍ୟ କରି କହିଲା।

ଆମ ପିଢ଼ୀ, ବା ଆମଠୁ ଆଗପିଢ଼ୀର ଲୋକଙ୍କୁ ମା' ପୁଅଙ୍କ ଏ ଡ଼ାଇଲଗ ସାମାନ୍ୟ ଅବାଗିଆ ଲାଗିବ। ହେଲେ ଏବକାର ମା' ମାନେ ଏ ପ୍ରକାର ସଂଳାପ ସହ ନିଶ୍ଚିତ ପରିଚିତ ଥିବେ। ପୁଅ ଭିତରେ ଖୁନ୍ଦି ହୋଇଛି ଏକ ଅସହାୟତା। ମା ବିଚାରୀ ବତୁରିଯାଇଛି କରୁଣ ସ୍ନେହରେ। ଏହାର ମୂଳ କାରଣଟି ଆମ ଶିକ୍ଷାରେ। ଆମ ପିଲା ଶିକ୍ଷା ପାଇବା ପରେ ଜୀବନ ସଂଗ୍ରାମ ପାଇଁ ସାଧନ ସଂଗ୍ରହ କରି ପାରୁନାହିଁ। ସଂସାରରେ ବଞ୍ଚିବ ସେ। ବଞ୍ଚିବା ପାଇଁ ଉପାୟଟିଏ ସେ ତା ଶିକ୍ଷାରୁ ସଂଗ୍ରହ କରି ଜାଣିନାହିଁ। ଆମ ଶିକ୍ଷାର ଏହା ଏକ ବଡ଼ ଅପାରଗତା।

ଶିକ୍ଷା ଶିକ୍ଷାର୍ଥୀକୁ ଅନୁକ୍ରମରେ ଯୋଗ୍ୟତର କରେ। ତା' ଭିତରେ କର୍ମ ପ୍ରବଣତା ଜାତ କରେ। ଜୀବନ ନଈକୁପାରି ହବା ପାଇଁ ଶିକ୍ଷା ତାର ନଉକାଟିଏ ହୋଇଯାଏ। ତାର ଜ୍ଞାନ ବଞ୍ଚିବା ପାଇଁ ଯାହାଯାହା ଦରକାର ତାହା ସଂଗ୍ରହ କରିବାକୁ ସାମର୍ଥ୍ୟ ଯୋଗାଏ। ମାତ୍ର ତାର ଜ୍ଞାନ ନଉକା ନ ହୋଇ ନାୟିକା ହୋଇଗଲେ ଭେଳା ନ ବୁଡ଼ିବ ତ ଆଉ କଣ ହେବ?

ଏ ପ୍ରସଙ୍ଗରେ ରାମକୃଷ୍ଣ ପରମହଂସଙ୍କ ଏକ ଚମତ୍କାର ଗଳ୍ପ ମନେ ପଡ଼ିଯାଏ। ଅନେକ ତାହା ଜାଣିଥିବେ। ହେଲେ ଏଠି ସେ କାହାଣୀର ଯଥେଷ୍ଟ ପ୍ରାସଙ୍ଗିକତା ରହିଛି।

ଏକଦା ନଈ ଘାଟକୁ ଆସିଲେ ଜଣେ ଲୋକ। ନିରୋଳା ଘାଟରେ ନାଉରୀ ବାପୁଡ଼ାଟି ଆପଣା ସୁଖ ଦୁଃଖରେ ମଗ୍ନ। ଆଗନ୍ତୁକ କହିଲେ ନଈ ପାରି କରିଦେବାକୁ। ଜଣେ ମାତ୍ର ସବାରିକୁ ନାଆରେ ନେଇ ନଈ ପାରି କରିବାକୁ ନାଉରୀର ଅନାଗ୍ରହ ହିଁ ବେଶୀଥିଲା। ତଥାପି ନଈ ପାରି କରିବା ତାର ଧର୍ମ ଓ କର୍ତ୍ତବ୍ୟ। ଏତକ ତା' ବିବେକରେ ଥିବାରୁ ସେ ନଈ ପାରି କରିଦବାକୁ ରାଜିହେଲା। ସବାରି ପଚାରୁ ପଚାରୁ ପଚାରି ଦେଲେ କେତେ ସମୟ ଲାଗିବ ନଈ ପାରି ହବାକୁ. ନାଉରୀ କହିଲା ସବୁ ଠିକ୍‌ଠିକ୍ ଚାଲିଲେ ଅଧଘଣ୍ଟାରୁ ବେଶୀ ନଲାଗିବା କଥା। ଏକମାତ୍ର ସବାରୀକୁ ନେଇ ନାଉରୀ ନାଆକୁ ନଈରେ ମେଲି ଦେଲା। ସୁଅ କାଟି  କାଟି ନାଆ ଯାଉଛି। ଆରୋହୀ ଜଣକ ଗପୁଡ଼ି।। ତୁନି ହୋଇ ରହନ୍ତେ କିପରି? ପଚାରି ଦେଲେ "ବେଦ ବେଦାନ୍ତ କିଛି ଜାଣିଛୁ କିରେ, ନାଉରୀ?" ନିଦା ଉତ୍ତର ଟାଏ ଦେଇ କହିଲା ମୁ କିଏ? ଆଉ ବେଦକିଏ? ମୋ ନାଆପରି ଷୋଳ ଅଣା ମୂରୁଖଟାଏ ମୁଁ। ତା, ହେଲେ ତୋ ଜୀବନ ବୃଥା। ଆରୋହୀ ଜଣକ ଚୁପ୍‌ଚାପ୍ ବସିବା ଲୋକ ନୁହନ୍ତି। ସଦା ବକର ବକର ହୁଅନ୍ତି। ଚେଲା ଚାମୁଣ୍ଡା ବେଢ଼ିଥାନ୍ତି।। ସେବକ ମାନେ ଘେରିଥାନ୍ତି ଚଉକତି। ଏଣୁ କିଛି ଏଣୁତେଣୁ ବକିବା ସେ ମହାଶୟଙ୍କର କାମ। ଭିତରେ ଜ୍ଞାନ ଖୁନ୍ଦି ରହିଛି। କଥା କୁଆଡ଼େ ଭିତରୁ ଟେପରୁ ପାଣି ଆସିବାପରି ଛୁଟି ଆସୁଛି, ଶାସ୍ତ୍ରକଥା, ପୁରାଣ କଥା, ଏମିତି ଏମିତି ଆଉ କେତେ କଥା।

ଠିକ୍ ସେତେ ବେଳକୁ ନାଆ ମଝି ନଈରେ। କଉ ଧଧାଳି ମଝିରେ ନାଆ

ପଡ଼ିଲାନା କଣ ନାଆ ଗୋଟାପଣେ ଠିଆ ହୋଇଗଲା। ଦମକାଏ ପବନ କଉଠି ଥିଲା। ଗାଲରେ ଚଟକଣା ମାଇଲା ପରି ନାଆ ଓଲଟିବି ହେଲା। କେଜାଣି କାହିଁକି ନାଉରୀ ପଚାରିଲା "ପହଁରା ଜାଣନ୍ତି ଗୋସେଇଁ?" ପଣ୍ଡିତେ ଅତି ମାତ୍ରାରେ ଆତଙ୍କିତ ହୋଇ କହିଲେ 'ନାଁ' ତ। "ତା ହେଲେ ଆପଣଙ୍କ ସକଳ ଜ୍ଞାନ କଉକାମର ନୁହଁ। ଏବେ ସୁଅକାଟି କାଟି ଯିବେ?"

ନାଉରୀ ଆପଣା ଶକ୍ତିରେ ସୁଅ କାଟିକାଟି କୂଳ ଲାଗିଲା। ବେଦ ବେଦାନ୍ତରେ ପ୍ରଚଣ୍ଡ ପଣ୍ଡିତ ଆପଣାର ସକଳ ଜ୍ଞାନ ସହ ସଲିଳ ସମାଧି ଲାଭକଲେ।

ଜ୍ଞାନ ମଣିଷର କାମକୁ ନ ଆସିଲେ ବୃଥା। ପଣ୍ଡିତଙ୍କ ସକଳ ମହାଜ୍ଞାନ ତାଙ୍କୁ ଆଗତ ବିପର୍ଯ୍ୟୟରୁ ରକ୍ଷା କରି ପାରିଲା ନାଇଁ। ପୁଅ ଦି' ପଇସା ରୋଜଗାର କରି ଆପଣା ଗୋଡ଼ରେ ଠିଆ ହବାର ଦକ୍ଷତା ହାସଲ କରି ପାରିଲା ନାହିଁ ତା' ଶିକ୍ଷାରୁ। ଫଳରେ ଗରଜ ବେଳକୁ ମା'ଠୁ ଅସୁଲ କରିବାକୁ କୁଣ୍ଠା ପ୍ରକାଶ କଲାନାଇଁ।

ଆଜି ଯେଉଁ ଶିକ୍ଷା ଆମେ ଆମ ଉତ୍ତର ପିଢ଼ୀକୁ ଦଉଛୁ ସେଥିରେ ଆଉ ଯାହା କିଛି ଥାଉନା କିଆଁ କର୍ମ ପ୍ରବଣତା ଜମା ନାଇଁ। କର୍ମନିପୁଣତାକୁ ବେଶୀ ନିରୁତ୍ସାହିତ କରୁଛି। ମେଟ୍ରିକ ପାସ୍ ପରେ ପିଲାଏ ଆପଣା ବୁଢ଼ୁକାକୁ ବୋହି  ନବାକୁ ମନା କରୁଛନ୍ତି। ସେତକ ବୋହି ନବାକୁ ଆଉ ଜଣେ ଦରକାର। ଫଳରେ ପିଲାଏ ଯାହା ଶିଖୁଛନ୍ତି। ସେ ଶିକ୍ଷାର ପ୍ରୟୋଗକୁ ନିଜ ସାଧନ ରୂପେ  ବ୍ୟବହାର କରି ପାରୁନାହାନ୍ତି। ନିଜର ଅପାରଗତାକୁ ଅନ୍ୟକୁ ଶୋଧିବାରେ ରୂପାନ୍ତରିତ କରୁଛନ୍ତି।

ମୂଳତଃ ଶିକ୍ଷାର ଦୁଇଟି ଲକ୍ଷ୍ୟ, ପ୍ରଥମଟି ଶିକ୍ଷାର୍ଥୀକୁ ଭଦ୍ରକରିବା। ଦ୍ୱିତୀୟଟି ତାକୁ ବଞ୍ଚିବାର ବାଟ ବତାଇବା। ହାତକୁ ପାଇଟି  ଟିଏ ଦବା। ଆଜି ଆମ ପିଲାଙ୍କୁ ଯାହା ଶିଖାଉଛୁ ସେଥିରେ ଏ ଦୁଇଟି ଜମା ନାହିଁ। ସେଥିରେ ଆଉ କଣ କଣ ଥବ ସେଥକୁ ମା' ଗଙ୍ଗେ ଜାଣନ୍ତି।

ଏବେ ଆମ ପିଲାଙ୍କୁ ଭଦ୍ର ନକରାଇ କରୁଛୁ ଚତୁର। କଣ କଲେ ସେ ରାତାରାତି ଧନୀ ହେବ, ବଙ୍ଗଳା ବାନ୍ଧିବ। ଏଇକଥାକୁ ବାପ ମା' ଆଗ ନିଘା କରୁଛନ୍ତି। ଆମ ପୁଅ ବଡ଼ ହେଲେ ଅମୁକ ସମୁକ ହେବ। ଏଥିରେ ଯେତେ ଆଗ୍ରହ ଆମ ପିଲା ମଣିଷ ପରି ମଣିଷଟିଏ ହଉ, ଏଥିରେ ସେତେ ଆଗ୍ରହ ଜମାନାଇଁ। ଚତୁର ହବାକୁ ଯାଇ ପୁଅ ଯେ ଆଉ କଣ ହୋଇଗଲାଣି ସେଥକୁ ବାପା ମା' ଧ୍ୟାନ ଦବାକୁ ବେଳ କାହିଁ? ଫଳରେ ବିଫଳତା, ପିତା ମାତାଙ୍କୁ, ଗୁରୁଜନ ମାନଙ୍କୁ, ବଡ଼ ମାନଙ୍କୁ ଶୋଧିବାକୁ ପ୍ରେରଣା ଦଉଛି ତାକୁ।

ସେକ୍ସପିଅରଙ୍କ କେଲିବାନକୁ ମନେ ପକାନ୍ତୁ। ପ୍ରସ୍‌ପେରୋ କେଲିବାନକୁ ଭଦ୍ର କରିବାକୁ ଯାଇ ଶିକ୍ଷାଦେଲେ। କେଲିବାନ ତା'ର ନୂତନ ଶିକ୍ଷାକୁ କାମରେ ଲଗାଇବ

କେମିତି? ଜାଣି ନଥିଲା । କେଲିବାନ ଶେଷକୁ ପ୍ରସ୍ପେରୋଙ୍କୁ ଗାଳିଦେବା ଆରମ୍ଭ କଲା । ତାର ଯୁକ୍ତି ତମେ ଯେଉଁ ଭାଷା ଶିଖାଇଲ ସେଇ ଭାଷାର ପ୍ରୟୋଗ ପାଇଁ ମୁଁ ତମକୁ ଗାଳି ନଦେବିତ କରିବି କଣ? ଠିକ୍ କେଲିବାନ୍ ପରି ଆମ ପୁଅ ତା' ଶିକ୍ଷାକୁ ବ୍ୟବହାର କରିବାକୁ ଯାଇ ଆମକୁ ଗାଳି ନ ଦେବତ ଆଉ କରିବ କଣ?



## ୭୩. ହାଡ଼ରେ ମଞ୍ଜ

ବେଳେ ବେଳେ ଅନେକ ପ୍ରଶ୍ନ କରନ୍ତି "ଆପଣ ଅନ୍ୟକିଛି ନ ହୋଇ, ଲେଖକ ହେଲେ କାହିଁକି?" ଦୁନିଆରେ, ଛପନ କୋଟି ଜୀବ ଥିବା ବେଳେ ମୁଁ କାହିଁକି ମଣିଷ ହେଲି ବୋଲି ପ୍ରଶ୍ନ କରିପାରନ୍ତି । ଏ ସବୁ ପ୍ରଶ୍ନର ସିଧାସିଧା ଉତ୍ତରଟିଏ ହେଲା ଲେଖକ ହେବା ପାଇଁ ମୁଁ ଲେଖକ ହେଲି । ଏଇ ଲେଖକ ହେବାକୁ ହୁଏତ କିଛି ଅନୁପ୍ରେରଣା ଅନ୍ୟଠୁ ପାଇଛି ।

ମୋ' ଜନମ ମାଟି ପିତାପାଲି ଗାଁଟି ଥିଲା ପ୍ରାକୃତିକ ପରିବେଶର ପରିଚ୍ଛନ୍ନ । ପଶ୍ଚିମ ପଟରେ ଇବନଈ । ଉତ୍ତର ପଟରେ ଶଗଡ଼ିଆ ଯୋର ବାକି ଅନ୍ୟ ଦୁଇଟି ଦିଗରେ ଶାଳବଣ । କୁହୁକୁଟି ପତରାର ଡୁମୁରି । ଛେଲିଆ ଡୁମୁରି ତା' ଭିତରେ ଗୋଟିଏ । ଗାଁ ଚଉକଡି ଡ଼ଜନେରୁ ଅଧିକ ବନ୍ଧକଟା । ବାହାଲକୁ ଛେକି କଟା । କଟା ତଳକୁ ବନ୍ଧ । ବନ୍ଧ ତଳକୁ ବନ୍ଧଲି । ଖଟରୁ ଛୋଟ ଖଟକୁ ଖଟୁଳି କହିବାପରି ଛୋଟ ପୋଖରୀକୁ ବନ୍ଧଲି କହନ୍ତି । ଏପରି ପରକୁ ପର ପାଣି ଅଟକେଇବାର ବୈଜ୍ଞାନିକ କାରଣ ଯାହା ଥାଉନା କିଆଁ କଟା ପାଣି ଝରି ଭରିବ ବନ୍ଧ । ବନ୍ଧ ପାଣି ଝରି ଭରିବ ବନ୍ଧଲି । ଏବେତ ପର୍ବତ ଶିଖରେ ମୀନ ଖେଳିବାକୁ ଲୋକେ ପୋଖରୀ ଖୋଳୁଛନ୍ତି । ମୀନ ରହିବ କଣ ପାଣି ରହିବାକୁ ଡ଼ରୁଛି । ଜାଗା ଜାଗା ଆମ୍ବ ବୁରେଇ । ମାଙ୍କଡ଼ା ପଥରର ଟାପୁ ଏଠି ସେଠି । ଶୁଖିଯାଇଥିବା ତାଜା ରକତର ଚ଼କା ଚ଼କା ଗେରୁଆ ଗେରୁଆ କ୍ଷତପରି । ମୋ' ଜନମମାଟିର ପରିବେଶ ଜୀବନ୍ତ କବିତାଟିଏ "I shall never see a poem lovely as my village" ଇଂରାଜୀ କବିତାରେ ମୁଁ ତା ରୂପକୁ ଥୋଇବାର ଚେଷ୍ଟା କରିଛି । ପବନର ପିଠିରେ ପତରର ଶିରି ଶିରି କବିତା । ମାଟିର ଶିରାରେ ଶିରାରେ ସଫା ଆକାଶର ବର୍ଣ୍ଣମାଳା । ଧାନ କିଆରୀର ଶାଗୁଆ କାନିକୁ ଟାଣି ରଖିଛି ଫାଜିଲ ପବନର ପୁଲକିତ ହାତ । ମେଘ ପଖଳା ଟିକ୍ ଟିକ୍ ଆକାଶରେ ମଉଳା ଭଣଜାର ଛାଇ । ପ୍ରାତ୍ୟହିକ ଜୀବନର ଘଷଡ଼ା କ୍ଳାନ୍ତିକୁ ରାତି ଶେଷରେ କାକରର ବିନ୍ଦୁ ଯେପରି ଧୋଇ ଦଉଛି । ଚାରିଆଡ଼େ ପରିଚ୍ଛନ୍ନ ଆଲୋକ । ମୋର ପ୍ରତଟି ରକ୍ତ ବିନ୍ଦୁରେ ମୋ' ଗାଁ ପ୍ରକୃତି ଆତ୍ମପ୍ରତ୍ୟୟ ଭରି ଦଉଥିଲା ଫୁଲରେ ମହୁପରି । ମୋ' ମାଆ ଥନର କ୍ଷୀର ତୋକିତୋକି ଯେମିତି ପୁଷ୍ଟ ହୋଇଥିଲା ମୋ' ଦେହ । ମୋ' ମାଆଙ୍କ ମରମ ଛୁଆଁ ବାତ୍ସଲ୍ୟ ମୋ' ଭିତରେ ଭରିଦେଲା ଅନ୍ୟକୁ ଆଦରି ନେବାର ପ୍ରକୃତି । ମୋ

ବାପାଙ୍କ କଳା ମୋ' ଭିତରେ ଗଳୁରିବାର ଗଭୀର ଗୁଞ୍ଜରଣ ମୋ ବାଳୁତ ବେଳରୁ ଶୁଭିବାକୁ ଲାଗିଲା। ମୋଟ୍ କଥାରେ ଏସବୁର ଏକ ନିରନ୍ତର ପ୍ରଭାବ ମୋ' ଭିତରେ ଲେଖକଟିଏ ହେବାର ଦାନା ବାନ୍ଧିବା ଆରମ୍ଭ କରିଦେଲା।

ମୁଁ ଅଣ୍ଡା ସଳଖିଲା ବେଳକୁ ମୋ' ମା' ମୋତେ ତାଙ୍କ ସାଇତା ସଂସାରକୁ ଧରେଇ ଦେଇ କହିଲେ, "ପୁଅରେ ପାଇଲୁ। ମୋ' ସଂସାର, ମୋ ଘରକରା ସମ୍ଭାଳିବୁ।" ଚିରା ପଣତ କାନିପରି ତାଙ୍କ ସଂସାରକୁ ସମ୍ଭାଳିବାକୁ କମର କଷିବା ବେଳକୁ ଦେଖିଲି ପାଖେ ସିଇଁଲେ ଆରପାଖକ ଦରକି ଯାଉଛି। ଏଇ ଚିରା ସଂସାର ସମ୍ଭାଳିବାକୁ ମୋ ଭିତରେ ଠୁଳ ହେଲା ଅକଳନ୍ତି ସାହସ। ହାଡ଼ରେ ମଞ୍ଜ ମଜଭୁତ ହେବାକୁ ଦମ୍ଭ ପାଇଲି। ମୋ' ଭିତରେ ଲେଖକୀୟ ପ୍ରତ୍ୟୟଟିଏ ଭୂମିଷ୍ଠ ହୋଇ ସାରିଥିଲା।

ସେଇ ଜମିରେ ପରମ୍ପରାର ପୁଞ୍ଜି ନେହି ହୋଇ ସମ୍ଭାବନାର ଇମାରତ ଗଢ଼ିବାକୁ ଦୃଢ଼ ହୋଇଗଲା।। ନିଜ ଦେହ ପଛେ ପଛେ ଛାଇ ପରି ଗୋଟାଏ ଭାବ ଗୋଡ଼ାଇଥାଏ ସଦାସର୍ବଦା ସେଇ ଭାବକୁ ଫୁଟେଇବାର ମୁଁ ଖୋଜି ଚାଲିଥାଏ। ଧ୍ୱନି, ବାକ୍ୟ ଓ ବର୍ଣ୍ଣମାଳାର ଅସଂଖ୍ୟ ସନ୍ଧି ଓ ସମାସ। ବେଳେ ବେଳେ ଗୋଟାଏ ଘଟଣା ବା ଦୁର୍ଘଟଣା। ମୋ ଭିତରର ଗଭୀରତମ ଜାଗାକୁ ଭୁଷି ଦିଏ ଛୁରି ଭୁଷିବା ପରି। ସେଇ ଭୁଷା ଜାଗାରୁ ରକତ ଝରି ପାରେନା। ଝରେ ଗଦ୍‌ଗଦ୍ ଭାଷା ଯାହାକୁ ଅନ୍ୟମାନେ କହନ୍ତି କବିତା, ଗପ, ଗୀତ ଗଜଲ ଓ ଆଉ କେତେ କଣ। ଭିତରର ସେଇ ନିରୁତା ଭାବକୁ ଫେଣେଇ ଫେଣେଇ ବିରି ପିଠଉ ଫେଣିବା ପରି ଜାତି ଜାତିକା ରାଗ, ମସଲା, ଓ ଆନ ଦରବ ମିଶାଇ କିସମ କିସମ ବଡ଼ି ପକାଏଁ। ହେଲେ କଞ୍ଚା ଖାଇ ହୁଏନା। ନିଆଁରେ ସେକିଲେ କି ଭାଜିଲେ କି ତେଲରେ ଛାଣିଲେ ଖାଇ ହୁଏ। ଖାସ୍ ଜାଗାର ସେ ଭାବଟି ପ୍ରେମରେ ପଡ଼ିଥିବା ଦୁଇଟି ଜୀବ ପରି ଛଟପଟ ନ ହେବା ଯାଏ, ଗୁଣ୍ଡୁଗୁଣ୍ଡୁ ହୋଇପାରେ ନାହିଁ। ସେ ଭାବଟି ଅସ୍ଥିର କରେ। ଭାଷାରେ ନ ଫୁଟାଇଥିବାଯାଏ ଆଖିକୁ ନିଦ ଆସେ ନାହିଁ କି ପେଟକୁ ଭୋକ ଲାଗେ ନାହିଁ। ଦେହ ମଳିରୁ ପାର୍ବତୀ ଗଣେଶଙ୍କୁ ଗଢ଼ିଲା ପରି ଗଢ଼ିଦିଏ ନାନାରୂପ। ହେଲେ ସେ ରୂପକୁ ଜୀବନ୍ୟାସ ଦିଏ ସତ୍ୟଠାରୁ ଆହୁରି ଏକ ତୀବ୍ର ଚେତନାରେ। ନିଜର ବୋଲି କାହାକୁ ଭଲ ପାଇପାରି ନଥିବା ଲୋକଟିଏ ଭାବର ଅଭାବରେ ଯୂପ କାଠରେ ବଳି ପଡ଼ିଥିବା ଅସହାୟଟିଏ। ଅତୀତ ଥିଲା ବର୍ତ୍ତମାନ ନାହିଁ ଭବିଷ୍ୟତ କଣ ହେବ ନିରବଧି ଦ୍ୱିଧା ଦ୍ୱନ୍ଦରେ ସନ୍ତୁଳିତ ହେଉଥିବା ମଣିଷଟିଏ କାହିଁକି କେଜାଣି ମୋ ଭିତରକୁ ପଶି ଆସନ୍ତି। ମୂର୍ଚ୍ଛିତ ସନ୍ଧ୍ୟାର ଅସ୍ତରାଗ ପରି ମୋ ଲେଖାରେ ମଫସଲର ନିବିଡ଼ ଚିତ୍ର ଗୋଟାଏ କାଳର ଧ୍ୱନି ହୋଇ ମୋ ଅନ୍ତସ୍ଥଳକୁ ଥରାଇ ଦଉଥିଲା। ଭୂଗୋଳର ପଥର ଆଗାମୀର ଇତିହାସ ହବ ବୋଲି ଯେମିତି ଅଭିମନ୍ତ୍ରିତ ହଉଥିଲା ମୋ ଭିତରେ। ଚିରନ୍ତନ ନଗ୍ନତାଟିଏ ଆଖିରେ ଆଖିଏ ପିପାସା ନେଇ ମୋ' ଭିତରେ ସତେ ଯେମିତି ଫୁଟି ଉଠୁଛି। ମାଇପିଟିଏ ଆପଣାର ସାମାନ୍ୟ ଖୋଷଣୀରେ

କେତେ ଜଣ ସାଇତିବା ପରି ମୋ' ମନ ଭିତରେ ସାଇତା ଚାଲିଛି କେତେ କଣ। ପଥରେ କରପନରୁ ପଞ୍ଜରଟିଏ ବୁକୁ ଫଟାଇ ମୁକୁଳି ଆସୁଛି ବହୁ କାଳରୁ କବର ପାଳଟିଥିବା କେତେ ଇଚ୍ଛା ରାତାରାତି ଚେଇଁବାର ଆତୁର ସଂକଳ୍ପ ବହୁ ଅପ୍ରାପ୍ୟକୁ ପାଇବାର ବରାବର ହସ୍ତ ପ୍ରସାରଣ ମୋ' ଭିତରେ ମୁଁ ଅନୁଭବ କରିଛି। କଥା ବିରୁଦ୍ଧରେ କଥାର, ଇତିହାସ ବିରୁଦ୍ଧରେ ଇତିହାସର, ସ୍ୱର ବିପକ୍ଷରେ ସ୍ୱରର। ଭାଷାର ପିଠିରେ ଲାଉ ହୋଇ ମୋ' ଆଗରେ ଉଭାହୁଏ କେତେ କଳ୍ପନା। ମୁଁ ନିଜେ ନିଜେ ମଣ୍ଡିଛି ମୁକୁଟ ମୋ' ମଥାରେ। କାନରେ ଝୁଲାଇଛି ମକର କୁଣ୍ଡଳ। ରାଜ୍ୟ ନଥାଇ ରାଜାପରି ବସାଇଛି ନିଜକୁ ସିଂହାସନରେ। ପ୍ରଜାପାଟକ ଥାଟ ବାଟ ନଥାଇବି ହକାରିଛି ଉନ୍ମାଦରେ ଗଡ଼ ଜିଣିବାକୁ। ହେଲେ କେବେ ଅଠର ଗଡ଼ରୁ ଛତିଶ ଗଡ଼ ହୋଇନାହିଁ। କୌଣସି ଗୋଟିଏ ସାମାନ୍ୟତମ ଗଡ଼ ଆଗରେ ନିଜକୁ ପହଞ୍ଚାଇ ପାରିନି। ମୋ' ଭିତରର କଳା ତା' କଣ୍ଠ ଉଦାକରି ଉତୁରି ଆସେ ମୋ' କଣ୍ଠକୁ। ମୋତେ ଉଚ୍ଚାଟ କରେ। ମୋ କଳାକୁ ପ୍ରଖର କରେ।

ଭିତରର ଚେତନାଟି ହଉଛି ସବୁଠୁ ବଡ଼ ପୁଞ୍ଜି ଲେଖକର। ଏଇ ଚେତନାଟି ଲେଖକର ସ୍ଥୁଳ ଶରୀର ଭେଦକରି ସମାଜର ଅନ୍ତଃସ୍ଥଳକୁ ଫୋଡ଼ି ପକାଏ ସାମାଜିକ, ରାଜନୈତିକ ବ୍ୟକ୍ତିଗତ ଦଳଗତ ଯେ କୌଣସି ଅବରଣକୁ ଭେଦ କରିବାରେ ସମର୍ଥ ହୁଏ। ମଣିଷକୁ କିଛି ନପଚାରି ତାକୁ ଫୋପାଡ଼ି ଦିଆଯାଏ। ମାତ୍ର ସବୁ କାମ ପାଇଁ ମଣିଷ ହିଁ ଦାୟୀହୁଏ। ଲେଖକ ବ୍ୟକ୍ତି ହିସାବରେ ମାଟିର ଋଣ ରକ୍ତର ଋଣ, ସମାଜର ଋଣ ସର୍ବୋପରି ଆଧ୍ୟାତ୍ମିକ ଋଣରେ ଭାରାକ୍ରାନ୍ତ ଥାଏ। ଲେଖକକୁ ସେଇ ଋଣ ସୁଝିବାକୁ ହେବ ତାର ଲେଖା ମାଧ୍ୟମରେ।

ଲେଖକୀୟ ଜୀବନରେ ଯାହା ଅନୁଭବ କରିଛି ମୋର ଚେତନା ଯେଉଁଥିରେ ଶାଣିତ ହୋଇଛି ତାକୁ ମୁଁ ଭାଷାରେ ରୂପ ଦେଇଛି। ସେ ଗଦ୍ୟ ହେଉ କି ପଦ୍ୟ ହେଉ ନାଟକ ହଉକି ନୋଭେଲ ହଉ।

ବାରିକ ଖିଅର କରିବା ଆଗରୁ ତା ଛୁରିକୁ ପଥରରେ ନିଶେ। ତାକୁ ସିଲଟରେ ମାଜେ। ଆଉ କଉ ଶାଣ ପଥରରେ ଘଷେ। ଚମଡ଼ା ଫିତାରେ ରେଁଟେ ଶେଷରେ ଯାଇ ଗରାଖର ଗାଲରେ ଚଳାଏ। ଶାଣିତ କରିବାର ଏ ଯେମିତି ଅନେକ ବାଗ ଛୁରା ପାଇଁ। ଠିକ୍ ଚେତନାକୁ ଚେତେଇବାର ନାନା ବାଗ ଅଛି। ଏ ବାଗ ଗୁଡ଼ିକ ହେଲା ପଢ଼ିବା। ଅନୁଭବ ହାସଲ କରିବା। ସତ୍ୟକୁ ସମଝିବା। ସଂସାରକୁ ବୁଝିବା ଲେଖକୀୟ ପ୍ରତିବଦ୍ଧତାର ସଠିକ୍ ଉତ୍ତର ଦେଉଥିଲେ ମୋ, ମା କିଛି ପାଠନପଢି ମଧ୍ୟ। ଜନ୍ମ ଦେଇଛି ଯେତେବେଳେ ତୋ ଭଲମନ୍ଦ ମୋ ଛଡ଼ା ଆନ କିଏ ବୁଝିବରେ। ଠିକ୍ ସେହିପରି ଲେଖକ ଲେଖୁଛି ଯେତେବେଳେ ପାଠକର ଭଲମନ୍ଦ ତା ଛଡ଼ା ଆଉ କିଏ ବୁଝିବ ଯେ!



# ୭୪. ପୋଢ ମାତିଲେ

ମୋ ବାଲୁତ ବେଳରେ ମଫସଲର କିଛି ସଉକ ଥିଲା। ମଫସଲର ସଉକ ମଫସଲୀ ହାଟରେ ଫୁଟି ଉଠୁଥିଲା ଯେମିତି ସହରର ସଉକ ଛକ ମାନଙ୍କରେ ସିନେମା ଘର ଆଗରେ କି ପିଲାଙ୍କର କ୍ଲବ ମାନଙ୍କରେ ବାରି ହୋଇଯାଏ।

ଥିରପିଆ ନରିହା ଗୋଟାଏ ମେଣ୍ଢାଛୁଆ ପିଲାବେଳୁ ପାଳିଥିଲା। ଖାଇପିଇ ବେଶ୍ ଟାଗଡ଼ା ହୋଇଥିଲା ସେଇଟା। ଗୋଟାଏ ମସ୍ତବଡ଼ ମାହୁଆ ମେଣ୍ଢାଟିଏ। କଣ ହେଲା କେଜାଣି ଟା ଭାରୀଯା ସକାଳୁ ସକାଳୁ କାହାକୁ ସଁପୁଥିଲା। ଟାର ସତରି କରମ କରୁଥିଲା। ଦେଖ ଦେଖ ବୋଇଲା ବେଳକୁ ଟା' ଗାଳିର ମୂଳରେ ଥିଲା ଟା ମେଣ୍ଢାଟି। ବଲବସପୁର ଶନିବାରିଆ ହାଟରେ ଟା'ର ଗର୍‌ରା ସାଗୁନପାଲିର ମରେଇ ଘର ଗର୍‌ରା ପାଖରୁ ହାରିଗଲା। ନଶନା ପଗନା ନହେଲେ ଟା'ର ମେଣ୍ଢା ହାରନ୍ତା କିଆଁ? ମଫସଲୀ ହାଟରେ ଟା'ର ମେଣ୍ଢାଟି ହାରିଯାଇ ଥିବାରୁ ସେ ଦି'ଦିନ ହେଲା ଭାତ ଖାଇନାହିଁ। ଘରେ କେହି ମରି ହଜିଗଲେ ଯେମିତି ମନଟା ବିଷ ପରି ଲାଗେ, ତାକୁ ଠିକ୍ ସେମିତି ଲାଗୁଛି।

ଚଁପା ଲଢେଇ, ତିତେର ଲଢେଇ, କୁକୁଡ଼ା ମାଡ଼, ଷଣ୍ଢ ଲଢେଇ, ପୋଢ଼ ଲଢ଼େଇ ଆଗେ ମଫସଲୀ ହାଟ ମାନଙ୍କରେ ହଉଥିଲା। ଖୋଲା ପଡ଼ିଆରେ ଧୂଳି ଉଡୁଥିଲା ଢ଼ୋଲ ନିସାନ ବାଜୁଥିଲା। ଶହଶହ ଲୋକ ଘେରି ରହିଥିଲେ। ପଶୁ ଓ ମଣିଷ ଏଇପରି ଖେଳ କରୁଥିଲେ। ଏଥିରେ ନିପୀଡ଼ନ ନଥିଲା, ଥିଲା ନିରୋଳା ଆନନ୍ଦ। ଆଜିକାଲି ଯେପରି ଖେଳକୁଦରେ ସିଲ୍‌ଡ଼୍ କପ ମିଳୁଛି, ମେଡ଼ାଲ ଦିଆ ହଉଛି, ସେତେବେଳେ ସେପରି କିଛି ନଥିଲା। କଲଦାରୁପାର ଟଙ୍କା ବା ଖାଇବା ଜିନିଷ ରଖା ଯାଉଥିଲା। ମୁଁ ମୋ' ପିଲାବେଳେ ଲପଙ୍ଗା ବଜାର, ଲଇଡ଼ା ବଜାର, ଭିଖମପୁର ବଜାରରେ ବୁଲି ବଡ଼ବଡ଼ ମଫସଲୀ ହାଟ ମାନଙ୍କରେ ଏ ପ୍ରକାର ଲଢେଇ ଦେଖିଥିଲି। ନିଜ ନିଜର ପଶୁମାନଙ୍କୁ କି ପକ୍ଷୀ ମାନଙ୍କୁ ଲୋକେ ସିନ୍ଦୁର ମଖେଇ ଫୁଲମାଳ ମଖେଇ ହାଟକୁ ଆଣୁଥିଲେ। ବୟସ ଓ ଅବସ୍ଥା ଦେଖି ଦୁଇଦୁଇଟା କରି ଛାଡୁଥିଲେ। ଷଣ୍ଢକୁ ଷଣ୍ଢ, ପାରାକୁ ପାରା, ତିତେରକୁ ତିତେର, ଚଁପାକୁ ଚଁପା ଛାଡୁଥିଲେ। ଗର୍‌ରା ଲଢ଼େଇ କିନ୍ତୁ ସବୁଠୁ ବେଶୀ ଆକର୍ଷଣୀୟ ଥିଲା। ପାଁଚ ଦିନିଆ କ୍ରିକେଟ ପରି ଚଁପା ଲଢ଼େଇ ବୋର୍ ଲାଗୁଥିଲା। ଚଁପା ଦୁଇଟି ଖୁମ୍ପା ଖୁମ୍ପି ହୋଇ ଏମିତି ଲଟକି ଯିବେ ଯେ ଘଣ୍ଟା ଘଣ୍ଟା ହନିମୁନ ମୁଦ୍ରାରେ ପଡ଼ିଥିବେ। ଦର୍ଶକ ଅନେଇ ଅନେଇ ହାଲିଆ ହୋଇଯିବ। ତହିଁ ରେ ରୋମାଞ୍ଚ ଜମା ନଥାଏ। ବରଂ କୁକୁଡ଼ା ଲଢେଇ ମଜାଦାର ଲାଗେ। ଷଣ୍ଢ ଲଢ଼େଇରେ ପଟେ ଆରଟାକୁ ମାରୁଥିବ। ହେଲେ ଶ୍ରୀଘ୍ର ଫଟାଫଟି ହୋଇଯାନ୍ତି। ଷଣ୍ଢ ଲଢେଇରୁ ଗର୍‌ରା ମାଡ଼ ଦେଖିବାର ଲାଏକ। ପୋଢ଼ ମାଡ଼ କିନ୍ତୁ ସବୁଠୁ ବଳିପଡ଼େ। କହନ୍ତି ପରା ଗଣ୍ଡ ବଏରି କି ପୋଢ଼

ବଏରି ।

ମୋ ମାମୁଁ ଘରେ ଦି'ହଳ ପୋଡ଼ଥିଲେ । ସେମାନଙ୍କ ଭିତରେ କଣାପୋଢ ବୋଲି ଗୋଟାଏ ମସ୍ତବଡ଼ ପୋଡ଼ଥିଲା । ସେ ଗୋଟାକ ଗୋଟାପଣେ ମାଡ଼ୁଆ । ଆଉ କା' ପୋଢ ଦେଖିଲେ ଅଏଁ ଅଏଁ କରି ଧାଇଁବ । ଶଗଡ଼ ଚକ ଆରା ପରି ଫଟାଫଟା ସିଙ୍ଘ । ଶେଉଳ ମାଛ ପରି ଗାଢ କସରା ରଙ୍ଗ । ଦେଖିବାକୁ ଡର ଡ଼ରନିଆଁ । ଏଇମିତି କେବେ କଉଠି କା ପୋଢ ସଙ୍ଗେ ଲଢିଥିଲା ଯେ ଗୋଟାଏ ଆଖି ଫୋଡ଼ି ହୋଇଯାଇଥିଲା । ସେଦିନୁ ପୋଢ କଣା ହୋଇଯାଇଥିଲା । ସେଇଦିନଠୁ କଣାପୋଢ ନାଁ ପାଇଛି ।

କେବେ କଉଠି ଏକାଠି ହୋଇଥିଲେ ଠାକୁରଙ୍କୁ ଜଣା । ବାଉଁଶେନ ପଣ୍ଡା – ଘରର ପଟେ ପୋଢ ସହିତ ଲଢିଥିଲା କୁର୍ଲା କି ଝୁଗିପାଳି ଗାଁର କଉ କଟାପେଟରେ ଭେଟ ହୋଇଥିବେ ପରା । ଅନେକ ସମୟ ଧରି ସେ ଦୁଇପଟ ଲଢିଥିଲେ । କର୍ଣ୍ଣ ଅର୍ଜୁନ ପରି ଏକୁ ଆରେକ ବଳିଆର । ପଟେ ଆରପଟକୁ ଖେପି ନେଉଥିଲା । ଆର ପଟକ ଏ ପଟକୁ ଠେଳି ନଉଥିଲା । ଥିଲା ଥିଲା ମୋ ମାମୁଁଘର କଣା ପୋଢଟି ବାଉଁଶିନିଆଁ ବିଜାର ପୋଡ଼କୁ ଏମିତି ମୁଡ଼ିଆଟିଏ ମାଇଲା ଯେ ସେ ବାଉଁଶିନିଆଟି ଦଣହାତ ଘୁଞ୍ଚିଲା । କଣା ପୋଡ଼ଟି ଏ ସୁଯୋଗରେ, ଏମିତି କେଞ୍ଚିଲା ଯେ ବାଉଁଶିନିଆ ପୋଢ଼ ଗୁଡେଇ ପକେଇଲ । କାଳେ ମରିଯିବ ଭାବି ଲୋକେ ଦିଟାକୁ ଫଟାଇ ଅଲାଗା କରିଦେଲେ । କଣା ପୋଢକୁ ଘେନି ଆସିଲା ତା' ଚରୁହା । ବାଉଁଶିନିଆ ପୋଢକୁ ବି ନେଇଗଲେ ତାର ଚରୁହା । ଗଲା ବେଳେ ବାଉଁଶିନିଆ ବିଚରା ପୋଢଟି ଲେଉଟି ଲେଉଟି ଅଏଁ ଅଏଁ କରୁଥାଏ । ଆଉଦିନେ ଦେଖିଦେବିରେ ବୋଲି କହୁଥାଏ ଯେମିତି ତାର ଅଏଁ ଅଏଁ ଆବାଜରେ । ଗୁଡ୍ରସୁମରି ପିତାଘର ଯିବୁ ବୋଲି କହନ୍ତା କି କେଜାଣି । ଚରୁହା ପିଟି ପିଟି ଆଗେଇ ନେଲା । କଣା ପୋଢ଼ଟି ଅସଲ ପାନେ ଦେଇଛି ବୋଲି ବିଜୟ ଗର୍ବରେ ଫେରୁଥାଏ କୁଦୋପାଲିକୁ ।

ମାମୁଁ ଘର ପୋଢ ଗୋହାଳରେ ଠାଏ ଠାଏ ମେଲା । କାଠ ଆରଗଳିରେ ଘେରା । ପୋଢକୁ ଚରହାକୁ ଆଉ ବାମୁଣକୁ କୁଆଡ଼େ ଖରା ବାଧେ । ଶୀତ, ବରଷା ବାଧେ ନାଇଁ । ସେଇଥି ପାଇଁ ଯଥାକଥା ଗୋହାଳରେ ପୋଢ ରହିପାରନ୍ତି ।

ଥିଲା ଥିଲା ଦିନକର ଦିନେ ରାତି ଅଧରେ ଶୁଭିଲା ଘିଡ଼ଘାଡ଼ ଶବ୍ଦ । ମୋ ସାନମାମୁଁ କାହୁ ଚିଆଡ଼ି ଧଡ଼ପଡ଼ ହୋଇ ଉଠିଲେ ଦେଖଦେଖ ବୋଇଲା ବେଳକୁ କଣାପୋଢକୁ ମାରୁଛି ସେଇ ବାଉଁଶନିଆଁ ପୋଢ । ଆର ପୋଢକୁ ନମାରି ସେଇ କଣାଟାକୁ ଏକା କେଞ୍ଚୁଛି । ଅନ୍ଧାରରେ ଚିହ୍ନିଲା କେମିତି ଯେ! ମୋ ସାନମାମୁ ବି କବାଟ ଫାଳିଆ ନିଦା ମରଦଟାଏ । ଗୋଟାଏ ମସ୍ତବଡ଼ ଅଡ଼ାରେ ବାଉଁଶନିଆ ବିଜାର ପୋଢକୁ ଫଟାଇ ବିଦା କରିଦେଲେ । ପୋଢ ମାତିଲେ ଇନ୍ଦ୍ରଚନ୍ଦ୍ର ମାନେନାଇଁ ।

ସବୁ ଲଢେଇରୁ ଗଦ୍‌ରା ଲଢ଼େଇର ମଜା ବେଶୀ ଦିନିକିଆ ହକି ଖେଳବି ତଳ

ପଡ଼ିଯିବ। ମେଣ୍ଢାକୁ ମାସ ମାସଧରି କୋଡି କୋଦାଳରେ ମୁଡ଼ିଆ ମାରିବା ପାଇଁ ଶିଖାଯାଏ। ମେଣ୍ଢା ଆପଣା ମୁଣ୍ଡକୁ ଏମିତି ପିଟେ ଯେ ରକତ ବାହାରିଯାଏ। ହାରିଲେ ବି ଲଢୁଥିବ।

ସବୁ ଲଢ଼େଇ ସମ୍ଭବ ହେଲେ ବି ଛେଳି ଲଢ଼େଇ କେବେ ଜଉଠି ହୁଏନାହିଁ। ଛେଳି ଛାତିଏ ଉପରକୁ ଗୋଡ଼ ଟେକେ ସିନା ମୁଣ୍ଡଟାକୁ ଆର ଛେଳି ମୁଣ୍ଡଟାରେ ମାତ୍ର ଛୁଇଁଦିଏ। ପିଟେ ନାଇଁ। ସେଥିପାଇଁ ଥଟ୍ଟା କରି କହନ୍ତି ଅଜା ଯୁଦ୍ଧେ ଋଷି ଶ୍ରାଦ୍ଧେ, ପ୍ରଭାତେ ମେଘ ଡ଼ମ୍ବରେ। ପତିପତ୍ନୀ ବିବାଦେଷୁ ଏ ସର୍ବମ୍ ଫସରମ୍ ଫସା। ଛେଳିର ଯୁଦ୍ଧ ଯୁଦ୍ଧ ନୁହେଁ। ଋଷିଙ୍କ ଶ୍ରାଦ୍ଧ ଶ୍ରାଦ୍ଧ ନୁହେଁ, ଯାହା ଅଭାବ ହେବ ମନ୍ତ୍ରରେ ଚଳିଯିବ। ସକାଳୁଆ ମେଘର ତୁମ୍ଭୀତୁଫାନ ବେଶୀ ହେଲେ ବି ପାଣି ଟୋପାଏ ପଡ଼େ ନାହିଁ। ସ୍ୱାମୀ ସ୍ତ୍ରୀର ଲଢେଇ ସଞ୍ଜଯାଏ। ଏଣୁ ଏସବୁ ଲଢ଼େଇର କିଛି ମୂଲ୍ୟ ନାହିଁ।

ମଫସଲୀ ହାଟରେ ଏ ବିଶେଷ ସଉକ ଗୁଡ଼ିକ ଜୀବନର ଅନେକ ସୂକ୍ଷ୍ମ ସତ୍ୟକୁ ସୂଚାଇ ଦିଏ ସ୍ଥୂଳ ଘଟଣା ଘଟିବା ଭିତରେ। ଉଦ୍ଦାମତା ଭିତରେ ଜୀବନକୁ ଉତ୍ସବମୟ କରିବା, ଆତ୍ମୀୟତାକୁ ପଶୁପକ୍ଷୀଙ୍କୁ ବି ବାଣ୍ଟି ଦେବା ହଉଚି ଏ ସଉକର ମୂଳକଥା।



## ୭୪. ଚ଼କୁଳିକୁ ଚେଁ

ଯୁଆଳୀ ତିଆରି କରି ଜାଣୁ? କଉଁରିଆ ପଟରେ ରଶି ବଳିବା ଜାଣୁ? କୁରାଢ଼ିରେ ବେଣ୍ଟ ଲଗାଇ ପାରିବୁ? ଘଡ଼ି ପିନ୍ଧୁଛୁ, ଘଡ଼ି ସାଜି ଜାଣୁ? ଏଇପରି ଶହେଟି ପ୍ରଶ୍ନ ପଚରିଥିଲା ସେ। ଏସବୁ ପ୍ରଶ୍ନର ମୋର ଏକମାତ୍ର ଉତ୍ତର ଥିଲା 'ନା'। ସେ ମୋତେ ସଦା ଡ଼ାକୁଥିଲା "ପିଲା"। ମୁଁ ତାକୁ ଡାକୁଥିଲି ନାଆଁଧରି "ସାଧ"। ସେ ଠିକ୍ ପାଞ୍ଚଟା ବେଳକୁ ମୋ' ବେଶ୍ରମୁହଁକୁ ଆସି ଶିକୁଳି ଖଡ଼ଖଡ଼ାଏ। ମୁଁ ଉଠେ। ପହଡ଼ ଭାଙ୍ଗେ। ଠିକ୍ ଯେମିତି ଜଗନ୍ନାଥଙ୍କ ପହଡ଼ ଭାଙ୍ଗିବାକୁ ଭଜନ ବୋଲାଯାଏ। ମୋ' ନିଦ ଭାଙ୍ଗିବାକୁ ତା'ର ଶିକୁଳି ଖଡ଼ଖଡ଼ ଯଥେଷ୍ଟ ଥିଲା। ମୁଁ ତାଠୁ ବୟସରେ ପ୍ରାୟ ପନ୍ଦର ବରଷର ସାନ। ମୋ' ବାପା ବୟସର ସେ। ମୋ' ବାପାଙ୍କୁ ଯେହେତୁ ସେ 'ମାମୁଁ' ମାନ୍ୟ କରୁଥିଲା ମୁଁ ତା'ର ଭାଇ ହେବାକଥା। ହେଲେ କେମିତି କେଜାଣି କେଉଁ ସ୍ନେହରେ ସେ ମୋର ହୋଇଗଲା ନାତି ଆଉ ମୁଁ ତା'ର ଅଜା। ମୋ ସହ ସେ ତା'ର ଜୀବନର ପ୍ରାୟ ତିରିଶବର୍ଷ କାଳ ନିବିଡ଼ ଭାବେ କଟେଇଛି। ମୋ' ବିଲବାଡ଼ି ଚାଷବାସର ସବୁ ଦାୟିତ୍ୱ ସେ ବୁଝୁଥିଲା। ଏକ କଥାରେ ମୋ' ଚାଷ ବ୍ୟବସ୍ଥାର ସେ ଥିଲା ମାଲିକ। ମୁଁ ଥିଲି ତାର ବୋଲକରା।

ରାତି ଆମ ଶୀତୁଆ ଛାତ ଉପରେ ଅନ୍ଧାରୁଆ ଶେଯରେ ପହଡ଼ ଯାଇଥିବ। ସେ ଆସିବ ପ୍ରାୟ ରାତି ଗୋଟାଏ ବେଳକୁ। ଲଙ୍ଗଳ ତରା ଠିକ୍ ମୁଣ୍ଡ ଉପରୁ ଢଳି ନଥିବ।

ଘବୁଦିନ ପରି ଖଡ଼ଖଡ଼ କରିବ ଶିକୁଳି। ମୋତେ ଉଠେଇବ। ମୁଁ ମନେ ମନେ ବିରକ୍ତ ହଉଥିବି। ଉଠିବାକୁ ମନ ହଉନଥିବ। ତଥାପି ଉଠିବି। ସେ ଲଣ୍ଠନ ଜାଳିବାକୁ ମୋତେ ନିର୍ଦ୍ଦେଶଦେବ। ମେରିହି ଖମ୍ବରେ ସେ ଦାଇଁ ଲଗାଇବ। ଗୁହାଳରୁ ଗୋରୁ ଫିଟେଇବ। ଆଗରୁ ଫିଟା ହୋଇଥିବା ଗୋରୁଙ୍କୁ ମୁଁ ଆକଟି ରଖିଥିବି। ସେ ଆସି ଗୋଟିଗୋଟି କରି ଗୋରୁଙ୍କୁ ଯଥାକ୍ରମେ ଦାଇଁରେ ଯୋଡ଼ିବ। ତା'ପରେ ଚାଲିବ ତା'ର ଧାନମଡ଼ା। ନଅପଟ ଗୋରୁ ଭାଉଁର ଭାଉଁର ମେରିହି ଚଡ଼କତି ଘୁରୁଥିବେ। ସାଧ ଗୋରୁଙ୍କ ପଛେ ପଛେ ଚାଲୁଥିବ। ଗତ ସଞ୍ଜରେ ସଜା ହୋଇ ରହିଥିବା ଅଁତରାରେ ନିଆଁ ଧରେଇବି। ହାତ ସେକିବି। ଶେଷ ପୌଷର କନକନିରେ ହାତ ମରିଯାଉଥିବ। ଆଉ କେହିଜଣେ ଆସିବା କଥା। ହେଲେ ଆଉ ଜଣେ ନ ଆସିଲେ ବି ସେ କହିବ, "ଧାନ ଘାଣ୍ଟିଲା ବେଳେ ତୁଟିକେ ଦାଉନକୁ ସମ୍ଭାଳିବୁ ମୁଁ ବାକି କାମ କରିଯିବି। ସେତିକି ନ ପାରିବୁ ଯଦି ଜାଙ୍ଗଲ ବୁହିବୁ କହିଁକି? ଏଇପରି ଚାଷର ଅନେକ କାମ ଶିଖେଇ ଥିଲା ସେ ମୋତେ। ପାଣି ତେଣ୍ଡାରୁ ଆଖୁପେଡ଼ା ଆଉ ବାଦାମ ବିହିଡ଼ାରୁ ଗାଇଦୁହାଁ ଶିଖେଇ ଥିଲା ସେ ମୋତେ। ଅବଧୂତଙ୍କ ଚବିଶ ଗୁରୁ ପରି ମୋର ଅନେକ ଗୁରୁରୁ ସାଧ ଏକଗୁରୁ। ତା'ର ଆବର୍ତ୍ତମାନରେ ମୁ ତା'ର ମହାନ୍ ଆତ୍ମାକୁ ମୋର କୋଟି କୋଟି ପ୍ରଣାମ୍ ଜଣାଉଛି। ସେ ଖୁସିରେ କହୁ କି ଅଖୁସିରେ କହୁ ବେଳେବେଳେ କହୁଥିଲା "ଯିଏ ଯେତେବେଶୀ କାମ କରେ, ସେ ସେତେ ଛୋଟଲୋକ, ମ୍ଳେଛ। ଆଉ ଯିଏ ଜମା କାମ କରେନାଇଁ ସେ ସେତେବଡ଼ ଲୋକ। " ସେ ମୋତେ ଲମ୍ବା ନିଶ୍ୱାସ ପକାଇ କହେ, " ମୁଁ ଏତେ କାମ ଜାଣି ମୂରୁଖ ଆଉ ତୁ କିଛି ନଜାଣି ପଣ୍ଡିତ। ତୋତେ ସଭିଏଁ କେତେକଣ ସମ୍ମାନ ଦିଅନ୍ତି ଅଥଚ ମୋ" ବେଳକୁ ସେଇ ସଦା ଚଳି ଆସୁଥିବା ସନାତନ ଅବହେଳା ଓ ନିରନ୍ନ ନିଉଛାଳି। ମୋର ସେଇ ଗୋଟିଏ ଦକ୍ଷତା ନାଇଁ। ତୁ ଯେମିତି ଲିଖନରେ ଗେରେଇ ଜାଣୁ ମୁଁ ଜାଣେନାଇଁ। ମୋ' ଜୀବନରେ ଏଇମାତ୍ର ବିଡ଼ମ୍ବନା! ବର୍ଣ୍ଣମାଳାର ବର୍ଣ୍ଣାଢ଼୍ୟ ସଂଯୋଜନା ତୋତେ ବଡ଼କରିଛି। ଆଉ ତା'ର ଅଭାବ ମୋତେ ଅସହ୍ୟ ଭାବେ ଛୋଟ କରିଦେଇଛି ଗା ପିଲା"।

ଏଇଥିଲା ସେଇ ସାଧ ମିର୍ଦ୍ଧାର ଅବଶୋଷ। ବର୍ଣ୍ଣମାଳା ମାଧ୍ୟମରେ ଆମେ ଶିକ୍ଷା ପାଉଁ। ଏଇ ଶିକ୍ଷା ଆଦିମତମ କାଳରୁ ଆମକୁ ଦୁଇଟି କଥା କହି ଆସିଛି ପ୍ରଥମଟି ମଣିଷ ଭିତରକୁ ସଫା କରିବା। ଯାହାକୁ ଭଦ୍ର ଭାଷାରେ କହନ୍ତି ନୋବଲ କରିବା। ଦ୍ୱିତୀୟରେ ଜାଗତିକ ଜୀବନ ଜୀଇଁବା ପାଇଁ ସାଧନଟିଏ ଯୁଟାଇ ଦେବା। ମାତ୍ର କାହିଁକି କେଜାଣି ଆଜି ଆମ ଶିକ୍ଷା ଶିକ୍ଷାର୍ଥୀକୁ ଭଦ୍ର ନକରି ଚତୁର କରୁଛି ଓ ଜୀଇଁବାର ସାଧନଟିଏ ଯୁଟାଇ ପାରୁନାଇଁ। ଚତୁର ହେବା, ଭଦ୍ରହେବା ଏକାକଥା ନୁହେଁ। ଶିକ୍ଷା ସମାପ୍ତି ପରେ ଶିକ୍ଷାର୍ଥୀକୁ କିଛି ସାଧନ ଯୋଗାଇ ନପାରି ବେଶୀ ମାତ୍ରାରେ ବେକାର କରୁଛି। ଏଣୁ ଆଜି ଶିକ୍ଷା ଆମ ଯୁବପୀଢ଼ି ଆଗରେ ଏକ ପ୍ରଶ୍ନବାଚୀ। ଆମ ପିଲାଏ ଏଇ ସ୍ତରକୁ ପହଞ୍ଚିଲେଣି ଯେ ପଇସା

ପତ୍ର ପିତାମାତାଙ୍କୁ ମାଗିବା ବେଳେ ଯଦି ସେମାନେ କୁନ୍ଥୁ କୁନ୍ଥୁ କରନ୍ତି, ପିଲାଏ କହିବା ଆରମ୍ଭ କଲେଣି "ଜନମ କଲା ବେଳକୁ ସୁଖ ଲାଗୁଥିଲା?" ଏ ପ୍ରକାର ଅଶାଳୀନ ଆକ୍ରମଣ ତା'ର ଅତୁଟ ଅସହାୟତାରୁ ଜାତ। ସାମ୍ପ୍ରତିକ ସମୟରେ ସେଇ ଶିକ୍ଷା ଶିକ୍ଷାର୍ଥୀଙ୍କୁ ନୋବୁଲ୍ କି ଚତୁର କରିବାତ ଦୂରର କଥା ଏବେ ଶିକ୍ଷାର୍ଥୀ କେମିତି ଗାଳି ଦେଇପାରିବ କି ଶୋଧି ପାରିବ ସେ ଦକ୍ଷତା ହାସଲକରୁଛି।

ଏଠି କଥାଟିଏ ମନେ ପଡ଼ିଯାଉଛି ସେକ୍ସପିଅରଙ୍କ **Tempest** ରେ ଆମେ କାଲିବାନ୍‌କୁ ଚିହ୍ନୁ। ତାକୁ ଭଦ୍ର କରିବା ପାଇଁ ପ୍ରସ୍‌ପେରୋ ସାଆନ୍ତେ ତାକୁ ଭଷା ଶିଖାଇଲେ। ଭାଷା ଶିଖିସାରି ସେ କଣ କହିଲା ଜାଣନ୍ତି? "ତମେ ମୋତେ  ଭାଷା ଶିଖାଇଲ। ମୁଁ ତମକୁ ଗାଳି ନ ଦେବିତ ଆଉ କିସ ଜାଣିଛି ଯେ କହିବି ହେ!!!" **"You taught me language. The profit on it is to curse you."** ଆଜି ଆମେ ଆମ ଶିକ୍ଷାନୁଷ୍ଠାନରୁ କଲେଜରୁ, ବିଶ୍ୱବିଦ୍ୟାଳୟରୁ ସେଇ କାଲିବାନକୁ ବହୁଗୁଣିତ କରିବା ଛଡ଼ା ଆଉ କଣ କରୁଛୁ ଯେ!

ବର୍ଣ୍ଣମାଳାର ପ୍ରଚଣ୍ଡ ଜ୍ଞାନରେ ଆପଣାକୁ ସର୍ବଶ୍ରେଷ୍ଠ ମଣୁଥିବା ମୋ'ପରି ଲୋକଙ୍କୁ ସେଇ ସାଧ ମିର୍ଦ୍ଧାର ଅବର୍ଣ୍ଣମାଳାର ଜ୍ଞାନ ସତେ ଯେମିତି ଝିଙ୍ଗାସୁଛି। ଦୁଇ ଗାଲରେ ଥାପଡ଼ ଥାପଡ଼ କରି ପିଟୁଛି ଯେମିତି।

ତା ହେଲେ ବର୍ଣ୍ଣମାଳା ଯେଉଁ ଜ୍ଞାନଦିଏ ତାହା ସତରେ କଣ ବୃଥା? ନା!! କଦାପି ନୁହେଁ। ଏକଥାକୁ ଆମେ ସହଜରେ ବୁଝାଇ ଦେଇପାରିବା ରବୀନ୍ଦ୍ରନାଥଙ୍କ ଏକ ଗଳ୍ପର ସହାୟତାରେ। ଗଳ୍ପଟି  ଏଇପରି।

ପାଣିତୁଣୀ ଝିଅଟିଏ। ରୋଜରୋଜ ପାଖ ଝରଣାରୁ ସାଇ ପଡ଼ିଶାଙ୍କ ଘରକୁ ପାଣିବୁହେ। ପାଣି ବୁହିବା ତା''ର ପେଷା, ବଞ୍ଚିବାର ସାଧନ। ବାଟ ଜହ। ଏଣୁ ଚଞ୍ଚଳ ଚଞ୍ଚଳ ପାଣିବୁହେ। ଏଣେତେଣେ ଅନାଇବାକୁ ତାର ଫୁର୍‌ସତ କାହିଁ? ରାସ୍ତାକଡ଼ ଗଛ ଛାଇରେ ଲୋକଟିଏ ବସିଥାଏ। କଣ ଯେ କରେ? ଯେବେ ଦେଖିବ, ବସିଛି। ନିକମା କଉଠିକାର କୁଟା ଖଣ୍ଡକୁ ଦି'ଖଣ୍ଡ କରନ୍ତା ଭଲା।

ଦିନେ ଝିଅଟି ପଚାରି ଦେଲା "କିହୋ ଏମିତି ଦିପହରଟାରେ ବସିଛ କିଆଁ? କିଛି ପାଇଟି କରୁନ? ସେ ଲୋକଟି ଖୁବ୍ ସହଜରେ କହିଦେଲା "ଦେଲେ ସିନା" ଝିଅ ତା' ବାଟରେ ଗଲା। ସେବି ସେମିତି ସେଇଠି ବସି ରହିଲା। ଝିଅଟିର ପୁଣି ସେଇ ପ୍ରଶ୍ନ "କିଛି କରୁନ କିଆଁ? 'କାମଟିଏ ଦଉନ' ଲୋକଟିର ଉତ୍ତର। ମାଠିଆଟି ନିଅ ପାଣି ବୋହିବ। ଝିଅଟି କହିଲା। ମାଠିଆଟି ରଖିଲା ତା' ପରଦିନ ଲୋକଟି ମାଠିଆଟି ଫେରେଇଦେଲା। ଏପଟ ସେପଟ କଲା। କି ଛେନା ଗୁଡ଼ ବୁଝିଲା କେଜାଣି। ତା ପାଣି ବୁହାରେ ହଜିଗଲା। ରାତିରେ ଆଲୁଅ ଜାଳି  ମାଠିଆକୁ ପରଖିଲା। ବାଃ କି ସୁନ୍ଦର ଗାରସବୁ। ସେ ଗାରସବୁ

ତା' ଭିତରେ କଣଟିଏ ରଙ୍ଗିଲା ପରି ଲାଗିଲା । ତା' ଭିତରେ ଗୋଟାଏ ନୂଆ ହଲଚଲ । ସକାଳେ ପାଣି ବୋହିବାକୁ ଗଲା ବେଳକୁ ପାଦ ଅଟକି ଯାଉଛି । ଗୋଟିଏ ଅଜଣା କମ୍ପନ ତା' ଶିରା ପ୍ରଶିରାରେ । ଏକ ମଦଳାସୀ ଭାବ ଘେରି ରହିଛି ତା'କୁ । କଣ ହେଲା ତାର?

ଆଉ କିଛି କାମ ଦଉନ? ଲୋକଟି ଝିଅକୁ କହିଲା । "କନ୍ଥା ଖଣ୍ଡେ ଟିପିବ ବୋଲି ମୁଣ୍ଡୁଳାଏ ସୂତା କିଣିଥିଲା ତାକୁ ଦେଇଦେଲା । ଯାକୁ ନିଅ ରଣିବୋଳି ଦେବ । ରଣି କରନ୍ତା କଣ କୁଳାଙ୍ଗାର କି ଦରବ ବନେଇଥିଲା ଯେ ଝିଅ ଝୁରି ଝୁରି ମରୁଛି । ସେ ସୂତାରେ ମୂଳରୁ ରବିନ ଖଣ୍ଡେ କଲା । ରିବନରେ କେଶ ବାନ୍ଧି ଝିଅଟି ନିଜକୁ ଆଇନାରେ ଦେଖିଲା । ଏଁ ଏ କଣ ତା' ଦିହରେ କିମିତିଆ ଅଳସ ଅଳସ ଭାବଟିଏ ତା' ଭିତରେ ଖୁନ୍ଦି ହେବାକୁ ବସିଲାଣି ।

ଝାରର ନିଆଁପରି କଥା ଗାଁରେ ବ୍ୟାପିଗଲା । ବଡ଼ ବଡ଼ିଆମାନେ ସଭାକରି ଲୋକଟିକୁ ଗାଁରୁ ତଡ଼ିବାକୁ ହୁକୁମ କଲେ । ନଇଲେ ସଭିଙ୍କୁ ନିକମା କରିଦେବ । କି ହୁନ୍ଦର ଜାଣିଛି । ବଡ ବଡ଼ିଆଙ୍କୁ ସବୁଠୁ ଆଶ୍ଚର୍ଯ୍ୟ ଲାଗିଲା । ଯେତେବେଳେ ସେଇ ପାଣି ବୁହାଟୀ ଝିଅଟି ସେଇ ଲୋକଟି ସହ ଗାଁ ଛାଡ଼ିବାକୁ ବାହାରି ପଡ଼ିଲା । ସତକୁ ସତ କିଛି ଜାଣିଲେ କିଛି ଶିଖିଲେ ଭିତରେ କିଛି ହଲଚଲ, ଜୀବନରେ ନୂଆ ମୋଡ଼ ଆଣେ । ନୂଆ ବାଟଟିଏ ବତାଇ ଦିଏ ।

ଏବକାର ଶିକ୍ଷା ସେଇପରି କମ୍ପନଟିଏ ସୃଷ୍ଟି କରୁଛି କି? ଏକ ପ୍ରଶ୍ନବାଚୀ । ଆମେ ହୁଏତ ଅତି ଅସହାୟ ଭାବେ ସ୍ୱୀକାର କରିବା ଯେ ଆମେ ଯଦି ଆମ ପିଲାଙ୍କ ଭିତରେ ଅନୁପ୍ରେରିତ ହେବା ଭଳି ଆବେଗ ପୁରେଇ ପାରନ୍ତେ, ଆଜିକାର ଏ ଦଶା ରହନ୍ତା ନାହିଁ । କାଳିବାନ୍‌ର ସେ ଗାଳି, ଆମ ପିଲାଙ୍କ ଭୂଜାଲି ଭୂଷାକୁ ଆଇଲାଣି । ଜୀବନରେ ସକଳ ତୁଛତାରୁ ଉପରକୁ ଟୋଳି ଧରିବାକୁ ଆମ ଶିକ୍ଷାରେ ଦମ୍ଭନାହିଁ । ଆମେ ଯଉମାନେ ଶିକ୍ଷା ଦଉଛୁ ମୂଲ୍ୟବୋଧ ବର୍ଜିତ ଓ ସ୍ଖଳିତ । ଆମ ପିଲାଙ୍କ ଭିତରେ କେଉଁ ମୂଲ୍ୟ ଖୋଜିବୁ ଯେ!

ପୁଣି କଥାଏ ମନେ ପଡ଼ିଯାଉଛି । ଉତ୍ତର ଭାରତ କଉ ଏକ ସହରରେ ରାମଲୀଳା ଚାଲିଥାଏ । ଗୋରା ସାହେବ ସାହେବାଣୀ ଅତିଥି ହୋଇ ଆସିଥାନ୍ତି । ରାମଲୀଳା ଚାଲିଛି । ତୁଳସୀ ରାମାୟଣରୁ ରାମଗାଥା ଗୁଆ ହେଉଛି । କି ଛେନାଗୁଡ଼ ବୁଝନ୍ତେ ସେ ଗୋରା ଦମ୍ପତି । ହନୁମାନ ଲାଞ୍ଜ ହଲେଇ ମଞ୍ଚକୁ ଆସିବାରୁ ଗୋଟାଏ ହଲଚଲ ଖେଳିଗଲା । ସାହେବ ସାହେବାଣୀ ବୁଝିଲେ ମାଙ୍କଡ଼ – ବନ୍ଦର । ସାହେବାଣୀ ଖୁସିରେ ଉଛୁଳିଲେ । କହିଲେ ଫିର୍ ଏକ ବଣ୍ଡର । ଫରମାଇସ ପାଇ ଆସିଲେ ଆଉ ଏକ ବନ୍ଦର । ଏମିତି ଏମିତି ଫରମାଇସ ପରେ ଫରମାଇସ । ଜାମ୍ବବାନ୍, ବାଳୀ, ସୁଗ୍ରୀବ, ସୁଷେଣ ସବୁଯାକ ବନ୍ଦର ଗୋଟିକ ପରେ ଗୋଟିଏ ବହାରିଲେ । ସାହେବାଣୀ କହୁଥାନ୍ତି ଆଉର ଏକ

ବନ୍ଦର। ଅବସ୍ଥା ଏମିତି ହେଲା ଯେ ସାହେବ ସାହେବାଣୀଙ୍କୁ ଖୁସ୍ କରିବାକୁ ଯାଇ ଆମ ରାମ, ସୀତା, ଲକ୍ଷ୍ମଣଙ୍କୁ ବନ୍ଦର ହୋଇ ବାହାରିବାକୁ ପଡ଼ିଲା। ଅତିଥି ଖୁସି ହେଲେ କି ନାହିଁ ଆମେ କହିପାରିବୁନି। ହେଲେ ବି ଆମେ ଆମ ଖାମିନ୍ଦଙ୍କୁ ଖୁସି କରିବାରେ ଏପରି ମୂଲ୍ୟବୋଧରୁ ଖସି ଯାଉଛୁ ନିର୍ଲଜ ଭାବେ ଏକଥା ସ୍ୱୀକାର କରିବାକୁ ହେବ।

ମୋର ବିଶ୍ୱାସ ଆମର ସାଧୁମାନେ, ଆଚାର୍ଯ୍ୟମାନେ, ଗୁରୁମାନେ ଆପଣା ମୂଲ୍ୟବୋଧରୁ କଦାପି କୁତ୍ରାପି ମାମୁଲି ସୁଖ ପାଇବାକୁ ଖସିଯିବେନାହିଁ।

ସବୁ ସ୍ୱାଭାବିକତାକୁ, ଚକୁଳିକୁ ଚେଁ ପରି ବାଟଛାଡ଼ି ଦବାକୁ ହେବ।



# ୭୬. ରକତରେ ବାଜିଲା ନାଗରା

"ହମ୍ ଚିନୀକୋ ସିରା ବନାଦେଙ୍ଗେ"

"ମୁକି ହୋଇଥିବି ରାଧାମୋହନ, ହେବିନାହିଁ ଗଡ଼ ନାୟକ"?

ଏହିପରି କବିତାର ଧାଡ଼ିମାନ ସଭାରେ, କବି ମେଳରେ, ବେତାରରେ, ଦୂରଦର୍ଶନରେ ଗୁଞ୍ଜରିତ ହେଲା। ଗୋଟାଏ ଉଗ୍ର ତରଙ୍ଗ ଭାରତର କାଶ୍ମୀରରୁ କନ୍ୟାକୁମାରୀ ଓ ଗୋଆରୁ ଗୌହାଟୀ ପର୍ଯ୍ୟନ୍ତ ଖେଳିଗଲା। ଆପଣାର ମାଟିକୁ ଭଲ ପାଇବାର ଏକ ଅଭିନବ ମନ୍ତ୍ରରେ ଅଭିମନ୍ତ୍ରିତ ହେଲା ଭାରତୀୟ ପ୍ରାଣ।

ଏବେ ୧୯୯୮ରେ ପାକିସ୍ତାନ ଯେମିତି କାରଗିଲ ଅଞ୍ଚଳରେ ଅନୁପ୍ରବେଶ କଲା ଠିକ୍ ସେମିତି ଚୀନ ଆକ୍ରମଣ କଲା ଭାରତକୁ। ଭାରତର କିଛି ଅଞ୍ଚଳକୁ ମାଡ଼ି ଆସିଲା। ଆମ ପ୍ରତିରକ୍ଷା ମନ୍ତ୍ରୀଥିଲେ କୃଷ୍ଣ ମେନନ୍ ଓ ପ୍ରଧାନମନ୍ତ୍ରୀ ଥିଲେ ପଣ୍ଡିତ ଜବହାରଲାଲ୍ ନେହେରୁ। ଏହା ଏକ ମେନାକ୍ସ ବୋଲି ସେ ଘୋଷଣା କଲେ।

ସ୍ୱାଧୀନତା ସଂଗ୍ରାମ ପରେ ଭାରତୀୟ ପ୍ରାଣରେ ଆସିଯାଇଥିଲା ସୁସ୍ଥିର କ୍ଲୀବତ୍ୱ, ପଙ୍ଗୁତ୍ୱ, ସ୍ଥାଣୁତ୍ୱ ଏକ ଅଚଞ୍ଚଳ ଭାବ। ଚୀନର ଏ ଆକ୍ରମଣରେ ନିଆଁର ଚେଙ୍କ ଲାଗିଲାପରି ଚମକି ଉଠିଲା ଭାରତର ପ୍ରାଣ। ଲେକେ ମାତି ଉଠିଲେ। ଏକ ସଜୀବତା ଦେଖାଦେଲା ଭାରତୀୟ ରକ୍ତରେ। ଆମର ବିଫଳତା, ଆମର ପରାଜୟ, ଆମର ଅସାବଧାନତା ଆମକୁ ଶିକ୍ଷାଦେଲା ଯେ ବସି ରହିଲେ ଚଳିବ ନାହିଁ। ସଦା ଜାଗ୍ରତ ରହିବାକୁ ହେବ। କେବେ କଣ ହୋଇଯାଇ ପାରେ କିଏ କହିବ? ଏଇ ଆଶଙ୍କାରେ ଭାରତୀୟମାନେ ସଜାଗ ହେବାକୁ ଶିଖିଲେ। ସ୍ୱାଧୀନ ଭାରତର ଶାନ୍ତ ପ୍ରାଣରେ ଚୀନ–ଆକ୍ରମଣ ଥିଲା ଏକ ହଲଚଲ, ଏକ ନିଆଁ- ଚେଙ୍କ, ଏକ ଆଗ୍ନେୟ ଶପଥର ବେଳା। ଗୋଠ ମାତିଲେ ହଡ଼ା ମାତିଲାପରି ମୋର ରକ୍ତରେ ବି ନାଗରା ବାଜିଲା ଦିମ୍‌ଦିମ୍, ଦିମ୍‌ଦିମ୍।

ମୋର ଏକ ଗୀତି-କବିତା ସର୍ବ ଭାରତୀୟ ସ୍ତରରେ ସମର ସଙ୍ଗୀତ ରୂପେ ସ୍ୱୀକୃତ ହେଲା। ଏଇ ଦେଶାତ୍ମବୋଧକ ଗୀତଟି ଆକାଶବାଣୀ ଦ୍ୱାରା ପୁରସ୍କୃତ ହେଲା। ୧୯୬୫ରେ ସେ ପୁରସ୍କାର ବାବଦରେ ମୁଁ ପାଇଥିଲି ପାଞ୍ଚଶହ ଟଙ୍କା। ସେତେବେଳେ ପରମାଣପୁର ହାଇସ୍କୁଲ ବର୍ତ୍ତମାନର ଡ଼: ଝସକେତନ ସାହୁ କଲେଜ ପରିସରରେ କାର୍ଯ୍ୟ କରୁଥିଲା ମୁଁ ଖୁସିରେ ଫାଟି ପଡ଼ିଲି ଏଇ ସଫଳତା ପାଇଁ। ମୋର ପୁରସ୍କାର ଲବ୍ଧ ଧନ ମୁଁ ପିଲାଙ୍କୁ ଦେଇଦେଲି। ସେମାନେ ନିଜ ଇଚ୍ଛାରେ ଖର୍ଚ୍ଚ କରନ୍ତୁ। ସର୍ବଦା ଅଭାବଗ୍ରସ୍ତ ମୋ' ପରି ଜଣେ ଲୋକ ଯେ ଧନୀ ବୋଲି ସେ ଅର୍ଥ ଦେଲା ତାହା ନୁହେଁ। ମୋରଖୁସି ମୋତେ ଶିଖାଇଲା ସୁଖ ବି ବଣ୍ଟା ଯାଇପାରେ, ଦୁଃଖ ଯେମିତି ବଣ୍ଟାଯାଏ।

ମୋର କବିତାର କେଇଟି ଧାଡ଼ି ଏଇଠି ଉତାରିଲେ ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ।

ଆଣ୍ଟ ଭୀମ ଗଦା ସଦାସର୍ବଦା କାଟୁ ଅରାତିର ଶୀର
ନେଇ ପାଶୁପାତ ସେନା ଶତଶତ ଛୁଟୁ ଆଜି ହାଜିପୀର, ଛୁଟୁ ଆଜି ମହାବୀର
ଜିଣିଛି ମରଣ ସତେ ସେ ମରଣ ବରିନାହିଁ ସତେ ବରିନାହିଁ।

ଜୀବନରେ ଆମେ ଅନେକ ଋଣରେ ଋଣୀ ହୋଇଥାଉଁ। ମାଆର ଋଣ, ମାଟିର ଋଣ, ରକତର ଋଣ ଏଇପରି ଅନେକ ଋଣର ବୋଝ ଆମ ଉପରେ। ଜୀବନକାଳ ଭିତରେ ଏ ଋଣସବୁ ଆମକୁ ସୁଝିବାକୁ ହେବ।

ମୋ' ପିଲା ବେଳର କଥାଟିଏ। ଆମ ଗାଁ ପିତାପାଲି ଗାଁର ଭୂୟାଁ ପଡ଼ାରେ ଶିବ ଭୂୟାଁ ବୋଲି ପିଲାଟିଏ ରହୁଥାଏ। ଏବେ ସେ ଭିଖମ୍ ପୁର୍‌ରେ। ଥରେ କେହି ଜଣେ ତା'ମାଁ ନାଁରେ ଏଣ୍ଟୁତେଣ୍ଟୁ କିଛି କହିଦେଲା। ସେ ଲୋକ୍‌ର ଗୋଟାଏ ହାତ ମୋଡ଼ି ଭାଙ୍ଗିଦେଲା ଶିବଭୂୟାଁ। ମୋ' ପରି ପୁଅ ଥାଉଁ ଥାଉଁ ମୋ' ମାଆକୁ ପୁଣି କା' ଜିଭରେ ହାଡ଼ଅଛି ଯେ କହିଦେବ ଅମୁକ ସମୁକ, ଚେଙ୍କି ବଗ? ଉପାଡ଼ି ଦେବି ନାଇଁ ତାର ହାତ? ଏ ଉଗ୍ରଭାବ ଭିତରେ ଆଉ ଯାହା ଥାଉକି ନଥାଉ ମା' ପାଇଁ ଦରଦଟିଏ, ମା' ପାଇଁ କର୍ତ୍ତବ୍ୟଟିଏ ଅଛି। ମାଟିବି ଆମର ମା'। ଏଇ ମାଟି ମା' ପାଇଁ ଏ ପ୍ରକାର କର୍ତ୍ତବ୍ୟ ସଭିଙ୍କଠୁଁ ଆଶା କରିବା ସ୍ୱାଭାବିକ।

ଏହା ଏକ ପ୍ରକାରର ପ୍ରେମ। ଦେଶପ୍ରେମ ବୋଲି ଆମେ କହିବା। ଦେଶପ୍ରେମ ଯା' ଭିତରେ ଥରେ ପଶିଛି, ସେ ମରଣକୁ ବି ଡ଼ରେନାହିଁ। ବତନ୍ ପାଇଁ ଆପଣାକୁ କୁର୍‌ବାନ କରିବାରେ ଦ୍ୱିଧା ନଥାଏ ତା'ର। ସୁନ୍ଦର ସାଏ, ଲକ୍ଷ୍ମୀବାଇ, ଭଗତ୍ ସିଂ, ସୁଭାଷ ବୋଷ, କାର୍ଗିଲର ସହୀଦ ସବୁ ଏହିପରି ନିଜର ମା' ମାଟି ପାଇଁ ଆପଣାକୁ କୁର୍‌ବାନ କରି ସାରିଛନ୍ତି। ଏପ୍ରେମ ଏକପ୍ରକାର ପୋକ। ଯାହା ପ୍ରେମୀକୁ କୋରି କୋରି ଖାଇଯାଏ। ଏଇ

ପ୍ରେମରେ ସେ ନିଜକୁ ନିଃଶେଷ କରିଦେବାରେ ପଛାଏ ନାହିଁ। ଆମ ଇତିହାସ ଏଭଳପକାର ଦେଶପ୍ରେମରେ ରସାଣିତ। ଏ ପ୍ରେମ ଯା'ର ନାହିଁ ତା'ର ଧମନୀରେ ରକତ ନାହିଁ। ଆଉକିଛି ଥାଇପାରେ। ଆମ ପରମାଣପୁର ହାଇସ୍କୁଲ ପିଲାଙ୍କ ରକତରେ ଏ ପ୍ରକାର ଦେଶପ୍ରେମର ଜୀବନ୍ୟାସ କରିବା ଥିଲା ମୋ' ସାରସ୍ୱତ ସାହିତ୍ୟ ଚର୍ଚ୍ଚାର ମୂଳବିନ୍ଦୁ।

ପିଲାଏ ପ୍ରଥମେ ନିଜକୁ ଚିହ୍ନିବେ। ଭିତରକୁ ଚାହିଁବାର ଦକ୍ଷତା ହାସଲ କରିବେ। ନିଜକୁ ଚିହ୍ନିଲେ ଚିହ୍ନିପାରିବେ ନିଜ ମା'କୁ, ନିଜ ମାଟିକୁ, ନିଜଭାଷାକୁ, ନିଜ ଧରମକୁ, ସର୍ବୋପରି ନିଜ କରମକୁ। ଯା' ଭିତରେ ଦେଶପ୍ରେମ ଇନ୍‌ଜେକ୍‌ସନ ପୋଡ଼ିଲା ପରି ଫୋଡ଼ା ହୋଇଛି ସେ କଦାପି କୁତ୍ରାପି କୌଣସି ଅପକର୍ମ କରିପାରିବ ନାହିଁ।

ପିଲାଟିଏ ବସିଥାଏ। ଅନେଇଁଥାଏ, କେହିଜଣେ ଆସିବ। ହେଲେ କାହିଁ? ସେତ ଆସୁନାହିଁ। "ତୁ ଅନେଇଛୁ କିଆଁ? ବସିଛୁ ଏଠି କିଆଁ? ହୁଏତ ସେ ଆସିବନି।" ସେ କହିଲା ନିଶ୍ଚୟ ଆସିବେ। ମୋ' ମା' ମିଛ କହନ୍ତି ନାହିଁ। ମୁଁ ତୋତେ ଛାଡ଼ି କୁଆଡ଼େ ଯିବି ନାହିଁରେ, ବାପ। ମା'ର କଥାରେ ଶହେକୁ ଶହେ ପ୍ରତ୍ୟୟ ପିଲାଟିର। ଲୋକେ କହୁଛନ୍ତି ମୋ' ମା' ଏଇବାଟେ ଯାଇଛି। ସେ ନିଶ୍ଚୟ ଆସିବ। "ଥରେ ଗଲେ, ଆଉ କେହି ଆସେ ନାଇଁରେ, ବାୟା" ମୁଁ କହିଲି ପିଲାଟିକୁ। ପିଲାଟି ମୋତେ ଓଲଟା ପ୍ରଶ୍ନକଲା "ଆପଣ କେବେ ମିଛ କହନ୍ତି?" ମୁଁ କହିଲି "ନା", ତାହେଲେ ମୋ' ମା' ମିଛ କହିବେ କାହିଁକି? ସେ ମୋତେ କହିଛନ୍ତି, "ମୋତେ ଛାଡ଼ି କୁଆଡ଼େ ଯିବେ ନାଇଁ।" ପିଲାର ଏ ଅତୁଟ ବିଶ୍ୱାସରେ ମା' ସଦା ଜୀବିତ। ଏ ପ୍ରକାର ପ୍ରେମର ଜନ୍ମ ହେଉ। ଏ ପ୍ରେମ, ଦେଶପ୍ରେମ, ମାଟିପ୍ରେମ, ମା-ପ୍ରେମ ସଭିଙ୍କ ଅନ୍ତରରେ ରୁଗୁଡ଼ା ଫୁଟିବା ପରି ଫୁଟୁଥାଉ।



# ୭୭. ଚହଲା ପାଣିର ଢେଉ

ପ୍ରଥମ ଆଦିମ ମଣିଷ ଆପଣାର ସନ୍ତାନକୁ ଶିକ୍ଷା ଦେବାରେ କି ପ୍ରକାର ମାନସିକ ବୋଝ ଅନୁଭବ କରିଥିବ ଆଜି ଆମେ ଏ ଯୁଗରେ ସହଜରେ ଅନୁମାନ କରି ପାରିବା ନାହିଁ। ଭାରତରେ ବିଟ୍ରିଶ ଶିକ୍ଷାର ଢ଼ାଂଚା ଆରୋପିତ ହେବା ପୂର୍ବରୁ ଲୋକେ ଆପଣା ସନ୍ତାନର ଶିକ୍ଷାପାଇଁ ଉଦ୍ୟମ ଆରମ୍ଭ କରିଥିଲେ। ମଫସଲରେ ମାଟି ଅବଧାନମାନେ ପିଲାଙ୍କୁ ବର୍ଣ୍ଣ ପରିଚୟ, ଗଣିତ, ସାହିତ୍ୟ ତଥା ଭାଗବତ ପୁରାଣ ଖଣ୍ଡେ ପଢ଼ି ପାରିବା ଯୋଗ୍ୟ କରି ଉତାରୁଥିଲେ। ଭାଗବତ ଅଧାଏ ଗାଇ ଜାଣିଲେ ଲୋକେ ତାକୁ ପାଠୁଆ ବୋଲି ମାନି ନଉଥିଲେ। ରାଜାଙ୍କ ବା ପ୍ରଶାସନର ହୁକୁମ୍‌ରେ ଯତ୍ କିଞ୍ଚିତ୍ ଶିକ୍ଷାର ବ୍ୟବସ୍ଥା ଥିଲା। ସେଇ ସାମନ୍ୟତମ ଶିକ୍ଷା ବ୍ୟବସ୍ଥାରେ ଧର୍ମୀୟ ଅନୁଷ୍ଠାନ ମାନଙ୍କର ଅନୁପ୍ରେରଣା ଯୋର୍‌ଦାର ଥିଲା।

ଗୋରା ଶାସନରେ ସ୍ଥାନୀୟ ଲୋକେ ଶିକ୍ଷା ସ୍ୱାସ୍ଥ୍ୟପାଇଁ ଯେତେବେଳେ ଦାବି

କଲେ, ଗୋରା ଶାସନ କହିଲା ତମ ଶିକ୍ଷା ସ୍ୱାସ୍ଥ୍ୟ କଥା ତମେ ବୁଝ। ଆମେ ନମୁନା ସ୍କୁଲଟିଏ ବସାଇଦେବୁ। ସେଇପରି ଆଉଆଉ ଅନୁଷ୍ଠାନ ତମେ ଗଢ଼। ଆମେ ଯାହା ପାରିବୁ ସାହାଯ୍ୟ କରିବୁ। ମେକ୍‌ଲେ ସାହେବ କହିଲେ ଆମେ ଭାରତୀୟ ଶରୀରରେ ଇଂରେଜୀ ମାନସିକତାର ମଣିଷ ତିଆରି କରିବୁ। ଯେଉଁମାନେ କି ଇଂରେଜ ମାନଙ୍କର ବୋଲକରା ହୋଇ ଭାରତ ଶାସନ କରିବେ। ଏଇଠୁ ସେଇ ବିଷ ମଞ୍ଜିଟି ଗଜୁରିବା ଆରମ୍ଭ କଲା। ଏଇ ଉପର ଥାକର ଭାରତୀୟ ମାନେ ତଳ ଥାକର ଭାରତୀୟ ମାନଙ୍କୁ ପୋକମାଛି ପରି ମଣୁଥିଲେ। ଖୋଦ୍ ମହର୍ଷି ଅରବିନ୍ଦଙ୍କ ବାପା ଉପରଥାକର ମଣିଷଟିଏ ଥାଇ ଅରବିନ୍ଦଙ୍କୁ ଏଠି ମ୍ଳେଚ୍ଛ ଭାରତୀୟଙ୍କ ସହ ଶିକ୍ଷା ଦବାକୁ ନାରାଜଥିଲେ। ଏଣୁ ସାତ ବର୍ଷର ସାନପୁଅକୁ ବିଲାତ ପଠାଇ ଦେଲେ। କାଳେ ମ୍ଳେଚ୍ଛ ଭାରତୀୟଙ୍କ ଛାଇ ପଡ଼ିଯିବ। ହେଲେ ବିଡ଼ମ୍ବନା ଏଇ କି ଯେ ସେଇ ଗୋରା ଶିକ୍ଷାରେ ଗୁରୁ ହୋଇ ଭାରତୀୟ ଆତ୍ମାର ଏକ ନୂତନ ସ୍ପନ୍ଦନ ପାଲଟିଗଲେ। ମ୍ଳେଚ୍ଛ ଭାରତୀୟଙ୍କ ଆତ୍ମ ମୁକ୍ତିର ବଡ଼ ସହାୟକ ଓ ପଥ ପ୍ରଦର୍ଶକ ହୋଇଗଲେ!

ସ୍ୱାଧୀନତା ପ୍ରାପ୍ତିପରେ ଭାରତରେ ଶିକ୍ଷାର ପ୍ରସାର ପାଇଁ ଲୋକଙ୍କ ମଧ୍ୟରେ ଅଦ୍ଭୁତ ଉନ୍ମାଦନା ଖେଳିଗଲା। ସେଇ ନବୀନ ଉନ୍ମାଦନା ଆମ ପରମାଣପୁରରେ ମଧ୍ୟ ଅନୁଭୂତ ହେଲା। ସେତେବେଳେ ପରମାଣପୁରରେ ଏକମାତ୍ର ମେଟ୍ରିକ ପାସ୍ ବ୍ୟକ୍ତିଥିଲେ ଶ୍ରୀ ଚକ୍ରଧର ମିଶ୍ର। ପରମାଣପୁର ମାଫିଦାର ଗୌନ୍ତିଆ ମିଶ୍ର ପରିବାରର ପ୍ରଚେଷ୍ଟାରେ ୨୦.୧.୧୯୦୯ରେ ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହେଲା। ପ୍ରାୟ ନବେ ବର୍ଷ ଆଗରୁ ସାମାନ୍ୟ ଶିକ୍ଷା ବ୍ୟବସ୍ଥା କରିବାରେ ପରମାଣପୁର ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା। ଚକ୍ରଧର ମିଶ୍ରଙ୍କର ଜ୍ଞାନ, ଦୂରଦୃଷ୍ଟି, ବିଚକ୍ଷଣତା ଓ ନିଷ୍ଠା ଯୋଗୁଁ ଲୋକେ ତାଙ୍କୁ ପଣ୍ଡିତ ବୋଲି ମାନୁଥିଲେ। ଆଜିକାଲି ପଣ୍ଡିତ ଶବ୍ଦଟି ବିଦ୍ରୂପ ସୂଚକ ହେଲାଣି। ୧୯୪୭-୪୮ ବେଳକୁ ପରମାଣପୁରରେ ମଧ୍ୟ ଇଂରାଜୀ ବିଦ୍ୟାଳୟଟିଏ ସ୍ଥାପନ କରିବାକୁ ଉଦ୍ୟମ ଆରମ୍ଭ ହୋଇଗଲା। ଏହା ପୂର୍ବରୁ ରଂପେଲାରେ ମାଇନର ସ୍କୁଲଟିଏ ଥିଲା। ୧୯୧୮ରେ ଝାରସୁଗୁଡ଼ା ମନମୋହନ ଏମ୍.ଇ. ସ୍କୁଲ ଆରମ୍ଭ ହେଲା। ୧୭.୨.୧୯୪୮ ମି:ଇ: ସ୍କୁଲ ପରମାଣପୁର ଠାରେ ଧାରାବାହିକ କାର୍ଯ୍ୟ ଆରମ୍ଭ କଲା। ସରକାରୀ ସ୍ୱୀକୃତି ମଧ୍ୟ ପାଇଲା। ବଙ୍ଗ ଭଙ୍ଗ ପରେ ୧୯୧୫ରେ ଲୋକାଲ୍ ବୋର୍ଡ଼ ଓ ଜିଲ୍ଲା ବୋର୍ଡ଼ ଗଠନର ଆଇନ ପ୍ରଚଳିତ ହେଲା। ସେତେବେଳେ ଚକ୍ରଧର ମିଶ୍ର ଜିଲ୍ଲାବୋର୍ଡ଼ର ସଭ୍ୟଥିଲେ। ମି:ଇ: ସ୍କୁଲ ଘରୋଇ ଭାବେ ଚାଲୁଥିବା ବେଳେ ତବଲାର ବିଶ୍ୱନାଥ ପୁଝାରୀ ପିଲାଙ୍କୁ ପାଠ ପଢ଼ାଉଥିଲେ। ହେଲେ ୨୫.୮.୧୯୪୯ ରେ ଦାମୋଦର ମି:ଇ: ସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ଲକ୍ଷପତି ବିଶ୍ୱାଳ। ଆଜି ସେଇ ଅନୁଷ୍ଠାନଟି ସରକାରୀ। ମୋର ଜଣେ ଛାତ୍ର ଶ୍ରୀ ତ୍ରିଲୋଚନ ସାହୁ ସେଇ ଅନୁଷ୍ଠାନର ପ୍ରଧାନ ଶିକ୍ଷକ ହେବାର ଗୌରବ ଲାଭ କରିଛନ୍ତି। ଏଇ ଅନୁଷ୍ଠାନର ପ୍ରତିଷ୍ଠା ଓ ବିକାଶ ଦିଗରେ ଚକ୍ରଧର ମିଶ୍ରଙ୍କ ଅବଦାନ ସ୍ମରଣୀୟ।

୧୯୫୮ -୫୯ ବେଳକୁ ପରମାଣପୁରରେ ଗୋଟାଏ ହାଇସ୍କୁଲ ଖୋଲିବାର ଆବଶ୍ୟକତା ଅନୁଭୂତ ହେଲା। ଏପଟେ ସମ୍ବଲପୁର ଓ ସେ ପଟେ ଝାରସୁଗୁଡ଼ା ଛଡ଼ା ଆଉ କଉଠି ହାଇସ୍କୁଲ ନଥିଲା। ସହରୀ ହାଇସ୍କୁଲରେ ଛାତ୍ରାବାସର ସୁବିଧା ନଥିବାରୁ ପିଲାଏ ପ୍ରାୟ ଲରମ୍ଭା ଆବାସିକ ବିଦ୍ୟାଳୟକୁ ଯାଉଥିଲେ। ପରମାଣପୁରର ବେଣୁଧର ଦାସ, କୈଳାସ ବାରିକ, ରଘୁନାଥ ପ୍ରଧାନ, ଭବାନୀ ବିଶ୍ୱାଳ, ଗଜରାଜ ବାରିକ, ଭିଖମ୍ପୁର୍‌ର ଲମ୍ବୋଦର ବେହରା ପ୍ରମୁଖ ଲରମ୍ଭାରେ ପଢୁଥିଲେ।

୧୯୬୦ରେ ପରମାଣପୁର ହାଇସ୍କୁଲ ପ୍ରତିଷ୍ଠିତ ହେଲା। ଏହାର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ବିଦ୍ୟୁତ କୁମାର ପ୍ରମାଣିକ। ପରେ ସେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦେଲେ। ଏବେ ସେ ଖ୍ରୀଷ୍ଟଧର୍ମାବଲମ୍ବୀ ମାନଙ୍କର ଜଣେ ପ୍ରବୀଣ ପୁରୁଷ। ପରମାଣପୁର ହାଇସ୍କୁଲ ପ୍ରତିଷ୍ଠା ଓ ବିକାଶରେ ଚକ୍ରଧର ମିଶ୍ର, ଆର୍ତ୍ତତ୍ରାଣ ବାରିକ, ବାବାଜୀନାଥ, ବ୍ରଜମୋହନ ବାରିକ, ଭଗବାନ ପ୍ରଧାନ, ଉଗ୍ରସେନ ପଧାନ, ଦୁର୍ଗାମାଧବ ପୁରୋହିତ, ତେଜରାମ ବେହେରା, ଛବିଳ ମେହେର, ବୃନ୍ଦାବନ ସାହୁ, ଚିରଞ୍ଜିଲାଲ ଅଗ୍ରବାଲା, ଅର୍ଜୁନ ବେହେରା, ଭାଗିରଥୀ ନାଥ ଆଦିଙ୍କ ଉଦ୍ୟମ ପ୍ରଶଂସନୀୟ।

୧୯୭୦ ବେଳକୁ ଚାକିରି ଆଉ ମିଳିଲାନି। ଏଣେ ପିଲାଏ ଅନୁଷ୍ଠାନ ମାନଙ୍କରୁ ବେଶୀ ସଂଖ୍ୟାରେ ଶିଳ୍ପ ଉତ୍‌ପାଦନ ପରି ବାହାରିଲେ। ଫଳରେ ପିଲାଙ୍କୁ ଚାକିରି ଦବାର ନୂଆ କୌଶଳ ବାହାରିଲା। ଶିକ୍ଷାନୁଷ୍ଠାନଟିଏ ଖୋଲିବା ନେତାଙ୍କର ଏକ ସୌକ। ସେ ସୌକ ବ୍ୟବସାୟରେ ପରିଣତ ହେଲା। ସ୍ଥାନୀୟ ନେତାଏ ପିଲାଙ୍କଠୁ ମୋଟା ରକମରେ ଅସୁଲ କରି ଅନୁଷ୍ଠାନ ଖୋଲିଲେ। ମାଇନର ସ୍କୁଲ ଥିବା ଜାଗାରେ ହାଇସ୍କୁଲ। ହାଇସ୍କୁଲ ଥିବା ଜାଗାରେ ବାଳିକା ହାଇସ୍କୁଲ, କଲେଜ, ଉଇମେନ କଲେଜ ଏପରି ଏପରି ହଜାର ହଜାର ଅନୁଷ୍ଠାନ ଖୋଲିଲା। ସାଧାରଣ, ଶିକ୍ଷା ପାଇଥିବା ପିଲାଏ ପଶିଲେ। ଯା'ର ପଏସା ତା'ର ଭରସା ନ୍ୟାୟରେ ଧନୀ ପିଲାଏ ମୋଟା ରକମର ଚାନ୍ଦା ଦେଇ ଚାକିରି କଲେ।

ଏପ୍ରକାର ଏକ ସୁବିଧାଜନକ, ନିରାପଦ ବ୍ୟବସାୟର ବାଟ ଫିଟିଗଲା। ଛତୁ ଫୁଟିବା ପରି ଶିକ୍ଷାନୁଷ୍ଠାନ ମାନ ଗଢ଼ି ଉଠିଲା। ଯାହାକି ପରବର୍ତ୍ତୀ ସରକାର ପାଇଁ ଏକ ମୁଣ୍ଡବ୍ୟଥା।

ଏ ପ୍ରକାର ପ୍ରଖର ହାୱାରୁ ଆମ ପରମାଣପୁର ଅଲଗା ରହନ୍ତା କପରି? ବହୁ ସନ୍ତାନ ଥିବା ପରିବାରକୁ ଯେପରି ଆଉ ଅଧିକ ସନ୍ତାନ ଅବାଞ୍ଛିତ ଠିକ୍ ସେପରି ଏ ଅବାଞ୍ଛିତ ଅନୁଷ୍ଠାନ୍ ମାନ ସମସ୍ତଙ୍କ ପାଇଁ ମୁଣ୍ଡ ଦୁଃଖା ହୋଇ ରହିବ। ଚ଼ହଲା ପାଣିରେ ଢେଉ ଉଠିଲେ ଚାରି ଆଡ଼କୁ ମାଡ଼ିଯାଏ। ଏ ଢେଉରେ ନଥାଏ ପ୍ରଖରତା। ଥାଏ ପ୍ରସାରଣର ପ୍ରଲେପ। ଯେ କୌଣସି ଅବ୍ୟବସ୍ଥା ସାଧାରଣ ବ୍ୟବସ୍ଥାକୁ ବିଘ୍ନିତ କରେ। ଏସବୁ ସତ୍ତ୍ୱେ ପରମାଣପୁର ଶିକ୍ଷା ପ୍ରସାର ଓ ବିକାଶ ଅନ୍ୟମାନଙ୍କ ପାଇଁ ନମୁନା ହେଉ।



# ୭୮. ବିନାଶ କାଳେ ବିପରୀତ ବୁଦ୍ଧି

ପୃଥିବୀର ସବୁଠୁ ଦୀର୍ଘତମ ବନ୍ଧ ହୀରାକୁଦ ବନ୍ଧ। ଭାରତର ସବୁଠି ବଡ଼ ବନ୍ଧ ଓ ଜଳଭଣ୍ଡାର। ୧୯୫୬ରେ ତିଆରି ଶେଷ ହୋଇଛି। ବୃହତ ଶିଳ୍ପ ପାଇଁ ବାଟ ଫିଟାଇଛି। ହୀରାକୁଦ ବନ୍ଧର କିଛି ବୈଶିଷ୍ଟ୍ୟ

୧.ଜଳଭଣ୍ଡାର ର ଜଳପତ୍ତନ –୬୩୦ ଫୁଟ୍, ୨. ଜଳ ଧାରଣର କ୍ଷମତା ୬୬୦ ମିଲିଅନ ଏକରଫୁଟ୍, ୩. ମୁଖ୍ୟବନ୍ଧର ଲମ୍ବ ୧୫,୭୪୮ ଫୁଟ୍, ୪. ମାଟି ବନ୍ଧର ଲମ୍ବ ୧୧,୯୮୦ ଫୁଟ୍, ୫. ଦକ୍ଷିଣ ହିଡ଼ ୩୫,୫୦୦ ଫୁଟ୍, ୬. ବାମ ହିଡ଼ ୩୨,୨୨୫ ଫୁଟ୍ ୭. ସର୍ବୋଚ୍ଚ ଉଚ୍ଚତା ୨୦୦ ଫୁଟ୍, ୮ ଜଳସେଚିତ ଏରିଆ ୨୫, ୩୯୦୯୪ ଏକର।

୨୯.୧୦. ୧୯୫୫ରେ ସ୍ୱାକ୍ଷରିତ ବନ୍ଧ ଯୋଜନାର ଚିଫ୍ ଇଂଜିନିଅରଙ୍କ ବିବରଣୀର ଏତକ ଅଂଶ ବିଶେଷ। ଏ ଆଲୋଚକ ୪.୧୧.୫୬ ତାରିଖ ପ୍ରଜାତନ୍ତ୍ରର ଜଣେ ସାମ୍ବାଦିକ ଭାବେ ତତ୍‌କାଳୀନ ଭାରତର ପ୍ରଧାନମନ୍ତ୍ରୀଙ୍କ ଉଦ୍‌ଘାଟନୀ ଉତ୍ସବରେ ଯୋଗ ଦେଇଥିଲା।

ଈଶ୍ୱର ସୃଷ୍ଟିରେ ତାଙ୍କ ସୃଷ୍ଟ ପ୍ରାଣୀ ମାନଙ୍କ ଜୀବନ ଧାରଣ ପାଇଁ ସବୁ ଆବଶ୍ୟକତାକୁ ସେ ଠିକ୍‌ଠାକ୍ ଜାଗାରେ ଥୋଇଥାନ୍ତି। ଯେମିତି ପ୍ରତି ମୁହୂର୍ତ୍ତରେ ଦରକାର କରୁଥିବା ପବନକୁ ନାକ ପାଖେ ଥୋଇଛନ୍ତି। ମଣିଷ ଆପଣାକୁ ସବୁ ପ୍ରାଣୀଠୁ ବେଶୀ ଚତୁର ଭାବି ଈଶ୍ୱର ସୃଷ୍ଟ ବ୍ୟବସ୍ଥାକୁ ଇତସ୍ତତ କରୁଛି। ସବୁ ସ୍ୱାଭାବିକତା ଉପରେ ଅସ୍ୱାଭାବିକ ବିନ୍ୟାସମାନ କରୁଛି। ଯେମିତି ବହୁଥିବା ନଦୀକୁ ଅଟକାଉଛି। ଫଳରେ ନଦୀ ତା'ର ତୋଡ଼ ଦେଖାଇବାକୁ ବାଧ। ଆପଣାର ସାମୟିକ ଆବଶ୍ୟକତାରେ ସେ ଅନ୍ଧ ହୋଇ ଗତ ଓ ଅନାଗତକୁ ନଜର ଦେଉନାହିଁ। ଫଳରେ ବର୍ତ୍ତମାନ ସର୍ବସ୍ୱ ହୋଇ ଆପଣାର ବିନାଶ ଆଡ଼କୁ ଟାଣି ନେଉଛି। ଏବେ ଆମେ ଏଠି ସେଠି ସବୁଠି ପରିବେଶ ନେଇ ବିବ୍ରତ। ଲୋକେ କହିବା ଆରମ୍ଭ କଲେଣି ପ୍ରଦୁଷଣକୁ ନ ରୋକିଲେ ଦୁନିଆଁ ଭାସିଯିବ। ବିକାଶ କରିବୁ ବୋଲି ପ୍ରକୃତିକୁ ଉଜାଡିଲା ମଣିଷ। ଚତୁର ହୋଇ ସୁଖ ପାଇବି ବୋଲି ଗୋଟିଏ ଜାଗାରେ ଠୁଳ ହେଲା। ଗାଁ ଉଜାଡ଼ି ସହର ଗଢିଲା। ଏବେ ହୁରି କଲାଣି ଗାଁକୁ ଚାଲ। ଗାଁଥି ଆଉ ଅଛି କଣ? ଗାଁ ର ବଣକୁ ଉଜାଡ଼ିଲା। ପାହାଡ଼ର ପଥର ଫଟାଇ ସହରକୁ ନେଲା। ନଈ ବାଲିବି ରଖି ଦେଲାନାଇଁ। ଗାଁ ଆଉ ଗାଁ ହୋଇ ରହିନାହିଁ। ବିକାଶ ନାଁରେ ବିନାଶ ଆଡ଼କୁ ମୁହେଁଇଛି। ଗାଁ ମଶାଣି ପାଲଟି ଗଲାଣି। ସୁଖସବୁ ଗୋଟା ଗିଳି ଦବାକୁ ବସିଛି। ଚତୁର ମଣିଷ ଏବେ ହାଏ ହାଏ କଲାଣି। ସମ୍ଭାଳ ହେ ସମ୍ଭାଳ। ଏବେ ସେ ନାନା ଅନୁଷ୍ଠାନ ଗଢ଼ି ପରବେଶ ସୁରକ୍ଷା ପାଇଁ ହୁରି ଛାଡ଼ିଲାଣି।

ନିକଟରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମଶାଳାଟିଏ ବସିଥିଲା। ପରିବେଶବିତ୍

ଡ଼: ଆର୍ତ୍ତବନ୍ଧୁ ମିଶ୍ର ଘୋଷଣା କଲେ ହୀରାକୁଦ ବନ୍ଧ ପଶ୍ଚିମାଞ୍ଚଳ ପାଇଁ ଅଭିଶାପ! ଏ ଅଞ୍ଚଳର ଜନସାଧାରଣ ଏ ଅଞ୍ଚଳର କୁପରିଣାମ ଭୋଗି ଆସୁଛନ୍ତି। ହୀରାକୁଦ ବନ୍ଧ ବଲାଙ୍ଗୀର ଜିଲ୍ଲାକୁ ମରୁଡ଼ି ଗ୍ରସ୍ତ କରିବାରେ ଦାୟି। ହୀରାକୁଦ ବନ୍ଧର ସୁଫଳ ଏ ଅଞ୍ଚଳବାସୀଙ୍କୁ କାଣିଚାଏ ବି ମିଳିନାହିଁ। ସେ ମହାଶୟ ଅଧିକ ଆଗକୁ ଯାଇ କହନ୍ତି ଜମି ଗୁଡ଼ିକ ପୁଷ୍ଟ ହେବ କଣ? ସୁନା ଫସଲ ଦେବ କଣ? ମାଟି ସବୁଦିନ ପାଇଁ ବନ୍ଧ୍ୟା ହୋଇଯିବ। ହୀରାକୁଦ ବୁଡ଼ି ଅଞ୍ଚଳରେ ଶହଶହ କିସମର ଧାନଥିଲା। ସେସବୁ ପଞ୍ଚଲା ଦଶଲା ହାରରେ ହେଉଥିଲା। ଏବକାର ବେଶୀ ଉତ୍ପାଦନକ୍ଷମ ବିହନ ମାନଙ୍କ ଠୁଁ ବି ବେଶୀ ଆଦାୟ ଦଉଥିଲା। ଗୁରୁଶିଳ୍ପ ଓଡ଼ିଶା ପାଇଁ ଅନାବଶ୍ୟକ ବୋଲି ସେ ମହାଶୟ ଚେତାବନି ଶୁଣେଇଛନ୍ତି।

ହୀରାକୁଦ ବନ୍ଧ ଯୋଜନା ଆରମ୍ଭ ହେବା ବେଳକୁ ପୁରୁଣା ଚାଷୀ, ଇଞ୍ଜିନିଅର ରଙ୍ଗିଆ ଓ ଆଉ କେତେକ ଲୋକ ଚେତାବନି ଶୁଣାଇଥିଲେ। ହୀରାକୁଦ ବନ୍ଧ ଆଉ ଯାହା କରୁକି ନକରୁ ମହାନଦୀ ଓ ଇବନଦୀର ଅବବାହିକାରେ ଅବସ୍ଥିତ ଏକ ଉର୍ବର ଅଞ୍ଚଳକୁ ମରୁଭୂମିରେ ପରିଣତ କରିବ ବୋଲି ଚେତାବନି ଶୁଣାଇଥିଲେ। ମାତ୍ର ସେବେଳର ସରକାର ଓ ଅପରିଣାମଦର୍ଶୀ ପ୍ରଶାସନ କାହାରି କଥା ଶୁଣିଲା ନାହିଁ। ଆଜି 'ଗଲାଗଲା' ବୋଲି ହୁରି ଛାଡ଼ିଲେ ଶୁଣିବ କିଏ?

ଆଜି ଆମ ବଣରୁ ଗଛ ସରିଲାଣି। ନଈରୁ ବାଲି ଉଣା ହେଲାଣି। ସହର ତାର କଙ୍କ୍ରିଟ୍ ଜଙ୍ଗଲ ବଢାଇବାରେ ବ୍ୟସ୍ତ। ସହରର ସୁଖ ଚାଖିବାକୁ ପ୍ରକୃତିକୁ ଛାରଖାର କଲାଣି ମଣିଷ। ଆଜି ମାଟି ପ୍ରଦୂଷଣ, ଜଳ ପ୍ରଦୂଷଣ ପବନ ପ୍ରଦୂଷଣ, ଆକାଶ ପ୍ରଦୂଷଣ ଏପରିକି ପଞ୍ଚଭୂତ ପ୍ରଦୂଷିତ ହୋଇଗଲାଣି। ଆମେ ମାର୍ଚ୍ଚ ପହିଲାରୁ ଖରାମାଡ଼ି ଆଇଲା ବୋଲି ଆତଙ୍କିତ। ଜନସଂଖ୍ୟା ତା ବାଟରେ ବଢୁଛି। ଦିନ ଆସିବ ଠିଆ ହବାକୁ ଜାଗା ମିଳିବନି।

ହୀରାକୁଦ ବନ୍ଧ ଯୋଜନାର ଆରମ୍ଭକାଳେ ଜଳସେଚନ, ବିଦ୍ୟୁତ ଉତ୍ପାଦନ, ବନ୍ୟା ନିୟନ୍ତ୍ରଣ, ମାଛଚାଷ ଓ ଶିଳ୍ପର ଅଭିବୃଦ୍ଧି ପାଇଁ ଲକ୍ଷ୍ୟ ରହିଥିଲା। ମାତ୍ର ଏ ସବୁ ଦିଗରେ ହୀରାକୁଦ ବନ୍ଧ କାମକୁ ଆସିଲା ନାହିଁ। ଜଳସେଚନ ଯେତିକି ଜାଗାକୁ ଦେବା କଥା ଦେଇପାରି ନାହିଁ। ବିଜୁଳି ଉତ୍ପାଦନ ସେମିତି ଆଖିଦୃଶିଆ କାମ କରି ନ ପାରିବାରୁ ଶିଳ୍ପାନୁଷ୍ଠାନ ନିଜନିଜ ବିଦ୍ୟୁତ ଉତ୍ପାଦନ କାମ ଆରମ୍ଭ କଲେଣି। ହୀରାକୁଦ ସହରରେ ଥାଇ ଖୋଦ୍ ଇଣ୍ଡାଲ କମ୍ପାନୀ ଆପଣାର ବିଦ୍ୟୁତ ଚାହିଦା ଆପେ ପୂରାଉଛି। ଜଳ ବିଦ୍ୟୁତ ଉତ୍ପାଦନର ଅନିଶ୍ଚିତତାରେ ଅତିଷ୍ଠ ହୋଇ ଏବେ ତାପଜ ଆଡ଼କୁ ଢଳିଲାଣି। ବନ୍ୟା ନିୟନ୍ତ୍ରଣ କଣ କରିବ ହୀରାକୁଦ ଜଳ ଭଣ୍ଡାରର ଜଳ ନିଷ୍କାସନ ଅଧିକ ବନ୍ୟା ସୃଷ୍ଟି କରୁଛି। ମାଛ ଚାଷ ଯଦି ଫିସରି ବନ୍ଧ କଟାଁରେ ହୋଇ ପାରୁଛି ତେବେ ମାଛ ଚାଷ ପାଇଁ

ହୀରାକୁଦ ଜଳଭଣ୍ଡାରର ବ୍ୟୟଭାର ସମ୍ଭାଳିବ କିଏ? ଗୁରୁ ଶିଳ୍ପକୁ ବୈଜ୍ଞାନିକ ମାନେ ମନା କରୁଥିବାରୁ ଶିଳ୍ପ ବିକାଶ ପାଇଁ ହୀରାକୁଦ ବନ୍ଧର ଆବଶ୍ୟକତା ଏକ ପ୍ରଶ୍ନବାଚୀ। ଏକ କଥାରେ ହୀରାକୁଦ ବହୁମୁଖୀ ଯୋଜନା ଏକମୁଖୀ ବି ହୋଇ ପାରିଲା ନାହିଁ।

ଏ ଯୋଜନାଟି ବିଫଳ ହୋଇଗଲା। ଝିଣ୍ଟିକାକୁ ମାରି ବଣି ପୋଷିବା ଯାହା ଛ'ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା ଦବା ତାହା, ହୀରାକୁଦ ବନ୍ଧ ଯୋଜନା ଡ଼: ଆର୍ତ୍ତବନ୍ଧୁ ମିଶ୍ରଙ୍କ ଚେତାବନି ଅନୁସାରେ ଏକ ଅଭିଶାପ। ତଥାପି ହୀରାକୁଦ ବନ୍ଧର ମହାଗ୍ରାସରୁ ଏ ଅଞ୍ଚଳକୁ ରକ୍ଷା କରିପାରିଲେ ନାହିଁ କେହି।

ଏଠିମୋର ଏକ ପରାମର୍ଶ। ଏଣିକି କୌଣସି ସରକାରକୁ ହୀରାକୁଦ ବନ୍ଧ ଭଳି ଯୋଜନା କରିବାର ଦୁର୍ବୁଦ୍ଧି ନ ଆସୁ। ଫି ଗାଁ ପାଖରେ ନାଳଟାଏ କି ଯୋରଟାଏ ଅଛି। ସେ ନଈ ନାଳର ପାଣିକୁ ସେଇ ଗାଁର ଢ଼ିପ ଜମିକୁ ଉଠାଇ ପାରିଲେ ହେଲା। ଛୋଟ ଛୋଟ ସୁବିଧାମାନ କରି ଫସଲ ଉତାରିବା ଭଲ। ଈଶ୍ୱର ସୃଷ୍ଟି ସେଇ ସ୍ୱାଭାବିକତାରେ ଚତୁର ମଣିଷ ତାର ଚାତୁରି ଆଉ ଦେଖାଉନା। ମଙ୍ଗଳମୟ ତାଙ୍କ ସୃଷ୍ଟିର ମଙ୍ଗଳ କରନ୍ତୁ।



# ୭୯. ଘିଚା ଲଡ଼ବଡ଼ ପିଟାଟାନ୍

୧୯୯୫ ମଇ ଏକତ୍ରିଶ ତାରଖରେ ମୁଁ ମୋ ଶିକ୍ଷକ ଚାକିରୀରୁ ଅବସର ନେଲି। ଘରେ ଗହଞ୍ଚିବା ପରେ ମୋ ମଝିଆଁ ପୁଅ ତା' ମାଆକୁ କହିଲା, "ବାପା ପ୍ରାୟ ଚାଳିଶ ବର୍ଷକାଳ ଚାକିରି କଲେ। ସେ କୁଆଡ଼େ ଜଣେ ମୁକୁଟ ବନ୍ଧା ଶିକ୍ଷକ! ଏବେ ଚାକିରିଆ ପିଅନଟିଏ କୋଠା ପିଟୁଛି ସହରରେ। ହେଲେ ବାପା ତାଙ୍କ ବାପ ଅମଳର ଖପୁରିଲା ଘରକୁ ବି ବଦଳାଇ ପାରିଲେନି।"

ପୁଅ କଥା ଭିତରେ ଆଉ ଯାହା ଥାଉ କି ନଥାଉ ଏତକ ନିଶ୍ଚୟ ଅଛି ଯେ ବାପା ପୁଅମାନଙ୍କ ପାଇଁ ମୋଟା ରକମର କିଛି ସାଇତି ରଖିବା କଥା। ବଙ୍ଗଳା, ବେଙ୍କ ବେଲେନ୍ସ ଓ ବହୁ ବ୍ୟବହାରିକ ଜିନିଷ ପତ୍ର ରଖିଦେଇଥିବା କଥା। ଏ ଯୁଗରେ ଯେ ଏତକ ନକରି ପାରିଲା, ସେ କି ଚାକିରିଆ! ମୋ' ଅଜାମାନେ ପୁରୁଖାମାନେ, ତେପନ ଅଜାମାନେ କୁଆଡ଼େ କହୁଥିଲେ "ପୁଅ ସୁ ହେଲେ ଧନ କାହିଁପାଇଁ ସଞ୍ଚୁ? ପୁଅ କୁ ହେଲେ ଧନ କାହିଁପାଇଁ ସଞ୍ଚୁ? ଆପଣା ଗୋଡ଼ରେ ଠିଆହୋଇ ସଂସାର କରିବା ଠିକ୍। ଯିଏ ନିଜ ଶକ୍ତିରେ ଗର୍ବ କରିବା ଶିଖିନାଇଁ ତାକୁ ନେଇ ଗୋଟାଏ ଜାତି ଗର୍ବ କରିନପାରେ। ଆଉ କଣ ଥାଉକି ନଥାଉ ଏକ ମୃଦୁଗାଳି ରହିଛି ପୁଅର ସେ ବକ୍ତବ୍ୟରେ।

ଯା ଭିତରେ ଆମ ଜିଲ୍ଲାର ସଦର ମହକୁମାର ଏକ ଜିଲ୍ଲା ସ୍ତରୀୟ ଅଫିସରେ

ପହଞ୍ଚିଲି । ମୋ' ଗାଁର ପଂଝାଏ ଯୁବକ ମୋ ସହିତଥିଲେ । ଗାଁରେ ସେବାଶ୍ରମଟିଏ ଅଛି । ଜନ ମଙ୍ଗଳ ବିଭାଗ କୁଆଡ଼େ ଏମିତି ଅନୁଷ୍ଠାନର ମା' ବାପା ପାଞ୍ଚଟି ଶ୍ରେଣୀରେ ଜଣେ ଶିକ୍ଷକ । ମଫସଲିଆ ପିଲା କଉ ଘଡ଼ିଦେଖି ଆସନ୍ତି ଯେ । ସକାଳ ଆଠଟାରୁ ପିଲାଏ ସ୍କୁଲକୁ ଆସିବା ଆରମ୍ଭ କରିଦିଅନ୍ତି । ଦେଢ଼ଶହ ସରିକି ପିଲା ଏକାଠି ଠୁଳ ହେଲେ ଯାହାହୁଏ । ମରାମରି, ଠେଲାଠେଲି, ରଡ଼ାରଡ଼ିର ଏକ ଅସରନ୍ତି କୋଳାହୋଳରେ ହୁଲସ୍ଥୁଲ ହୁଏ ବିଦ୍ୟାଳୟଟି । ବେଳେବେଳେ ସାନ ମାନଙ୍କ ଏ କୋଳାହଳ ବଡ଼ମାନଙ୍କ ପର୍ଯ୍ୟନ୍ତ ପ୍ରସାରିତ ହୁଏ ।

ଗାଁରେ ଦଶ ପନ୍ଦର ଜଣ ପାଠୁଆ ପିଲା ଅଛନ୍ତି । ପା଼ନ ଦୋକାନ ଆଗରେ ମସ୍ତି କରନ୍ତି । ବିଲବାଡ଼ିକୁ ଯାଆନ୍ତେ ଭଲା । ବିଲବାଡ଼ିକୁ ଗଲେ କୁଆଡ଼େ ପାଠୁଆ ପିଲାଙ୍କ ମହତଯାଏ । ଏଇ ସେବାଶ୍ରମ ସାଙ୍ଗକୁ ଗାଁରେ ଅଙ୍ଗନବାଡ଼ି ଅଛି, ଶିଶୁ ମନ୍ଦିର ଅଛି, ବାଳିକା ସଂବୃଦ୍ଧି ଯୋଜନାର ଅନୁଷ୍ଠାନଟିଏ ଅଛି, ବିଡ଼ି ଶ୍ରମିକ ପିଲାଙ୍କ ପାଇଁ ସ୍କୁଲଟିଏ ଅଛି । ସାକ୍ଷରତା ପାଇଁ ପଂଝାଏ ଲାଗିଛନ୍ତି । ଶହେ ପାଞ୍ଚଟଙ୍କାରୁ ଆଠଶହ ଟଙ୍କା ପର୍ଯ୍ୟନ୍ତ ମଜୁରି ପାଉଥିବା ପ୍ରାୟ ପନ୍ଦର ଜଣ ପିଲା କାମ କରନ୍ତି । ଏମାନେ ଆଉ କଉ ଦୂର ଗାଁର ପିଲା । ଏତେ କମ୍ ମଜୁରିରେ ରୋଜରୋଜ ଆସନ୍ତି ନାହିଁ । ଆସିଲେବି ପୋଷେଇବ ନାହିଁ । ଏଣୁ ଏମାନେ ସପ୍ତାହକୁ ଥରେ ଅଧେ ଆସନ୍ତି । ମାତ୍ର କାଗଜ କଲମରେ ପ୍ରତିଦିନ ଆସନ୍ତି । ପଢ଼େଇବା ଲୋକ ରୋଜରୋଜ ଆସୁନଥିବାରୁ ପଢ଼ିବା ବାଲା ନିତିପ୍ରତି ଆସିବେ କିଆଁ? କୋଡ଼ିଏ କିଲୋମିଟର ଦୂରର ପିଲାଟିଏ ପାଞ୍ଚଶହ ଟଙ୍କାରେ ନିଯୁକ୍ତି ପାଇଛି କିଛି ଖରଚ଼କରି । ଏତେସବୁ ଅନୁଷ୍ଠାନ ଗାଁରେ ଥାଇବି ନଥିଲା ପରି । ଗାଁର ଯୁବକ ପିଲାଏ ଏସବୁ ଦେଖି ତାକୁବ ।

ଏସବୁ କାର୍ଯ୍ୟକ୍ରମର ମୂଳବିନ୍ଦୁ ହେଲେ ଗାଁର ଛୋଟଛୋଟ ପିଲାଏ । ଏମାନଙ୍କୁ ପାଠ ପଢ଼ାଇ ମଣିଷ କରିବା ହିଁ ଏସବୁ ଅନୁଷ୍ଠାନର ମୂଳଲକ୍ଷ୍ୟ । ଆମେ କଣ ନିଜ ଗାଁରେ ପାଠୁଆ ପିଲାଙ୍କୁ ଏସବୁ କାମରେ ନିଯୋଗ କରି ପାରିବାନି? ଆମ ପ୍ରଶାସନ, ଆମ ବ୍ୟବସ୍ଥାରେ କିଛି ସୁଧାର କରି ପାରିଲେ ଏସବୁ ଅଡୁଆ ରହନ୍ତା ନାହିଁ । ଆଜି ଆମର ସବୁଠୁ ବଡ଼ ବିଡ଼ମ୍ବନା ହେଲା ଯିଏ କାମ କରିବାକୁ ଆଗ୍ରହୀ ତା' ପାଇଁ କାମ ନାହିଁ । ଯିଏ କାମ କରିବାକୁ ଚାହୁଁନାହିଁ ତାକୁ ନିଯୁକ୍ତି ମିଳୁଛି ।

ରାୟଗଡ଼ାରୁ ରାଇବଣିଆଁ କି ଦିଲ୍ଲୀ ରୁ ଦଉଲତାବାଦ ଯଉଠିକି ଯାଆନ୍ତୁ ଦେଖିବେ, ଚାକିରିଆ ବାବୁମାନେ ଅଫିସରେ ପହଞ୍ଚିବା କ୍ଷଣିହାଜିରା ଖାତାରେ ଦସ୍ତଖତ ମାରି ଦପ୍ତର ସାମନାରେ ପାନ ଦୋକାନ କି ଚା' ଦୋକାନରେ ହାଜର ହୋଇଯାନ୍ତି । ସେଇଠି କାର୍ଗିଲ ଯୁଦ୍ଧରୁ କୋଣାର୍କ ଓ ଭଜନ ସମାରୋହରୁ ଭୋଜିଖିଆ ପର୍ଯ୍ୟନ୍ତ ଚର୍ଚ୍ଚାଚାଲେ । ବାକି

ସମୟର କଥା ନ କହିବା ଭଲ।

ମୁଁ ସଦଳବଳ ଦପ୍ତର ଆଗରେ ପହଞ୍ଚିବା ବେଳକୁ ଦିନ ଦୁଇଟାରୁ ଅଧିକ। ମଧ୍ୟାହ୍ନ ବିରତି ପରେ ସାକ୍ଷାତ କରିବା ଉଚିତ। ଏଣୁ ସମୟକୁ ଜଗି ଆମେ ଗାଁରୁ ବାହାରିଥିଲୁ। ଦେଖ ଦେଖ ବୋଇଲା ବେଳକୁ ସାହେବ ସବୁ କର୍ମଚାରୀଙ୍କୁ ଧରି କୁଆଡ଼େ ଭୋଜି ଖାଇ ଯାଇଥିଲେ। ପିଅନ ବାପୁଡ଼ାଟାଏ ଦପ୍ତର ଜଗିଥିଲା। ଆମ ଭଳି ଆଉ ଅନେକ ମୁହଁମାରି ବାହୁଡ଼ିଥିଲେ ଆମେ ଗାଡ଼ିଖଣ୍ଡେ ଭଡ଼ାକରି ଯାଇଥିବାରୁ ଦପ୍ତର ଆଗରେ ଜଗି ରହିଲୁ। ଆମର ସୌଭାଗ୍ୟ ସାହେବ ସିଧା ବସାକୁ ନଯାଇ ଦପ୍ତରକୁ ଫେରିଲେ। ଆମ ଗୁହାରି ଲିଖିତ ଓ ମୌଖିକ ଆକାରରେ ଜଣାଇଲୁ। ସାହେବ ପ୍ରଶାସନର ଭେଣ୍ଡାକୁ ମେଣ୍ଢା କରିବା ରୀତିରେ ଆମକୁ ଫୁଲ ଶୁଙ୍ଘେଇ ବିଦା କରିଦେଲେ।

ମୁଁ କେବେ ଗାଁ କାମରେ ମୁଣ୍ଡ ପୂରେଇ ନଥିଲି। "ସବ୍‌ମେ ବସିଯେ, ସବ୍‌ମେ ରସିଯେ, ସବ୍‌କା କିଜିଯେ କାମ୍, ହାଁଜି ହାଁଜି କର୍‌ତେ ରହିଏ ବୈଠେ ଅପନା ଠାମ୍"। ଏଇ ନୀତିରେ ଚ଼ଳି ଆସୁଥିଲି। ଏବେ କିନ୍ତୁ ପାରୁନାହିଁ। ଅବସର ପରେ ପିଲାଙ୍କ କଥା ମାନିବାକୁ ବାଧ ହଉଛି।

ଗାଁର ବିକାଶ ପାଇଁ ନାନା ଆଦୁ ନାନା ଯୋଜନା ଆସୁଛି। ସରକାର ପ୍ରଚୁର ଅର୍ଥ ଖର୍ଚ୍ଚ କରୁଛନ୍ତି। ଯୋଜନାର ମାଧ୍ୟମ ଗୋଟିଏ ହୋଇନଥିବାରୁ ସୁଫଳ ମିଳୁନାହିଁ। ଯାବତୀୟ ବିଭାଗର ସରକାରୀ ଅର୍ଥ ଯଦି ଗୋଟାଏ ମାଧ୍ୟମରେ ଗାଁକୁ ପଶନ୍ତା ଓ ଗାଁ ଲୋକ ସେଥିରେ ସଂପୃକ୍ତ ହୁଅନ୍ତେ ତେବେ ଅର୍ଥର ଅପଚ଼ୟ କମିଯାନ୍ତା ଓ ସୁଫଳ ଆଖିଦୃଶିଆ ହୁଅନ୍ତା। ମାତ୍ର ଆମ ବ୍ରିଟିଶ ଢ଼ାଞ୍ଚାର ପ୍ରଶାସନ ଏ ଯାଏଁ ଆମ ଲୋକଙ୍କ ବିଶ୍ୱାସକୁ ଆଣୁନାହିଁ। ଫଳରେ ସବୁକାମରେ ଲୋକେ କହୁଛନ୍ତି "ସବୁ ସରକାର କରିବ।" ଆମ ଲୋକ- ନିର୍ବାଚ଼ିତ ପ୍ରତିନିଧି ମାନେ ପ୍ରଶାସନର ପିଞ୍ଜରାରେ ସର୍କସବାଘ ପରି ବନ୍ଦୀ। ସେମାନେ ଲୋକଙ୍କ ପ୍ରତିନିଧିତ୍ୱ ନକରି ଲୋକଙ୍କର ପ୍ରତିଦ୍ୱନ୍ଦୀ ହୋଇ ଯାଉଛନ୍ତି।

ଅଗେ ଚାଉଳ ପୁରା (ଓଲିଆ) ବାନ୍ଧିବା ବେଳେ ଆମ ଗୋସେଇଁ ବାପା ମାନେ କହୁଥିଲେ "ଘିଚ଼ା ଲଡ଼ବଡ଼ ପିଟାଟାନ।" ଦଉଡ଼ି ଟାଣିଲା ବେଳେ ଲଡ଼ବଡ଼ କଲେ ଚ଼ଳିବ। ମାତ୍ର ପିଟିବା ବେଳେ ନିର୍ଦ୍ଧମ ପିଟିବାକୁ ହେବ। ଠିକ୍ ସେଇପରି ଆମେ ଆମ ଶିକ୍ଷା ବ୍ୟବସ୍ଥାରେ ମାଠିବା କାମଟି ନକରି ମଠୁଆ କାମକୁ ବେଶୀ ପସନ୍ଦ କରୁଛୁ। ଫଳରେ ଆମ ସମାଜରେ ବିପର୍ଯ୍ୟୟ ଦେଖା ଦେଇଛି। ଏଇ ବିପର୍ଯ୍ୟୟ ଭିତରେ ବଢୁଥିବା ଆଗ୍ରାମୀ ପୀଢ଼ିର ପିଲାମାନେ ବାପ ମା'ଙ୍କୁ କାହିଁକି ନ କହିବେ ଆମ ପାଇଁ ସାଇତି ପାରିବେ ନାହିଁ ଯଦି ଜନମ କରିବାକୁ କଣ ସୁଖ ଲାଗୁଥିଲା?



# ୮୦. କଳାର କମ୍ପନ

ମୋ ବଡ ନାତୁଣୀ ଶ୍ରେୟପର୍ଣ୍ଣା ଡେ଼ରିରେ ଉଠେ। କାମ ବରଗିଲେ ମୁହଁ ମୋଡ଼ି ଚାଲିଯାଏ। ଖାଇବ ଯେ ଉଠି ଯିବ। ତା' କଂସା ଖଣ୍ଡିକ ବି ଉଠାଏ ନାହିଁ। ପାଣି ନୋଟାଏ ଧରେଇ ଦେଲେ ଯାଇ ଆଣିବ। ଗୋଟିଏ କଥାରେ ଭରା କଳସୀକୁ ଆଳସୀଟାଏ। ଏଣୁ ତା ମା' ତା କାକୀ ମାନେ ଦୂରଦୂର କରନ୍ତି ତାର ମାମା (ଆଈ) ଢାଙ୍ଗଲ ଖାଇ କହେ। ପୁଅପିଲା ପରି ବେପରୱା ଚଳେ। 'ଶାଶୁଘରେ' ସଣ୍ଣା ଖାଇବୁ ବୋଲି ଅନେକ କହନ୍ତି। ମୋନାଲିସା ହସ ଖଣ୍ଡେ ଫିଙ୍ଗିଦେଇ ସେ କୁଆଡ଼େ ନା କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଏ।

ମାଣ ବସାକୁ କିମିତି ମନକୁ ପାଇଲା ଯେ ଝୋଟି ଲେଖିବାକୁ ମନକଲା। ତା' ଝୋଟି ଦେଖି ସଭିଏଁ ତାଜୁବ ହେଲେ। ତାକୁ ଆଉ କଉ କାମର ନୁହେଁ ବୋଲି କହିବାକୁ ଆଗଭର ହେଲେ ନାହିଁ। ଝୋଟିଟି ଯିଏ ଦେଖିଲା ଆମ ବଡ଼ ନାତୁଣୀ ପ୍ରତି ଗୋଟିଏ ଶ୍ରଦ୍ଧା ତା' ଭିତରେ ଦାନା ବାନ୍ଧିବା ଆରମ୍ଭ କଲା। କଳାର ଗୋଟିଏ କମ୍ପନ ଥାଏ। ସେ କମ୍ପନ ଆଖି ବାଟେ, କାନ ବାଟେ ମରମକୁ ଛୁଏଁ। ସୀତାର ତାରକୁ ଛୁଇଁବା ପରି ଗୋଟାଏ ମୃଦୁ କମ୍ପନ ଗୋଟାଏ ହଲଚଲ ଖେଳିଯାଏ ଦିହ ସାରା।

ଝୋଟି କାଟିବା ଦିନଠୁ ଆମ ବଡ଼ ନାତୁଣୀକୁ ଆଉ କେହି ଅଳସୀ ବୋଲି କହଲେନି। କଳସି ବୋହୁ କି ନ ବୋହୁ କଳାପ୍ରତି ବ୍ୟବହାରିକ ମଣିଷର ବ୍ୟବହାର ଏଇମିତି ବଦଳିଯାଏ। କଳା ଭିତରେ ଥିବା ଗୋଟାଏ ମୁଲାୟାମ ସ୍ପର୍ଶ ଅନ୍ୟକୁ ଛୁଇଁ ଛୁଇଁ ଯାଏ। ତା ଭିତରର ଚିଜକୁ ନ ଚିହ୍ନିବା ଯାଏ ସଭିଏଁ କହି ଚାଲିଥାନ୍ତି ନିକମା ଖାଉଛି ଯାହା, କଉ କାମକୁ ନୁହେଁ।

ପାଣିହାରୀ ଝିଅଟିଏ। ଗାଁ ପାଖ ଯୋରରୁ ପାଣି ବୋହି ଘରଘର ପାଣି ଯୋଗାଏ। ସକାଳପହରୁ ଯୁରା ଗରିଆ ଧରି ପାଣି ବୋହି ଚାଲିଥାଏ। ପାଣି ବୋହି ପେଟ ପୋଷେ। ଦୃତ ପଦ ପାତରେ ଯାଉଥାଏ ଆସୁଥାଏ। ମରିବାକୁ ବି ଫୁରୁସତ ନଥାଏ ତାକୁ ରାସ୍ତାକଡ଼ରେ ଲୋକଟିଏ କି କାମ କରେ କେଜାଣି? କେତେବେଳେ ଖାଏ? ଯେତେବେଳେ ଦେଖିବ ବସିଛି। ବସିଛି ଯେ ବସିଛି। ଝିଅଟି ମନେମନେ ଭାବେ। ପେଟରେ ମୁଠାକ ପାଇଁ ସେ କେତେଯେ ଖଟୁଛି। ହେଲେ ସେ ନିକମା ଲୋକଟି କୁଟାକୁ ଦି'ଖଣ୍ଡ କରୁନାଇଁ। ପଚାରନ୍ତା କି ହେଲେ ଅଟକି। କଣ ଯାଉଛି ତାର ତା କାରବାରରେ ଦଖଲ ଦେବ କିଆଁ? କଣନା କଣ ଭାବିଲେ ମଲ।

ଦିନକର ଦିନେ ଲୋକଟାର ପାଖକୁ ଯାଇ ପଚାରିଲା 'ସାରାଦିନ ଏମିତି ବସିଛ ଯାହା, କିଛି କାମ କରୁନ? ଲୋକଟି କହିଲା ''ମୋତେ ତ ମରିବାକୁ ତର ନାଇଁ। ବସିଛି

କୁଆଡ଼େ? କେତେ କେତେ କାମ ମୋ' ଆଖି କାନ କରୁଛନ୍ତି।"

"କାହିଁ ମୁଁତ ଦେଖି ପାରୁନି" ଝିଅଟି କହିଲା। "ମୋ କାମ ବୁଝିବା ପାଇଁ ଭିତରର ଆଖି ଦରକାର।" ଲୋକଟି କହିଲା। ଝିଅଟି ହସିଦେଇ କହିଲା "ମଲା ମୋର ଭିତରେ କଉ ଆଖିଥାଏ ଯେ, ଦେଖିବି ମ?" ଝିଅଟି ତା' ପାଇଟିରେ ଲାଗିଲା ଚଞ୍ଚଳ ପାଣି ବୋହିଲେ ଯାଇ ସଞ୍ଜ ସରିକି ଷାଠିଏ ଘରକୁ ସମ୍ଭାଳିବ। ଲୋକଟି ପୂର୍ବ ଭଳି ଆପଣା ଭିତରେ ବୁଡ଼ି ରହିଲା।

ଏଇମିତି ଅନେକ ଦିନ ବିତିଗଲା। ନଇରେ ପାଣି ବୋହିଯିବା ପରି। ଋତୁ ପରେ ଋତୁ ଚାଲିଯିବା ପରି। "କିଛି କାମ କରୁନ କିଆଁ" ଝିଅଟି ପୁଣି ପଚାରିଦେଲା। "କାମଟିଏ ଦଉନ" ଲୋକଟି କହିଲା। 'କି କାମ କରିବ ଯେ!'

"ଯଉକାମ ଦେବ"। କଣ ଭାବିଲା କେଜାଣି ଲୋକଟି କହୁ କହୁ କହିଦେଲା "ତମ ମାଠିଆଟି ଦଉନ"

"କଣ ପାଣି ବୋହିବ?"

"ହଁ ଆଗେ ମାଠିଆଟି ଦିଅ।" ଝିଅଟି ମାଠିଆଟି ଦେଲା ଲୋକଟିକୁ।

ତା ପରଦିନ ଲୋକଟି ମାଠିଆଟି ଫେରାଇ ଦେଲା ଝିଅଟିକୁ। ଝିଅ ମାଠିଆକୁ ଅନେଇଲା। କେତେକଣ ଆକୁରୁ ବାକୁରୁ ଗାର ଟାଣି ଦେଇଛି ଅଳପେଇସା। ଦିନସାରା ପାଣି ବୋହି ସଞ୍ଜକୁ ଘରକୁ ଗଲା। ଅବଶ ଦେହଟାକୁ ଟିକେ ଆରାମ ଦେଉ ଦେଉ ମାଠିଆ କଥା ମନେ ପଡ଼ିଗଲା। ଲଣ୍ଠନ ଆଲୁଅରେ ଗାର ସବୁ ନିଠେଇ ନିରେଖିଲା। କି ସୁନ୍ଦର ଗାରସବୁ! ଚମତ୍କାର ଦିଶୁଛି!! ଲୋକଟା ପ୍ରତି କାହିଁକି କେଜାଣି ତା' ଭିତରେ ଶରଧାଟିଏ ଦାନା ବାନ୍ଧିଲା। ଲୋକଟି ଭିତରେ କଣ କିଛି ଅଛି, ସେ ଅନୁଭବ କଲା। ମାଠିଆର ଗାର ଗୁଡ଼ିକ ତା' ଭିତରେ ଗୋଟାଏ ହଲଚଲ ଆରମ୍ଭ କରିଦେଲା।

କିଛିଦିନ ପରେ ଝିଅଟି ଲୋକଟି ପାଖରେ ଠିଆ। "ଆଉ କିଛି କାମ ଦଉନ?" ଲୋକଟି ଅନୁରୋଧ କଲା। "ଆଉ କି କାମ କରିବଯେ।" ଲୋକଟି କହିଲା "କିଛି ସୁତା ଦିଅ।" ଝିଅଟି କେରାଏ ସୂତା ଦେଲା। ଲୋକଟି ସୂତାରେ ରିବନ ଖଣ୍ଡେ ତିଆରି କଲା। ଝିଅକୁ ରିବନ ଖଣ୍ଡକ ଦିଅନ୍ତେ ଝିଅଟି କହିଲା "କିସ ହେବ ଏ"? ବେଣୀ ବାନ୍ଧିବ। ଲୋକଟି କହିଲା। ସେଇ ରିବନରେ ଝିଅଟି ତା' ବେଣୀ ବାନ୍ଧିଲା। ଆଇନାରେ ନିଜକୁ ନିଜେ ଦେଖି ଚମକି ପଡ଼ିଲା ଏଁ ଚମତ୍କାର ଦିଶୁଛି ତ!! ତା' ଚେହେରା ଗୋଟାପଣେ ବଦଳି ଗଲା! ଝିଅଟି ତା ଭିତରେ ନୂଆ ଅନୁଭବଟିଏ ବାରି ପାରିଲା। ଆପଣାକୁ ଚିହ୍ନିଲା। ଏତେ ରୂପ ତା'ଚେହେରାରେ! ତା' ଚଞ୍ଚଳ ପାଦ ଧିମେଇ ଗଲା। ସୀତାରର ତାର ଭଳି ତା ଦ୍ରୁତ ପଦପାତର କମ୍ପନ କଉଠି ହଜିଗଲା।

ଆଗେ ଯେମିତି ପାଣି ବୋହି ପାରୁଥିଲା, ଏବେ ଆଉ ପାରୁନି। ଏବେ ଅଧେ ଘରକୁ

ପାଣି ନେଉଛି। ବାକି ଅଧିକ ଛାଡ଼ି ଦେଲାଣି। କାହିଁକି କେଜାଣି ତା ଭିତରେ ଗୋଟାଏ ଗରିୟସୀ ଭାବ ଠୂଳ ହେବାକୁ ଲାଗିଲାଣି। ସେଇ ଭାବରେ ବୁଡ଼ି ରହବାରୁ ସେ ନିଜକୁ ମୁକୁଳାଇ ପାରୁନି। ଲୋକେ ଏକଥା ଜାଣିଲେ। ଏପରି କାମିକା ଝିଅ ଭିତରେ ଏମିତିକା ଅଳସପଣ ପୂରେଇଲା କିଏ? ଦେଖ ଦେଖ ବୋଇଲା ବେଳକୁ ସେଇ ନିକମା ଲୋକଟି! ଗାଁର ସିଆଣା ଲୋକେ କହିଲେ "ନିକାର ସେ ଲୋକକୁ। ନୋହିଲେ ଗାଁ ଗୋଟାକୁ ଅକର୍ମଣ୍ୟ କରିଦେବ।" ଲୋକଟି ଯେତେବେଳେ ଗାଁରୁ ବାହାରି ଯାଉଛି ଲୋକେ ଶୁଣି ଆଶ୍ଚର୍ଯ୍ୟ ହେଲେ ଯେ ସେଇ ପାଣିବୋହୀ ଝିଅଟି ବି ତା ସାଙ୍ଗରେ ଗାଁ ଛାଡ଼ି ଚାଲିଯାଉଛି।

ଏଇତ କଳାର କମ୍ପନ! ମଣିଷ ଭିତରେ ନୂଆ ଅନୁଭବ ଆଣେ। ରକତରେ ନୂଆ ହଲଚଲ ସୃଷ୍ଟି କରେ। କଳାର ଏଇ ଗରୀୟସୀ ଭାବକୁ ରବୀନ୍ଦ୍ର ନାଥ ଠାକୁର ଚମତ୍କାର ଭାବେ ତାଙ୍କର ଏକ ଗଳ୍ପରେ ପ୍ରକାଶ କରିଛନ୍ତି।



## ୮୧. ମାମୁଁ ଯେ ମଞ୍ଚାରୁ ପଡ଼ିଲା

ବାରମାସକୁ ତେର ପର୍ବ ପରି ଆମ ଘରେ ବାର ବାସକୁ ତେର ଶ୍ରାଦ୍ଧ ଦିବସ ପାଳିତ ହୁଏ। ମୋ' ପୁଅମାନେ, ବୋହୂମାନେ, ଏମିତିକି ମୋ' ଭାରୀଯା ବି ବିଗିଡ଼େ। ସଭିଙ୍କର ଏକଇ ମତ ଯେ ଏବେ ଆଉ ସେ ଭୁରୁକୁଟି କରୁଛି କିଏ? ତମେ ସେ ପୁରୁଣା ରିବାଜକୁ ଗଁଠେଇ ବସିଛ ଯାହା। ତମ ବାପା, ମାଆ, ମାମୁଁ, ମାଇଁ, ଶାଶୁ, ଶ୍ୱଶୁର, ବୁଢ଼ୀ ଆଈ ଆଉ କାକାମାନେ ସତେ ଯେମିତି ତମଦିଆ ଭାତ, ଡ଼ାଲି, ଖିରି, ପିଠା ତିଉଣ ତରକାରୀ ଖାଇ ପକଉଛନ୍ତି। ମୁଁ ଭାବେ ଏମାନଙ୍କୁ ବୁଝାଇ କହିଲେ କିଛି ଲାଭ ନାହିଁ। କାନ୍ଧରେ ପଡ଼ିଲେ ବଳେ ବଜେଇ ଶିଖିବେ।

ବୈଶାଖ ଶୁକ୍ଳ ଦଶମୀ ବାପାଙ୍କ ଶ୍ରାଦ୍ଧ, ଶ୍ରବଣ ମାସରେ ମୋ' ବଡ଼ ମାଈଙ୍କ ଶ୍ରାଦ୍ଧ ଦିବସ, ଆଷାଢ଼ ମାସରେ ମୋ' ମୁରଲୀ କାକାଙ୍କୁ ଭାତ ଡାଲି ଟିକେ ଦିଏଁ। ଦଶରା ପିତୃପକ୍ଷର ସାମୁହିକ ପିତୃଶ୍ରାଦ୍ଧ କରିବାକୁ ପଡ଼େ। କାର୍ତ୍ତିକ ମାସରେ ମା'ଙ୍କୁ ସ୍ମରଣ କରେ କୃଷ୍ଣପକ୍ଷ ନବମୀରେ। ମାତୃ ନବମୀ କିନା! ମାଘ ମାସରେ ମା'ଙ୍କର ଶ୍ରାଦ୍ଧ ଦିବସ ପଡ଼େ। ମାର୍ଗଶୀର ମାସରେ ଶାଶୁଙ୍କର ଚ ଫଗୁଣରେ ଶ୍ୱଶୁରଙ୍କର ଶ୍ରାଦ୍ଧ କରିବାକୁ ପଡ଼େ। ଚୈତ୍ର ମାସରେ ମୋ' ବଡ଼ ମାମୁଁ ନୀଳକଣ୍ଠ ତ୍ରିପାଠୀଙ୍କୁ ସୁମରେ।

କୁଆଡ଼ି ଭଣାଜାରୁ ଦି'ଜଣ କି ପାଖ ପଡ଼ିଶାରୁ ଦି'ଜଣଙ୍କୁ ଡ଼ାକି ଶ୍ରାଦ୍ଧ ଭେଜି ଦିଏଁ। ମୋର ଯୁକ୍ତି ମୁଁ ତାଙ୍କର ଉଭାପୋତା ସମ୍ପତ୍ତି ଖାଉଛି। ସେମାନଙ୍କର ଘରବାଡ଼ି, ଜମିଜାଗା, ଗଛମାଛ ଓ ଆଉ କେତେ କଣ ଭୋଗ କରୁଛି, ବରଷକେ ଅନ୍ତତଃ ଥରୁଟିଏ ମନେ ପକେଇ ମୁଁ ମୋର ଶ୍ରଦ୍ଧା ଓ ଭକ୍ତି ସମର୍ପଣ କରୁଛି। ଅନ୍ୟମାନଙ୍କୁ ମୋର ଏ ଶ୍ରଦ୍ଧା

ନିବେଦନ ବେଢଙ୍ଗ ଲାଗିଲେ ଲାଗୁ। ମୁଁ ମୋ ନୀତିରୁ ଓହରିବି କିଆଁ?

ଅନେକେ କହନ୍ତି କଉ ପିତୃ ପୁରୁଷ ଆସି ହାଲୁହାଲୁ ଖାଇ ପକଉଛନ୍ତି ଯେ। ନିଜେ ଖାଇବା ପାଇଁ ଏସବୁନା!

ଥରକର କଥା। ରାୟ ରାମାନନ୍ଦ ତାଙ୍କ ଶିଷ୍ୟ କବୀରଙ୍କୁ ପଠାଇଲେ କ୍ଷୀର ଆଣିବାକୁ। ରାମାନନ୍ଦ ପିତୃଶ୍ରାଦ୍ଧ କରିବେ। କଥାଟି କବୀରଙ୍କ ମନକୁ ପାଇଲାନି। କେବେଠୁ ମଲେଣି ଗୁରୁଙ୍କ ବାପା। ଏବେ ପୁଣି କ୍ଷୀର ପିଇବେ? ବଡ଼ ତାଜୁବ କଥା। ସେ କ୍ଷୀର ଆଣିବାକୁ ବାହାରିଲେ। ବାଟରେ ଦେଖିଲେ ମଲା ଗାଇଟିଏ ଲାଙ୍ଗଛାଟ ହୋଇ ପଡ଼ିଛି। ସେ ମନେ ମନେ ଭାବିଲେ, ଗୁରୁଙ୍କ ମଲା ବାପ ଯଦି କ୍ଷୀର ପିଇବେ, ଏ ମଲା ଗାଇ ଘାସ ଖାଇବନି କିଆଁ? ଘାସ ଖାଇଲେ ଏ ଗାଇ ବି କ୍ଷୀର ଦେବ। ଘାସ କେରାଏ ପାଖ ବିଲରୁ ଛିଣ୍ଡାଇ ଆଣି ମୁହଁ ପାଖରେ ଥୋଇଲେ। ଲୋଟାଟି ଧରି କବୀର ଗାଇ ପନ୍‌ହା ପାଖରେ ବସିଲେ। ହେଲେ ଗାଇ ଘାସ ଖାଉନି କି, କ୍ଷୀର ବି ଦେଉନି! କବିରଙ୍କ ଫେରିବା ଡ଼େରି ହେବାରୁ ଗୁରୁ ରାମାନନ୍ଦ ଖୋଜିବାକୁ ଆଇଲେ। ଦେଖିଲେ, ମଲା ଗାଇ ପାଖରେ ବସିଛନ୍ତି କବୀର। ଗୁରୁ ପଚାରନ୍ତେ କବୀର ବଡ଼ ବିନୟ ଭରା କଣ୍ଠରେ ଉତ୍ତର ଦେଲେ, "ଯଦି ଆପଣଙ୍କର ମଲା ବାପ କ୍ଷୀର ପିଇବେ, ତେବେ ଏ ମଲା ଗାଇ ଘାସ ଖାଇବନି କିଆଁ? କ୍ଷୀର ଦେବନାହିଁ କାହିଁକି?"

'ବାଇଆଟାଏ!' ଗୁରୁ ହସିଲେ। ଏ କଥା ମୃତ୍ୟୁର ଗୂଢ ରହସ୍ୟରେ ପୁଅ। ବଡ଼ ହେଲେ ବୁଝିବୁ। ତୁ ଆଶ୍ରମକୁ ଯା' ମୁଁ କ୍ଷୀର ନେଇ ଯାଉଛି। ସବୁ ସାଧାରଣ ମଣିଷ ମନରେ ଏ ପ୍ରକାର ସଂଶୟ ଜନମିବା ସ୍ୱାଭାବିକ। ଚଳଣି, ପରମ୍ପରା, ରୀତି ରିବାଜ ଏକ ଧାରା। ଆମ ପାଟ ପୁରୁଷାରୁ ଚଳି ଆସୁଛି। ବାପ ଅଜା କରୁଥିଲେ, ଏବେ ଆମେ କରୁଛୁ। ଏ ଚଳଣିରେ ଥିବା ମର୍ମ କଥାଟି ସଭିଙ୍କର ବୁଝିବା ସମ୍ଭବପର ନୁହେଁ। ଯିଏ ନ ବୁଝେ ସିଏ କହେ ଅନ୍ଧ ବିଶ୍ୱାସ। ଫାରସ କି ଭୁରକୁଟି। ଯିଏ ବୁଝେ ସିଏ କହେ ମୂଲ୍ୟବୋଧ। ଏଣୁ କୌଣସି ଯୁକ୍ତି ନକରି କଥାଟାକୁ ମାନିନବା ଉଚିତ। ଲାଭ ନ ହେଲେ ନାଇଁ କ୍ଷତିତ ହେଉନାଇଁ। ପିଲାଏ ପିଠାପଣା ଖାଉଛନ୍ତି। ଆମ ପିତୃପୁରୁଷଙ୍କୁ ବରଷକେ ଥରେ ମନେ ପକାଇବାକୁ ସୁଯୋଗ ମିଳୁଛି। ଆଜି ଆମେ ଜନ୍ମଦିନ ପାଳନ କରି "ହାପି ବାର୍ଥ ଡ଼େ" **(Happy Birth Day)** କହି ରଡ଼ି ଛାଡୁଛୁ। କେକ୍ କାଟୁଛୁ? ଆମେ ସେ ପୁରୁଣା ଚଳଣୀରେ ଆଉ କଉ ନୂଆ କଥାଟି ଅଛି କି? ସେଇ ଗୋଟାଏ କଥାତ।

ଏଣୁ କା ମନକୁ ପାଇଲା ନାହିଁ ବୋଲି ଆମେ ଆମ ନିଜ ପରମ୍ପରା, ନିଜର ବିଶ୍ୱାସ, ନିଜ ଚଳଣି କଣ ଛାଡ଼ିଦେବା? ଏ ପ୍ରସଙ୍ଗରେ କଥାଟିଏ ମନେ ପଡ଼ି ଯାଉଛି।

ଉତ୍ତର ପ୍ରଦେଶର କୌଣସି ଏକ ଇଲାକାରେ ରାମଲୀଳା ହେଉଥାଏ। ଗୋରା ଅମଳର କଥାଟିଏ। ଆଜି ଆମେ ଯେମିତି ସଭାକୁ, ନାଚକୁ ମନ୍ତ୍ରୀମାନଙ୍କୁ ଡ଼ାକୁଛୁ, ଠିକ୍

ସେମିତି ଗୋରା ସାହେବ ସାହେବାଣୀ ରାମଲୀଳାକୁ ଅତିଥି ହୋଇ ଆସିଥିଲେ। ରାମଲୀଳାର ରାମ, ଲକ୍ଷ୍ମଣ, ସୀତା ବାହରିଲେ। ରାମାୟଣର କାହାଣୀ ଗୀତରେ ବୋଲା ହଉଥାଏ। ମଞ୍ଚରେ ଅଭିନୟ କରୁଥାନ୍ତି ପାତ୍ରପାତ୍ରୀମାନେ। ଭୋଜପୁରୀ ଭାଷାରେ ଗୀତ। ନୌଟଙ୍କି ନାଚ। କଉ ଛେନାଗୁଡ଼ ବୁଝୁଛନ୍ତି ସାହେବ ଓ ମେମ୍ ସାହେବା।

ଲାଙ୍ଗୁଳ ହଲାଇ ହନୁମାନ ବାହାରିଲେ। ଚାରିଆଡ଼େ ହଲଚଲ ମଚାଇ ଲଙ୍କା ପୋଡ଼ା ବାହାରିଲା। ସାହେବ ସାହେବାଣୀ ହସିଲେ। ମଙ୍କି! ବନ୍ଦର!! ବନ୍ଦର!!! ସାହେବାଣୀ ଖୁସ୍। ମେମ୍ ସାହେବ ହୁକୁମ କଲେ  ଆଉର ଏକ ବନ୍ଦର। ଜାମ୍ବବାନ୍ ଆସିଲେ। **One more Monkey** ! ମେମ୍ ସାହେବା ଫରମାଇସ୍ କଲେ। ଆସିଲେ ସୁଗ୍ରୀବ। ପୁଣି ଫରମାଇସ କରନ୍ତେ ବାଳୀ, ସୁଷେଣ ଅଙ୍ଗଦ ଓ ଆଉ ଆଉ ବନ୍ଦରମାନେ ଆସିଲେ। ମେମ୍ ସାହେବ ଖୁସିରେ ଫାଟି ପଡ଼ିଲେ। ଆଉର ଏକ ଆଉର ଏକ ହୁକୁମ କରୁଥାନ୍ତି ମେମ୍ ସାହେବା। ତା ପଛକୁ ତା ପଛ ସବୁ ବନ୍ଦର ଆସିଲେ। ଅବସ୍ଥା ଏମିତି ହେଲା ଯେ ସାହେବ ସାହେବାଣୀଙ୍କୁ ଖୁସ୍ କରିବାକୁ ଯାଇ ରାମ, ଲକ୍ଷ୍ମଣ, ସୀତାଙ୍କୁ ବି ମଞ୍ଚକୁ ଓହ୍ଲାଇବାକୁ ପଡ଼ିଲା ବାନର ବେଶରେ। ବିଡ଼ମ୍ବନା ଆଜବି ଆମ ଲୋକ ନିଜ ବସ୍ **(BOSS)** କୁ ଖୁସ୍ କରିବାକୁ ନହେଲା କାମ କରୁଛନ୍ତି।

ଆମେ ଆମ ବିଶ୍ୱାସରୁ, ମୂଲ୍ୟ ବୋଧରୁ ଚଳଣିରୁ, ପରମ୍ପରାରୁ ଅତି ସହଜରେ ଖସି ଆସୁଛୁ। ସାମାନ୍ୟ ଉତ୍ତେଜନା, କିଛି କରତାଳି, କିଛି ବାହାବା ଆମକୁ ଖସାଇ ଦଉଛି ନିଜ ମୂଲ୍ୟବୋଧରୁ। ସ୍ଖଳିତ ହେବାହିଁ ଅବକ୍ଷୟ। ଏ ସ୍ଖଳନ ଯେମିତି ଆମ ଆଗାମୀ ପୀଢ଼ିକୁ ଗ୍ରାସ ନକରୁ।



# ୮୨. ହଜାମତି : ଓକିଲାତି

ମୋ' ବଡ଼ ନାତୁଣୀ ଶ୍ୱେତପର୍ଣ୍ଣା ଖୁସିରେ  ଫାଟି ପଡ଼ି କହିଲା "ଦାଦା, ସବୁ ଫଟା ଟୁଟା ନୋଟ୍ ଚ଼ଳେଇ ଦେଲି।" ଅର୍ଥନୀତିର ଶାସ୍ତ୍ର କହେ, **"Bad Money drives away good Money."** ଆମ ପାଖରେ ଯଦି ମଇଳା ଫଟା ଟୁଟା ସହ ଭଲ ନୋଟ ଥିବ ଆମେ ପ୍ରଥମେ ଦଦରା ନୋଟ ଦେଇ ବଜାର ସଉଦା କରୁ। ଠିକ୍ ସେଇପରି ଭଲମନ୍ଦ ଲୋକ ମିଶାମିଶି ଏକାଠି କାମ କରୁଥିଲେ ମନ୍ଦ ଲୋକଙ୍କ ଦାଉରେ ଭଲ ଲୋକ ସେ ଜାଗାଛାଡ଼ି ପଳାନ୍ତି।

ଆମ ପରମାଣପୁର ଝସସାହୁ କଲେଜରେ ଅଧକ୍ଷ ଥାନ୍ତି କେପ୍ଟେନ୍ ଡ଼: ବିଭୁତି ଭୂଷଣ ମିଶ୍ର। ତାଙ୍କ ଆଗରୁ କଲେଜଟି ଏକ କଂସେଇଖାନା ଭଳି ଦିଶୁଥିଲା। ଏ କଲେଜରେ ଗୋଟାଏ ପିଅନ ଆଉ ଗୋଟାଏ ପିଅନଠାରୁ ଦି' ପଇସା ଝଡ଼େଇବାରେ

ବ୍ୟାକୁଳ। କିରାଣୀ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ କଥା ନକହିବା ଭଲ। ଏଠି ଯେ ଭଲ କାମକଲା ସେ ମଲା। ଏଣୁ ସବୁ ଭଲ ଭଲ ଲୋକ ଏଠୁ ଆପଣା ଗଣ୍ଠିଲି ବୁଚୁକେଇ ଛୁ କରନ୍ତି। ଯେଉଁ କେତେଜଣ ଏଠି ଲଟକି ଥାନ୍ତି ଯଦୁବଂଶ ଭଳି ସଦା ଆପଣା ଆପଣା ଭିତରେ ମରାମରି ହେବାରେ ବ୍ୟସ୍ତ।

ଥରକର କଥା। "ବିଭୁତି ଠାଡ୍ଡୁ, କଲେଜ ଛାଡୁ" ସ୍ଲୋଗାନ୍‌ରେ ଉଠୁଥାଏ ପଡୁଥାଏ। ଦଳେ ମାତିଥାନ୍ତି ଅଧ୍ୟକ୍ଷଙ୍କ ବିରୋଧରେ। ଆଉ ଦଳେ ମାତିଥାନ୍ତି ତାଙ୍କ ସପକ୍ଷରେ। ଗୋଠ ମାତିଲେ ହଡ଼ା ମାତିବା ନ୍ୟାୟରେ ଆଉ ଥୋକେ କିଛି ନବୁଝି ନସୁଝି ପାଟି କରୁଥାନ୍ତି। ବିଭୁତି ମିଶ୍ରେ ବାଧହୋଇ କଲେଜରୁ ବାହାରି ଗଲେ। ସିଏ ଯଉଠିକି ଯିବେ ଅଧ୍ୟକ୍ଷ ହିଁ ହେବେ, ପିଅନ ହେବେ ନାହିଁ। ତାଙ୍କ ମୋଟା ଦରମା ଗଣ୍ଠିକ ବି ଶୀର୍ଣ୍ଣ ହେବନାହିଁ। ହେଲେ ଗୁହାଳ ଭଳି ଦିଶୁଥିବା ଝସସାହୁ କଲେଜକୁ ସେ କଲେଜ ଭଳି ଠିଆ କରେଇଥିଲେ। ହାଇସ୍କୁଲ ଛାତ୍ରାବାସକୁ କଲେଜ ନାଁରେ ରେକର୍ଡ଼ କରାଇଲେ। ବିଭାଗୀୟ କର୍ମକର୍ତ୍ତାଙ୍କୁ ଆପଣାସ ସ୍ୱାଭାବିକ ନମନୀୟତାରେ ଜିଣି ସେ ଯେପରି ଦକ୍ଷତାର ସହ କାମ କରାଇ ନେଲେ, ଅନ୍ୟକେହି କରି ପାରିନଥାନ୍ତା। ଏଣୁ ସାବାସ୍, କେପ୍ଟେନ୍ ବିଭୁତି ମିଶ୍ର ସାବାସ୍, ବୋଲି କହିବାକୁ ହେବ।

ଏଠି ମୋର ବକ୍ତବ୍ୟର ମୂଳ ଝସ ସାହୁ କଲେଜରେ ନାଇଁ। ଆମ ପିଲାଏ ଆମକୁ ଗାଳି ଦିଅନ୍ତି। ପୁଅ ବାପକୁ ଗାଳି ଦିଏ। ଝିଅ ମାଆକୁ ଶୋଧେ। ଚେ଼ଲା ଗୁରୁଙ୍କୁ ଓ ସାନମାନେ ବଡ଼ ମାନଙ୍କୁ ଝୁଣି ପକାନ୍ତି। ଏ ଗାଳି ଦେବା କାମଟି ଏବେ ନାନା ରୂପରେ ଓ ନାନା ବାଗରେ ଫୁଟି ଉଠୁଛି। ଏହା କେବଳ ଏବେ ହଉନି। ଆଗରୁ ବି ହଉଥିଲା।

ଆପଣ ଟେମ୍‌ପେଷ୍ଟର କାହାଣୀ କୁ ମନେ ପକାନ୍ତୁ। ପ୍ରସ୍‌ପେରୋ ମ୍ଳେଛ କାଲିବାନ୍‌କୁ ଭଦ୍ର କରିବାକୁ ଯାଇ ଭାଷା ଶିକ୍ଷା ଦେଲେ। କେଲିବାନ୍ କଣ କଲା ଜାଣନ୍ତି? ପ୍ରସ୍‌ପେରୋଙ୍କୁ ହିଁ ଗାଳି ଦେବା ଆରମ୍ଭ କଲା। କାଲିବାନ୍‌ର ଯୁକ୍ତି ଥିଲା। **"You taught me Language, the profit on it is to curse you."** ମୋ' ମୁହଁରେ ଭାଷା ଦେଲେ ଆପଣ। ମୁଁ ଆପଣଙ୍କୁ ଗାଳି ନଦେଇ ଆଉ କଣ କରନ୍ତି ଯେ! **Benificiary is the first enemy.** ସୁବିଧା ଭୋଗୀହିଁ ସୁବିଧା ଦାତାର ପ୍ରଥମ ଶତ୍ରୁ। ଇନ୍ଦିରା ଆବାସ ପାଇଥିବା ସୁବିଧା ଭୋଗୀ ହିଁ ସରକାରଙ୍କୁ ପ୍ରଥମେ ଗାଳିଦିଏ।

ଲୋକଟିଏ ଗୋଟାଏ ସ୍ତ୍ରୀ ଲୋକକୁ ଏକୁଟିଆ ଦେଖି ଗୋଡ଼ାଉଥିଲା। ଅକସ୍ମାତ ଦେଖା ହୋଇଗଲା ଯୀଶୁଖ୍ରୀଷ୍ଟଙ୍କ ସହ। ଯୀଶୁ ପଚାରିଦେଲେ, "ତମକୁ କଉଠି ଦେଖିଲା ପରି ଲାଗୁଛି।" "ହଁ ଆଜ୍ଞା ଠିକ୍ ଚିହ୍ନିଲେ। ମୋ' ନାରଖାର ଦେହକୁ ସାଉଁଳି ଦବାରୁ ମୁଁ ଏ ଦିବ୍ୟ ରୂପ ପାଇଲି ନଇଲେ ସେଇ ପୂଜ ପଚ଼ପଚ଼ ଛିଣ୍ଡା ଛିଣ୍ଡା ହାତଗୋଡ଼ରେ ସଢୁଥାନ୍ତି ଏବେ।" "ଏ କଣ କରୁଛ ତା' ହେଲେ?" ଯୀଶୁ ଆଶ୍ଚର୍ଯ୍ୟ ଚ଼କିତ ହୋଇ ପଚାରି

ଦେଲେ । "କଣ କହିବି ଆଜ୍ଞା," ଲୋକଟି ସହଜ ଭାବେ କହିଲା । "ଆପଣ ଏ ଦିବ୍ୟରୂପ ଦେଲେ । ଶରୀରକୁ ସୁନ୍ଦର ସବଳ କଲେ । ମୁଁ ଏୟା ନକରି ଆଉ କଣ କରନ୍ତି ଯେ! ବୋକା କଉଠିକାର ବୋଲି ଯୀଶୁ ଗାଳି ଖାଇଥିବେ ନିଶ୍ଚୟ!

ଶିକ୍ଷାର ଦୁଇଟି ମୂଳକାମ । ପହେଲା କାମଟି ଶିକ୍ଷାର୍ଥୀକୁ ଭଦ୍ର କରିବା । ଅନ୍ୟଟି ତାକୁ ବଞ୍ଚିବା ପାଇଁ ବାଟଟିଏ ବତାଇବା । କାହିଁକି କେଜାଣି ଏବର ଶିକ୍ଷା ଏ ଦୁଇ କାମ କରିପାରୁନାହିଁ । ଏଣୁ ହତାଶ ହୋଇ ଶିକ୍ଷାର୍ଥୀ ତାର ଅସମର୍ଥତା ପାଇଁ ଗାଳି ଦେବାହିଁ ଜାଣିଛି ।

ଏବେ ପୁଅ ମାଆକୁ ଏତେ ସେତେ ଟଙ୍କା ମାଗିଲା ବେଳକୁ ମାଆ ଯଦି ମନାକରେ, ପୁଅ କହୁଛି ପଇସା ତ ଦେଇ ପାରିବୁନି ତେବେ ପୁଅ ଜନମ କରିବାକୁ କଣ ସୁଖ ଲାଗୁଥିଲା ?

ମୁଁ ଅବସର ନେବା ଦିନ ମୋ ମଝିଆଁ ପୁଅ ମୋତେ ଶୁଣାଇ ଶୁଣାଇ ଟା' ମାଆକୁ କହିଲା । "ଲୋକେ ପିଅନ ହୋଇ ସହରରେ ବଙ୍ଗଳା ବାନ୍ଧୁଛନ୍ତି । ହେଲେ ବାପା ମୁକୁଟ ବନ୍ଧା ହେଡ଼ମାଷ୍ଟର ହୋଇ ବାପ ଅମଳର ଖପୁରିଲି ଘରକୁ ବଦଳେଇ ପାରିଲେ ନାହିଁ । ଏ ମଧ୍ୟ ଏକପ୍ରକାର ମୃଦୁ ଗାଳି ।

ଶିକ୍ଷାର୍ଥୀ ଶିକ୍ଷା ଶେଷରେ ବଞ୍ଚିବା ପାଇଁ ଉପାୟଟିଏ, ରୋଜଗାର ଟିଏ ଯୋଗାଡ଼ କରି ନ ପାରିବାରୁ ଏ ହତାଶା । ହତାଶାରୁ ମତିଭ୍ରମ । ମତିଭ୍ରମ ହେଲେ ଗାଳି ନ ବାହାରିବ ତ ଆଉ କଣ ବାହାରିବ, କହନ୍ତୁ? ଏଣୁ ଆମ ଶିକ୍ଷାର ଆଖିପିଟୁ ଶାରୀରିକ ଶ୍ରମକୁ ମାନ୍ୟତା ମିଳୁ । ହଜାମତିକୁ ସେଇ ମର୍ଯ୍ୟାଦ ମିଳୁ ଓକିଲାତିକୁ ଯେମିତି ମିଳୁଛି । ବିଲରେ ହଳ କରିବାକୁ କି ମାଟିହାଣିବାକୁ ଅଧ୍ୟାପନା ଠାରୁ ବେଶୀ ମର୍ଯ୍ୟାଦା ମିଳୁ । ଗାନ୍ଧୀ ସତକୁ ସତ କହିଥିଲେ ହଜାମତି ଓ ଓକିଲାତି ଏକାକାମ । ଆମ ପିଲାଏ ସେତକ ବୁଝି ପାରିଲେ ଗାଳି ଦେବେ କିଆଁ?



## ୮୩. ଦୂର ହେଲା ନିକଟ

ପୁନାର ଏକ ଛାତ୍ର ସମାବେଶରେ ଉଦ୍‌ବୋଧନ ଦେଉଥିଲେ ସନ୍ଥ ବିନୋବା । ସେ କହିଥିଲେ "ସେଲୋଲାଇଟ୍ ଫିତାର ଛାଇ ଆଲୁଅର ଖେଳରେ କାହିଁକି ମାତିଛ ପିଲାଏ? ଏ ତମକୁ ମିଛ ପ୍ରଲୋଭନର ଦରିଆରେ ବୁଡ଼ାଇ ଦେବ ।" ସିନେମାର କୁ ପ୍ରଭାବ ପ୍ରସଙ୍ଗରେ ଚେ଼ତାବନି ଶୁଣାଉଥିଲେ ଆଗାମୀ ପୀଢ଼ିକୁ ସେତେବେଳେ ସିନେମା ଯୁବ ରକତକୁ ଚଞ୍ଚଳ କରିବା ଆରମ୍ଭ କରିଥାଏ ।

ଦୂରଦର୍ଶନ ଆଗରୁ ବେତାର ହିଁ ଥିଲା ଏକ ବଳିଷ୍ଠ ଗଣ ମାଧ୍ୟମ। ଦୂର ଦର୍ଶନ ମାସ ମିଡ଼ିଆ ଆସନ ମାଡ଼ି ବସିବା ପରେ ସିନେମା କାପ୍ କାପ୍ କରିବା ଆରମ୍ଭ କଲା। ରେଡ଼ିଓର ବାଣୀ ଶୁଣାଇବା ସହ ଠାଣିକୁ ଦେଖେଇଦେଲା ଫଳରେ ଲୋକେ ଦୂରଦର୍ଶନ ପଛରେ ବାଇ ହେଲେ। ଟିଭି ପରଦାରେ ନିଜ ମୁହଁକୁ ଦେଖେଇ ଦେଇ ପାରିବାକୁ ଅହୋଭାଗ୍ୟ ମଣିଲେ। ମୁଁ ୧୯୬୦ ବେଳକୁ ଆକାଶବାଣୀ ସହ ସଂପୃକ୍ତ ଥିଲି। ୧୯୮୮ ବେଳକୁ ଦୂରଦର୍ଶନ ସହ ମୋର ଲଟ ଲାଗିଲା। ସମ୍ବଲପୁର ଦୂର ଦର୍ଶନର ଉତ୍ସାହୀ ଯୁବକ ବୈକୁଣ୍ଠ ନାଥ ପାଣିଗ୍ରାହୀ ମୋ ସହ ଯୋଗାଯୋଗ କଲେ। 'ଅନେକରେ ଏକ' କାର୍ଯ୍ୟକ୍ରମରେ ମୋର ସାକ୍ଷାତକାର ରେକର୍ଡ଼ କଲେ। ସେତେବେଳେ ଆମ ବାରତୁମୁରିକୁ ବିଜୁଳି ଆସିନଥିଲା। ସେମାନେ ଚାହିଁଲେ ମୋତେ  ସମ୍ବଲପୁର ନେଇ ପାହାଡ଼ ଉପରେ ରେକର୍ଡ଼ କରିବାକୁ। ହେଲେ ମୁଁ ମନାକଲି। ମୋର ଆଗ୍ରହ ହିଁ ନଥିଲା। ଏଣୁ ବୈକୁଣ୍ଠ ପାଣିଗ୍ରାହୀ ମୋ'ଘରେ ରେକର୍ଡ଼ କରିବାକୁ ବ୍ୟବସ୍ଥା କଲେ। ୩୦.୯.୮୮ ଦିନ ଏ ସାକ୍ଷାତକାରର ସୁଟିଙ୍ଗ ଶେଷ ହେଲା। କୁମାରୀ ସରାଫ ନାମ୍ନୀ ଝିଅଟିଏ ମୋର ସାକ୍ଷାତକାର ନେଲା। ମୋର ବିଭିନ୍ନ କୃତି ସମ୍ପର୍କରେ ଏକ ସ୍ଥୂଳ ଧାରଣା ପରିବେଷଣ କରିବାଥିଲା ଏ ସାକ୍ଷାତକାରର ଉଦ୍ଦେଶ୍ୟ। ଧନ୍ୟ କହିବା ସେଇ ବୈକୁଣ୍ଠ ପାଣିଗ୍ରାହୀକୁ ଯିଏ ଏ ସାମାନ୍ୟ କାମପାଇଁ ମୋ' ପାଖକୁ ଚାରିଥର ଦଉଡ଼ିଥିଲେ।

କବି ବ୍ରଜନାଥ ବଡ଼ଜେନା କହନ୍ତି "ଆପଣା ପୁରୁଷାର୍ଥ କେବେ ନକହିବ।" ମୋ' କୃତି ମୋ' ପ୍ରଶଂସା ମୋରି ଆଗରେ ବଖାଣିଲେ, ସତ କହୁଛି, ମୋ' ଦେହସାରା କଣ୍ଟା ଫୋଡ଼ିଲା ପରି ଲାଗେ। ଏଇ ଆତ୍ମପ୍ରଚାର ଯୁଗରେ ଆପଣାର ଢୋଲ ଆପଣାକୁ ପିଟିବାକୁ ପଡ଼ିବ ବୋଲି  ମୋର ଧାରଣା ନଥିଲା। 'ମାଗି କୁହାର, ଯାଚି କଲ୍ୟାଣ' ସବୁ ଯୁଗରେ ଆଦର ପାଏ ନାହିଁ। ତଥାପି ଆମେ ଏକ ତୀବ୍ରତର ଗଣ ମାଧ୍ୟମର ଯୁଗରେ ବଞ୍ଚୁଥିବାରୁ ପ୍ରଚାରର ପ୍ରକୋପରୁ ନିଜକୁ ମୁକ୍ତ କରି ପାରିବା କେମିତି? ଟି.ଭି ପରଦାରେ ମୋ' ଭଳି ଜଣେ ଲୋକର ଅରୁଚିକର ଚେହେରା ଦେଖାଇବାରେ ଲାଭକଣ? ତଥାପି ଦୂରଦର୍ଶନ ମୋତେ ନିକଟତର କରିବାକୁ ଲାଗିଲା।

ସମ୍ବଲପୁର ଲୋକନୃତ୍ୟ ଉପରେ ଆଲୋଚନା କରିବାପାଇଁ ଦୂରଦର୍ଶନ ମୋତେ ସୁଯୋଗ ଦେଇଥିଲା। ସେ କାର୍ଯ୍ୟକ୍ରମଟି ୨.୨.୮୬ରେ ପ୍ରଦର୍ଶିତ ହୋଇଥିଲା। ସେତେବେଳେ ବୀଣାଦେବୀ କଟକ ଦୂରଦର୍ଶନ କେନ୍ଦ୍ରର ନିର୍ଦ୍ଦେଶକଥିଲେ। କଟକ ଆକାଶବାଣୀ କେନ୍ଦ୍ରରେ ଗୀତ ଗାଉଥିବା ବେଳରୁ ତାଙ୍କ ସହ ମୋର ପରିଚୟ। ଜୀବନର ଚଲାପଥରେ ତାଙ୍କ ସହ ମିଶିବାର ଅନେକ ସୁଯୋଗ ପାଇଛି ମୁଁ। ଜଣେ ମେଳାପୀ ଓ ନଈପରି ଛଳଛଳ ସ୍ୱାଭାବର ମଣିଷ ଥିଲେ ସେ। ସେ ଆଜି ନାହାନ୍ତି ହେଲେ ତାଙ୍କ ଦରଦୀ କଣ୍ଠ ଆଜିବି ରକତରେ ମୃଦୁକମ୍ପନ ସୃଷ୍ଟି କରିପାରେ। ତା' ପରେ କଟକ ଦୂରଦର୍ଶନ ୨୬.୪.୯୦ ରେ 'ସଂଚାର'

ଉପରେ ଏକ ଆଲୋଚନା ରେକର୍ଡ଼ ହେଲା । ଏହା ୧୦.୫.୯୦ ରାତିରେ ପ୍ରସାରିତ ହୋଇଥିଲା ।

ତାରିଖଟି ମନେ ପଡୁନାହିଁ । କଟକ ଦୂରଦର୍ଶନ କେନ୍ଦ୍ର ବଣ୍ଡା ଆଦିବାସୀ ମାନଙ୍କ ଉପରେ ଏକ ଯୌଥ ଆଲୋଚନା ର ଆୟୋଜନ କରିଥିଲେ । ମୋ' ସହିତ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ଡ଼: ପ୍ରତିଭା ରାୟ ଓ ଡ଼: ହାଡ଼ିବନ୍ଧୁ ମିର୍ଦ୍ଧା । ସୁଲେଖିକା ଡ଼: ପ୍ରତିଭା ରାୟ ଏଇ ଅବସରରେ ତାଙ୍କ ତୁଳସୀପୁର ସ୍ଥିତ ବାସଭବନକୁ ଡ଼ାକି ଆମ୍ଭମାନଙ୍କୁ ଆତିଥେୟତାରେ ମୁଗ୍ଧ କରିଥିଲେ । ତାଙ୍କ ପ୍ରତିଭା ଯେପରି ପରିଚ୍ଛନ୍ନ ତାଙ୍କ ରୁଚି ଓ ବ୍ୟକ୍ତିତ୍ୱ ସେପରି ମାର୍ଜିତ ।

ଦୂରଦର୍ଶନର ସମ୍ବଲପୁର କେନ୍ଦ୍ର ନୂଆଖାଇ ଉପରେ କାର୍ଯ୍ୟକ୍ରମଟିଏ ପ୍ରସ୍ତୁତ କରିବାକୁ ଚାହିଁଲେ । ଆମେ ପାଖ ଗାଁ କୁସୁମ ଡ଼ିହିକୁ ବାଛିଲୁ । 'ନୂଆଖାଇ' ପର୍ବ ମାଧ୍ୟମରେ ଏ ଅଞ୍ଚଳର କଳା, ସାହିତ୍ୟ, ସଂସ୍କୃତି ଓ ପରମ୍ପରାର ଏକ ମାର୍ଜିତ ସୂଚନା ଦେବାଥିଲା ଏ ଆୟୋଜନର ଉଦ୍ଦେଶ୍ୟ । ଟି.ଭି ପରଦାରେ ପ୍ରସାରିତ ନହେଲେ ସଂସ୍କୃତି କୁଆଡ଼େ ଅମାର୍ଜିତ ରହିଯାଏ ।

ଏତ ଟିଭିର ଯୁଗ । ଟି.ଭି. ପରଦାରେ ମୁହଁଟିମାନ ପ୍ରସାରିତ କରିବାର ପ୍ରବଳ ଆଗ୍ରହ ଆମଲୋକଙ୍କୁ ଘାରିଛି । ଟି.ଭି ପରଦାରେ ଜୀବନରେ ଅନ୍ତତ଼ ଥରୁଟିଏ ନିଜମୁହଁ ଦେଖାଇ ନପାରିଲେ ଜୀବନ ବ୍ୟର୍ଥ ଗଲା ବୋଲି ଭାବନ୍ତି ଆମ ଯୁବକମାନେ ।

କାହିଁକି କେଜାଣି ଦୂରଦର୍ଶନକୁ ଦୂରୁ ଯୁହାର କରିବାକୁ ମୋର ମନହୁଏ । "ଦୂରକୁ କରିଲ ନିକଟ ବନ୍ଧୁ ନିକଟକୁ କଲ ଦୂର ।" ଗୀତ ପଦଟି ମୋ' ମନକୁ ପଶି ଆସେ ଟି.ଭି. କଥା ପଡ଼ିଲେ । ଟି.ଭି ଠାରୁ ଆହୁରି ପ୍ରଖରତର ମିଡ଼ିଆ ଆସୁଛି । ଏଣୁ ଆଗାମୀ ସମୟ କହିବ ତା'ର କଥା ।



# ୮୪. ବାଣୀତ ବାଣୀ ଆକାଶବାଣୀ

ସ୍କୁଲରେ ପାଠ ପଢ଼ିବାବେଳେ ରେଡ଼ିଓ କଣ ଜାଣି ନଥିଲି । ପାଠ ବହିରୁ ମାର୍କୋନିଙ୍କୁ ଚିହ୍ନିଲି । ହେଲେ ତାଙ୍କ ତିଆରି ରେଡ଼ିଓରୁ କୌଣସି ବାଣୀ ଶୁଣିନଥିଲି । ଗଙ୍ଗାଧର ମେହେର କଲେଜକୁ ଆସିବାପରେ ରେଡ଼ିଓ ଦେଖିଲି । ଆମ ଲଜିକ୍ ସାର୍ ରେଡ଼ିଓଟାଏ ରଖିଥିଲେ । ଯେତେ ଦୂର ମନେ ପଡୁଛି ସେଇ ସାରଙ୍କ ନାଁଥିଲା ଶିଶିର ଗୁପ୍ତା । ଅତି ଭଦ୍ର ସ୍ୱଭାବର ବଙ୍ଗାଳୀ ଭଦ୍ରଲୋକ ଜଣେ । ଅତି ମୃଦୁ ସ୍ୱରରେ ରେଡ଼ିଓ ଶୁଣୁଥିଲେ ସେ । ୧୯୬୦ ବେଳକୁ ଗାଁ ଆଡ଼କୁ ରେଡ଼ିଓ ମୁହେଁଇଲା । ୧୯୬୨ରେ ମୁଁ ୫୦ଟି ଗୀତ କଟକ ରେଡ଼ିଓ ଷ୍ଟେସନକୁ ପଠେଇଲି । ସେତେବେଳେ କଟକ ରେଡ଼ିଓରେ କାଳନ୍ଦୀ

ଚରଣ ପାଣିଗ୍ରାହୀ କାର୍ଯ୍ୟକ୍ରମ ନିଷ୍ପାଦକ ଥିଲେ। ପ୍ରଚାର ପିଛା ଚାରିଅଣା ରୟେଲଟିରେ ମୋ' ଗୀତ ସ୍ୱୀକୃତି ପାଇଲା।

୧୯୬୨ ରେ ଚୀନ ଭାରତ ଆକ୍ରମଣ କଲା। ସ୍ୱାଧୀନତା ପ୍ରାପ୍ତିପରେ ଭାରତ ଶୋଇ ପଡ଼ିଥିଲା ପନ୍ଦର ବର୍ଷକାଳ। ଚୀନ ଆକ୍ରମଣ ନିଆଁ ଚେଙ୍କେଇଲା ପରି ଝୁଣି ପକେଇଲା। ଦେଶ ପ୍ରେମର ଗୋଟାଏ ଆବାଜ ଚାରିଆଡ଼େ ଫଇଲି ଗଲା। ଭାରତୀୟ କବିମାନେ "ହମ ଚିନୀକୋ ସିରା ବନାଦେଙ୍ଗେ" କହି ଗୀତମାନ ଲେଖିଲେ। ୧୯୬୫ରେ ଆକାଶବାଣୀ ଦେଶାତ୍ମବୋଧ– ଗୀତ ପ୍ରତିଯୋଗିତା କଲା। ସେଥିରେ ମୋର ଓଡ଼ିଆ ଗୀତ "ମରିନାହିଁ ସେତ ମରିନାହିଁ" ଗୀତଟି ସର୍ବଭାରତୀୟ ସ୍ତରରେ ପ୍ରଥମ ହୋଇଥିଲା। ମୋ'ଗୀତକୁ ପାଞ୍ଚଶହ ଟଙ୍କା ପୁରସ୍କାର ମିଳିଥିଲା। ସେଇ ଗୀତଟି ୧୯୬୫ ଅଗଷ୍ଟ ପନ୍ଦର ତାରିଖରେ ପ୍ରଚାରିତ ହୋଇଥିଲା। ଗୀତଟିକୁ ବୃନ୍ଦଗାନ ରୂପରେ ଅକ୍ଷୟ ମହାନ୍ତି, ଆରତି ମିଶ୍ର, ଦ୍ୱିଜେନ ମୁଖର୍ଜି ପରି କଳାକାର ମାନେ ଗାଇଥିଲେ।

ଆଣ୍ଟୁ ଭୀମଗଦା ସଦା ସର୍ବଦା କାଟୁ ଅରାତିର ଶୀର
ନେଇ ପାଶୁପାତ ସେନା ଶତଶତ ଛୁଟୁ ଆଜି ହାଜିପୀର ଛୁଟୁ ଆଜି ମହାବୀର॥

ଭଳି ଉତ୍ତେଜକ ପଂକ୍ତିସବୁ ସେ ଗୀତରେ ଥିଲା। ସେଇ ଗୀତର ପୁରସ୍କାର ଧନରୁ ଅଧେ ଆମ ପରମାଣପୁର ହାଇସ୍କୁଲ ପିଲାଙ୍କୁ ଖୁସିରେ ବାଣ୍ଟିଦେଲି ମିଠେଇ ଖାଇବାକୁ। ବାକି ଅଧାରେ ଗୋଟାଏ ରେଡ଼ିଓ କିଣିଲି। ରେଡ଼ିଓଟି ଥିଲା ହିନ୍ଦ କମ୍ପାନୀର। ରେଡ଼ିଓଟିକୁ ମୁଁ ତିରିଶ ବର୍ଷ କାଳ ବ୍ୟବହାର କଲି। କେବେ ବିଗିଡ଼ି ନାହିଁ। ମୋ' ସହିତ ରେଡ଼ିଓଟା ବି ବୁଢ଼ା ହୋଇଗଲା ସେତେବେଳକୁ ରେଡ଼ିଓ ବନାଇଥିବା କମ୍ପାନି ବି ଆଉ ନଥିଲା। ପୃଥିବୀର ସବୁ ଷ୍ଟେସନ ଧରୁଥିଲା। ଭଲ୍ୟୁମ ବଢ଼ାଇଦେଲେ ମାଇକପରି ଗର୍ଜି ଉଠୁଥିଲା। କ୍ରମେ ତା'ର ଯନ୍ତ୍ରାଂଶ ଶିଥିଳ ହେଲା ମୋ ହାତଗୋଡ଼ ପରି। ଏ ରେଡ଼ିଓର ସ୍ପେଆର ପାର୍ଟ୍ସ ନ ମିଳିବାରୁ ଏହାକୁ ମୋତେ ଛାଡ଼ିବାକୁ ପଡ଼ିଲା। ଧନ୍ୟ କହିବା ସେ ରେଡ଼ିଓର କାରିଗରକୁ। ରେଡ଼ିଓରେ ମୋର ସର୍ବପ୍ରଥମ ଭଜନ ପ୍ରଚାରିତ ହୋଇଥିଲା ରଘୁନାଥ ପାଣିଗ୍ରାହୀଙ୍କ କଣ୍ଠରୁ। "ମରଣ ବରଣ କଲି ଆହେ ପ୍ରଭୁ" ଗୀତର ପ୍ରଥମ ଧାଡ଼ିଥିଲା ୧୯୬୫ ପରେ ସମ୍ବଲପୁର ଆକାଶବାଣୀ ତା'ର କାର୍ଯ୍ୟ ଆରମ୍ଭକଲା। କଟକ କେନ୍ଦ୍ର ଆମକୁ ପଚାରିଲା ନାହିଁ। କଟକ, ସମ୍ବଲପୁର, ଜୟପୁର ତିନୋଟି କେନ୍ଦ୍ରଥିଲା। ଏବେ ପ୍ରତି ଜିଲ୍ଲାରେ ରେଡ଼ିଓ ଷ୍ଟେସନ୍ ହେଲାଣି। ଆଗେ ଗୋଟିଏ କେନ୍ଦ୍ର ଓଡ଼ିଶାର କଳା ପିପାସାକୁ ପ୍ରଶମିତ କରି ପାରୁଥିଲା। ସମନ୍ୱୟ ରକ୍ଷା କରୁଥିଲା। ଏବେ ଆକାଶବାଣୀ ମୋ ବିଚାରରେ, ଏକ ଓଡ଼ିଶାକୁ ଅନେକ ଭାଗରେ ଭାଗ କରି କରି ଚାଲିଛି। ଗୋଟିଏ କେନ୍ଦ୍ର ତା'ର ପରିସର ବାହାରର ଲୋକଙ୍କୁ ପଚାରୁନାହିଁ। କଟକ କେନ୍ଦ୍ରର ମୁଁ ଜଣେ ପୂର୍ବରୁ ସଂପୃକ୍ତ ବ୍ୟକ୍ତି। ମାତ୍ର ସମ୍ବଲପୁର କେନ୍ଦ୍ର ସ୍ଥାପିତ ହେବାପରେ ଓଡ଼ିଶାର ଅନ୍ୟ

କୌଣସି କେନ୍ଦ୍ର ମୋତେ ବ୍ୟବହାର କରିନାହିଁ। ଗୁଡ଼ାଏ କେନ୍ଦ୍ର ପ୍ରତିଷ୍ଠିତ ହୋଇଛି ସତ। ବିକେନ୍ଦ୍ରୀ କରଣର ପ୍ରକ୍ରିୟା ଆରମ୍ଭ ହୋଇନାହିଁ। ଆକାଶବାଣୀକୁ ଆପଣାର ବାଣୀରେ ସୀମିତ ରହିବାକୁ ପଡୁଛି।

ସମ୍ବଲପୁର କେନ୍ଦ୍ରରେ କବି ଉମାଶଙ୍କର ପଣ୍ଡା, ବନ୍ଧୁ ଶରତ ନାରାୟଣ ବେହେରା ଓ ମାନଭଞ୍ଜନ ହୋତା ଚାକିରି କଲେ। ଏଣୁ ଏମାନେ ଆମ୍ଭମାନଙ୍କୁ ଅନେକ ସୁଯୋଗରେ ସାମିଲ କଲେ। ସମ୍ବଲପୁର କେନ୍ଦ୍ରରୁ ମୋର ବହୁ ନାଟକ ପ୍ରଚାରିତ ହେଲା। ସାହିତ୍ୟ ଆସରରେ ଆଲୋଚନା, ଗଳ୍ପ, କବିତା ପ୍ରଚାରିତ ହେଲା। ଗୋଟିଏ କଥାରେ ସମ୍ବଲପୁର ଆକାଶବାଣୀ ମୋ' ସହିତ ଏ ଯାଏଁ ସୁ ସମ୍ପର୍କ ରଖିଛି। ଶରତ ନାରାୟଣ ବେହେରା, ମାନଭଞ୍ଜନ ହୋତା, ଅଭୟ ପାଢ଼ୀ, ଚତୁର୍ଭୁଜ ପଣ୍ଡା, ରାହାସ ବିହାରୀ ମିର୍ଦ୍ଧା, ପଦ୍ମଲୋଚନ ଦାଶ, ମୁରଲୀଧର ପଣ୍ଡା, ବଦ୍ରିନାରାୟଣ ମିଶ୍ର, ପ୍ରଭୁଦତ୍ତ ପ୍ରଧାନ ଭଳି ବନ୍ଧୁମାନେ ମୋତେ ବହୁ ସୁଯୋଗ ଦେଇଛନ୍ତି। ଧନ୍ୟ କହିବା ଏମାନଙ୍କୁ।

କଟକରୁ ବଦଳି ଆସି ନୟନ କିଶୋର ମାହାନ୍ତି, ବ୍ରଜମୋହନ ମହାନ୍ତି, ବରାହ କୁମାର ପହାନ୍ତି, ନିଶିଥ ନାୟକ, ରମାପଦ ନନ୍ଦ, ଶଶୀଭୂଷଣ ଦାଶ ଭଳି ବନ୍ଧୁମାନେ ମୋ ଭଳି ବହୁ ଲୋକଙ୍କୁ ସୁଯୋଗମାନ ଦେଇଛନ୍ତି।

୧୯୮୭ ରେ ସମ୍ବଲପୁର କେନ୍ଦ୍ରର ପ୍ରୋଗ୍ରାମ ଏଡ୍‌ଭାଇଜରି କମିଟିରେ ନନ୍ ଅଫିସିଏଲ୍ ସଭ୍ୟ ଭାବରେ ପ୍ରାୟ ଦୁଇବର୍ଷ ସଂପୃକ୍ତ ରହିଛି। କିଛିବର୍ଷ ଶୀତଳଷଷ୍ଠୀ ଯାତ୍ରାର ଧାରା ବିବରଣୀ ଦେଇଛି ଆକାଶବାଣୀ ତରଫରୁ ୧୯୯୮ରେ ଭାରତର ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଆକାଶବାଣୀ କଟକ କେନ୍ଦ୍ରର ଭଦ୍ରକ କବି ସଂଗୋଷ୍ଠି ରେ ଯୋଗ ଦେବାକୁ ବିଜନ ଦାସ ମୋତେ ସୁଯୋଗ ଦେଇଥିଲେ। କବି କୁମାର ହସନ ମଧ୍ୟ ମୋ'ସହ ସେଇ କବି-ସମାବେଶରେ ଯୋଗ ଦେଇଥିଲେ। ମୋଟ ଉପରେ ଆକାଶବାଣୀ ମୋତେ ବହୁ ସୁଯୋଗରେ ସାମିଲ କରିଛି ଓ ମୁଁ ସେ ସବୁ ସୁଯୋଗକୁ ସୁ ବିନିଯୋଗ କରିଛି।

ଆକାଶବାଣୀ ମୋ' ଜୀବନର ବାଣୀକୁ କେବଳ ପ୍ରଚାର କରିନାହିଁ ମୋତେ ଆକାଶ ଭଳି ପ୍ରସାରିତ କରିଛି। ମୋ' ଅନ୍ତସ୍ଥଳକୁ ଏକ ମୃଦୁ କମ୍ପନରେ ଝଂକୃତ କରିଛି।



## ୮୫. ବହିଯେବେ ବେପାର କରେ

ମୁଁ ମେଟ୍ରିକ ପାସ୍ କଲାବେଳକୁ ମାଧ୍ୟମିକ ଶିକ୍ଷା ବୋର୍ଡ଼ର ଜନ୍ମ ହୋଇ ନଥିଲା। ଜନ୍ମ କଣ ଶିକ୍ଷା ବୋର୍ଡ଼ର ମା'ବାପାଙ୍କ ବିବାହ ମଧ୍ୟ ହୋଇ ନଥିଲା। ମୁଁ ଶିକ୍ଷକତା କଲା ବେଳକୁ ଅବଶ୍ୟ ଶିକ୍ଷା ବୋର୍ଡ଼ କାମ କରିବା ଆରମ୍ଭ କରିଦେଇଥିଲା। କଟକ ବକ୍ସିବଜାରର ଏକ ଖାଲୁଆ ଅଞ୍ଚଳରେ ସାମାନ୍ୟ କେତୋଟି କୋଠରୀରେ ବୋର୍ଡ଼ କାମ ଆରମ୍ଭ ହେଲା।

ସାରା ଓଡ଼ିଶାର ମେଟ୍ରିକ୍ ପରୀକ୍ଷା କୁ ଉତ୍କଳ ବିଶ୍ୱବିଦ୍ୟାଳୟ ଚ଼ଳଉଥିଲା । କୋଠାରୀ କମିଶନ ଓ ମୁଦାଲିଆର କମିଶନଙ୍କ ସୁପାରିଶ ଅନୁସାରେ ଭାରତର ପ୍ରାୟ ସବୁ ପ୍ରଦେଶରେ ମାଧ୍ୟମିକ ଶିକ୍ଷା ବୋର୍ଡ଼ମାନ ଜନମନେଲା । ସବୁ ବିଷୟରେ ଓଡ଼ିଶା ତା'ର କାର୍ଯ୍ୟକ୍ରମ ଡେରିରେ ଆରମ୍ଭ କରୁଥିବାରୁ ମାଧ୍ୟମିକ ଶିକ୍ଷାବୋର୍ଡ଼ ସ୍ଥାପନରେ ମଧ୍ୟ ପଛୁଆ ରହିଲା । ଓଡ଼ିଶା ଆଜି ଏକ ପଛୁଆ ରାଜ୍ୟ ବୋଲି ପରିଚ଼ିତ ହେବା ମୂଳରେ ଏଇ କାରଣଟି ରହିଛି । ବିକାଶର ଧାରା ପ୍ରତି ଆମର ବିଶ୍ୱାସ ନାହିଁ । ଏଇ ଶିକ୍ଷା ବୋର୍ଡ଼ର ପ୍ରଥମକାମ ଥିଲା ମେଟ୍ରିକ୍ ପରୀକ୍ଷା ଚ଼ଳାଇବା । ବୋର୍ଡ଼ ସହ ମୋର ସମ୍ପର୍କ ସ୍ଥାପିତ ହେବାର ପ୍ରଥମ କାରଣ ହେଲା ବୋର୍ଡରେ ବନ୍ଧୁ ଶୁଭେନ୍ଦୁ ମୋହନ ଶ୍ରୀଚ଼ନ୍ଦନ ସିଂ ଓଡ଼ିଆ ଭାଷାର ବିଶେଷଜ୍ଞ ରୂପେ ଯୋଗଦେଲେ । ତାଙ୍କ ସହ ମୋର ଆଗରୁ ପରିଚ଼ୟ ଥିଲା । ସେ ମୋତେ ସିଲାବସ୍ ପ୍ରସ୍ତୁତି, ବହି ତିଆରି ଓ ପାଠ୍ୟ ଖସଡ଼ା ପରି ଅନେକ କାମରେ ଲଗେଇଲେ । ମେଟ୍ରିକ ପରୀକ୍ଷା ଚ଼ଳେଇବା, ଖାତା ସଂଶୋଧନ କରିବା, ମୂଲ୍ୟାୟନ କରିବା, ଟେବୁଲେସନ କାମ କରିବାରେ ମଧ୍ୟ ମୋତେ ଖଟେଇଲେ । କେପଟେନ ରାଧାକାନ୍ତ ମିଶ୍ର ମାଧ୍ୟମିକ ଶିକ୍ଷାବୋର୍ଡ଼ର ସେକ୍ରେଟାରୀ ହେବାପରେ ଆମ ପଶ୍ଚିମାଞ୍ଚଳର ବହୁ ଶିକ୍ଷକଙ୍କୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମାନ ଦେଲେ । କଟକର ବୋର୍ଡ଼ ଅଫିସଟି ସାରା ଓଡ଼ିଶାର କଥା ବୁଝୁଥିଲା । ପରେ ପରେ ସମ୍ବଲପୁର ଓ ବ୍ରହ୍ମପୁର ଶାଖାମାନ ଖୋଲିଲା । ଏବେ ତ ପି ଜିଲ୍ଲାକୁ ଗୋଟାଏ ଶାଖା ଦେବାର ଦାବୀ ହଉଛି । ଶାଖା ବଢୁଛି ସତ ହେଲେ ଡ଼ାଳ ମଞ୍ଚକୁ ଲାଗୁନାହିଁ କି ସ୍ୱର୍ଗକୁ ଲାଗୁନାଇଁ ।

ପ୍ରଥମେ ବୋର୍ଡ଼ ଅନ୍ୟ ପ୍ରକାଶକଙ୍କ ବହି ସବୁକୁ ପାଠ୍ୟ ପାଇଁ ମଞ୍ଜୁରି ଦେଉଥିଲା । ବୋର୍ଡ଼ ନିଜ ଦାୟିତ୍ୱରେ ବହି ପ୍ରସ୍ତୁତ କଲା । ବୋର୍ଡ଼ର ବହି ପ୍ରସ୍ତୁତିରେ ମୁଁ ସଂପୃକ୍ତ ହେଲି । ବନ୍ଧୁ ଶୁଭେନ୍ଦୁ ମୋହନ ଶ୍ରୀ ଚ଼ନ୍ଦନ ସିଂହ ମୋତେ ଛାଡ଼ିବାକୁ ନାରାଜ ।

ଥରେ ବୋର୍ଡ଼ କର୍ତ୍ତୃପକ୍ଷ ଡ଼ଃ ଗୋପାଳଚ଼ନ୍ଦ୍ର ମିଶ୍ର, ପ୍ରଫେସର ଗୋବିନ୍ଦ ଚ଼ନ୍ଦ୍ର ଉଦ୍‌ଗାତା ଓ ମୋତେ ନେଇ ଏକ କମିଟି ଗଢ଼ିଲେ । ଏଇ କମିଟିର କାମଥିଲା "ଗଳ୍ପ ଏକାଂକିକା" ବହିଟିକୁ ସମ୍ପାଦନ କରିବା । ଆମେ ତିନିଜଣ ସମ୍ବଲପୁର ସହର ଓ ପାଖ ଜାଗାର ଲୋକ ହୋଇଥିବାରୁ, ମୁଁ ପରାମର୍ଶ ଦେଲି, ଆମେ ତିନିଜଣ ଡ଼ଃ ଗୋପାଳ ମିଶ୍ରଙ୍କ ବସାରେ ଏକାମଟି କରିବୁ । ଫଳରେ କଟକ ବାରବାର ଦଉଡ଼ିବା କଷ୍ଟରୁ ମୁକ୍ତି ମିଳନ୍ତା ଓ ବୋର୍ଡ଼ର ଖର୍ଚ୍ଚ ବି କମିଯାନ୍ତା । ବୋର୍ଡ଼ କର୍ତ୍ତୃପକ୍ଷ ମୋର ପରାମର୍ଶକୁ ମାନିଲେ । ଆମେ ତିନିହେଁ "ଗଳ୍ପ ଏକାଙ୍କିକା" ସଙ୍କଳନଟି ପ୍ରସ୍ତୁତ କଲୁଁ ।

ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳରୁ ପ୍ରତିନିଧିତ୍ୱ କରୁଥିବା ବଛା ବଛା ଲୋକଙ୍କୁ ବୋର୍ଡ଼ କାର୍ଯ୍ୟକ୍ରମରେ ସାମିଲ କରିବାକୁ କର୍ତ୍ତୃପକ୍ଷ ସଦା ସର୍ବଦା ଚ଼େଷ୍ଟା କରିଛନ୍ତି । ଗଣତାନ୍ତ୍ରିକ ପଦ୍ଧତିରେ ବହୁମତକୁ ସମ୍ମାନ ଦିଅନ୍ତି । ସେଇଥିପାଇଁ କୌଣସି କାମ କରିବାକୁ ବାରିପଦାରୁ

ଜଣେ କୋରାପୁଟରୁ ଜଣେ। ଏପଟେ ସୁନ୍ଦରଗଡ଼ରୁ ଜଣେତ ଆରପଟରୁ କଳାହାଣ୍ଡିରୁ ଜଣେ। ଏପରି ଦୂର ଦୁରାନ୍ତରର ସଂଯୋଗ ନାନା ଅସୁବିଧା କରେ। କାମକୁ ଆଗେଇ ନେବାରେ ବିଳମ୍ବ ଘଟେ। ବହିଟିଏ, କରିବାକୁ ବର୍ଷ ବର୍ଷ ଲାଗିଯାଏ। ବୋର୍ଡ଼ପାଇଁ କାମଟି ଛ ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା ଦରକାର ପଡ଼େ। ମାଧ୍ୟମିକ ଶିକ୍ଷା ବୋର୍ଡ଼ର ପାଠ୍ୟ ବହିରେ ମୋର "ତଥାଗତ" ଏକାଙ୍କିକା ଓ "ସୁମତିର ସ୍ୱପ୍ନ" ଗଳ୍ପଟି ବହୁବର୍ଷ ପର୍ଯ୍ୟନ୍ତ ମେଟ୍ରିକ ପିଲାଙ୍କ ପାଠ୍ୟ ହୋଇ ରହିଥିଲା। ଆଗେ ମେଟ୍ରିକ ପରୀକ୍ଷାରେ ଖାତା ଶିକ୍ଷକ ମାନଙ୍କ ଘରକୁ ଆସୁଥିଲା। ଖାତା ଡ଼ାକରେ ଯିବା ଆସିବାରେ ଅହେତୁକ ଡ଼େରି ହବାରୁ ଖାତା ମୂଲ୍ୟାୟନ କେନ୍ଦ୍ରମାନ କାମକଲା। ଶିକ୍ଷକମାନେ କେନ୍ଦ୍ରକୁ ଯାଇ ଖାତା ସୁଝିଲେ। ଏ ମୂଲ୍ୟାୟନରେ ମଧ ନାନା ଧରାଧରି ଓ ଅସୁବିଧା ଚାଲୁଛି ବୋଲି ହୁରି ପଡ଼ିଲାଣି। ଆଗେ ଶିକ୍ଷକମାନେ ଟେବୁଲେସନ କରୁଥିଲେ। ଏବେ ସେ କାମଟି କୁଆଡ଼େ କମ୍ପ୍ୟୁଟର କରୁଛି। ମୂଳତଃ ଶିକ୍ଷକ ପରିଚ୍ଛନ୍ନ ନହେଲେ ପରୀକ୍ଷା ସଂକ୍ରାନ୍ତ କୌଣସି ବ୍ୟବସ୍ଥା ସଫଳ ହେବନାହିଁ। ପିଲାଙ୍କ ଉପକାର ନହେଲେ କୌଣସି ପରୀକ୍ଷା ସଂସ୍କାର ଫଳବତୀ ହେବନାହିଁ। ପରୀକ୍ଷାରୁ ପଇସା ଓ ବହିରୁ ବେପାର ଆରମ୍ଭ ହୋଇଗଲେ ଯେ କୌଣସି ବ୍ୟକ୍ତି ବା ଅନୁଷ୍ଠାନ ସ୍ଖଳିତ ହେବ ହିଁ ହେବ। ମାଧ୍ୟମିକ ଶିକ୍ଷାବୋର୍ଡ଼ କାର୍ଯ୍ୟଧାରାରେ ସଂପୃକ୍ତ ବ୍ୟକ୍ତିବିଶେଷଙ୍କୁ ଅତ୍ୟଧିକ ସୁଯୋଗ ଦେବା ମାନେହିଁ ବହୁ ଦୁର୍ଯୋଗକୁ ଆମନ୍ତ୍ରଣ କରିବା।

ବହି ଛପାର ବଳୟକୁ ପ୍ରସାରିତ ନକରି ବିପଣିକୁ ସଜାଡ଼ିଲେ ଲାଭକଣ? ବୋର୍ଡ଼ର ବହି ବେପାର ବୋର୍ଡ଼ ପାଇଁ କେବେ ନା କେବେ କାଳ ହେବ ନିଶ୍ଚୟ। କାରଣ ମାଧ୍ୟମିକ ଶିକ୍ଷାବୋର୍ଡ଼ର ମୂଳଲକ୍ଷ୍ୟ ହେଉଛି ମାଧ୍ୟମିକ ସ୍ତରର ଶିକ୍ଷାକୁ ସଫଳ କରିବା।

୧୯୮୦ ବେଳକୁ କପି କରବା ପ୍ରବଳରୁ ପ୍ରବଳତର ହୋଇ ସାରିଥିଲା। ଆମ ପରମାଣପୁର ହାଇସ୍କୁଲରେ ଶିକ୍ଷକଗଣ ବସି ବିଚାର କଲେ ପରୀକ୍ଷାର ପ୍ରଶ୍ନପତ୍ର ହିଁ ହବ ଉତ୍ତର ଖାତା। ବୋର୍ଡ଼ ପରୀକ୍ଷା କେନ୍ଦ୍ର ଆଗରେ ମାଇକ ସବୁ ଉତ୍ତର ଡ଼ାକି ଦେଉଥିଲେ। ଦଳଦଳ ହୋଇ ପିଲା କାର୍ବନ କପି କରୁଥିଲେ ଉତ୍ତର ମାନଙ୍କର। କପି ବାଣ୍ଟୁଥିଲେ। ପରୀକ୍ଷା କେନ୍ଦ୍ରଟି ମାଛ ଗାଡ଼ିଆ ବା ସାହାଣମେଳା ଠାରୁ କୌଣସି ରୂପରେ ଅଲଗା ନଥିଲା। ଏଣୁ ଆମ ସ୍କୁଲର ପ୍ରତିଟି ବିଷୟରେ ଶହେଟି ପ୍ରଶ୍ନଥିଲା। ପ୍ରତି ପ୍ରଶ୍ନପାଇଁ ଏକମାର୍କା। ପିଲାଙ୍କୁ କୁହାଗଲା ସେମାନେ ଯେତେ ପାରୁଛନ୍ତି ସେତେ କପି ବା ବହି ସାଙ୍ଗରେ ଆଣି ପାରନ୍ତି। ଦୁଇଘଣ୍ଟା ଭିତରେ ଶହେଟି ପ୍ରଶ୍ନର ଉତ୍ତର ଦେବାକୁ ହେବ। ଏ ପଦକ୍ଷେପଟି ଖୁବ୍ ସଫଳ ହେଲା। ଆମ ସ୍କୁଲରେ ଆମ ପିଲାଙ୍କୁ ଏ ପ୍ରୟୋଗଟି ଅନେକଙ୍କ ଆଖି ଫିଟାଇ ଦେଲା। ଛାତ୍ର ଶିକ୍ଷକ ଓ ଅଭିଭାବକ୍ ଏହାକୁ ସମର୍ଥନ କଲେ। ଏ ପ୍ରୟୋଗକୁ ମୁଁ ବୋର୍ଡ଼ରେ ଥୋଇଲି। ଜଣେ ସାଧାରଣ ଶିକ୍ଷକର ପରାମର୍ଶ ଆମ ହାକିମ ମାନଙ୍କ ମନକୁ ଛୁଇଁଥାନ୍ତା ଭଲା!

ଗେଟ୍‌ଟି ବନ୍ଦଥାଏ। ଭିଖାରି ଭିଖ ଦେବାକୁ ସଂକେତ କଲା ବୋହୂଟି ଚାଉଳ ମୁଠାଏ ଦେବି ବୋଲି ଯିବାବେଳକୁ ଉପର ମହଲାରୁ ଶାଶୁ ସାନ୍ତାଣୀ ହୁଙ୍କାରିଲେ "ତୁ କିଏ ଭିଖ ଦବାକୁ?" ବୋହୂଟି ଫେରିଗଲା। ଭିଖାରି ରହନ୍ତା କିଆଁ? ଶାଶୁ ଉପର ମହଲାରୁ ଓହ୍ଲାଇ ଭିଖାରିକୁ ଡ଼ାକିଲେ "ଆରେ ଭିକାରି ନେ, ଭିଖ ନେ।" ଶାଶୁ ସାନ୍ତାଣୀଙ୍କ ଭିଖ ଦେବା ଅଧିକାର। ବୋହୂଟି ସେ ଅଧିକାର ଛଡ଼େଇନେବ? ଠିକ୍ ସେମିତି ଆମର ହାକିମ ମାନେ ସିନା ଶାଶୁ ସାନ୍ତାଣୀ ଭଳି ଅଧିକାର ପାଇଛନ୍ତି। ମାମୁଲି ଶିକ୍ଷକ ସେ ଅଧିକାର ପ୍ରୟୋଗ କରି ପାରିବ କି? ଏଇତ ବିଡ଼ମ୍ବନା! ଏବେ ଶୁଣୁଛି ପ୍ରାୟ କୋଡ଼ିଏ ବର୍ଷ ତଳର ଆମ ପ୍ରୟୋଗକୁ ବୋର୍ଡ଼ କର୍ତ୍ତୃପକ୍ଷ ଆରମ୍ଭ କଲେଣି। ବେଲ ପାଚିବାକୁ ବରଷେ ଲାଗେ। ଆମ ସାହେବମାନଙ୍କ ବୁଦ୍ଧି ପାଚିବାକୁ କୋଡ଼ିଏ ବରଷ ନ ଲାଗିବ କିଆଁ?

ଶିକ୍ଷା ବ୍ୟକ୍ତି ପାଇଁ ଏକ ସଂସ୍କାର। ବ୍ୟକ୍ତି ଛୋଟରୁ ବଡ଼ ହେବା ଭିତରେ ଶିକ୍ଷାର ଭୂମିକା ମା'ର ଭୂମିକା। ଶିକ୍ଷା ସହ ସଂପୃକ୍ତ ସଭିଙ୍କର ମା'ର ହୃଦୟଟିଏ ଲୋଡ଼ା ମା' ସନ୍ତାନର ମଙ୍ଗଳ ହିଁ କରେ। ମୋର ଆଶା, ମାଧ୍ୟମିକ ଶିକ୍ଷାବୋର୍ଡ଼ ମା'ଟିଏ ହଉ।



## ୮୬. ଘୋଡ଼ାକୁ ଲଗାମ ତ ଘଡ଼ିକୁ ଦମ

ବଡ଼ ପାଇଁ ମେକ୍‌ସି ତ ସାନ ପାଇଁ ମିନି। ସେଇ ପରି ଦିଲ୍ଲିରେ ଇନ୍ଦିରା ଗାନ୍ଧୀଟିଏ କୁର୍ସିରେ ବସିଲେ ଓଡିଶାରେ ନନ୍ଦିନୀଟିଏ ଦରକାର ପଡ଼େ। ସେହି ରୀତିରେ ଦିଲ୍ଲୀରେ **NCERT** ଟିଏ ରହିଲେ ଓଡ଼ିଶାରେ **SCERT** ଟିଏ ନ ରହିବ କିଆଁ ? ଶିକ୍ଷକ ମାନଙ୍କୁ ତାଲିମ ଦବା ପାଇଁ ଆଗେ **ET SCHOOL** ଥିଲା। ସେଇଟା କୁଆଡ଼େ ଛୋଟ ହୋଇଗଲା। ତା' ପଛକୁ ଆସିଲା **CT** ଏମିତି ତା'ପଛକୁ ତା'ପଛ ବି.ଇ.ଡି., ଏମ୍.ଇ.ଡି. ଆଉ କେତେ କ'ଣ। ଶିକ୍ଷକ ମାନଙ୍କ ତାଲିମ ପାଇଁ ସରକାର ଭାରି ହରବର ହେଲେ। ଶିକ୍ଷକ ମାନଙ୍କ ଚେତନାକୁ ପଜେଇବା ପାଇଁ ଉପାୟମାନ କଲେ। ପାଠୁଆ, ପାଠ୍ୟ ଓ ପାଠ ଦାନକାରୀ ମାନଙ୍କୁ ସମୟର ଭାବ ସହିତ ସଜାଗ ରହିବାକୁ ସଂସ୍ଥାଟିଏ ଗଢିଲେ। ରାଜ୍ୟ ଶିକ୍ଷା ତାଲିମ ଗବେଷଣା ସମିତି। ସଂକ୍ଷେପରେ ଏବେ **SCERT (STATE COUNCIL OF EDUCATION RESEARCH TRAINING)** କୁଆଡ଼େ ଏବେ ଏ ନାଁଟି ବଦଳି ଗଲାଣି। ଏକଇରବଳା ରାଧାନାଥ ଟ୍ରେନିଂ କଲେଜ ପଛକୁ ସରକାରୀ ଟ୍ରେନିଂ କଲେଜ୍ ମାନ ଖୋଲିଲା। ଏବେ ବେସରକାରୀ ଟ୍ରେନିଂ କଲେଜ ଯାହାକୁ ଯେତେ। ପହିଲି ଆଷାଢରେ ଛୁଗୁଡ଼ା ଫୁଟିବା ପରି ଏବେ ସବୁ ଜିଲ୍ଲାରେ ଟ୍ରେନିଂ କଲେଜ ଓ ସବୁ କଲେଜରେ ଏଡୁକେସନ୍ ଫୁଟିଲାଣି। ତଥାପି ଆମ ରାଜ୍ୟରେ ପାଞ୍ଚଟି କିଲାସ୍

ପାଇଁ ଜଣେ ଶିକ୍ଷକ ଥିବା ବଡ଼ କଥା । ଖବର କାଗଜରେ ବାହାରୁଛି ଓ ବଛିତ ଘଟ ପାସ୍ ପିଲାଏ ବେକାର ଥାଇ ଶିକ୍ଷା ମନ୍ତ୍ରୀଙ୍କ ଘର ଆଗରେ ଧାରଣା ଦଉଛନ୍ତି । ଏ ହଉଛି ଆମ ରାଜ୍ୟରେ ଶିକ୍ଷାର ବିଡ଼ମ୍ବନା । **SCERT** ଏଇ ତାଲିମ ଅନୁଷ୍ଠାନ ଓ ଶିକ୍ଷା ବିଷୟର କଥା କୁଆଡ଼େ ବୁଝେ ।

ପାଥମିକ ଶେଣୀର ପାଠ୍ୟ ବହି ପ୍ରଥମେ ଶିଶୁ ସାହିତ୍ୟ ସମିତି କରୁଥିଲା । ପ୍ରଥମ ଶ୍ରେଣୀର ବହି ବାହାର କରିବାରେ ଅନନ୍ତ ପଟ୍ଟନାୟକ ନେତୃତ୍ୱ ନେଇଥିଲେ । କ'ଣ ହେଲା କେଜାଣି ଶିଶୁ ସାହିତ୍ୟ ସମିତି ହାତରୁ ବହି ତିଆରି କାମ କାଢ଼ି ନିଆଗଲା ଓ **SCERT** କୁ ଦିଆଗଲା । ପ୍ରଥମ ଶ୍ରେଣୀର ବହି ତିଆରି କାମରେ ଅନନ୍ତ ପଟ୍ଟନାୟକଙ୍କ ସହ ମୁଁ ଥିଲି । ଏଣୁ **SCERT** ମତେ ଏ ବାବଦରେ ସାମିଲ କଲା । ୧୯୮୧-୮୨ରୁ ୧୯୯୧-୯୨ ପ୍ରାୟ ୧୦ବର୍ଷ କାଳ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବହି ତିଆରି କାମ କରିଛି । ଡ଼ଃ ଶରତ ଚନ୍ଦ୍ର ଦାଶ ପ୍ରଥମେ ଏଇ ସବୁ କାମରେ ପୂରେଇଲେ । ଡ଼ଃ ଗୋପାଳ ଚନ୍ଦ୍ର ମିଶ୍ର, ରାମ ପ୍ରସାଦ ମହାନ୍ତି, ସର୍ବେଶ୍ୱର ସାମଲ, ଶୁଭେନ୍ଦୁ ମୋହନ, ଶ୍ରୀ ଚନ୍ଦନସିଂହ, ରମେଶ ଚନ୍ଦ୍ର ଭଂଜ, ବୈଷ୍ଣବ ସାମଲ, ମହେଶ୍ୱର ମହାନ୍ତି, ଭଞ୍ଜ ପ୍ରବୀଣ ଓ ନିଷ୍ଠାପର ଲେଖକମାନେ ଏ କାମରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ବିଷୟର ପାଠ୍ୟ ବହି ୪ଇଉଜ' କରୁଥିଲା । ଅଷ୍ଟମରୁ ୧୦ମ / ଏକାଦଶ ପର୍ଯ୍ୟନ୍ତ ସବୁ ବିଷୟର ପାଠ୍ୟବହି **(SECONDARY BOARD)** ସେକେଣ୍ଡ୍ରହରୀ ବୋର୍ଡ ତିଆରି କରୁଥିଲା । ବୋର୍ଡରେ ମଧ୍ୟ ମୁଁ ଅଣ ଓଡ଼ିଆ ପିଲାଙ୍କ ପାଇଁ ଅଷ୍ଟମ ଶ୍ରେଣୀର ଓଡିଆ ବହି ଡ଼ଃ ବାଉରୀ ବନ୍ଧୁ କରଙ୍କ ସହ ମିଶି କରିଛି ।

ପ୍ରଥମ ଶ୍ରେଣୀର ବହି ତିଆରିପାଇଁ ଖାଲି ସାହିତ୍ୟିକ ହେଲେ ଚଳିବ ନାହିଁ। ପ୍ରାଥମିକ ସ୍ତରର ଛାତ୍ର ମାନଙ୍କୁ ବୁଝିଥିବା ଦରକାର । ଏଣୁ ଏ କାମ ପାଇଁ ମୋ ଜାଣିବାରେ ଶ୍ରୀ ଶୁଭେନ୍ଦୁ ମୋହନ, ଶ୍ରୀଚନ୍ଦନ ସିଂହ ଜଣେ ଦକ୍ଷ ଲୋକ । ମାତ୍ର କାହିଁକି କେ ଜାଣି ତାଙ୍କୁ ଏପରି ଅନେକ କାମରେ ପୂରେଇବାକୁ ଅନେକେ ଇଚ୍ଛୁକ ନଥିଲେ । ଶ୍ରୀ ଚନ୍ଦନ ବାବୁ ଅତିମାତ୍ରାରେ ନିଷ୍ଠାବାନ । ଏଣୁ ତାଙ୍କ ସହ ତାଳ ଦେଇ କାମ କରିବାରେ ଅନେକେ ରାଜି ନଥିଲେ । ପିଲାଙ୍କ ପାଇଁ ବହି ତିଆରି ବେଳେ ପିଲାଙ୍କ କଥା ଯେତେ ଭାବିବା କଥା ନିଜ ଲେଖା ପ୍ରଚାର ପାଇଁ ଥୋଇବା ସେତେ ଜରୁରୀ ନୁହେଁ ।

ମୁଁ ପ୍ରାଥମିକ ସ୍ତରରୁ ମେଟ୍ରିକ୍ ପର୍ଯ୍ୟନ୍ତ ପାଠ ପଢାଇବାରୁ ଛୋଟ ଛୋଟ ପିଲାଙ୍କ ମନୋଭାବ ଓ ଚଳଣି ବୁଝିଛି । ଏଣୁ ପ୍ରଥମ ଓ ଦ୍ୱିତୀୟ ବହି ତିଆରି ବେଳେ ଶ୍ରୀ ଶୁଭେନ୍ଦୁମୋହନ ଶ୍ରୀଚନ୍ଦନ ସିଂହ ମୋର ଅନେକ ପରାମର୍ଶ ମାନିଛନ୍ତି । ୩ୟ ଶେଣୀର ସାହିତ୍ୟ ବହିରେ ମୋର 'ବଣ ଓ ବଣୀ' କବିତା ରହିଛି । ଚତୁର୍ଥ ଶ୍ରେଣୀ ସାହିତ୍ୟ ବହିରେ "ପାହାଡ଼ର ଡ଼ାକ" ଓ ୫ମ ଶ୍ରେଣୀର ବହିରେ ଲେଖାଟିଏ ଅଛି । ବହି ତିଆରି ପାଇଁ ଆମ ବେଳେ ପଇସା ମିଳୁ ନଥିଲା । ଏବେ କୁଆଡ଼େ ମିଳୁଛି । ଏଣୁ ଲେଖକ ଓ ସଂକଳକ

ମାନଙ୍କ ମନକୁ ଲୋଭ ଚଢ଼ିଲା 'ପଇସା କ୍ୟା ନକରେ କାମ'। ବହି ତିଆରିକୁ ପଶି ଆସିଲା। ଏଣୁ ବହି ତିଆରି ଗୋଟାଏ ବେପାର ହୋଇଗଲା। ବେପାର ଆସିଲେ ଅଢ଼ୁଆମାନ ଆସେ।

ସରକାରଙ୍କ ଇଚ୍ଛା ପିଲାଙ୍କ ପାଇଁ ଭଲ ବହି ତିଆରି ହଉ। **SCERT** ଚାହେଁ ସାରା ଓଡିଶାର ଲେଖକ ପ୍ରତିନିଧିତ୍ୱ କରନ୍ତୁ। ଫଳରେ ରାୟଗଡ଼ାରୁ ରାଇବଣିଆ ପର୍ଯ୍ୟନ୍ତ ଲେଖକ ଏଥିରେ ସାମିଲ ହେଲେ। ଭୁବନେଶ୍ୱର ରାଜଧାନୀ। ନାନା କାମ ଥାଏ। ଦୂର ଲୋକ ପାଇଁ ଏ ରାଜଧାନୀ ଆଗମନ ଏକ ସୁଯୋଗ। ସେମାନେ **SCERT** ର ଏଇକାମରେ ଯୋଗ ଦେଇ ଆମ୍ଭ ମାନଙ୍କ ଭଳି ଥୋକେ ଭକୁଆଙ୍କୁ କହନ୍ତି 'ଆଜ୍ଞା ଆପଣଙ୍କ ଭଳି ଲେଖକ ଥାଉଁ ଥାଉଁ ଆମେ କିଏ ? ଆପଣ ଯାହା କରିବେ ଆମେ ଦସ୍ତଖତ ଦେଇଦେବୁ। ଫଳରେ ଆମକୁ ଭାଲୁ ଧରାଇ ସେ ବନ୍ଧୁମାନେ ରାଜଧାନୀରେ ଆପଣା ଆପଣା ବ୍ୟକ୍ତିଗତ କାମରେ ମାତି ଯାଆନ୍ତି। ମୋଭଳି କେତେ ଜଣ ବୋଲକରା ସେହି ବହି କାମ କରୁ। ଏମିତି ଅବସ୍ଥାରେ ଓଡିଶା ପ୍ରତିନିଧିତ୍ୱ କରିବ କ'ଣ? ଜଣକର କଥା ହି କାୟମ ରହେ। ଏଣୁ ବହି ତିଆରିରେ କୂପ ମଣ୍ଡୁକତା ରହିଯାଏ। ଗୋଟିଏ ବହି ପ୍ରସ୍ତୁତି ପାଇଁ ବର୍ଷ ବର୍ଷ ଲାଗିଯାଏ। ଖର୍ଚ୍ଚ ବଢେ। ଏ ଦାୟିତ୍ୱରେ ଥିବା ହାକିମ ହାଲିଆ ହୋଇଯାଆନ୍ତି। ନିମନ୍ତ୍ରିତ ଲେଖକ ମାନଙ୍କୁ କହିବେ କ'ଣ? ହାଇମାଲ ପଇମାଲ ହୋଇ କାମଟି ଗୁଡ଼ି ନିଅନ୍ତି। ପଦ୍ମ ଘୁଞ୍ଚ ଘୁଞ୍ଚିଯାଏ !

ବେପାରୀ ବେପାର କଲେ ବେପାରର ଭଲ ମନ୍ଦ ବୁଝେ। ଯେ ବେପାର କେବେ କରି ନାହିଁ ତାକୁ ଏ କାମ ଦେଲେ "ଘରେ ଥାଏ ସିଆନ, ହାଟକୁ ଯାଏ ଗୁଆଁର' ହବ ହିଁ ହବ। ଅକର୍ମା ସିନା କେବେ ଭୂମି ନିନ୍ଦୁଥିଲା  ଏବେ ଆମ ଶିକ୍ଷା ଦପ୍ତର ମାନଙ୍କରେ କାମ କରୁଥିବା କର୍ମିମାନେ ବହି ବେପାରକୁ ଆଉ ନିନ୍ଦୁ ନାହାନ୍ତି। ସଭିଙ୍କ ପାଇଁ ସବୁ ପ୍ରକାର ପରିବେଶ ସୁହାଏ ନାହିଁ। ଏଠି ରାମକୃଷ୍ଣ ପରମହଂସଙ୍କ କଥାଏ ମନେ ପଡୁଛି।

ଥରେ ଫୁଲବାଲୀ ଓ ଶୁଖୁଆବାଲୀ ହାଟରୁ ଫେରୁଥିଲେ। ସଂଜ ନଇଁ ଆସିଲା। ଫୁଲବାଲୀର ଘର ଆଗ ପଡିଲା। ଶୁଖୁଆବାଲୀ ଆଉ କିଛି ବାଟ ଗଲେ ଯାଇ ତା' ଗାଆଁ। ଫୁଲବାଲୀ ରାତିକ ତା'ଘରେ ରହିବାକୁ କହିଲା। ଶୁଖୁଆବାଲୀ ହଁ କଲା। ଦିହେଁ ଖାଇ ପିଇ ଶୋଇଲେ। କି ସୁନ୍ଦର ମାଳିଘର। ଚାରିଆଡ଼େ ଫୁଲର ମହ ମହ ବାସନା। ହେଲେ ରାତିସାରା ଶୁଖୁଆବାଲୀ ଛଟ ପଟ ହଉଛି। ନିଦ ହେଲା ନାହିଁ ତାକୁ। କ'ଣ ଭାବିଲା କେଜାଣି ତା ଶୁଖୁଆ ଝୁଡ଼ିଟା ମୁଣ୍ଡ ପାଖରେ ଥୋଇ ଦେବାରୁ ଚଟ୍ କିନା ନିଦ ଆସିଗଲା। ଶୁଖୁଆର ପଚା ଗନ୍ଧରେ ଯିଏ ଅଭ୍ୟସ୍ତ ଫୁଲର ତାଜା ବାସନା ତାକୁ ସୁଖ ଲାଗିବ ? ସେମିତି ପଚା ଅଭ୍ୟାସରେ ଅଭ୍ୟସ୍ତ ଆମ ଅମଲାତନ୍ତ୍ରକୁ ପରିଚ୍ଛନ୍ନ ପରିବେଶଟାଏ ସୁହାଇବ କିମିତି ?



# ୮୭. ସାଧନା ନଥାଇ ସାଧନ

ମୋର "ଘଟଘଟ ଚିନ୍ତା ବାଇମୁଣ୍ଡିକି" ବହିଟି ୧୯୭୨ରେ ନବ ସାକ୍ଷର ମାନଙ୍କ ପାଇଁ ଶ୍ରେଷ୍ଠ ବହି ରୂପେ ପୁରସ୍କାର ପାଇଲା। କେନ୍ଦ୍ର ସରକାର ସବୁ ଭାଷାର ଖଣ୍ଡେ ଖଣ୍ଡେ ବହିକୁ ଏପରି ପୁରସ୍କାର ଦିଅନ୍ତି।

ଏକଦା କବି ମାୟାଧର ମାନସିଂହ ଓ କବି ରାଧାମୋହନ ଗଡ଼ନାୟକ ପ୍ରୌଢ ଶିକ୍ଷାରେ ସଂପୃକ୍ତ ଥିଲେ। ସେମାନଙ୍କ ସହ ଏ ବାବଦରେ କିଛି କାମ କରିବାର ସୁଯୋଗ ପାଇଥିଲି। ମାନସିଂଙ୍କର ମତ ଆମେ ପ୍ରଥମରୁ ପ୍ରାଥମିକ ଶିକ୍ଷାକୁ ନଜର ଦେଇଥିଲେ ଆଜି ସେ ଅମଳର ପିଲାଏ ଆଜିକାର ନିରକ୍ଷର ପ୍ରୌଢ ହୋଇ ନଥାନ୍ତେ। ଆମେ ପ୍ରାଥମିକ ଶିକ୍ଷାକୁ ସବୁ ସମୟରେ ଅବହେଳା କରି ଆଗାମୀ ପାଇଁ ନିରକ୍ଷର ପୌଢ ପ୍ରସୁତ କରିଚାଲିଛୁଁ। ସେମାନେ ସାକ୍ଷର ହୁଅନ୍ତୁ ବୋଲି ଯୁକ୍ତି କରିକରି ଜାତୀୟ ସମ୍ପତ୍ତିର ଅପଚୟ କରିଚାଲିଛୁଁ। ସ୍ୱାଧୀନତାର ଆରମ୍ଭ ବେଳେ 'ଗ୍ରୋମୋର ଫୁଡ୍' ଥିଲା ଆହ୍ୱାନ। ଗରିବୀ ହଟାଓ ଆଉ ଏକ ଆହ୍ୱାନ। "ବେକାରୀ ଦୂର କର, ବେକାରୀ ଦୂର କର" ଆଉ ଏକ ଆହ୍ୱାନ। ଏଇମିତି ଯୁଗକୁ ଯୁଗ, କାଳକୁ କାଳ ସମୟକୁ ସମୟ ନୂଆ ଆହ୍ୱାନ ମାନ ଆସୁଛି। ଏବେ ପରିବେଶ ଆମକୁ ମାଡି ବସିଲାଣି। ଚତୁର ଲୋକେ ଏହି ଆହ୍ୱାନ ଗୁଡିକୁ ଆଲିଙ୍ଗନ କରିଦେଇ ବେଶ୍ ହାତ ଚିକଣ କରିବା ଆରମ୍ଭ କଲେଣି। ମାତ୍ର ଭାରତର ବାକି ଅଚତୁର ଲୋକେ ଏଥିରେ ମୁଣ୍ଡ ପୂରାଉ ନଥିବାରୁ ଏ ଚତୁରମାନେ ରାଜୁତି କରି ଚାଲିଛନ୍ତି। କେତେକେ ସ୍ୱେଚ୍ଛାସେବୀ, ଆଉ କେତେକେ ସମାଜସେବୀ ପୁଣି ପରିବେଶବିତ କେତେବେଳେ ଏନ୍ ଜି ଓ ଆଉ କେତେବେଳେ କଉ କଉ ନାମରେ ଉଭା ହେଉଛନ୍ତି। ସେବକ ହୋଇ ସେବା କରନ୍ତେ ସିନା ଢମଣା ସାପ ପରି ଗିଳି ପକାଉଛନ୍ତି। ଆମ ଆଦମୀ ଯେମିତି ରାମ ରାମ ଡାକୁଛି ସେମିତି ରାମ ରାମ ଡାକ ଚାଲିଛି। ଲୋକେ ଦି ଅକ୍ଷର ଶିଖି ଆପଣା ହାତରେ କରି ପାରିବାକୁ ମନା କରୁଛି କିଏ? ଜଣେ ଶିଖିଲେ ଆନର କ୍ଷତି ହେବ କିଆଁ। ମାତ୍ର ଅକ୍ଷର ଜାଣି ନଥିବା ଲୋକର ଦଶାକୁ ବେପାର କଲେ ସେଇଠି ଅସୁବିଧା। ଆମ ରାଜଧାନୀରେ ରାଜ୍ୟ ସାଧନ କେନ୍ଦ୍ର ନାମକ ଏକ ସଂସ୍ଥା ରହିଛି। କେନ୍ଦ୍ରର ସାକ୍ଷରତା ମିଶନର ଏକ ଶାଖା ପରା। ଏହି ସାଧନ କେନ୍ଦ୍ର ସହ ମୁଁ ଅନେକ ବର୍ଷଯାଏଁ ସଂପୃକ୍ତ ଥିଲି। ସାକ୍ଷରତା ପ୍ରସଂଗଟି ଆଗେ **SCERT** ବୁଝୁଥିଲା। ଏବେ ବୁଝୁଛିକି ନାହିଁ କହି ହେବ ନାହିଁ। **SCERT** ମୋର ଗୋଟିଏ ବହି "ଗଛକୁ ହେଲା ଫଳ ଭାରୀ" ଛାପି ଥିଲା। ଥରେ ଏକ ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ଗଂଜାମ ଜିଲ୍ଲାର ସାକ୍ଷରତା ଅନୁଧାନ କରିବାକୁ ମୁଁ ଯାଇଥିଲି। ଆମ ଦଳରେ ଓଡିଶାର ବଛା ବଛା ଜ୍ଞାନୀ, ଗୁଣୀ, ହାକିମ, ସାହେବ ମାନେ ଥିଲେ। ରାଜଧାନୀର ଏକ ଦାମୀ ବସରେ ଆମେ

ବାହାରିଲୁ । ବାଟରେ ଆମକୁ ଜାଗା ଜାଗା ଅନୁଷ୍ଠାନ ମାନେ, ସାକ୍ଷରତା ସଂଗଠନ ମାନେ ଆମକୁ ବନ୍ଦାଇଲେ । କୌଣସି ଉଚ୍ଚ ବର୍ଗର ବରଯାତ୍ରୀ ଦଳପରି ଆମେ ଯେଉଁ ସୁଖ ସବୁ ଚାଖିଲୁଁ ଶୁଣିଲେ ଆପଣ ବି ଇର୍ଷା କରିବେ । ଚିଲିକା କୂଳରେ ଜଳଯୋଗ କଲୁଁ । ଛତ୍ରପୁରରେ ସେଠାକାର ଜିଲ୍ଲାପାଳ ଆମକୁ ବନ୍ଦେଇ ନେଲେ । ତାଙ୍କ ସାକ୍ଷରତା ସଫଳତାର ଦଲିଲମାନ ଆମକୁ ବାଣ୍ଟିଲେ । ଗୋପାଳପୁରରେ ଆମେ ସଂଧ୍ୟା ହାୱା ଖିଆ ସାଙ୍ଗକୁ ସେଠାକାର ତହସିଲଦାର ଅତିଥି ଭବନରେ ଆମର ଚର୍ଚ୍ଚା କଲେ । ସବୁଦିନ ପରି ରାତିବି ଆସିଲା । ଆମେ ପହଞ୍ଚିଗଲୁଁ ଲଣ୍ଡା ବାଉଁଶ ନାମକ ଏକ ଗାଁରେ । ଗୋପାଳପୁର ଠାରୁ ପ୍ରାୟ ୧୫ କିଲୋମିଟର ହେବ ସେ ଗାଁ । ନିପଟ ମଫସଲି ସେ ଗାଁ । ସାକ୍ଷରତା କେମିତି ଚାଲିଛି ପରଖିବା ପାଇଁ ଆମେ ଘରକୁ ଘର ଗଲୁଁ । ମୁ ଗୋଟାଏ ଘରକୁ ଯାଇ ଜଣେ ବୟସ୍କା ସ୍ତ୍ରୀଲୋକଙ୍କୁ ପଚାରିଲି ,"ମାଉସୀ କେତେ ପାଠ ପଢିଲଣି" । ମୋ ମାଁ ପରି ସ୍ତ୍ରୀ ଜଣକ କହିଲେ "ସେଇ ବାବୁମାନେ ଶୁଆକୁ ରାମ ରାମ ଶିଖାଇଲା ପରି ଯାହା ଶିଖାଇଛନ୍ତି ଆମେ ସେତକୁ ଜାଣୁଛୁଁ । ନହେଲେ ପାଠ କିଏ, ଆମେ କିଏ? ଘର ପାଇଟିକୁ ତ ବେଳ ମିଳୁ ନାହିଁ ଆଉ ଏଇ ପାଠକୁ ପଢିବି କେତେବେଳେ? ସେଇ ମାଟି ର କଥା ଶୁଣି ମୋ ଗାଲରେ ଥାପଡ଼ ମାଇଲା ପରି ଲାଗିଲା । ଏହି ନିରିହ ମଫସଲି ମଣିଷଙ୍କ ନାଁରେ ଆମେ କେତେ ସୁଖ ଭୋଗୁଛୁଁ ସତରେ!ଆମ ଭଳି ବେଦରଦୀ ବେପାରୀଙ୍କ ଦାଉରୁ ଏମାନଙ୍କୁ ରକ୍ଷାକର ପ୍ରଭୁ ବୋଲି ମୁଁ ଶୂନ୍ୟକୁ ହାତ ଟେକିଲି । ସାକ୍ଷରତା ନାଁ ପଡ଼ିଲେ ଆମ ଗାଁ ଭକ୍ତଗୁରୁ କଥା ମୋ ମନକୁ ପଶିଆସେ । କେତେ ନିଷ୍ଠା-କେତେ ସାଧନା ଥିଲା ସେ ଲୋକଟିର । ନିଜ ଗାଁର ମଳି ମୁଣ୍ଡିଆ ନିରକ୍ଷରଙ୍କୁ ସାକ୍ଷର କରିବାରେ ତାଙ୍କ ଚେଷ୍ଟା ଭୁଲିବାର ନୁହେଁ ।

ନିରକ୍ଷର ମାନଙ୍କର ନିରନ୍ତର ଶିକ୍ଷା ପାଇଁ ଆମେ ମେଳା କରୁଛେଁ, ମଉଛବ କରୁଛେଁ । ସଭା କରୁଛେଁ । ବହି ଲେଖୁଛେଁ । ସୁନ୍ଦର ସୁନ୍ଦର ବେଗ୍, ଫାଇଲ, କଲମ ପାଉଛେଁ । ଟି.ଏ.ଡି.ଏ. କରି ଗୁଡ଼ାଏ ଭତ୍ତା ପାଉଛେଁ । ଏ ଅଧମ ଚାରି ପାଞ୍ଚଟି ବହି ଲେଖିଛି ନବ ସାକ୍ଷରଙ୍କ ପାଇଁ । ତହିଁରୁ କିଛି ରୋଜଗାର ବି କରିଛି । ହେଲେ ସେ ବହିରୁ ଗୋଟିଏ ବି ଅକ୍ଷର କେହି ପଢିଥାନ୍ତେ ଭଲା! ରାଜଧାନୀର କଉ ଗୋଦାମ ଘରର ଅନ୍ଧାରିଆ କୋଣରେ ସଢୁଥିବେ ସେ ବିଚାରା ବହି ମାନେ! ନତୁବା କିଛି ବର୍ଷ ପରେ ସେ ଗୁଡ଼ାକ କେଜିରେ ବିକା ହେବ । ଆପଣା ଲୋକକୁ ଭଣ୍ଡି । ଏ ପ୍ରକାର କୌଶଳ ଆଉ କଉଠି ଥିବା ପରି ମନେ ହଉନାହିଁ । Source ନ ଥାଇ ରିସୋର୍ସ (resource) । ସାଧନା ନଥାଇ ସାଧନ । ହାତ ନଥାଇ ଘଡ଼ି କିଣିଲା ପରି । ଠାକୁରେ ଆମକୁ ସଦ୍‌ବୁଦ୍ଧି ଦିଅନ୍ତୁ ।

ଶୋଷିଲାକୁ ପାଣି ଦିଅ । ଭୋକିଲାକୁ ଖାଇବାକୁ ଦିଅ, ରୋଗୀର ସେବା କର । ଏକଥା ମାନ ସବୁଦେଶର ଧର୍ମରେ ଅଛି । ଏପ୍ରକାର ପରୋପକାରରେ ବେପାର କରିବାର

କଥା ଆମକୁ ଜଣା ନାହିଁ। ହେଲେ ଆମେ ଏବେ ଦଳିତଙ୍କର, ଦୁସ୍ଥଙ୍କର, ଦୁର୍ଦ୍ଦଶାଗ୍ରସ୍ତଙ୍କର ଅସହାୟତାକୁ ପୁଂଜିକରି ପସରା ମେଲାଉଛୁଁ। ଆମ ପସରା ରାଜଧାନୀରୁ ଗାମଧାନୀ ପର୍ଯ୍ୟନ୍ତ ବ୍ୟାପି ଗଲାଣି। 'ତୁତ ମୁତୁରୀ, ମୁତ ମୁତୁରୀ ହେଁସ କାହିଁ ପାଇଁ ଧୋଇବା' କଥାଟି ବହିରୁ ପଢିଥିଲି। ଏବେ ସତ ସତ ଲାଗିଲାଣି। କୌଣସି ସେବା ପାଇଁ ପୁଂଜି ଅପେକ୍ଷା ପ୍ରାଣଟିଏ ଲୋଡା। ସେ ପ୍ରକାର ପ୍ରାଣଟିଏ ପାଇବାକୁ ସାଧନା ଦରକାର। ସାଧନା ନଥାଇ ସାଧନ ପାଇବୁ କଉଠି?

ସାକ୍ଷରତାରେ ମୋର ତିରିଶ ବର୍ଷର ସଂପୃକ୍ତିରୁ ମୁଁ ଏଇ କଥାଟି ଜାଣିଲି ଯେ 'ଯିଏ ପଢିବ ଆଉ ଯିଏ ପଢାଇବ' ଏହି ଦୁହିଁକୁ ଛାଡ଼ି ହିଁ କାର୍ଯ୍ୟକ୍ରମରେ ବାକି ମାନଙ୍କର ହରବର।



## ୮୮. ସାହିତ୍ୟ, ଏକ ଆଦମି

୧୯୬୧ର କଥା। ଓଡିଶା ସାହିତ୍ୟ ଏକାଡେମୀ ତରଫରୁ ଏକ ଲେଖକ ସମାବେଶ ଭୁବନେଶ୍ୱର ଠାରେ ଅନୁଷ୍ଠିତ ହୋଇଥିଲା। କେହି ଜାଣିଲେ ଆଶ୍ଚର୍ଯ୍ୟ ହେବେଯେ ଏଇ ସମାବେଶକୁ ଶ୍ରଦ୍ଧାକର ସୂପକାର ଓ କବି ବିନୋଦ ଚନ୍ଦ୍ର ନାୟକଙ୍କୁ ନିମନ୍ତ୍ରଣ କରାଯାଇ ନଥିଲା। କବି ଭୂଷଣ ସପ୍ନେଶ୍ୱର ଦାଶଙ୍କୁ ସମ୍ମାନିତ କରାଯିବାର ଥିଲା। କେଶବଚନ୍ଦ୍ର ମେହେର ଓ ଏ ଆଲୋଚକ ସେଇ ସମାବେଶକୁ ନିମନ୍ତ୍ରିତ ହୋଇ ଥିଲେ। ବିନୋଦ ନାୟକ ଓ ଶ୍ରଦ୍ଧାକର ବାବୁଙ୍କୁ ନିମନ୍ତ୍ରଣ ନକରିବା ପଛରେ ଆଉ କଣ ଥାଉ କି ନଥାଉ ଆମ ଏପଟର ଲେଖକଙ୍କୁ ଯେ ଅବହେଳା କରାଯାଏ ତା'ର ଆଦ୍ୟ ଆରମ୍ଭଟି କରିଥିଲା ଆମ ସାହିତ୍ୟ ଏକାଡେମୀ।

ସାହିତ୍ୟର ସର୍ବାଙ୍ଗୀନ ବିକାଶ ପାଇଁ କେନ୍ଦ୍ରରେ ପଣ୍ଡିତ ଜବାହର ଲାଲ ନେହେରୁ ସାହିତ୍ୟ ଏକାଡେମୀ ସ୍ଥାପନ କଲେ। ପ୍ରତି ପ୍ରଦେଶରେ ସେଇ ଲକ୍ଷ୍ୟରେ ଏକାଡେମୀ ମାନ ଗଢାହେଲା। ଆମ ଓଡିଶାରେ ଓଡିଆ ସାହିତ୍ୟ ଏକାଡେମୀ ସ୍ଥାପିତ ହେଲା। ପ୍ରଥମ ସଭାପତି ଥିଲେ ଡଃ ହରେକୃଷ୍ଣ ମହତାବ ଓ ସଂପାଦକ ହେଲେ ଗୌରୀ କୁମାର ବ୍ରହ୍ମା।

କୌଣସି ବିକାଶ କାର୍ଯ୍ୟକ୍ରମଟିଏ ଆରମ୍ଭ କରିବା ପୂର୍ବରୁ ଆମେ ଥୋଇ ଦଉ ପଂଝାଏ ଅମଲା, କିଛି ହାକିମ ଓ ଦଳେ ଚପରାଶୀ। ଗୋରା ଅମଳରୁ ଏ ବାଆଁନ୍ତୁ ବ୍ୟବସ୍ଥା ଚାଲି ଆସିଛି। ବିକାଶ ପାଇଁ ମଂଜୁର ହବା ଅର୍ଥରୁ ନବେ ଭାଗ ଯାଏ ଦରମାରେ। ବାକି ଦଶ ଭାଗରେ ଗାଡି ଘୋଡା ଖର୍ଚ୍ଚ ଅଛି। ତେଣୁ ଯେଉଁ ଉଦ୍ଦେଶ୍ୟରେ କାର୍ଯ୍ୟକ୍ରମଟି ଆରମ୍ଭ କରାଯାଏ ସେଇ ବାବଦରେ ଶତକଡ଼ା ଏକଭାଗ କି ଦୁଇଭାଗ ଅର୍ଥ ଖର୍ଚ୍ଚ ହୁଏ।

ଏଣୁ ସକାଳୁଆ ମେଘ ଆଡ଼ମ୍ବର ପରି ଏ ଆୟୋଜନଟି ଫସର ଫାଟିଯାଏ। ଯାହାକୁ ଅନେକେ ଲଘୁଯୁକ୍ତିରେ କହନ୍ତି। ଅତୀତକୁ ପାକୁଳିକରି ସୁଆଦ ଚାଖିବାରେ ଆମ ଓଡ଼ିଆଙ୍କ ବେଶୀ ଆନନ୍ଦ। ଏଥିରୁ ଆଉକି ଦରବ ମିଳେ କେଜାଣି ? କିନ୍ତୁ ଖୁଜେଇବା ପରି ସୁଖଟିଏ ମିଳେ ନିଶ୍ଚୟ। ଆମ ସାହିତ୍ୟ ଏକାଡେମୀ ଏମିତି କଣ୍ଡୁ ଖୁଜେଇବାରେ ମସ୍ତ ରହି ତାଳପତ୍ ପୋଥି ସବୁ ଠଉରାଇ ସଂଗ୍ରହ କଲା। ବାକି ସାହିତ୍ୟ ଚୂଲିକୁ ଯାଉ।

କବି ଲେଖକ ମାନଙ୍କୁ ପୁରସ୍କାର ଦେଇ ସମ୍ମାନିତ କରିବାର ଯୋଜନା କଲା। ଏଥିରେ ରାଜଧାନୀକୁ ବେଢ଼ିଥିବା ଲେଖକ ବାପୁଡ଼ାମାନେ ବେଶି ହରବର ହେଲେ। ଶବକୁ ଶାଗୁଣାର ନିଘାରେ ଏମାନେ କିଛି ସରକାରୀ ଅର୍ଥ ଭାଗବଣ୍ଟା କରି ନବାର ଯୋଜନାରେ ଯୁଟି ଗଲେ। ସାହିତ୍ୟ ବିକାଶର ମୂଳ କଥାଟି ଆଉ କଉଠିକୁ ଚାଲିଯାଏ। ସାହିତ୍ୟ ଏକାଡେମୀ ଶୀତଳ ଯୁଦ୍ଧର କୁରୁକ୍ଷେତ୍ର ବନିଯାଏ।

ଏକାଡେମୀର ସଭାପତି, ଉପସଭାପତି, ସମ୍ପାଦକ ହବା ପାଇଁ ପ୍ରଥମରୁ ଟଣା ଉଟରା ଲାଗିଛି। ଜିଲ୍ଲା ସ୍ତରରେ କିଏ କିଏ ଏକାଡେମୀ ସଭ୍ୟ ହବ ବୋଲି ଲେଖକ ଲେଖକ ଭିତରେ ଲଢେଇ ଚାଲିଛି। ସଭାରେ ଆସନ ମଣ୍ଡନ କରି ଦେଖେଇ ହବା ସ୍ୱଭାବଟି ମଧ ଲେଖକ ବାପୁଡ଼ାକୁ ଛାଡ଼ି ପାରୁ ନାହିଁ। ଶସ୍ତା ନେତା ପରି ଲେଖକ ବାପୁଡ଼ା ମାନେ ମଧ ପେଟ ଫୁଲେଇ କୁର୍ସିରେ ବସିବାକୁ ସଜ ହୁଅନ୍ତି।

୧୯୬୧ର କଥା କହୁଥିଲି ସେତେବେଳକୁ ମୁଁ ୨୫ବର୍ଷର ଯୁବକ। କେଶବ ଚନ୍ଦ୍ର ଓ ମୁଁ କବି ଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କୁ ନୂଆଁ କୁଆଁଇକୁ ପାଛୋଟି ନେବାପରି ଯତନରେ ନେଲୁ। ସେତେବେଳେ କବିଙ୍କ ପୁଅ କଟକରେ ଜିଲ୍ଲାପାଳ, କବି ବାପକୁ ସାହେବ ପୁଅ ଇଜଲାସ୍‌ରେ ହାଜର୍ କରି ଆମ୍ଭେ ଦୁହେଁ ସେ ଠୁଁ ବିଦାୟ ନେଲୁଁ। ଆମକୁ ଭିତରକୁ ଡାକନ୍ତେ କିଆଁ ? ତାଙ୍କ କୁକୁର ମିଛଟାରେ ଭୋକିଲା ଯାହା!

ଆମେ ଦୁହେଁ କଟକର ବାଙ୍କା ବଜାର ଗଳିରେ ଥିବା ଟିମା ନନାଙ୍କ ହୋଟେଲରେ ରହିଲୁଁ। ଟିମା ନନାଙ୍କ ଆଦର ଆମ ଜିଲ୍ଲାପାଳଙ୍କ ଅନାଦରକୁ ଭୁଲାଇ ଦେଲା। "ଏଇ ତ ଆପଣଙ୍କ ଘର ଆଗିଆଁ। କଟକ ଆଇଲେ ଏଇଠିକୁ ଆଖିବୁଜା ଆଇବେ।" ଏଇଥିଲା ଟିମା ନନାର ରସଗୋଲା ପରି କଥା। ମଣିଷ ପଣିଆ ଛୋଟ ମଣିଷ ପାଖରେ ବି ସୁନା ପରି ଝଟକୁଥାଏ।

କଟକରୁ ଭୁବନେଶ୍ୱର ଗଲାବେଳେ ଆମ ସାଙ୍ଗରେ ଯୁଟିଲେ କବି ଗୋଦାବରୀଶ ମହାପାତ୍ର। ସଂପାଦକ ଗୌରୀ କୁମାର ବ୍ରହ୍ମାଙ୍କ ଶ୍ୱଶୁର ଓ ନିଆଁଖୁଣ୍ଟାର ସଂପାଦକ। ଗୋଦାବରୀଶ ମହାପାତ୍ର କେଶବ ବାବୁଙ୍କୁ ଓ ମୋତେ ତାଙ୍କ ମହାନତାରେ ମୁଲାୟମ କରି ଦେଲେ ଯେମିତି !

ସେ ୬୧ରୁ ଏ ଶତାବ୍ଦୀର ଶେଷଯାଏଁ ଏକାଡେମୀ ସହ ମୋର ଆଉ କୌଣସି ସମ୍ପର୍କ ରହିଲା ନାହିଁ। ମଝିରେ କେବେ କେମିତି ଚଟିଏ ଖଣ୍ଡିଏ ପକାଇ ଦିଅନ୍ତୁ। ଭାତ ଧରି ଗଲେ ମଗଟିରିକୁ ଦେବା ପରି। ମୁଁବି ମୋ ଜୀବନରେ ବିଷ୍ଣୁକୁ ନଜର ନଦେବା ପରି ସାହିତ୍ୟ ଏକାଡେମୀକୁ ଅନେଇ ନାହିଁ। କେଶବ ବାବୁଙ୍କୁ ହୁଏତ ସାଉଁଳି ଥିବ।

୧୯୮୧ରେ କ'ଣ ହେଲା କେଜାଣି । ରାଜସ୍ଥାନ ସାହିତ୍ୟ ଏକାଡେମୀ ମତେ ଡାକିଲା। ବୋଧ ହୁଏ "ଧର୍ମଯୁଗ"ରେ ମୋର କିଛି କବିତାର ଅନୁବାଦ ହିନ୍ଦୀରେ ପ୍ରକାଶ ପାଇଲା। ଏଣୁ ମୋ ଉପରେ ନଜର ପଡିଲା। ଲେଖକ ବିନିମୟ କାର୍ଯ୍ୟକ୍ରମ ମୋଟୁ ଅବଶ୍ୟ ନୁହେଁ।

ଆଗରା ରୁଟରେ ଯିବା ପାଇଁ ମତେ ନିର୍ଦ୍ଦେଶ ଥିଲେ ମଧ୍ୟ ମୁଁ ଅହମଦାବାଦ ଦେଇ ଗଲି। ଅହମଦାବାଦରୁ ବସରେ ଉଦୟପୁର ଗଲି। ଆମ ସମ୍ବଲପୁରରୁ କଟକ ଯିବା ପରି। ରାତି ଆଠଟାରେ ବସରେ ଉଠି ରାତି ୩ଟାରେ ଉଦୟପୁରରେ ହାଜର। କେମିତି ଯିବି ? କ'ଣ କରିବି ବୋଲି ଭାଳି ହେବା ବେଳକୁ ବସ ଷ୍ଟାଣ୍ଡରେ ଚଉକି ଖଣ୍ଡେ ଖାଲି ପଡ଼ିଥାଏ। ଗୋଟାଏ ପ୍ଲାକାର୍ଡରେ ଲେଖାଥାଏ **"To receive Mr.M.Biswal."** । ଏଣୁ ସେଇ ଚୌକିରେ ବସି ପଡିଲି, ରାଜପୁତ ଯୁବକଙ୍କୁ ଭେଟିବା ପର୍ଯ୍ୟନ୍ତ। ମୀରା ବାଇ ଓ ରାଣା ପ୍ରତାପଙ୍କ ମହାନତାରେ ମହୀୟାନ ମାଟିକୁ ଛୁଁଇ ନମସ୍କାର କଲି। ମୀରା ବାଇଙ୍କ ଭଜନ ପରି ଏକ କୋମଳ ସ୍ୱର ମୋର ମନ ପ୍ରାଣକୁ ପୁଲକିତ କରୁଥାଏ।

ଗାଡ଼ିରେ ବସନ୍ତୁ। ଗେଷ୍ଟ ହାଉସ ଯିବା। ଅତିଥିଶାଳାକୁ ଯିବା ବେଳକୁ ରାତି ପ୍ରାୟ ଚାରିଟା। ମୋଟା ମୋଟା କାନ୍ଥର ବିରାଟ କୋଠରୀ। ଦଶ ଫୁଟିଆ ଝରକାକୁ ପନ୍ଦର ଫୁଟିଆ ଦୁଆର। ରାଣା ପ୍ରତାପଙ୍କ ମହାନ ଦୁର୍ଗରେ ରହିବାର ସୌଭାଗ୍ୟ କାହାକୁ ମିଳେ? ରାଜସ୍ଥାନର ବଛା ବଛା ସାତଟି ସହରରେ ଓଡିଆ ସାହିତ୍ୟର ପରିଚୟ ପ୍ରଦାନ କରିଥିଲି ଏକ ବିଜ୍ଞ ସମାବେଶରେ। ନିମନ୍ତ୍ରିତ ବ୍ୟକ୍ତିଙ୍କ ଆଗରେ ମୋର ବକ୍ତବ୍ୟ ଇଂରାଜିରେ ଦେଇଥିଲି। ଉଦୟପୁର ସଭାରେ ଡ଼: ଦୌଲତ ସିଂ କୋଠାରୀ ସଭାପତିତ୍ୱ କରିଥିଲେ। ଯାହାଙ୍କ କୋଠାରୀ କମିଶନ ଭାରତରେ ନାଁ କରିଛି। ହେଲେ ବିଡମ୍ବନା ଓଡିଶା ସାହିତ୍ୟ ଏକାଡେମୀ ପାଖରେ ଅପରିଚିତ ରହିଗଲା ଏ ଆଲୋଚକ।

୧୯୬୧ର ସମାବେଶ ପରେ ଗୋଦାବରୀଶ ମହାପାତ୍ର ନିଆଁଖୁଣ୍ଟାରେ ଛାପିଲେ "ସାହିତ୍ୟ ଏକ ଆଦମି"। ସାହିତ୍ୟ ଏକ, ଆଦମି ଅନେକ। ଅନେକଙ୍କୁ ଏକ କରନ୍ତା କ'ଣ, ଏକ ହୋଇ ରହିଗଲା। ଏଣୁ ଆସନ୍ତୁ ଆନନ୍ଦେ ଏକ ବାର ହରି ବୋଲ କହି ଓଡିଶା ସାହିତ୍ୟ ଏକାଡେମୀର ଶୁଭ ମନାସିବା।



# ୮୯. ଲାତରେ ମାରି ହାତରେ ବିଷ୍ଣୁ

୧୯୯୪ ଜୁଲାଇ ତିରିଶ ତାରିଖ ବେଳକୁ କେନ୍ଦ୍ରର ମାନବ ସଂବଳ ବିଭାଗରୁ ଚିଠି ଖଣ୍ଡେ ପାଇଲି। ଓଡିଶା ମାଧ୍ୟମିକ ଶିକ୍ଷକ ମାନଙ୍କ ଭିତରୁ ମୋତେ ଜାତୀୟ ପୁରସ୍କାର ପାଇଁ ବାଛିଛନ୍ତି। ୧୯୯୪ ସେପ୍ଟେମ୍ବର ପାଂଚ ତାରିଖ ଦିନ ୧୧ଟାରେ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମାଙ୍କ ଠାରୁ ପୁରସ୍କାର ଗ୍ରହଣ କରିବାକୁ ପରାମର୍ଶ ଥିଲା। ଖବରଟି ପ୍ରଚାରିତ ହୋଇଗଲା ବିଭିନ୍ନ ଗଣ ମାଧ୍ୟମରେ । ସେପ୍ଟେମ୍ବର ପହିଲାରୁ ଦିଲ୍ଲୀକୁ ବାହାରିବାକୁ ନିର୍ଦ୍ଦେଶ ଥିଲା। ମାତ୍ର ମୁଁ ମାସକ ଆଗରୁ ସମ୍ବଲପୁରରୁ ନିଜାମୁଦ୍ଦୀନ ପାଇଁ ଟିକଟ କରି ସାରିଥିଲି ଶୀତ ତାପ ନିୟନ୍ତ୍ରିତ ପ୍ରଥମ ଶ୍ରେଣୀରେ। ଦିଲ୍ଲୀ ଆଗରୁ ଅନେକ ଥର ଯାଇ ଆସି ଥିବାରୁ ଯିବା ପାଇଁ ସେତେ ଆଗ୍ରହ ନଥିଲା। ଆମ ପରମାଣପୁର ହାଇସ୍କୁଲ ସହକର୍ମୀ ଶିକ୍ଷକମାନେ ଗୋଟାଏ ଜିପ ଭଡ଼ାକରି ମୋତେ ଖୁବ୍ ଶ୍ରଦ୍ଧାରେ କ୍ଷେତରାଜପୁର ରେଲ ଷ୍ଟେସନରୁ ବିଦାୟ ଦେଲେ। ଗାଡ଼ିଟି ସଂଧ୍ୟା ଚାରିଟାରେ ଛାଡିଲା। କ'ଣ ହେଲା କେଜାଣି ବିଲାସପୁର ଷ୍ଟେସନରେ ଦୀର୍ଘ ଚାରିଘଣ୍ଟା କାଳ ଅଟକିଗଲା। ମାତ୍ର ଜଗୁଆଳି ବେଷ୍ଟିତ ପ୍ରଥମ ଶ୍ରେଣୀରେ ନିରାପଦର ମାତ୍ରା ବେଶୀ ଥିବାରୁ ନିଦ ହୋଇଗଲା। ସକାଳ ପାଇଲା ବେଳକୁ ମଧ୍ୟ ପ୍ରଦେଶର ବୀଣା ନା ଆଉ କଉ ଷ୍ଟେସନରେ ହାଜର। ଗାଡିଟି ଚାରି ତାରିଖ ସଂଧ୍ୟା ଚାରିଟା ବେଳକୁ ନିଜାମୁଦ୍ଦିନରେ ପହଞ୍ଚିବା କଥା ମାତ୍ର ଗାଡ଼ି ପହଞ୍ଚିବା ବେଳକୁ ରାତି ଏଗାର। ମୋ ଛଡ଼ା ସାରା ଭାରତରୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ପହଞ୍ଚି ସାରି ଥାନ୍ତି। ମୁଁ କିଆଁ ନ ପହଞ୍ଚିଲି ବୋଲି ଆମ ଘରଠୁ ଖବର ରଖିବା ଆରମ୍ଭ ହୋଇଗଲା। ଆମ ଶାସନ ଥାନାବାଲା ଘରୁ ଖବର ସଂଗ୍ରହ କଲେଯେ ମୁଁ ଗଲିଣି। ଖେତରାଜପୁରରୁ ଗାଡ଼ିରେ ବସିବା ଖବର ମଧ୍ୟ ଗଲା। ମୁଁ ନିଜାମୁଦ୍ଦିନରେ ପହଞ୍ଚିବା ବେଳକୁ ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟରୀଙ୍କୁ ଜଣାଇ ଦିଆଗଲାଯେ ମୁଁ ଦିଲ୍ଲୀରେ ପହଞ୍ଚିଗଲି। ମତେ ଷ୍ଟେସନରୁ ରହଣି ଜାଗାକୁ ନବା ପାଇଁ ଯେଉଁ ଗାଡ଼ି ଆସିଥିଲା ତାହା ଅତ୍ୟଧିକ ବିଳମ୍ବ ହେତୁ ଫେରିଗଲା। ଷ୍ଟେସନରୁ ଆମ ରହଣି ହୋଟେଲକୁ ଫୋନ କଲାରୁ ବିଭାଗର କେହି ଜଣେ କହିଲେ ଟେକସୀ ନେଇ ଆସନ୍ତୁ। ଏତେ ରାତିରେ ଏକଲା ଯିବାକୁ ଡରୁଥାଏ। ଆମ ଏମ୍.ସି ଏଲ୍‌ର ଜଣେ ପଦସ୍ଥ ଅଫିସର୍‌ଙ୍କ ବାପା ଓ ତାଙ୍କ ପୁତ୍‌ବଧୂ ମୋ ସାଙ୍ଗରେ ଏକା ବଗିରେ ଯାତ୍ରା କରିଥିଲୁ। ବୁଢା ଜଣକ ଜଣେ ହାଇକୋର୍ଟ ଓକିଲ୍। ସେ ମହାଶୟ ଟେକ୍‌ସି କୁ ପରାମର୍ଶ ଦେଲେ ସେ ମତେ କେମିତି କଡ଼ାଇକୁ ନେବ। ଯାହା ହଉ ଟେକ୍‌ସି ମତେ ଠିକ ଜାଗାକୁ ପହଞ୍ଚାଇ ଦେଲା। ରାତି ବାରଟା ବିତି ଯାଇଥିବାରୁ ଚର୍ଚ୍ଚାକାରି ମୋ ଖାଇବା ନେଇ ବ୍ୟସ୍ତ ହୋଇ ପଡିଲେ। ଟେକ୍‌ସିକୁ ସେମାନେ ଚାଳିସ ଟଙ୍କା ଦେଲେ। ମାତ୍ର ଅଣ ଟଙ୍କା ଦବା ପାଇଁ ମୁଁ କଥା ଦେଇଥିବାରୁ ମୁଁ ବାକି

ଚାଳିଶ୍ ଟଙ୍କା ଦେଇଦେଲି । ଟେକ୍ସିବାଲା ଝୁମରେ ମୋତେ ସଲାମ କଲା । କାନିଷ୍କ ହୋଟେଲର କର୍ମଚାରୀଟି ମୋ ଚାଳିଶ୍ ଟଙ୍କା କ'ଣ ଭାବିଲା 'ଜାତୀୟ ପୁରସ୍କାରପ୍ରାପ୍ତ' ଶିକ୍ଷକ ଜାତିଟା ଉପରେ ଆମ ସମାଜର ଗୋଟାଏ ବୁନିୟାଦୀ ଧାରା ଅଛି ବୋଲି ମୁଁ ଅନୁଭବ କରେ । ମୋ ରହଣି ପାଇଁ ହୋଟେଲର ତେର ନମ୍ବର ଫ୍ଲୋରର ପନ୍ଦର ନମ୍ବର କୋଠରୀଟି ଉଦ୍ଦିଷ୍ଟ ଥିଲା । ମୋ ପାଖ କୋଠରୀରେ ଧର୍ମପୁରୀ ଜିଲ୍ଲାର ଜଣେ ପ୍ରାଥମିକ ଶିକ୍ଷକ ରହୁଥିଲେ । ରାତିଟା କଟିଯାଆନ୍ତେ ସକାଳୁ ମୋର ସକାଳ କାଗଜ ସହ ଜଣେ କର୍ମଚାରୀ ମୋର ରୁମରେ ଦେଇଗଲେ । ଦରିଦ୍ରତମ ଶିକ୍ଷକଙ୍କୁ ଏପ୍ରକାର ରାଜକୀୟ ସୁଖ ସୁବିଧା ମତେ କାହିଁକି କେଜାଣି ଉପହାସ ପରି ଲାଗିଲା । କୋଠରୀରେ ଟି.ଭି., ରେଡିଓ, ଫୋନରୁ ଆରମ୍ଭ କରି ସବୁ ସୁଖ ସୁବିଧା ଥିଲା । ଫୁଡ୍ କୁପନରୁ ଜାଣିଲି ଚା' ପିଇବାକୁ ପଚାଶତ ଜଳଖିଆକୁ ଦେଢଶହ ହିସାବରେ ପ୍ରତି ଶିକ୍ଷକ ପିଛା ଦିନକୁ ହଜାରେରୁ ବେଶି ଟଙ୍କା ଖର୍ଚ୍ଚ ହୁଏ । ଶିକ୍ଷକ ମାନଙ୍କ ଫଟୋ ଉଠାଇବାକୁ ଦେପାରୀ ଫଟୋଗ୍ରାଫର ମାନଙ୍କର ପ୍ରବଳ ଭୀଡ଼ । ପାଞ୍ଚ ତାରିଖ ଦିନ ଏଗାରଟା ବେଳକୁ ବିଜ୍ଞାନ ଭବନର ଆମ ନିଜ ନିଜ ଜାଗାରେ ବସିଗଲୁଁ । ଗୋଟାଏ ଶୃଂଖଳିତ ଅନୁକ୍ରମରେ ସବୁ କାମ ହଉଥାଏ । ସାରା ଭାରତର ପ୍ରାୟ ତିନିଶହ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ନବା ଆଣିବା ପାଇଁ ଆଠଟା ଡିଲକ୍ସ କୋଚ ସଦା ପ୍ରସ୍ତୁତ ଥାଏ । ଭାରତର ମହାମହିମ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମା ଆମକୁ ଏ ପୁରସ୍କାର ଦେଲେ । ସେ ବେଳର ମାନବ ସମ୍ବଳ ବିକାଶ ମନ୍ତ୍ରୀ ଥିଲେ ଅର୍ଜୁନ ସିଂ । ପୁରସ୍କାର ବାବଦକୁ ଦଶହଜାର ଟଙ୍କାର ଚେକ୍, ମାନପତ୍ର ଓ ଏକ ମେଡାଲ ଦିଆଯାଏ । ସଂଧ୍ୟାରେ ରାଷ୍ଟ୍ରପତି ଭବନର ମୋଗଲ ଗାର୍ଡେନରେ ଆମ ମାନଙ୍କୁ ମଧ୍ୟ ପ୍ରଦେଶୀୟ ଜଳଖିଆ ଖୁଆଇଲେ ଆମ ରାଷ୍ଟ୍ରପତି । କାହିଁକି କେଜାଣି ସେପ୍ଟେମ୍ବର ପ୍ରଥମ ସପ୍ତାହରେ ଦିଲ୍ଲୀରେ ସେ ବର୍ଷ ପ୍ରବଳ ଗରମ । ଦିନ ତିନଟା ବେଳକୁ ଆମକୁ ଗାଈ ଗୋଠ ଗୋଠାଇଲା ପରି ବିଭାଗୀୟ କର୍ମଚାରୀମାନେ ଆମକୁ ଗୋଠେଇଥାନ୍ତି । ଶେଷରେ ମତେ କେମିତି କେମିତି ଲାଗିଲା ପାଣି ମାଗିଲି । ପାଣିର ଫୁଆରା ସେଠାରେ ଥିଲେବି ପିଇବାକୁ ନାହିଁ । ସମସ୍ତଙ୍କ ପାଇଁ ଜଳଖିଆରୁ ଆଗ ଜଳ ଆସିଲା । ମୁଁ ଦେଢ଼ ଗିଲାସ ପାଣି ଢୋକିଦେଲି । ତାପରେ ଚାଲିଲା ମୋ ଅଦ୍ଭୁତ ଗପ । ମୋ ପାଖରେ ଯୋଗକୁ ବସିଥାନ୍ତି ଶିକ୍ଷା ବିଭାଗର ସେକ୍ରେଟେରୀ । କିପରି କହୁଁ କହୁଁ କହିଲି "ରାଷ୍ଟ୍ରପତି କେ ସାମନେ ଫାଡ଼ଦୁଙ୍ଗା ମୈ ମେରା ସର୍ଟିଫିକେଟ୍" । ଅଫିସର୍ ଜଣକ ଚମକି ପଡ଼ିଲେ । ସେ ଭାବିଲେ ମୋର କୌଣସି ସ୍କ୍ରୁ ଢିଲା ଅଛିକି? ମୋର ମାନସିକ ସ୍ତର ଚ୍ୟୁତି ଘଟିଛି? ଏଣୁ ସେ ମୋ ଉପରେ ନଜର ରଖିବାକୁ ତଳିଆ ଅଫିସର୍ ମାନଙ୍କୁ ପରାମର୍ଶ ଦେଲେ । ମୁଁ ଚମକାଇ ଦେଇ ଗିରି ସେକ୍ରେଟେରୀଙ୍କୁ ସହଜ ଓ ସରଳ ଇଂରାଜିରେ ବୁଝାଇଦେଲି ।

ମୋର ବକ୍ତବ୍ୟରେ ମୁଁ ତାଙ୍କୁ ଯାହା ବୁଝାଇଥିବି ତା'ର ସାର ମର୍ମଟି ଏଇଆ।

ଆମ ରାଜ୍ୟରେ ଶିକ୍ଷକ ବାପୁଡ଼ାକୁ ଶହେ ପାଞ୍ଚଟଙ୍କାରେ ଖଟାଇ ଆମକୁ ଏଠି ଏଭଳି ସମ୍ମାନ ଦବାର କିଛି ମାନେ ଥାଏନା। ଲାତରେ ମାରି ହାତରେ ବିଷ୍ଟୁ କହିବା ପରି। ଭଦ୍ରଲୋକ ମତେ ପାଗଳ ବୋଲି ଭାବିଥିଲେ ସିନା। ମୋର ବକ୍ତବ୍ୟ ଓ ଯୁକ୍ତିର ମୂଳ ସେ ଧରିପାରି ନେଲେ। ପୁରସ୍କାର ପାଇଁ ମତେ ବଛାଯିବାର ଯୌକ୍ତିକତାଟା କଉଠି। ସେ ଶେଷକୁ ଅତି ଅସହାୟ ଭାବେ ସରକାରୀ ଅପାରଗତାକୁ ପ୍ରକାରାନ୍ତେ ସ୍ୱୀକାର କଲେ। ରାଷ୍ଟ୍ରପତି ସେତେବେଳକୁ ଆମକୁ ମଧ୍ୟ ପ୍ରଦେଶୀୟ ଲଡୁ ଓ ସମୋସାରେ ଆପ୍ୟାୟିତ କରିବାକୁ ଡାକିଲେ।

ଏକତାରିଖରୁ ଛ ତାରିଖ ଦଶଟା ପର୍ଯ୍ୟନ୍ତ ଆମେ ସରକାରଙ୍କ ଏକ ନମ୍ବର ଅତିଥି। ତିଥି ସରିଯିବାରୁ ଆମକୁ ହୋଟେଲ ଛାଡ଼ିବାକୁ ହେବ। ଏଣୁ ମୁଁ ଖରିଆରର ସେହି ଶିକ୍ଷକ ବନ୍ଧୁଙ୍କ ସହ କଳାହାଣ୍ଡିର ଏମ୍.ପି. ଶ୍ରୀ ସୁବାସ ନାୟକଙ୍କ ଡେରାରେ ଛଅ ତାରିଖ ରାତିଟା କଟେଇଲି। ସୁବାସ ନାୟକ ଏମ.ପି.ଙ୍କ ଆତିଥ୍ୟ ପାଇଁ ତାଙ୍କୁ ଧନ୍ୟବାଦ ଦଉଛି। ସେ ମହାଶୟ ଓଡିଶାର ଏଇ ଶିକ୍ଷକ ମାନଙ୍କୁ ଏକ ସ୍ୱତନ୍ତ୍ର ଉତ୍ସବରେ ସଂବର୍ଦ୍ଧନା ଦେଲେ। ମାତ୍ର ଦିଲ୍ଲୀରେ ଥିବା ଆମ ଅଞ୍ଚଳର ଏମ୍.ପି.ମାନେ ଶିକ୍ଷକ ମାନଙ୍କ ଭଳି ମାମୁଲି ମଣିଷକୁ ଚିହ୍ନତି ଥାନ୍ତେ କେମିତି? ଓଡିଶା ସବୁ ଦିଗରେ ପଛରେ। କଥାଟି ମିଛ ନୁହେଁ। ଅନ୍ୟ ପ୍ରଦେଶର ଏମ୍.ପି.ମାନେ ତାଙ୍କ ପ୍ରଦେଶର ଶିକ୍ଷକ ମାନଙ୍କୁ ଯେଭଳି ଉତ୍ସାହରେ ସଂବର୍ଦ୍ଧନା ଦେଲେ ତା'ଦେଖି ଆମକୁ ଲାଜ ଲାଗୁଥିଲା। ଆମେ ଯେପରି ଅନାଥ, ଟୁରା, ଆମର କେହି ନାହିଁ। ଧନ୍ୟ କହିବା ସେ ସୁବାସ ନାୟକଙ୍କୁ ଯେ ଆମକୁ ତାଙ୍କ ବସାରେ ରହିବାକୁ ହଁ କଲେ।

ଆଗରୁ ବହୁଥର ଦିଲ୍ଲୀ ଯାଇ ବୁଲା ବୁଲି କରିଥିବାରୁ ଏଥର ବୁଲିଲି ନାହିଁ। ସାତ ତାରିଖ ସକାଳ ନଅଟାକୁ ନିଜାମୁଦ୍ଦିନରୁ ଆମ ଗାଡ଼ିରେ ବସିଲି। ଅକସ୍ମାତ ଦେଖା ହୋଇଗଲା ମୋର ସ୍କୁଲ ସହପାଠୀ ଲହଣ୍ଡାର ରମେଶ ପ୍ରଧାନଙ୍କ ସହ। ସେ ଆଗରୁ ରାଜଧାନୀକୁ ଆସିଥିଲେ। ନେତା କିନା, କାମ ଥିବ। ଆଠ ତାରିଖ ବାରଟା ବେଳକୁ ଆମ ଗାଡ଼ି ଖେତରାଜପୁରରେ ପହଞ୍ଚିଲା। ନୂଆଁଖାଇର ଆଡମ୍ବର ବାରି ହଉଥିଲା ସମ୍ବଲପୁର ସହରରେ। ଦଶ ତାରିଖରେ ଥିଲା ଆମ ଗଣ ପର୍ବ ନୂଆଖାଇ।

ଦୂର ଦିଲ୍ଲୀକୁ ବୁଚକେଇ ଆଣିଥିଲି। ନାତି ନାତୁଣୀଙ୍କୁ ବାଣ୍ଟିଦେଲି କିଛି। ଦଶ ହଜାର ପୁରସକାରର ପଇସାରୁ ଅଧେ ପିଲାଙ୍କୁ ଦେଲି ଭୋଜି ଖାଇବାକୁ। ବାକି ଅଧକ ଅନୁଷ୍ଠାନକୁ ଦେଲି ପିଲାଙ୍କର ନିଜ ଉପକାର ପାଇଁ। କାରଣ ଟଙ୍କା ତକ ମୋର ନୁହେଁ। ଅନୁଷ୍ଠାନର। ମୁଁ ଶିକ୍ଷକ ହୋଇ ଆଉ କିଛି ହୋଇଥିଲେ ଏ ଟଙ୍କା ତ ପାଇ ନଥାନ୍ତି। ପଇସାକୁ ପ୍ରହାର କଲେ, ପଇସା ପ୍ରହାର କରେ।

# ୯୦. ଅବ ଦିଲ୍ଲୀ ଦୂର ନହିଁ

୧୯୭୨ ବେଳକୁ ମୁଁ ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଂଘର କାର୍ଯ୍ୟକାରୀ କମିଟିର ଜଣେ ସଭ୍ୟ ଭାବରେ ନିର୍ବାଚିତ ହେଲି ପ୍ରାୟ ପ୍ରତି ବର୍ଷ ଡିସେମ୍ବର ମାସରେ ସାରା ଭାରତର ଶିକ୍ଷକ ମାନଙ୍କର ଜାତୀୟ ସମ୍ମିଳନୀ ବରାବର ହଉଥିଲା। ଥରେ ଦିଲ୍ଲୀରେ ହେଲା। ଆମେ ସଂବଲପୁରରୁ ପଂଝାଏ ଶିକ୍ଷକ ଶିକ୍ଷୟିତ୍ରୀ ଯାଇଥିଲୁ। ଦିଲ୍ଲୀର ଲାଲ କିଲ୍ଲା ପାଖରେ ଏକ ମାଧ୍ୟମିକ ସ୍କୁଲରେ ଆମ ରହଣିର ବ୍ୟବସ୍ଥା ଥିଲା। ଆମେ ଦିଲ୍ଲୀରୁ ଆଗ୍ରା ଗଲୁ ଓ ସଂଜକୁ ଫେରି ଆସିଲୁ। ସେଇପରି ଆର ଦିନ ବଡି ଭୋରରୁ ଗଲୁ ଲଛମନ୍ ଝୋଲା। ଗଂଗୋତ୍ରୀରେ ଗାଧୋଇଲୁ । ହିମାଳୟ ପାଦଦେଶର ବହୁ ଦର୍ଶନୀୟ ସ୍ଥାନ ଦେଖିଲୁ। ଏଇ ପରି ବୁଲା ବୁଲି ମଉଜ ମଜଲିସରେ ତିନିଦିନ କଟିଗଲା। ଦିଲ୍ଲୀର ଲାଲକିଲା, କୁତବମିନାର, ବିରଲା ମନ୍ଦିର, ଚିଡ଼ିଆଖାନା, ରାଷ୍ଟ୍ରପତି ଭବନ ଇତ୍ୟାଦି ବୁଲି ଦେଖିଲୁ। ସାଙ୍ଗ ସାଥି ମେଳରେ ରେଲ ଯାତ୍ରା ଆମୋଦପ୍ରଦ ଥିଲା। ସେତେବେଳେ ସଂବଲପୁରରୁ ସିଧା ଦିଲ୍ଲୀକୁ ଯୋଗାଯୋଗ ନଥିଲା। ଝାରସୁଗୁଡ଼ାରୁ ଦିଲ୍ଲୀର ଗାଡ଼ି ଧରିବାକୁ ପଡ଼ୁଥିଲା। ଖୁବ ଦୂରରେ ଥିବା ଦିଲ୍ଲୀ ନିକଟତର ହୋଇଥିଲା। "ଅବ ଦିଲ୍ଲୀ ଦୂର ନହିଁ" କଥାଟି ସତ ହୋଇଗଲା।

ଏହାର କିଛି ବର୍ଷପରେ କୁରୁକ୍ଷେତ୍ରରେ ସର୍ବ ଭାରତୀୟ ଶିକ୍ଷା ସମ୍ମିଳନୀ ହେଲା। ସେଠାକୁ ମଧ୍ୟ ମୋ ସହକର୍ମୀ ଶ୍ରୀ କୈଳାସ ଚନ୍ଦ୍ର ବାରିକ ଓ ଭିଖାରି ପ୍ରସାଦ ନାୟକଙ୍କ ସହ ମୁଁ କୁରୁକ୍ଷେତ୍ର ଯାଇଥିଲି। ଝାରସୁଗୁଡ଼ାରୁ ଉତ୍କଳ ଏକ୍‌ସପ୍ରେସରେ ଦିଲ୍ଲୀ ଗଲୁ। ସେଇଠୁ ଗୋଟାଏ ଲୋକାଲ ଗାଡ଼ିରେ ସକାଳ ଛ'ଟାରୁ ବାହାରିଲୁ। ଦିନ ଏଗାରଟାବେଳକୁ କୁରୁକ୍ଷେତ୍ର ସହର ପଂହଞ୍ଚିଲୁ। ଛୋଟିଆ ଷ୍ଟେସନ୍। ପାଉଁରୁଟି ପକୌଡ଼ା ଛଣା ହଉଥିବାର ବାସନା ଭାସି ଆସୁଥାଏ।

ଟାଙ୍ଗା ବା ରିକ୍‌ସାରେ ନଯାଇ ମୋ ମନ ହେଲା ଘୋଡ଼ା ଗାଡ଼ୀରେ ଯିବା ପାଇଁ। ବାହା ବେଳେ ଜୀବନରେ ଥରଟିଏ ମାତ୍ର ଘୋଡ଼ାରେ ବସିଥିଲି। ଏବେ ଘୋଡ଼ାଗାଡି ଚଢିବାର ସୁଯୋଗ ଛାଡ଼ନ୍ତି କିଆଁ? ଜୀବନରେ ଘୋଡ଼ା ହାତୀ ଚଢିବାର ରାଜକୀୟ ସୁଯୋଗ କାହାକୁ ମିଳେ? କଚୁଆନର ହକାରିବା ଡାକଟା ବେଶ୍ ଆକର୍ଷଣୀୟ ଥିଲା।

ସେତେବେଳେ କୁରୁକ୍ଷେତ୍ର ଚାଲିଶ ହଜାର ଆବାଦିର ସହର। ବ୍ୟାସ ସରୋବରରେ ଗାଧୋଇବାକୁ ଯିବାରୁ ଜଗୁଆଳି କହିଲା। "ପଛ କରିବେ ନାଇଁ, ହଜୁର"। ସିଧା ବୁଡ଼ଟାଏ ପକାଇ ପଛ ପଛ ହୋଇ କୂଳକୁ ଆସିଲି। ଏଇଠି କୁଆଡ଼େ ଭୀମ ରଡ଼ି ପକାଇବାରୁ ଦୁର୍ଯ୍ୟୋଧନ ସରୋବର ଭିତରୁ ବାହାରେ ଆସିଗଲା। ଭୀମ ଗଦାରେ ଜାନୁ ଭଂଗ ହୋଇଥିଲା। କୌରବ ପାଣ୍ଡବ ମନ୍ଦିରର ମହନ୍ତଙ୍କ ସହ ଦେଖା କରିଥିଲି। ଆମ ନରସିଂହନାଥ ଓ ଗୋପାଳଜୀ ମନ୍ଦିର ପରି ଏଠିବି ଅତିଥି ଓ ଅଭ୍ୟାଗତଙ୍କୁ ଖାଇବାକୁ ମିଳେ। ଯିଏ

ପଙ୍ଗତରେ ବସିଲା, ଖାଇଲା। ଘୃତ ଓ ହାଲୁଆ। ଯିଏ ଯାହା ଖାଇବ ଦିଆଯାଏ। ଏ ମନ୍ଦିରର ପୂଜାରୀଙ୍କ ଏକାଧ ଜମି ଅଛି। ମେଳା ମହୋତ୍ସବ ବେଳେ ଲକ୍ଷ ଲକ୍ଷ ଲୋକଙ୍କୁ ଖାଇବାକୁ ଦିଆଯାଏ। ଆମେ ବି ପଙ୍ଗତରେ ବସି ଘୃତ ହାଲୁଆ ଖାଇଲୁ।

କୁରୁକ୍ଷେତ୍ରରୁ ଗଲୁ ଅମୃତସର, ଲୁଧିଆନା। ଲୁଧିଆନାରୁ ଦିଲ୍ଲୀ ଫେରିବାକୁ ଭାରି ଭିଡ଼। ଆପଣଙ୍କୁ ମିଛ ମୋଟେ ସତ। ରାତିରେ ଲୁଧିଆନାରୁ ଗାଡ଼ି ଚଢ଼ିବାକୁ ମୋତେ ଜଣେ ପୋର୍ଟରକୁ ପଇଁତିରିଶ ଟଙ୍କା ଦେବାକୁ ପଡ଼ିଲା। ଲୁଧିଆନାରୁ ଦିଲ୍ଲୀ ଟିକଟ ଦାମ ଥିଲା ଏଗାର ଟଙ୍କା। ପୋର୍ଟର ଜଣକ ମୋତେ ଟିକେ ଷ୍ଟେସନ ପାଖ ହବା ଯାଏ ସାଙ୍ଗରେ ଆସି ସିଟଟାଏ ଯୋଗାଡ଼ କରିଥିଲା। ଅସମ୍ଭବ ଭିଡ଼। ସେ ଅଂଚଳର ଲୋକେ ଏତେ ଆତ୍ମ କେନ୍ଦ୍ରିକ ଯେ ଅନ୍ୟର ଦୁଃଖ କମ୍ ବୁଝନ୍ତି। ପଂଜାବ ଓ ହରିଆନାର ମାଟି ଯେମିତି ମମତାମୟୀ ତାର ମଣିଷ ଏପରି ମମତାହୀନ ହେବାରେ ମୋତେ ବେଶୀ ଆଶ୍ଚର୍ଯ୍ୟ ଲାଗିଲା।

ତୃତୀୟ ଥର ଦିଲ୍ଲୀ ଯାଇଥିଲି ମୋ ରାଜସ୍ଥାନ ଗସ୍ତ ଅବସରରେ। ମୋ ସହିତ ଥିଲେ ମୋର ସହକର୍ମୀ ଭିଖାରୀ ପ୍ରସାଦ ନାୟକ"। ପୁରୁଣା ଦିଲ୍ଲୀର ମିଲିଟାରୀ ଆରାମ ଗୃହରେ ରାତିଟିଏ ରହି ତା'ପର ଦିନ ସକାଳୁ ନିଜାମୁଦ୍ଦିନ୍‌ରୁ ଘରକୁ ଫେରିଲୁ।

ଚତୁର୍ଥଥର ରାଷ୍ଟ୍ରପତି ପୁରସ୍କାର ପାଇବା ବେଳେ ଦିଲ୍ଲୀ ଯାଇଥିଲି। ଏ ଯାତ୍ରା ଆରାମପ୍ରଦ ଓ ବ୍ୟୟ ବହୁଳ ଥିଲା। ସରକାରୀ ଅତିଥି କିନା! ମୋ ପରି ଗରିବ ଶିକ୍ଷକ ପାଇଁ ସେ ଆଡ଼ମ୍ବର ଏକ ଉପହାସ ଥିଲା।

ପିଲାଦିନରୁ ଦିଲ୍ଲୀ ଯିବାର ଗୋଟାଏ ଅହେତୁକ ଆକର୍ଷଣ ଥିଲା। ବହୁବାର ଯିବା ଫଳରେ ଆକର୍ଷଣ ନରମି ଗଲା। ମୁଁ ଆଉ ଯାଏ କି ନଯାଏ ଦିଲ୍ଲୀ ସେମିତି ରହିଛି। ଦିନକୁ ଦିନ ଦିଲ୍ଲୀ ଭୟଙ୍କର ହେବାକୁ ବସିଲାଣି। ସେଠି ସରକାର ଯେମିତି ଅସ୍ଥିର ତା'ର ନାଗରିକ ସେଇଠୁ ଅଧିକ ଅସ୍ଥିର। ତଥାପି ଭି ଭାରତର କୋଣ ଅନୁକୋଣରୁ ଲୋକଙ୍କର ସୁଅ ମୁହାଁଇଛି। "ଅବ ଦିଲ୍ଲୀ ଦୂର ନହିଁ" କଥାଟି ସାମାନ୍ୟତମ ମଣିଷ ପାଖରେ ମଧ୍ୟ ସତ୍ୟ ରୂପେ ପ୍ରମାଣିତ ହେଲାଣି। ଦିଲ୍ଲୀର ଜୟ ହଉ !



# ୯୧. ଗୋଟାଏ ଯୁଗର ଧ୍ୱନି

ଋତୁପରେ ଋତୁ ଆସି ଯେମିତି ମାଟି ଓ ମଣିଷକୁ ହଲଚଲ କରିପକାଏ , ପ୍ରଭାବ ପକାଏ, ଠିକ ସେମିତି ମୋ ଜୀବନ କଥା କହିଲା ବେଳକୁ କେତେଜଣଙ୍କ ସ୍ମୃତି ମୋତେ ଆବୋରି ରଖିଛି।

ଖୁବ ସାନ ବୟସରୁ ବାପା ମୋତେ ଝାରସୁଗୁଡ଼ା ମନମୋହନ ମାଇନର ସ୍କୁଲକୁ ପଠେଇ ଦେଲେ। ମୋ ଅଜା ମୋ ବାପାଙ୍କୁ କହିଲେ,"ସାନ ପିଲା, ଚଳିବ କେମିତି? କିଛି

ବୋଲି କିଛି ଜାଣେ ନାହିଁ। ଚଉଷଠି ପ୍ରାଣୀର କୁଟୁମ୍ବରେ ଗୋଟାଏ ବୋଲି ନାତି। ସ୍ନେହ ଓ ଶ୍ରଦ୍ଧାରେ ପୋତି ପକାଇଛନ୍ତି ସଭିଏଁ। ବାପା କହିଲେ,"ଯାଉ, ରହିଯିବ ଯଦି ରହି ଯିବ। ଘରର ମୁହାଁସ ନ ଛାଡିଲେ ପାଠ ହୁଏ ନାହିଁ। ମୋ' ବାପା ତାଙ୍କ ବାପାଙ୍କ କଥାକୁ ବିରୋଧ କରିବାର ମୁ ଜାଣି ନାହିଁ। ଅଜା କହିଲେ ଚାଳିଶ ସରିକି ଚାକର ବାକର। ତିନିଶହ ଏକର ଜମି ଜାଗା। ଗୋଟିଏ ଖାନଦାନିର ପ୍ରଥମ ନାତିକୁ ବଂଚିବାକୁ କଣ ଅଭାବ ହେବଯେ ! ବାପା ତାଙ୍କ ବିଚାରରେ ଅବିଚଳିତ ଥିଲେ। ଅଜାଙ୍କ କଥାକୁ କାନେଇଲେ ନାହିଁ। ଅଜା କିଛି ପାଠ ପଢିଥିଲେ। ବାପା ବି ଏନ୍‌ଟ୍ରାନ୍‌ସ ପାସ କରିଥିଲେ। ଗାଆଁ ବାହାରକୁ ଯାଇ ଦୁନିଆଁ ପରଖି ଥିଲେ। ଏଣୁ ସେ କହିଲେ, " ପାଠ ଆଖି ଫିଟାଏ, ଦୁନିଆଁକୁ ଚିହ୍ନିବାରେ ମଦତ୍ ଦିଏ।"

ପାଠ ପ୍ରତି ମୋ ବାପାଙ୍କ ଦୃଷ୍ଟିକୋଣ ମୋତେ ପ୍ରଥମରୁ ତାଙ୍କ ପ୍ରତି ଟାଣି ନେଇଛି। ମୋ' ପାଇଁ ଜୀବନରେ ସେ କ'ଣ କରି ନାହାନ୍ତି। ଗଧର ପାଦ ମଧ୍ୟ ଧରି ଛନ୍ତି। ତାଙ୍କ ବ୍ୟକ୍ତିତ୍ୱ ତାଙ୍କ ଅଟଳ ପଣ, ଜୀବନ ପ୍ରତି ତାଙ୍କ ଦୃଷ୍ଟି ଭଂଗୀ, ଅନ୍ୟର ବିକାଶରେ ନିଜକୁ ନିଃଶେଷ କରିଦେବାର ପ୍ରବୃତ୍ତି ମୋତେ ଅବାକ୍ କରିଛି। ଆଜି ଏ ପରିଣତ ବୟସରେ ମୁଁ ତାଙ୍କୁ ଗୋଟାଏ ଯୁଗର ଧ୍ୱନି ରୂପେ ଶୁଣି ପାରୁଛି।

ମୁଁ ଝାରସୁଗୁଡ଼ା ମନମୋହନ ମାଇନର ସ୍କୁଲରେ ପାଠ ପଢିବା ବେଳେ ମୋର ବଡ଼ ଭଉଣୀ (ନାନୀ) ତରୁଲତାର ବାହାଘର ହେଲା। ମୋର ଭିଣୋଇ (ଗଇଁ) ଶ୍ରୀ ଗୋକୁଳ ଚନ୍ଦ୍ର ପାଢୀ, ଓଡିଶା ଜଂଗଲ ବିଭାଗରେ ସ୍ୱାଧୀନତା ପ୍ରାପ୍ତିର ପୂର୍ବରୁ କାମ ଆରମ୍ଭ କଲେ। ସେ ଆମ ରେଙ୍ଗାଲି ରେଂଜରେ ପ୍ରଥମକରି ଯୋଗ ଦେଲେ। ତାପରେ ଚଂପୁଆରୁ ଟ୍ରେନିଂ ପାଇ ଆଠମଲ୍ଲିକ , ବଣାଇ, ସଂବଲପୁରର ବିଭିନ୍ନ ରେଂଜରେ କାମ କରି ଶେଷରେ ଏ.ସି,ଏଫ. ପଦରୁ ଅବସର ନେଲେ। ସାମାଜିକ ଜୀବନରେ ସେ ଅତ୍ୟନ୍ତ ସ୍ନେହୀ ଓ ସାହାଯ୍ୟକାରୀ ଥିଲେ। ସେ ଜଂଗଲ ବିଭାଗରେ କାମ କରୁଥିଲେ ବି ଜଂଗଲଜାତ ଦ୍ରବ୍ୟ ଘରକୁ ଆଣୁ ନଥିଲେ। ଏପରିକି ତାଙ୍କ ଗ୍ରାମର ଚାଷ କାମ ପାଇଁ ସେ ଅନ୍ୟମାନଙ୍କ ହାତରେ ଯୋତା ଦଉଁରା, ଲଙ୍ଗଳ, ଯୁଆଳି ବଜାରରୁ କିଣାଉଥିଲେ। ସେ ଅବସର ନେବାପରେ ତାଙ୍କ ଘରେ କାଠ ଚୌକି ଖଣ୍ଡେ ବି ନଥିଲା। ମୁଁ ମୋ' ନାନୀକୁ ଦଶରା ମାସରେ ନେଇ ଯାଏଁ, ସେମାନେ ଯଉଁଠି ଥିବେ ଯିବି। ଥରେ ଯାଇଥିଲି ଆଠମଲ୍ଲିକର ମାଧପୁର, ଆଉଥରେ ବଣାଇ। ସେ ଯେଉଁ ଅଂଚଳରେ କାମ କରିଛନ୍ତି ସେ ଅଂଚଳର ଲୋକେ ତାଙ୍କୁ ଦେବତା ପରି ମାନନ୍ତି।

ମୋ ଗଇଁଙ୍କର ସବୁଠୁ ବଡ଼ ଗୁଣ ହେଲା ସେ ନିଜେ ଶକ୍ତି ହାସଲ ନକରି ଅନ୍ୟକୁ ଶକ୍ତି ଯୋଗାନ୍ତି ନାହିଁ। ଏଠି ରାମକୃଷ୍ଣ ପରମହଂସଙ୍କ କଥାଏ ମନେ ପଡି ଯାଉଛି।

ଥରେ ରାମକୃଷ୍ଣଙ୍କ ପାଖକୁ ଜଣେ ମାଁ ତା' ଛୋଟ ପୁଅକୁ ନେଇ ଆସିଲେ। ମାଁ ଟିର ଧାରଣା ରାମକୃଷ୍ଣ ଫୁକାଝଡ଼ା କଲେ ପୁଅର ଖସୁ ଖୁଜୁରି ଛାଡ଼ିଯିବ। ଠାକୁର

ପଚାରିଲେ କି କି ଚିଜ୍ ଖାଇବାରେ ପୁଅର ସୌକ। ମାଁ ଟି କହିଲା " ଗୁଡ଼, ଚିନି, ଭାଜି ମିଠା ସବୁ ଗିଳିଥାଏ ଏ ଅଳପେଇସ"। ଠାକୁର କହିଲେ ପନ୍ଦର ଦିନପରେ ଆସ। ଠିକ ପନ୍ଦର ଦିନ ପରେ ମାଁ ଟି ପୁଅକୁ ଧରି ଆଇଲା। ଠାକୁର ତାକୁ କହିଲେ, " ପନ୍ଦର ଦିନ ପରେ ଆସ"। କିଛି ନକହି ମାଁ ଟି ଚାଲିଗଲା। ମନେ ମନେ ବିରକ୍ତ ଥାଏ। କେତେ ଦଉଡ଼େଇବ ଏ ବୁଢା! ପନ୍ଦର ଦିନ ପରେ ସେ ଆସି ଆଗ ଠାକୁରଙ୍କୁ ପ୍ରଶ୍ନ କଲା, " ପୁଣି କେବେ ଆସିବି ଗୋସେଇଁ ?"। ଠାକୁର ହସି ଦେଇ କହିଲେଏ "ନାଁ ! ଆଉ ଆସିବାକୁ ପଡିବ ନି। ତୋ' ପୁଅର ଏ ବେମାରି ଚାଲି ଯିବରେ ମାଁ "। ତୋ' ପୁଅ ଭଳି ମୋର ବି ମିଠା ପ୍ରତି ସୌକ ଥିଲା। ତାକୁ ନଛାଡିବା ଯାଏଁ ମୋ ମନ୍ତ୍ର କାଟୁ କରନ୍ତା କିପରି?" ପାଣି ମୁଦିଏ ପୁଅ ଉପରେ ଛିଞ୍ଚିଦେଇ ଠାକୁର ମାଁ ଟିକୁ କହିଲେ , " ଯା"।

ଠିକ ସେଇ ପରି ମୋ ଭିଣୋଇ ଆଗ ଶକ୍ତି ହାସଲ କରନ୍ତି। ତାପରେ ଯାଇ ସେପରି ଶକ୍ତି ପାଇବାକୁ ପରାମର୍ଶ ଦିଅନ୍ତି। ଦୁନିଆଁରେ ମଣିଷ ପରି ଠିଆ ହେବାରେ ମୁଁ ତାଙ୍କ ଦାନକୁ ଭୁଲି ପାରିବି ନାହିଁ। ମୋର ଅଭାବରେ ସେ ମତେ ଅକୁଣ୍ଠ ସାହାଯ୍ୟ କରିଛନ୍ତି। ମୋର ପାଠ ପଢାରେ ତାଙ୍କ ସାହାଯ୍ୟ ଭୁଲିବାର ନୁହେଁ। ତାଙ୍କର ସବୁଠୁ ବଡଗୁଣ ହେଲା ସେ କାହାଠୁ କିଛି ଚାହାନ୍ତି ନାହିଁ ଅଥଚ ଅନ୍ୟ ପାଇଁ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦିଅନ୍ତି। ନିଜ ସିଦ୍ଧାନ୍ତରେ ଅଟଳ ରହି ପ୍ରାତ୍ୟହିକ ଜୀବନର ସକଳ ତୁଚ୍ଛତାରୁ ନିଜକୁ ଉପରେ ରଖି ପାରନ୍ତି। କୌଣସି ସମସ୍ୟାକୁ ଗଭୀର ଭାବେ ଅନୁଧ୍ୟାନ କରି ଏକ ଗ୍ରହଣୀୟ ସମାଧାନ ବାହାର କରିବାରେ ସେ ଦକ୍ଷ। ନିତାନ୍ତ ବିସ୍ଫୋରକ ସମୟରେ ମଧ୍ୟ ସେ ଏପରି ଅବିଚଳିତ ରହି ପାରନ୍ତି ଯେ ତାଙ୍କର ଅଟଳପଣକୁ ଯେ କେହିବି ଶ୍ରଦ୍ଧା କରିବ। ସବୁ ପ୍ରକାର ଝଡ଼ର ସମ୍ମୁଖୀନ ହୋଇ ଜୀବନକୁ ଖୁବ୍ ସ୍ୱାଭାବିକ ଭାବେ ଗ୍ରହଣ କରିନେବାର ଦକ୍ଷତା ଖୁବ୍ କମ ଲୋକର ଥାଏ। ପରଂପରାକୁ ସମ୍ମାନ ଦେଇ ସାମ୍ପ୍ରତିକ କାଳର ମୁହାଁ ମୁହିଁ ହେବାରେ ସେ ଯେପରି ପ୍ରାଚୀନପନ୍ଥୀ ସେହିପରି ଆଗାମୀ ପାଇଁ ବହୁ ସମ୍ଭାବନା କୁ ସ୍ୱାଗତ କରିବାରେ ଦକ୍ଷ। ନିରଳସ ଭାବେ ନିଷ୍ଠାର ସହ କାମ କରିବାର ପ୍ରେରଣା ମୁଁ ତାଙ୍କଠୁ ପାଇଛି। ଖୁବ୍ ସହଜ ଭାବେ ଜୀବନକୁ ସାମନା କରିପାରିଲେ ଜୀବନରେ ଶାନ୍ତି ଆଉ ସୁଖ ମିଳେ ଏ ଧାରଣାର ଧ୍ୱନି ତାଙ୍କ ଜୀବନ ଶୈଳୀରୁ ମୁଁ ଶିଖିଛି। ଜୀବନରେ ଭଲ ବାଟଟିଏ ବାଛି ନେବାରେ ତାଙ୍କର ବହୁ ଜୀବନଚର୍ଯ୍ୟା ମୋତେ ଅନୁପ୍ରେରିତ କରିଛି। ସେ ବରାବର କହନ୍ତି, " ଯଦି ବରଷକ ପାଇଁ ଯୋଜନା କରୁଛ ଚାଷ କର, ଯଦି ଦଶ ବର୍ଷର ଯୋଜନା କରୁଛ ଗଛ ଲଗାଅ, ଯଦି ଶହେ ବରଷ ପାଇଁ କିଛି କରିବାକୁ ଚାହୁଁଛ ତେବେ ମଣିଷକୁ ଶିକ୍ଷା ଦିଅ। ଆଜି ଯାହାକୁ ଯଉ ଶିକ୍ଷା ଦବ, ଶହେ ବର୍ଷ ପରେ ଯାଇ ତାର ଫଳ ପାଇବ।"

ମୋ ଜୀବନରେ ଆଉ ଯେଉଁ ଜଣକର ପ୍ରଭାବ ପଡିଛି ସେ ହେଉଛନ୍ତି ଶ୍ରୀ କୈଳାସ ଚନ୍ଦ୍ର ବାରିକ। ସେ ମୋଠୁ ସାନ। ତାଙ୍କୁ ବର୍ଷେ ପାଠ ପଢେଇଛି। ସେ ମୋ ସହିତ ପ୍ରାୟ

ତିରିଶ ବର୍ଷକାଳ ଜଣେ ସହଯୋଗୀ ସହକର୍ମୀ ରୂପେ କାମ କରିଛନ୍ତି। ତାଙ୍କର ସବୁଠୁ ଚମତ୍କାର ଗୁଣଟି ହେଲା ସେ ବେଶୀ ଶୁଣନ୍ତି କମ କହନ୍ତି, ମିଶନେରୀ ମାନଙ୍କ ଭଳି ସେ ଉତ୍ସର୍ଗୀକୃତ ନିଷ୍ଠାରେ କାମ କରନ୍ତି। ତାଙ୍କର ଯୁକ୍ତି ହେଲା ଈଶ୍ୱର ଆମକୁ ଦୁଇଟି କାନ, ଦୁଇଟି ଆଖି ଦେଇଛନ୍ତି। ବେଶି ଶୁଣିବା ବେଶି ଦେଖିବା ପାଇଁ ମାତ୍ କମ କହିବାକୁ ଗୋଟାଏ ମୁହଁ ଦେଇଛନ୍ତି।

କୌଣସି କାମ ତାଙ୍କ ନିଘାରେ ଛାଡି ଦିଅନ୍ତୁ ସେ ସେହି କାମକୁ ନିର୍ଭୟ ଓ ନିର୍ବିକାର ଭାବେ କରି ଥୋଇଦେବେ। ଦିନ ଦଶଟାରୁ ସଂଧ୍ୟା ୪ଟା ଯାଏ ଯେଣ ତେଣ ପ୍ରକାରେଣ କାମ କରିବାର ପ୍ରବୃତ୍ତି ତାଙ୍କର ନାହିଁ। ଆଜିର କାମ ଆଜି ସାରିବାକୁ ହବ, ଯେତେ ରାତି ହଉ। ସେ କହନ୍ତି ମଣିଷ ପଇସାକୁ ଛୁଇଁଲେ ପଇସା ମାରା ହୁଏ ନାହିଁ ହେଲେ ପଇସା ମଣିଷକୁ ଛୁଇଁଲେ ମଣିଷ ମାରା ହୋଇଯାଏ। " ଗାଆଁରେ, ସମାଜରେ ସେ ନିବିଡ଼ ଭାବେ ମିଶନ୍ତି ହେଲେ ଅନ୍ୟର କାରବାରରେ ଦଖଲ ଦିଅନ୍ତି ନାଇଁ। ସକଳ ଦୁଃଖରୁ ନିଜକୁ ଉପରେ ରଖି ତାଙ୍କ ନୀରବତା ମୋ ଜୀବନର ଏକ ଧ୍ୱନି ହୋଇ ନିନାଦିତ ହଉଥାଉ।

ଆଉ ଜଣକର କଥା କହୁଛି। ଆମେ ଦୁହେଁ ଗୋଟିଏ ମଟର ସାଇକେଲରେ ବାହାରିଲୁଁ। ସଂବଲପୁର ରୁ ବେଲପହାଡ଼, ବେଲପହାଡ଼ରୁ ବନ୍‌ଜାରୀ, କାହାଠୁ କିଛି ଅସୁଲ କରିବାର ଥିଲା। ଜଣେ କେହି ତାଙ୍କଠୁ ନଉଥିଲା, ଦଉ ଥିଲା। ବେପାରରେ ଏମିତି ଦିଆ ନିଆ ଚାଲେ। କେଜାଣେ କାହିଁକି ସେ ଲୋକଟି ଶେଷ ଥର ନେଲାଯେ, ଦେଲା ନାହିଁ। **Credit cuts the relation**। ଗଲାଯେ ଅଇଲା ନାଇଁ। ତାଠୁ ପାଉଣାଟକ ଅସୁଲ କରିବା ହଉଛି ମତଲବ। ଅଗନା ଅଗନି ବନସ୍ତ ପରି ବନସ୍ତ। ବଂଜାରି ବଣରେ ବାଘ ବୋଲୁଛି ମୁଁ। ସାପ ବୋଲୁଛି ମୁଁ। ଝରଣାଟିଏ ବାଟ ଛେକିଲା। ଅଟକିଲୁ। ଜାଗାଟି ଆଖିକୁ ଟାଣି ନଉଥାଏ। ଯେମିତି କୁନି ଝିଅଟିଏ ନାଚି ନାଚି ଯାଉଛି। ସଦା ଚଂଚଳ। ବିରାମହୀନ ବ୍ୟସ୍ତତା। ଦରପଚା ରାୟଜାମୁ ପରି ପାଣି। କହିଲି "ଭୁରୁ ବାବୁ, ଦେଖୁ ନାହାନ୍ତି ଏ ଝରଣାକୁ ? ଆମକୁ ଡାକୁଛି, କାହାଠୁ କିଛି ଆଶା ନରଖି ଶୋଷ ମାରୁଛି। ଏହି ଦହ ଦହ ଖରାରେ ଯେମିତି ଆମ ଶୋଷ ମାରିଲା " ଭୁରୁ ବାବୁ ହସିଲେ, ସେ ହସିଲେ କୁଆଡ଼େ କିଛି ଓଜନିଆ କଥା କହନ୍ତି। ସେ ସକାଳ ପରି ଖୁବ ସହଜ ଭାବେ କହିଲେ" ଏହାର ପାଣି ନିର୍ମଳ ରହୁଛି ବୋଲି ସିନା ଆମେ ପିଇବାକୁ ଉତୁରିଲେ। ଆମ ସଂବଲପୁର ସହରର ନର୍ଦମା ପାଣି ପରି ପ୍ରଦୂଷିତ ଥିଲେ କିଏ କାହିଁକି ଆସନ୍ତା ? ଆମେ ଆମ ପ୍ରାତ୍ୟହିକ ଜୀବନରେ ଏ ଝରଣା ପରି ନିଖାର ରହିଲେ ସିନା ଲୋକେ ଆମ ପାଖକୁ ଆସିବେ? "ସତେ କେତେ ଓଜନ ଥିଲା ଭୁରାମଲ ଶର୍ମାଙ୍କ କଥାରେ। ଗୋଟାଏ ଯୁଗର ମରମକୁ ପ୍ରତିନିଧିତ୍ୱ କରୁଛି ତାଙ୍କର ଧ୍ୱନି। ଏଇ କାରଣରୁ ତାଙ୍କ ସହ ମୋର ନିବିଡ଼ତା!



# ୯୨. ଭୁଖାର ଭୋକ ଆଉ ଶୋଷ

ସମ୍ବଲପୁରୀ ସାହିତ୍ୟର ଜଣେ ନାମଜାଦା କବି ଓ ଆଲୋଚକ ଶ୍ରୀ ଉପେନ୍ଦ୍ର କୁମାର ଭୋଇଙ୍କର "ଭୁଖାର ଭୋକ ଆଉ ଶୋଷ" ଶୀର୍ଷକରୁ ମୋର ଏଇ ଶିରୋନାମା ନେଇଥିବାରୁ ତାଙ୍କ ପାଖରେ ମୁଁ ଋଣୀ। ପିଲା ବେଳରୁ ମୁଁ କବିତା ଲେଖୁଥିଲି। ମାଇନର ସ୍କୁଲର ଛାତ୍ର ଜୀବନରୁ ଏଇ କବିତା ଲେଖା ଆରମ୍ଭ। ସମ୍ବଲପୁର ବିଶ୍ୱବିଦ୍ୟାଳୟର ବର୍ତ୍ତମାନର କୁଳପତି ଡ଼: ଧ୍ରୁବରାଜ ନାୟକ ମୋ' ମାଇନର ସ୍କୁଲ ଛାତ୍ର ଜୀବନର ବନ୍ଧୁ। ମୋ ପ୍ରଥମ ବହିର ପ୍ରଥମ ପ୍ରକାଶକ ସେ।

୧୯୮୩ ସାଲର ସେପ୍ଟେମ୍ବର ମଧ୍ୟଭାଗରେ ଅଧ୍ୟାପକ ଦ୍ୱାରିକାନାଥ ନାୟକ ମୋତେ ଦେଖାକଲେ। ରାଉରକେଲା ଲୋକନାଟକ ମହୋତ୍ସବରେ 'ସୃଷ୍ଟି' ନାଟ୍ୟ ସଂସ୍ଥା ଭାଗନେଇ ନାଆ କରିଥାଏ। ଭଲ ନାଟକଟିଏ ଉତାରିବା ପାଇଁ 'ସୃଷ୍ଟି'ର ମନ। ନାଟକଟିଏ ପାଇଁ ଦ୍ୱାରିକା ବାବୁ ମୋତେ ଅନୁରୋଧ କଲେ। ମୁଁ କିଏ : ନାଟକ କିଏ? ସଦା କବିତାରେ ବୁଡ଼ିଥିବା ଲୋକଟିଏ ପୁଣି ନାଟକ ଲେଖିବ? ସେ ପୁଣି ମଞ୍ଚ ପାଇଁ! ରେଡ଼ିଓ ପାଇଁ କେବେ କେମିତି ନାଟକଟାଏ ଲେଖି ପକଉଥିଲି। ଯା ଆଗରୁ ମଞ୍ଚ ପାଇଁ କେବେ ନାଟକ ଲେଖିନଥିଲି। ହେଲେ ଏକଥା ଭଲଭାବରେ ବୁଝିଥିଲି ଯେ ନାଟକ ହେଉଛି କବିତାର ଆତ୍ମରକ୍ଷାର ଏକ ନୂତନ କୌଶଳ। ଏଣୁ ନାଟକ ଭିତରେ କବିତା ରହିବ ହିଁ ରହିବ। ନାଟକରେ କାହାଣୀ ଥିବାରୁ ଗପଟିଏ ମଧ୍ୟ ରହିବ। ଗୀତ, ଗପ, ନାଚ ଓ ଅଭିନୟ ଏଇ ପାଞ୍ଚଟି ଧାରାକୁ ଧରିରଖି ପାରୁଥିବାରୁ ଅନେକ ନାଟକକୁ ପଞ୍ଚମ ବେଦ କହିଲେଣି।

ଦ୍ୱାରିକାନାଥ ନାୟକ, ସମ୍ବଲପୁରୀ ଭାଷାରେ ନାଟକଟିଏ ଚାହିଁଲେ। ମଞ୍ଚ ନାଟକର ଟେକ୍‌ନିକ୍, ମଞ୍ଚାନୁସାରୀ କରିବାକୁ ସଂଳାପ ଗୁଡ଼ିକର ସଂଗଠନ ପ୍ରସଙ୍ଗରେ ବୁଝାଇଥିଲେ। ନାଟକରେ ଅଭିନୟକରୁ ଥିବାରୁ ଓ ନିର୍ଦ୍ଦେଶନା ଦେଇ ପାରୁଥିବାରୁ ମୁଁ ଜାଣିଲି, ସେ ନାଟକ ପାଇଁ ଯୋଗ୍ୟ ଲୋକ। ନାଟକର ପରିକଳ୍ପନା ପାଇଁ ମୁଁ ମୋ' ଗାଁ ପିତାପାଲିକୁ ଭୂମିରୂପେ ଗ୍ରହଣ କଲି। ଆମ ଗାଁରେ ଷାଠିଏ ଘର ବଜନିଆ ଥିଲେ। ମୋର ବାପା ଶ୍ରୀବତ୍ସ ବିଶ୍ୱାଳ ଜଣେ କଳାକାର ଥିବାରୁ ଏଇ ବଜନିଆଁ ମାନେ ତାଙ୍କୁ ଗୁରୁବୋଲି ମାନୁଥିଲେ। ଏପରି ଏକ ପୃଷ୍ଠଭୂମିରୁ 'ଭୁଖା' ନାଟକର ପରିକଳ୍ପନା। ଆମ ଗାଁର ମୁହୁରିଆ ଅଁଏଠାର ଜୀବନକୁ ନେଇ ଏ ନାଟକର କାହାଣୀ। କାହାଣୀଟି କଳ୍ପନା ପ୍ରସୂତ ନୁହେଁ। ନିଛକ ବାସ୍ତବତାରୁ ଯା'ର ଜନ୍ମ।

ନାଟକ ଲେଖା ସରିବା ପରେ ଦ୍ୱାରିକା ନାୟକ ମଞ୍ଚରେ ଥୋଇବାପାଇଁ ସବୁ ଅସୁବିଧାକୁ ଅଡୁଆକୁ, ଅସଂଗତିକୁ ଦୂରକଲେ। ସେ ମୋ' ପାଖକୁ ବାରମ୍ବାର ଦଉଡ଼ି ଆମେ ଦୁହେଁ, ଅନେକ କାଟଛାଁଟ କଲୁ। ଏଣୁ 'ଭୁଖା' ନାଟକର ଅଧେ ସଫଳତାର ଅଧିକାରୀ ସେ।

୨୧ ନଭେମ୍ବର ୧୯୮୩ ରାଉରକେଲା ସିଭିକ୍ ସେଣ୍ଟର ମଞ୍ଚରେ ନାଟକଟି ସଫଳତାର ସହ ପରିବେଷିତ ହେଲା। 'ଭୁଖା'କୁ ନିର୍ଦ୍ଦେଶନା ଦେଇଥିଲେ ପ୍ରବୀଣ ନିର୍ଦ୍ଦେଶକ ରାଜେନ୍ଦ୍ର ପ୍ରସାଦ ପଣ୍ଡା। ରାଜେନ୍ଦ୍ର ପ୍ରସାଦ ପଣ୍ଡା ଶ୍ରେଷ୍ଠ ନିର୍ଦ୍ଦେଶକର, ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶନା ପାଇଁ ଦ୍ୱାରିକା ନାୟକ ଶ୍ରେଷ୍ଠ ଅଭିନେତା ପାଇଁ ଉତ୍ତମ ବେହେରା, ଶ୍ରେଷ୍ଠ ଅଭିନେତ୍ରୀ ରୂପେ ପ୍ଲାବନୀ ପାଢ଼ୀ ଓ ଶ୍ରେଷ୍ଠ ଶିଶୁ ଅଭିନୟ ପାଇଁ କୁମାରୀ ମାନସୀ ନନ୍ଦ 'ଭୁଖା' କୁ ପାଞ୍ଚଟି ପୁରସ୍କାରରେ ଗୌରବ ମଣ୍ଡିତ କଲେ। 'ଭୁଖା' ଚାରିଆଡେ ଖୁବ୍ ନାଁ କଲା। ବହୁ ଜାଗାରେ ମଞ୍ଚସ୍ଥ ହେଲା।

'ଭୁଖା' ନାଟକର ସଫଳତା ଭୁଖାକୁ ଚ଼ଳଚିତ୍ର କରିବାର ଉଦ୍ୟମକୁ ପ୍ରଲୋଭିତ କଲା। 'ଭୁଖା' ଚ଼ଳଚିତ୍ର 'ଭୁଖା  ନାଟକର ଏକ ଧର୍ଷିତ ରୂପ। 'ଭୁଖା'ର ଅନ୍ତସ୍ୱରକୁ ରୁନ୍ଧି ଦିଆଯାଇଛି। 'ଭୁଖା' ଚ଼ଳଚ଼ିତ୍ର ଦେଖି ଦଙ୍ଗାହଲା, ଏକଶହ ଚଉରାଳିଶ ଧାରା ଜାରିହେଲା। ଗୋଟାଏ ସମ୍ପ୍ରଦାୟ ଚ଼ଳଚ଼ିତ୍ର ଦେଖି ବିରକ୍ତ ହେବା ସ୍ୱାଭାବିକ। 'ରେପ୍ ଏଣ୍ଡ ମର୍ଡ଼ର' ଭାରତୀୟ ସିନେମାର ମୁଖ୍ୟ ଧାରା ହୋଇଥିବାରୁ 'ଭୁଖା' ଚ଼ଳଚ଼ିତ୍ର କୁ ବି ସେଇ ବେମାରି ଧଇଲା। ନାଟକର ପରିଚ୍ଛନ୍ନ ଧାରାଟି ଚ଼ଳଚ଼ିତ୍ର ଜଗତର ଏକ ରୂପ ଆମୋଦୀ ଧାରାରେ ହଜିଗଲା, 'ଯାହା ନୁହେଁ ତାହା'ର ସମନ୍ୱୟ। ଉଚ୍ଚ ମାନର ଲୋକଙ୍କ ସହ ନିମ୍ନ ମାନର ଲୋକ ଏଥିରେ ଥାନ୍ତି। ବିକୃତି ରୁଚ଼ି 'ଭୁଖା' ର କଳାତ୍ମକ ଦିଗକୁ ନଷ୍ଟ କରିଦେଲା। 'ଭୁଖା' ନାଟକ ପାଇଁ ମୋର ଯେତେ ଆନନ୍ଦ। 'ଭୁଖା' ଚ଼ଳଚ଼ିତ୍ର ପାଇଁ ତହିଁରୁ ବେଶୀ ମାତ୍ରାରେ ଦୁଃଖ। ସକଳ ତୁଚ୍ଛତାରୁ ନିଜକୁ ମୁକ୍ତ କରିପାରନ୍ତି ନାଇଁ ବ୍ୟବସାୟୀ କଳାକାର ମାନେ। ଚ଼ଳଚ଼ିତ୍ର 'ଭୁଖା' ସେ ପ୍ରକାର ତୁଚ୍ଛତାର ଶୀକାର ହୋଇଗଲା।

ଯଦି କେହି କହେ 'ଭୁଖା' ଚ଼ଳଚ଼ିତ୍ର ମୋତେ ବେଶୀ ପ୍ରଚାରିତ କଲା। ମୁଁ କହିବି ବେଶୀ ପ୍ରଚାରିତ ହେବା ସଚ୍ଚା କଳାକାରର ଏକ ବିଲକ୍ଷଣ। ଚ଼ଳଚ଼ିତ୍ର ଜଗତରେ ବି ନିମ୍ନମାନର ବ୍ୟକ୍ତିଥାନ୍ତି। ଏ ଧାରଣାଟି 'ଭୁଖା' ଚ଼ଳଚ଼ିତ୍ର ପ୍ରମାଣିତ କରିଦେଲା।

'ଭୁଖା' ନାଟକରେ ଅଭିନୟ କରିଥିବା ଉତ୍ତମ ବେହେରା, ଲକ୍ଷ୍ମୀ ପଧାନ, ରଣଜିତ୍ ଗୁରୁ, ଦ୍ୱାରିକା ନାୟକ, ଶ୍ୟାମ ସୁନ୍ଦର ଧର (ବାରୁ), ବସୁଦେବ ସ୍ୱାଇଁ, ନରେନ୍ଦ୍ର ରାୟଗୁରୁ, ଭୁବନ ବିନୋଦ, ପ୍ଲାବିନୀ ପାଢ଼ୀ, ମାନସୀ ନନ୍ଦ ଭଳି କଳାକାର ମାନେ ମୋ ବାରତୁମୁରି ଗାଁକୁ ଆସି ମୋତେ ଧନ୍ୟ କରିଥିଲେ। ଏଇ କଳାକାର ମାନଙ୍କ ସଂଳାପର କମ୍ପନ ମୋର ରକତ ଭିତରେ ଢୋଳ ବାଜିଲା ପରି ମୁଁ ଅନୁଭବ କରୁଛି। ଏତକ ନିଶ୍ଚୟ ସ୍ୱୀକାର କରିବି ଯେ ଦ୍ୱାରିକା ନାୟକ ମୋର ପିଚ୍ଛାଧରି ନଥିଲେ। ''ମୁଁ କିଏ – ନାଟକ କିଏ''ରେ ମୁଁ ରହିଯାଇଥାନ୍ତି। ଧନ୍ୟ କହିବ ଦ୍ୱାରିକା ବାବୁଙ୍କୁ ସେ ମୋଠୁ ଦଶଟି ସମ୍ବଲପୁରୀ ନାଟକ ଝଡ଼େଇ ପାରିଲେ।

ମୂଳତଃ ମୁଁ କବିତା ଇଲାକାର ଲୋକ। ନାଟକ ଏରିଆରେ ମୁଁ ଜବର ଦଖଲ କରିଛି ସିନା! ହେଲେ ସେଇ ଜବର ଦଖଲ ଏରିଆକୁ ସଲାମି ଦେଇ ମୌରସି ହକ୍‌କୁ ଆଣି ପାରିଛି। ନାଟକ କ୍ଷେତ୍ରରେ ମୋର ସଫଳତାର ଅଧେ ଦ୍ୱାରିକା ନାୟକଙ୍କର।

ତଥାପି 'ଭୁଖା'ର ଭୋକ ଆଉ ଶୋଷ ପ୍ରଶମିତ ହୋଇନାହିଁ। ଧନ୍ୟ କହିବା ଉପେନ୍ଦ୍ର କୁମାର ଭୋଇଙ୍କୁ ଯିଏ 'ଭୁଖା'ର ଭୋକ କଣ ଆଉ ଶୋଷ କଣ ବୁଝନ୍ତି।



## ୯୩. ମହନ୍ତ ସାର୍‌ଙ୍କ ମହତପଣିଆ

୧୯୯୮ ନଭେମ୍ବର ଆଠ ତାରିଖରେ ପୁରୀଠାରେ ମୋତେ ସମ୍ମାନିତ କରିବାର ଏକ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା। ମୁଁ ମୋ' ଭାରୀଯାକୁ ଏ ଖବର ଦେବାରେ ସେ ରସିକତା କରି କହିଲେ "ବେଳ ପାଚିଲେ କାଉର କି ଯାଏ।" ଗୁଲିଟି କଉଠି ବାଜିଲା ମୁଁ ଜାଣେ। ମୁଁ ମୋ' ଭାରିଯାକୁ କେବେ ସିନେମା ଦେଖେଇ ନେଇନାହିଁ। ଓଡ଼ିଶା ସାରା ବୁଲିବା ଭିତରେ ମୁଁ ପୁରୀକୁ ବହୁବାର ଯାଇଛି। ଏବେ ଶାରୀରିକ ଅସୁସ୍ଥତା ଯୋଗୁଁ ବସ୍ ବା ରେଳରେ ଯାଇ ପାରୁନାହିଁ। ଏଣୁ ଗୋଟାଏ କାର ଭଡ଼ାରେ ଠିକ୍ କଲି। କାର ଯେତେବେଳେ ଯିବ ଏକାକୀ ଯିବି କିଆଁ? ସାଙ୍ଗରେ ମୋ ଭାରୀଯା ଶୈଳବାଳା, ବଡ଼ପୁଅ ପ୍ରଶାନ୍ତର ତିନିଝିଅ ଶ୍ୱେତପର୍ଣ୍ଣା, ଅପର୍ଣ୍ଣା ଓ ବିଜନ ଗଲେ। ଯିବା ଆସିବା ବେଳେ ମୋ' ମଝିଆ ପୁଅ ଅମିତାଭ ସାହାଯ୍ୟ କରିବାକୁ ଗଲା। ଆମ ସାଙ୍ଗରେ ଶ୍ରୀ ଉଦିତ ଚନ୍ଦ୍ର ପାଟଯୋଷୀ ଓ ତାଙ୍କ ସ୍ତ୍ରୀ ମଧ୍ୟ ସାଙ୍ଗ ହୋଇ ଗଲେ।

ଆମେ ନଭେମ୍ବର ଛଅ ସକାଳ ଛଅଟାରେ ଆମ ଗାଁ ବାରଦୁମୁରିରୁ ବାହାରି ପଡ଼ିଲୁ। ଛାଟେ ଛାଟେ ଯାଇ ବଇଣ୍ଡା ଛକରେ ଜଳଖିଆ କଲୁ। ସେଠୁ ସିଧା କଟକଗଲୁ। ଚୌଦୁଆରରୁ ଯୋବ୍ରା ଆନିକଟ ଦେଇ ମହାନଦୀ ପାରିହେଲୁ। ଠିକ୍ ସେତେବେଳେ ବାଲିଯାତ୍ରା ଚାଲିଥାଏ। ସନ୍ଧ୍ୟାରେ ସିନା ଭିଡ଼। ବାରଟା ବେଳକୁ ପ୍ରାୟ ଶୁନ୍‌ସାନ। ଘେରାଏ ବୁଲି ଆସିଲୁ। କଟକ ଚଣ୍ଡୀଙ୍କୁ ଦର୍ଶନ କରିବାକୁ ଚଣ୍ଡୀ ମନ୍ଦିର ଗଲୁ। ମା'ଙ୍କୁ ଦର୍ଶନ କଲୁ। କଟକକୁ ଘେରାଏ ବୁଲିଦେଇ ଚାନ୍ଦନୀ ଚଉକ, ହାଇକୋର୍ଟ ଦେଇ କାଠଯୋଡ଼ୀ କୂଳେ କୂଳେ ବାଦାମବାଡ଼ିକୁ ଗଲୁ। ବାଦାମ ବାଡ଼ିରେ ମଧ୍ୟାହ୍ନ ଭୋଜନ କରି ଭୁବନେଶ୍ୱର ଗଲୁ।

ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର, କେଦାର ଗୌରୀ, ବିନ୍ଦୁସାଗର ଆଦି ବୁଲି ଦେଖିବା ବେଳକୁ ସନ୍ଧ୍ୟା ଛଅଟା ହୋଇଗଲା। ଭୁବନେଶ୍ୱର କୌଣସି ହୋଟେଲରେ ରହିବାଠାରୁ ଆମ ମହନ୍ତ ସା'ର୍ ରହୁଥିବା ଖଣ୍ଡଗିରିର ଚିଦାନନ୍ଦ ଆଶ୍ରମରେ ନ ରହିବୁ କିଆଁ? ଉଦିତ୍

ବାବୁ ଆଗରୁ ମହନ୍ତ ସାର୍‌ଙ୍କୁ ଫୋନ୍‌ରେ କହିଥିଲେ। ଆମ ଭୁବନେଶ୍ୱର ଯିବା ଜାଣି ପରେଶ ଚ଼ନ୍ଦ୍ର ମହନ୍ତ ଚିଦାନନ୍ଦ ଆଶ୍ରମରେ ପହଞ୍ଚି ସାରିଥିଲେ। ଖଣ୍ଡଗିରି ଗଲୁ। ଖଣ୍ଡଗିରି ପାହାଡ଼ର ପଛପଟେ ଚି଼ଦାନନ୍ଦ ଆଶ୍ରମ। ଗୋଟାଏ ହାଇସ୍କୁଲ ଅଛି ସେଇଠି। ମହନ୍ତ ସାର୍ ସେ ଅନୁଷ୍ଠାନର ପ୍ରଧାନ ଆଚାର୍ଯ୍ୟ। ଆମେ ଗୋଟାଏ ରାତି ବିତାଇଲୁ ସେଇ ଚି଼ଦାନନ୍ଦ ସରସ୍ୱତୀଙ୍କ ଆଶ୍ରମରେ।

ସ୍ୱାମୀ ଚି଼ଦାନନ୍ଦ ସରସ୍ୱତୀଙ୍କ ଆଶ୍ରମଟି ପ୍ରାୟ ପନ୍ଦର ଏକର ଜମିରେ ସ୍ଥାପିତ ହୋଇଛି। ନଡ଼ିଆ ଓ କଦଳୀ ଗଛରେ ଭରପୂର ଏକ ବଗିଚା। ଚାଳିଶ ପଟ ଦୁଧିଆଳୀ ଗାଈ। ବନରାଜୀନୀଳାରେ ଆଭାମୟ ଏ ଆଶ୍ରମ। ନନ୍ଦନ ବନର ପାରିଜାତ ପରି ମହନ୍ତ ସାର୍‌ଙ୍କ ଭଳି ଜଣେ ମହାନ ବ୍ୟକ୍ତି ଏ ଆଶ୍ରମର ଜଣେ ସଞ୍ଚାଳକ।

ଶ୍ରୀ ପରେଶ ଚ଼ନ୍ଦ୍ର ମହନ୍ତ ମୟୂରଭଞ୍ଜ ଜିଲ୍ଲାର ଲୋକ। ବିଜ୍ଞାନର ଛାତ୍ରସେ। ସରଳ, ସ୍ନେହୀ ଓ ଶୋଭନ ସ୍ୱାଭାବର ବ୍ୟକ୍ତି ସେ। ସମଧର୍ମୀ ବନ୍ଧୁ ଭାବେ ତାଙ୍କ ସହ ମୋର ପରିଚ଼ୟ ଗତ କୋଡ଼ିଏ ବର୍ଷଧରି। ଏ ମଣିଷଟି ବିଜ୍ଞାନୀ। ସାତ୍ତ୍ୱିକ ଅନୁଭବରେ ଭରପୂର। ରାମାୟଣ ଉପରେ ସେ ଚ଼ମ୍‌ତ୍କାର ପ୍ରବଚ଼ନ ଦିଅନ୍ତି। ଗତବର୍ଷର ବସନ୍ତ ଋତୁରେ ମହନ୍ତ ସାରଙ୍କୁ ଆମେ ପରମାଣପୁର ଡ଼ାକିଥିଲୁ। ଜଗନ୍ନାଥ ମନ୍ଦିର ବେଢ଼ାରେ ସେ ପ୍ରବଚ଼ନ ଦେଇଥିଲେ। ପ୍ରବଚ଼ନ କରିବାର ମଧୁର ଶୈଳୀଟିଏ ତାଙ୍କୁ ଜଣା। ନିପଟ ମୁରୁଖ ମଧ୍ୟ ତାଙ୍କ କଥାକୁ ବୁଝିପାରେ। ସିଏ ଯଉଠିକି ଯିବେ ସଭିଙ୍କର ଶ୍ରଦ୍ଧା ଭାଜନ ହୋଇଯାନ୍ତି। ଜୀବନରେ ସାଧାରଣ ଘଟଣା ମାନଙ୍କୁ ନେଇ ରାମାୟଣର ମହାନ୍ ଚ଼ରିତ୍ର ମାନଙ୍କୁ ଅତି ଚ଼ମ୍‌ତ୍କାର ଶୈଳୀରେ ଥୋଇ ପାରନ୍ତି। ତାଙ୍କ ଅନ୍ତରର ଗଭୀରତା ତାଙ୍କ ବକ୍ତବ୍ୟରୁ ବାରି ହୋଇଯାଏ।

ହୀରାକୁଦ ହାଇସ୍କୁଲରେ ଶିକ୍ଷକତାର ସବୁ ସମୟ ବ୍ୟୟ କରି ସେ ହୀରାକୁଦର ଏକ ଜୀବନ୍ତ ଅନୁଷ୍ଠାନ ହୋଇ ଯାଇଥିଲେ। ସେଇଠି ଜଣେ ଦକ୍ଷ ବିଜ୍ଞାନ ଶିକ୍ଷକ ଓ ପ୍ରଧାନ ଶିକ୍ଷକ ରୂପେ ଅନୁଷ୍ଠାନକୁ ଏକ ମର୍ଯ୍ୟାଦାବନ୍ତ ଆସନରେ ଥୋଇଥିଲେ। ସେଠୁ ଅବସର ନେଇ ଖଣ୍ଡଗିରିର ସେଇ ଆଶ୍ରମ ଅନ୍ତର୍ଗତ ଶିକ୍ଷାନୁଷ୍ଠାନରେ ପ୍ରଧାନ ଆଚାର୍ଯ୍ୟ ଥିଲେ। ସେଇ ଆଶ୍ରମରେ ମୁଁ ତାଙ୍କର ଅତିଥି ହେବାର ସୌଭାଗ୍ୟ ପାଇଥିଲି। ଆଶ୍ରମରେ ସ୍ତ୍ରୀ ଲୋକ ରହିବାର ନିୟମ ନଥିବାରୁ ମୋର ପରିବାର ଆଶ୍ରମ ବାହାରର ଅତିଥି ଶାଳାରେ ରହିଲେ। ମୁଁ ଓ ପାଟଯୋଷୀ ବାବୁ ମହନ୍ତ ସାରଙ୍କ ସହିତ ରହିଲୁ। ସନ୍ଧ୍ୟାରେ ଆଶ୍ରମର ଅନ୍ତେବାସୀ ମାନଙ୍କୁ ଉଦ୍‌ବୋଧନ ଦେବାର ସୁଯୋଗ ଦେଲେ ସେ ମୋତେ। ଆଶ୍ରମର ସ୍ୱାମୀ ଶିବ ଚି଼ଦାନନ୍ଦ ସରସ୍ୱତୀଙ୍କ ସହ ସେ ମୋର ସାକ୍ଷାତ କରାଇଲେ। ସ୍ୱାମୀଜୀ ଖଣ୍ଡେ ମୂଲ୍ୟବାନ ବହି ମୋତେ ଉପହାର ଦେଇ ଧନ୍ୟ କରାଇଲେ।

ନଭେମ୍ବର ସାତ ତାରିଖ ସକାଳେ ଠିକ୍ ୭ଟା ସମୟରେ ଆମେ ଆଶ୍ରମ ଛାଡ଼ି କୋଣାର୍କ ଅଭିମୁଖେ ବାହାରି ପଡ଼ିଲୁ । ନିମାପଡ଼ାରେ ଅଟକି ଜଳଖିଆ କଲୁ । ସେଇଠୁ ସିଧା କୋଣାର୍କ ଗଲୁ । କୋଣାର୍କରୁ ଚନ୍ଦ୍ରଭାଗା ଓ ସେଇଠୁ ମେରାଇନ ଡ୍ରାଇଭବାଟେ ପୁରୀ ଗଲୁ । ଠିକ୍ ଦିନ ଗୋଟାଏ ବେଳକୁ ପୁରୀରେ ପହଞ୍ଚିଲୁ । ପୁରୀ ବଡ଼ଦାଣ୍ଡରେ ମୋର ରହଣି ପାଇଁ ଆୟୋଜକ ମାନେ ଗୋଟାଏ ହୋଟେଲରେ ଦୁଇଟି କୋଠରୀ ଆଗରୁ ବ୍ୟବସ୍ଥା କରିଥିଲେ । ସେଇଠି ଆମେ ରହିଲୁ । ଜଗନ୍ନାଥଙ୍କ ଦର୍ଶନ ସାରି ଭୋଗ ପାଇଲୁ । ସନ୍ଧ୍ୟା ୫ଟାରେ ଥିଲା ମୋର ସଭା କାର୍ଯ୍ୟକ୍ରମ । ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଙ୍ଘର (ଓଷ୍ଟା) ଅଭିନନ୍ଦନ ସଭାରେ ଯୋଗଦେଲି । ସନ୍ଧ୍ୟାରେ ସମୁଦ୍ରତଟରେ କିଛି ସମୟ କଟାଇଲୁ ।

ଆଠ ତାରିଖ ସକାଳୁ ଚକା ଆଖିଆଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ପୁରୀ ଛାଡ଼ିଲୁ । ସାକ୍ଷୀ ଗୋପାଳରେ ଅଟକି ଡାକ୍ତର ଦୀନବନ୍ଧୁ ପଣ୍ଡାଙ୍କ ସହ ସାକ୍ଷାତ କଲୁ । ସେ ଆମ ପରମାଣପୁର ଡାକ୍ତରଖାନାରେ କିଛି ବର୍ଷଥିଲେ । ସେଠୁ ବାହାରିଲୁ ଯେ ସିଧା ଖୁଣ୍ଟୁଣୀରେ ଜଳଖିଆ କଲୁ । ସେଠୁ ବାହାରି ସିଧା ସନ୍ଧ୍ୟାସୁଦ୍ଧା ଘରେ ପହଞ୍ଚି ଗଲୁ । ଏଇ ଷାଠିଏ ଘଣ୍ଟାର ଯିବା ଆସିବା ଓ ରହଣି ଭିତରେ ବନ୍ଧୁ ପରେଶ ଚନ୍ଦ୍ର ମହନ୍ତଙ୍କ ମଣିଷ ପଣିଆ ମୋତେ ଗଭୀର ଭାବେ ପ୍ରଭାବିତ କଲା ।

ମୁଁ ଲରମ୍ବା କଲେଜର ଏକ ଉତ୍ସବରେ ଯୋଗଦେବାପାଇଁ ଯାଇଥିଲି । ଫକୀର ମୋହନ ସେନାପତିଙ୍କ 'ରେବତୀ' ଗଳ୍ପର ଶତବାର୍ଷିକ ଉତ୍ସବ ପାଳିତ ହବାରଥାଏ । ସଭାପତିତ୍ୱ କରୁଥିବା ଅଧ୍ୟକ୍ଷ ଶ୍ରୀ ନିହାର ରଞ୍ଜନ ବହିଦାର ହଠାତ୍ ଉଠି ଆମଠୁ ବିଦାୟ ନେଲେ, ହୀରାକୁଦ୍ ତତ୍‌କ୍ଷଣାତ ଯିବାପାଇଁ । ଏପରି ଆକସ୍ମିକ ଅପସରି ଯିବାର କାରଣ ପଚାରନ୍ତେ ସେ ମହାଶୟ କହିଲେ, "ହୀରାକୁଦ ହାଇସ୍କୁଲର ପ୍ରଧାନ ଶିକ୍ଷକ ପରେଶ ଚନ୍ଦ୍ର ମହନ୍ତେ ଆଉ ନାହାନ୍ତି ।" ଶୁଣି ମୁଁ କାଠ ହୋଇଗଲି । ଛଅମାସତଳେ ସେ ମୋ ଘରକୁ ଯାଇଥିଲେ । କର୍ମଠ ଓ ଯୁବକ ସୁଲଭ ଶାରୀରିକ ଦକ୍ଷତା ଥିଲା ତାଙ୍କର । ଅବସର ନେବାର ଠିକ୍ ପରେ ପରେ ମାତ୍ର ଅଠାବନ ବର୍ଷରେ ସେ ଆମ୍ଭମାନଙ୍କୁ ବନ୍ଧୁହୀନ କରି ଚାଲିଗଲେ ।

ବହୁ ଦକ୍ଷତାର ଅଧିକାରୀ ସେ ଥିଲେ । ମହନ୍ତ ବାବୁ ଅଜାତଶତ୍ରୁ । ମହନ୍ତ ସାର୍‌ଙ୍କ ମହତ ପଣିଆ ଆମ୍ଭମାନଙ୍କୁ ଅନୁପ୍ରେରିତ କରୁ । ମୁଁ ମୋ' ଜୀବନରେ ତାଙ୍କର ସହାଚର୍ଯ୍ୟ ପାଇ ଧନ୍ୟ ହୋଇଛି ।



# ୯୪. ନଦୀ ନଦୀ  ପାହାଡ଼ ପାହାଡ଼

"କବିମାନେ କୁଆଡ଼େ ଭିନ୍ନ ଧରଣର ମଣିଷ। ଜୀବନକୁ ଜାଣିବାର ଅନେକ ଅସ୍ୱାଭାବିକତା ଥାଏ ସେମାନଙ୍କର।" ଆଗନ୍ତୁକ କହିଲେ। "ଦେଖୁଛି, ଆପଣଙ୍କ ଜୀବନଚର୍ଯ୍ୟା କିନ୍ତୁ ଅଲଗା। ଏପରି ଜୀବନଚର୍ଯ୍ୟା ଭିତରେ କବିତା ଲେଖି ପାରୁଛନ୍ତି କିପରି, ଏ ଯୁଗରେ?" ଆଗନ୍ତୁକଙ୍କୁ ଉତ୍ତର ଦେବା ଛଳରେ ଯାହା ସବୁ କହିଲି ତା'ର ଲିଖିତ ରୂପ ହେଉଛି ଏ ଆଲୋଚନା।

ଆମ ଭାଗବତ କହୁଛି।- ମନର ମୂଳେ ଏ ଜଗତ। ଏଣୁ ମନକୁ ନେଇ ସବୁ। ମନର ମହିମା କିନ୍ତୁ ବିଚିତ୍ର। ଏଠୁ ସେଠିକି, ସେଠୁ ଏଠିକି ହେଉଥାଏ। କଦାପି କଉଠି ସ୍ଥିର ରହେନା। ଘଡ଼ିର ପେଣ୍ଡୁଲମ୍ ଭଳି। ଏ ପାଖରୁ ସେ ପାଖକୁ, ସେ ପାଖରୁ ଏ ପାଖକୁ। ମଝିରେ ଅଟକି ଯିବା ମାନେ ଘଡ଼ି ବନ୍ଦ। ମନ ଅଟକି ଯିବାମାନେ ସବୁ ଅଚଳ। ତେଣୁ ଏପଟ ସେପଟ ହେଉଥିବା ଅସ୍ଥିର ମନଟାକୁ ସ୍ଥିର କରିବାର ବିନ୍ଦୁରେ ହିଁ କବିତାର ଜନ୍ମ। କବିତାଟି ଜନ୍ମହେଲା ଅର୍ଥ କବିଟିଏ ଜନ୍ମନେଲା। କବିତା ଜନ୍ମିନଥିବା ଆଗରୁ କବିଟି ପ୍ରାଣୀଟିଏ ଥାଏ। କବିତା ଜନ୍ମହେବା ମାତ୍ରେ ତା'ର  କବି - ପରିଚିତି ଆରମ୍ଭ ହୁଏ। ସୁନ୍ଦର କବିତାଟିଏ ଜନ୍ମ ହେଲା ଅର୍ଥ ସୁନ୍ଦର କବିଟିଏର ଜନ୍ମ ସମ୍ଭବ ହୋଇଛି। ଏପରି ଯଦି ନହେଲା ବୁଝିବାକୁ ହେବ ଯେ କବିତାକୁ ଉଧାର ଅଣାଯାଇଛି। ଦାନ ସୂତ୍ରରେ ମିଳିଛି। ମାଗଣାରେ ମିଳିଛି। ଆମଦାନି କରାହୋଇଛି ନତୁବା ଯବରଦସ୍ତ  ଲୁଟି ଅଣାହୋଇଛି କିବା ଚୋରିକରି ଅଣାଯାଇଛି। କବିତାର ଜନ୍ମ ହୋଇନି। କବିତାକୁ ବଜାରରୁ କିଣାଯାଇଛି। କୌଣସି କବିତା ଆମେ ଯେବେ ପାଉଛୁ, ଆଉ ସେଇ କବିତାର କବିଠାରେ, କବିତାର ବାପପଣିଆଁ ନାହିଁ ତେବେ ବୁଝିବାକୁ ହେବ ଯେ ମହାଶୟ କବି ହେବାର ଭାଜନ ନୁହନ୍ତି।

ଆମ ବୁନିଆଦୀ ଧାରଣା ଯେ କବିଟିଏ ଜନ୍ମ ହେଲେ, କବିତା ଜନ୍ମ ହେବହିଁ ହେବ। ଆମ ଦେଶରେ ଆମେ କବିକୁ ସାଧୁ କହୁଁ। କେହି କେହି ମୁନୀ, ଋଷି, ସନ୍ୟାସୀ କହନ୍ତି। ଆଉ ଥୋକେ କବିଙ୍କୁ ପ୍ରଜାପତି ବ୍ରହ୍ମା କହନ୍ତି। କବିପାଇଁ ନିଶ୍ଚିତ ଏହା ଏକଏକ ସମ୍ମାନ। ଆଜି କବି ଓ ସାଧୁ ଭିତରେ ଅନେକ ତଫାତ୍। ଆଜି ସାଧୁ ଭିତରେ କବିତା ଅଛି ନା କବି ଭିତରେ ସାଧୁତ୍ୱ। ଦୁହେଁ କଉଠି ହଜିଗଲେଣି। ଏଥିଯୋଗୁଁ ଆଗନ୍ତୁକଙ୍କ ମନରେ ଏ ସନ୍ଦେହବାଚୀ ପ୍ରଶ୍ନ।

କୌଣସି ବ୍ୟକ୍ତି କବି ହେଲେ ତାଙ୍କଠୁ କବିତା ଆଶା କରିବା ସ୍ୱାଭାବିକ। ଆମ୍ବଗଛରୁ ଆମ୍ବ ଆଉ ପଣସ ଗଛରୁ ପଣସ ଭଳି। କବିତାର ଜନ୍ମ ସେତେବେଳେ ସମ୍ଭବ ହୁଏ ଯେତେବେଳେ କବିର ଚେତନା ତାର ସମାଜ ଭିତରକୁ ବଦଳାଇ ଦିଏ। କବିତାର ଧମନୀ ଗୋଟାପଣେ ଫୁଲପରି ଫୁଟିଉଠେ। କମନୀୟତାର ଜନ୍ମ କଳାକାରରୁ ହେବ କେମିତି?

ପଦ୍ମ ଫୁଟିଗଲେ ପଙ୍କ ଆଉ ପଙ୍କ ହୋଇ ରହେନା। ଆଉ କିଛିରେ ବଦଳିଯାଏ। ସତରେ ଯଦି ପଦ୍ମଫୁଟିବା ପରି କବିତାର ଜନ୍ମ ହୁଏ, କବିର ଭିତରଟା ଗଭୀର ହୋଇଯାଏ, ଗାଢ଼ ହୋଇଯାଏ, ଗଉରବରେ ଗୁରୁ ହୋଇଯାଏ, ଟମଟମ ଗଉଟମଟିଏ ହୋଇଯାଏ। ଆଉ କାହାର ପୁଅଟିଏ କୋଳକୁ ନେଲେ ପୋଷିଆଁ ପୁଅ ହୁଏ। ମାଆ-ପଣକୁ କିଛି କାଳ ମଣେଇ ହୁଏ। ହେଲେ ଜନନୀର ଯନ୍ତ୍ରଣା ବୁଝିହୁଏ ନାହିଁ। ଆନର କବିତାରେ କିଛି ପ୍ଲସ୍ ମାଇନସ୍ କରି ଗଣିତ କଷି ଦେଲେ କିଛିକାଳ କେତେ ଜଣଙ୍କୁ ଚମକେଇ ଦେଇହେବ। ଧାରକରା ଅନୁଭବକୁ ରଙ୍ଗଦେଇ ନିଜର ବୋଲି କହିହେବ। ଲୁହା କଥାକୁ ମାଜିଘଷି ନାନା ବାଗରେ ଥୋଇହେବ। ମାଇପୀଟିଏ ମେକ୍‌ଅପ୍‌ରେ ଉଭା ହେବାପରି, ନାୟିକାଟିଏ ମଞ୍ଚକୁ ଉତୁରିବା ପରି। ହେଲେ ମାଇପୀଟି ମେକ୍-ଅପ୍‌ରେ ରୂପସୀ ହୋଇ ପାରିବ ନାହିଁ। ଅଳ୍ପ ପାଣିଛିଟାରେ ମେକ୍-ଅପ୍ ଧୋଇ ହୋଇଯିବ। ସଜଡ଼ା ରୂପରେ କଣା ସବୁ, ଛିଦ୍ର ସବୁ ବାରି ହୋଇଯିବ। କଉ କାମକୁ ଆସିବାନାଇଁ ସେ ରୂପ। ଯାହା ମୂଳରୁ ସୁନ୍ଦର ତାକୁ ମେକ୍-ଅପ୍ ଲୋଡ଼ା ନାହିଁ। ମେକ୍-ଅପ୍‌ର କାମ କଦାକାରକୁ ଢ଼ାଙ୍କିବା, ରୂପକୁ ନିଖାରିବା ନୁହେଁ କି ସୌନ୍ଦର୍ଯ୍ୟକୁ ଜନ୍ମଦେବା ନୁହେଁ। ମେକ୍-ଅପ୍ କଦାପି କୁତ୍ରାପି ସୌନ୍ଦର୍ଯ୍ୟକୁ ଜନ୍ମଦେଇ ପାରେନା। ସ୍ୱଚ୍ଛ ଓ ସତେଜ ରୂପ ନିରାଭରଣା ମଫସଲିଆଣୀ ପାଖରେ ବି ଥାଏ।

କୌଣସି ବ୍ୟକ୍ତିଟିଏ ଯେବେ କବି ହୋଇଯାଏ, ଧରି ନିଅନ୍ତୁ ଆଗନ୍ତୁକ କହିଲେ, ସାଧୁ ହୋଇଯାଏ। ଋଷି ହୋଇଯାଏ!! ସଂସାର ଭିତରେ ଛଟପଟ ହେଉଥିଲେ ବି ସଂସାରରୁ ତା'ର ଲଟ କଟିଯାଏ। କାରଣ ତା'ର କବିତାଟି ଗୋଟିଏ ସୁନ୍ଦର ଅନାସକ୍ତ ହୃଦୟରୁ ଝରିଛି। ଗଙ୍ଗା ଗଙ୍ଗୋତ୍ରୀରୁ ଝରିବାପରି। ଯହିଁରୁ ଗଙ୍ଗାଜାତ ତାହା ଗଙ୍ଗାରୁ ଅଧିକ ଭାଜନ ନୁହେଁକି? କବିଟି ହେଉଛି କବିତାର ମୂଳ ଉତ୍ସ। ମୂଳ ଉଦ୍‌ଗମ, ଗଙ୍ଗୋତ୍ରୀ ପରି। କବି ଭିତରେ ଚେତନାର ମୂଳ ବିନ୍ଦୁଟି ଥାଏ। ଯା'ଠୁ କବିତାଭଳି ଚିଜ ସବୁ ବାହାରେ। କବିର ମାର୍ମିକ ଅର୍ଥହେଲା ସତ୍ୟକୁ ଯେ ପାଇଛି। କମନୀୟତାକୁ କାଖ କରିଛି। ଭିତରର କୈବଲ୍ୟକୁ କବଳିତ କରିଛି। ଭିତରେ ଭିତରେ ଯେ ସଦା ଜାଗ୍ରତ ଜଳିଳା ଦୀପ ପରି। ଫୁଲଟିଏ ଫୁଟି ଉଠୁଥିବାର ଉଲ୍ଲାସରେ ଅନ୍ତରଟି ଭରା। ଜୀବନର ଅନ୍ତିମ ଶିଖରକୁ ଯେ ସଦା ଛୁଇଁବି ଛୁଇଁବି ହଉଥାଏ, ସେ କବି ନୁହେଁ କି?

ଯଦି କଉଠି କେମିତି ଏଇପରି ବ୍ୟକ୍ତିଟିଏ ମିଳିଯାଏ, ତାଠୁ କବିତା ଆଶା କରିବା ଉଚିତ ହେବ ନାହିଁକି? ସବୁ ବାକ୍-ବିବିଧତା ଭିତରେ ସେ ଯାହା କହିବ କବିତା ହୋଇଯିବ।

ଏକଦା ବୁଦ୍ଧ କୌଣସି ନଗରର ଉପକଣ୍ଠରେ ବିଶ୍ରାମ କରୁଥିଲେ। ସେଠାକାର ରାଜା ମହାମନ୍ତ୍ରୀଙ୍କୁ ପରାମର୍ଶ ମାଗିଲେ, "ବୁଦ୍ଧଙ୍କୁ ଦେଖା କଲେ କେମିତି ହୁଅନ୍ତା?" "ମୋ

ଇସ୍ତଫା ନିଅନ୍ତୁ" ମନ୍ତ୍ରୀ କହିଲେ। ରାଜା ବିସ୍ମିତ ହେଲେ। "ଇସ୍ତଫା ଦେବାର ସାମାନ୍ୟତମ କାରଣ ତ ମୋ ପ୍ରଶ୍ନରେ ନାହିଁ।" "ଆପଣ ଧମାକା ଫୁଟାଇବା ଭଳି ପ୍ରଶ୍ନଟିଏ କଲେନା, ମଣିମା!" ମନ୍ତ୍ରୀ ଉତ୍ତରିଲେ। "ଆପଣଙ୍କ କଥାରୁ ଏକଥାଟି ସ୍ପଷ୍ଟତର ହଉ ନାହିଁକି, ମଣିମା ଯେ ବୁଦ୍ଧ ଜଣେ ଭିଖାରୀ। ଆପଣ ସମ୍ରାଟ। ମୁଠାଏ ତଣ୍ଡୁଳ ମାଗୁଥିବା ମାମୁଲି ଭିଖାରୀଟିଏକୁ ସାକ୍ଷାତ କରିବାକୁ ଆପଣଙ୍କ ରାଜପଣ ଅମମତ ହଉଛି! "ଆପଣ ଏବେ ସମ୍ରାଟ। ଆପଣଙ୍କର ସବୁ ଅଛି ଜଣେ ରାଜାର ଯାହାଥାଏ। ବୁଦ୍ଧ ଏକଦା ସମ୍ରାଟଥିଲେ। ଆପଣଙ୍କର ଯାହାସବୁ ଅଛି, ତାଙ୍କର ସେସବୁ ଥିଲା। ଆପଣ ଆଜି ଯାହାସବୁ ଯାବୁଡ଼ି ଧରିଛନ୍ତି, ସେ ସେ ସବୁ ଛାଡ଼ି ସାରିଲେଣି। ଯିଏ ଛାଡ଼ିପାରେ, ତା'ର ମୂଲ୍ୟଥାଏ। ଯିଏ ଯାବୁଡ଼ି ଧରିଥାଏ, ଛାଡ଼ିବାକୁ ମନ କରେନାହିଁ, ତାର ମୂଲ୍ୟ ନାହିଁ। ଧରି ରଖୁଥିବା ମନଟି ଛାଡ଼ି ପାରୁଥିବା ମନ ଆଗରେ କେତେ ଛୋଟ ସତେ!" ମନ୍ତ୍ରୀଙ୍କ କଥାରେ ଚଟକଣା ଖାଇଲା ପରି ରାଜା ଚୁପ୍ ରହିଲେ। ବୁଦ୍ଧଙ୍କୁ ଭେଟିବାକୁ ତାଙ୍କ ମନ ଉଚ୍ଛାଟ ହେଲା।

ସାଧାରଣ ମନଟିକୁ ଅସାଧାରଣ କରି ପାରିଥିଲେ ବୁଦ୍ଧ। ସେଥିଯୋଗୁଁ ତାଙ୍କ ଦିବ୍ୟଜ୍ୟୋତିରୁ ଝରୁଥିଲା କବିତା। ତାଙ୍କ ଚାଲିରେ ଥିଲା କବିତା। ଆଖି ଖୋଲିଲେ କବିତା। ପ୍ରତ୍ୟେକ ମଉନ ମୁଦ୍ରାରେ ଥିଲା କବିତା। ଖାତା କଲମ ଧରି ଲେଖିବାର ଦରକାର ନଥିଲା। କବି ତା ସାଧାରଣ ମନକୁ ଏପରି ଅସାଧାରଣ କରି ପାରିଲେ ସାର୍ବକାଳିକ କବିତାର ଉତ୍ସ ହୋଇଯାଏ।

କବିର ଜୀବନଚର୍ଯ୍ୟାରେ କୌଣସି ଗଣିତ ନଥାଏ। ହିସାବ କିତାବ ନଥାଏ। ଲାଭହାନି ନଥାଏ। ଜୀବନକୁ ସହଜ ସ୍ପନ୍ଦନଟିଏ ବୋଲି ଧରିବାକୁ ହୁଏ। ଏ ସ୍ପନ୍ଦନର ତାର୍କିକ ବ୍ୟାଖ୍ୟା ଥାଇ ପାରେନା। କବିର ଜୀବନରେ କୌଣସି ଛାଞ୍ଚ ନଥାଏ। ନଥାଏ ଶାସ୍ତ୍ରାନୁମୋଦିତ ଅଭିଲେଖ। କାହା ନିର୍ଦ୍ଦେଶରେ କେନାଲ ଭଳି ବୋହିଯିବାର ତତ୍ପରତା ନଥାଏ। ଆୟୋଜିତ ନୁହେଁ କବିର ଜୀବନ। ପ୍ରତିକ୍ଷଣରେ ଫୁଟି ଉଠୁଥିବା ଚେତନାର ଝରଟିଏ ଯେମିତି! ଉତ୍ଫେଣ ଉତ୍ସଟିଏ!!

କବିର ଜୀବନ ଅନୁବନ୍ଧିତ ନୁହେଁ। ନିର୍ଦ୍ଦିଷ୍ଟ ଫ୍ରେମ୍‌ର ନୁହେଁ। ସବୁ ପ୍ରକାର ଅନୁବନ୍ଧନରୁ ମୁକ୍ତ ତା'ର ଜୀବନ। ଏଇ କାରଣରୁ ଦୁଇଜଣ କବିଙ୍କର ଜୀବନ ଏକ ପ୍ରକାରର ନୁହେଁ। ଗୋପାଳ ରଥର ଜୀବନ ରାଜେନ୍ଦ୍ର ପଣ୍ଡାର ଜୀବନ ପରି ହୋଇ ପାରେନା। ରମାରଥ ଓ ଉମାପଣ୍ଡା ଗୋଟାଏ ଫ୍ରେମ୍‌ରେ ରଖାଯାଇ ପାରିବେ ନାହିଁ। ଶହଶହ ମାଠୁତିକାର୍ ଏକା ରକମର ହୋଇପାରେ କାରଣ ଗୋଟାଏ ଫ୍ରେମ୍‌ରେ ଗଢା। ଏମିତିକି ଦୁଇଟି ତାରା, ଦୁଇଟି ପତ୍ର, ଦୁଇଟି ଗେଙ୍ଗୁଟି ପଥର ଏକାରକମର ନୁହନ୍ତି। ଅସ୍ତିତ୍ୱର ପୁନରାବୃତ୍ତି ଘଟେନା। ଏହାହିଁ ମହିମାମୟଙ୍କର ବିଚିତ୍ର ମହିମା!

କବି ମହିମାମୟଙ୍କର ଏକ ଅତୁଳନୀୟ ସୃଷ୍ଟି। ସେ ବଞ୍ଚେ। ହୋଶରେ ବଞ୍ଚେ,

ଯୋଶ୍‌ରେ ବଞ୍ଚେ । ଅରାଜକତାରେ ବଞ୍ଚିବାକୁ ଭଲପାଏ । କବିର ଅରାଜକତାକୁ କେହି ରାଜନୈତିକ ସ୍ୱେଚ୍ଛାଚାରିତା ବୋଲି ନବୁଝନ୍ତୁ । ଅରାଜକତାରେ ନିୟମ ନଥାଏ । ବ୍ୟବସ୍ଥାନ ଥାଏ । ବିଧାନ ନଥାଏ । ସମ୍ବିଧାନ ନଥାଏ । ନଥାଏ ଶାସ୍ତ୍ର କି ଶାସ୍ତ୍ରାନୁମୋଦିତ ଶସ୍ତ୍ର ହାନସ୍ତା । ପରମ ନିୟମଟିଏ ଥାଏ କିନ୍ତୁ । ଅମୂର୍ଚ୍ଛିତ ଅବସ୍ଥାଟିଏ ଥାଏ । ଏଣୁ ଦୁଇଜଣ କବି ଏକ ପ୍ରକାରର ନୁହନ୍ତି । ଶତଚେଷ୍ଟା କଲେବି ଗୋପାଳ ରଥ ରମାରଥ ହେବନାହିଁ କି ରାମାରଥ ଗୋପଳରଥ ।

ଚାଲିଥାଅ । ଅଟକି ଯାଅ ନାହିଁ । ଯିବା ମାନେ ଜୀବନ । ଯିବା ମାନେ ପହଞ୍ଚିବା । କାମ୍ୟକୁ ଛୁଇଁବା । ଯାଯାବର, ଖାନାବଦୋସ, ସଦା ବାଟୋଇ, ବଞ୍ଜାରା ଅଟକେ ନାହିଁ ଚାଲିଥାଏ । ଆପଣାର ଘରକୁ କାନ୍ଧରେ ବୋଝକରି ଲଦିଥାଏ । ବେଳ ଆସିଲେ ପକା କମ୍ବଳ, ପୋତ ଛତା । ପାହାଚ ପାହାଚ ଚଢ଼ିବାକୁ ହୁଏ ଅନୁଭବର । ପ୍ରଥମ ସୋପାନରେ ନଦୀ ନଦୀ ହୋଇଥାଏ ଆଉ ପାହାଡ଼ ପାହାଡ଼ । ସାଧନାର ମଝିରେ ନଦୀ ନଦୀ ହୋଇ ନଥାଏ କି ପାହାଡ଼ ପାହାଡ଼ ହୋଇ ନଥାଏ ଶେଷରେ ପାହାଡ଼ ପାହାଡ଼ ପାଲଟିଯାଏ ଆଉ ନଦୀନଦୀ । କବି ତା'ର କବିତାର ବାସ୍ତବିକତାର ପାହାଡ଼କୁ ପାହାଡ଼ ରୂପରେ ଥୋଇ ପାରିଲେ ସିନା ସାର୍ଥକତା!! ଥକା ଆଖିରେ ଲମ୍ବା ହାଇଟିଏ ମାରି ଆଗନ୍ତୁକ ଏତକ ମାତ୍ର କହିଲେ, "ଗହନ କଥା ଏ!"

(ଡ଼ଃ ନିମାଇଁ ଚରଣ ପଣ୍ଡା ଏ ଆଗନ୍ତୁକ ଜଣକ)



## ୯୫. ଭେଣ୍ଡାକୁ ମେଣ୍ଢା କଲେ

ମୋ ବାଳୁତ ବେଳରେ ମୋ' ବୁଢ଼ୀ ଆଈ ଜାତି ଜାତି ଗପ କହୁଥିଲା । ତା' କହାଣୀରେ କୁଆଡ଼େ ଭେଣ୍ଡା ମେଣ୍ଢା ହେଉଥିଲା । କଉ ମାଲ୍ୟାଣୀ ଫୁଲ ଶୁଙ୍ଘେଇ ଭେଣ୍ଡାକୁ ଦିନବେଳେ ମେଣ୍ଢା କରେ । ରାତିରେ ସେଇ ମେଣ୍ଢାକୁ ଭେଣ୍ଡା କରି ପକାଏ । ପିଲାବେଳର ଏ ଶୁଣାକଥା ଏବେ ପରିଣତ ବଅସରେ ଅନୁଭବ କରୁଛି ଆମ ସମାଜରେ ଦିନରାତି ଫୁଲ ଶୁଙ୍ଘେଇ କେତେଜଣ କରି ପକାଇବାର ଲୀଳା ଚାଲିଛି ।

୧୯୬୪–୬୫ ବେଳର କଥା । କଟକର ବାଲୁବଜାର ଛକରୁ ଚାନ୍ଦନୀ ଚଉକ ଆଡ଼କୁ ମୁହାଁଇଛି । କେମିତି କେଜାଣି ଲେଖକ ରାଜ କିଶୋର ପଟନାୟକଙ୍କୁ ଭେଟିଲି । ତାଙ୍କ 'ତୁଠ ପଥର' ମୋ ପଢ଼ିବା ବେଳେ ମେଟ୍ରିକର ପାଠ୍ୟଥିଲା । ଏଣୁ ପଢ଼ିବା ବେଳୁ କେମିତି କେଜାଣି ତାଙ୍କ ଲେଖକୀୟ ବ୍ୟକ୍ତିତ୍ୱ ପ୍ରତି ମୋର ଶ୍ରଦ୍ଧା ରହିଥିଲା । ସେ ହଠାତ୍ ପଚାରିଦେଲେ, "ମଙ୍ଗଳୁ ବାବୁ, ସମ୍ବଲପୁରରେ ବିଶ୍ୱବିଦ୍ୟାଳୟଟିଏ ହେଲେ ଲାଭକଣ? ମୁଁ ତାଙ୍କୁ ଶାସ୍ତ୍ରୀକଢ଼ଙ୍ଗରେ ଲାଭ ହାନିର ହିସାବ ଦିଅନ୍ତି କିପରି? ଏଣୁ ଗୋଟିଏ ଛୋଟିଆ

ହୋଟେଲକୁ ଯିବାକୁ କହିଲି । ଚା' ପିଇ ପିଉ ଅନେକ ଗପିଲୁ । ଟେକ୍ନିସିଆନଙ୍କ ଠାରୁ ଆରମ୍ଭ ପର୍ଯ୍ୟନ୍ତ ଅନେକ ପ୍ରସଙ୍ଗ ଆମ କଥାବାର୍ତ୍ତା ଭିତରକୁ ଆପଣା ଛାଏଁ ପଶି ଆସୁଥିଲା । ମୁଁ ତାଙ୍କୁ କାଗଜ କଲମରେ ହିସାବକରି କହିଲି "ଆଉ କାହାର କି ଲାଭ ହେବ କହି ହେବନି, ହେଲେ ମୋର ଗାଏ ମୋଟ ପେଡ଼ଶହ ଟଙ୍କା ଲାଭହେବ । କାରଣ ଦୁଇଟେକିଆ କିଛି ସାର୍ଟିଫିକେଟ୍ ପାଇଁ ମୋତେ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣୀ ବିହାରକୁ ଦୁଇଥର ଯିବାକୁ ପଡ଼ିଛି । କାଗଜ କଲମରେ ହିସାବ କରି ବତାଇ ଦେଲି । ଲେଖକୀୟ ଫାଙ୍କେ ହସ ଫିଙ୍ଗିଦେଇ ଚୁପ୍ ରହିଲେ । ମୋ' ଯୁକ୍ତିକୁ ମାନିନେଲେ ବୋଧହୁଏ ।

୧୯୭୫–୭୬ରେ କୌଣସି ଏକ କାର୍ଯ୍ୟକ୍ରମରେ ମୋତେ ପାରଳାଖେମୁଣ୍ଡିରେ ପନ୍ଦରଦିନ ରହିବାକୁ ପଡ଼ିଲା । ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଭାବେ ଗୋଲକବାବୁ ରଥ ଅନେକ ବର୍ଷ କାମ କରିଥିଲେ । ସେ ପାରଳାଖେମୁଣ୍ଡିର ଲୋକ ଓ ଅବସର ପରେ ପାରଳାଖେମୁଣ୍ଡିରେ ରହୁଥିଲେ । ମୋର ମେଟ୍ରିକରୁ ଏମ୍.ଏ ପର୍ଯ୍ୟନ୍ତ ସବୁ ପରୀକ୍ଷା ମୁଁ ଉତ୍କଳ ୟୁନିଭରସିଟିରେ ଦେଇଛି । ଏଣୁ କାହିଁକି କେଜାଣି ଗୋଲକବାବୁ ରଥଙ୍କୁ ଭେଟିବାକୁ ମନହେଲା । ତାଙ୍କୁ ତାଙ୍କ ବସାରେ ଭେଟିଲି । ଅନେକ କଥାବାର୍ତ୍ତା ଭିତରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରସଙ୍ଗ ଉଠାଇଲେ । ତାଙ୍କ କଥୋପକଥନରେ ନୂଆ ବିଶ୍ୱବିଦ୍ୟାଳୟଟିଏ ହେବାର ଇର୍ଷା ନଥିଲା କି ପରଶ୍ରୀକାତରତା ନଥିଲା । ଥିଲା କମାଟବନ୍ଧା କ୍ଷୋଭ । ଅନୁଷ୍ଠାନ ବେଶୀ ବଢୁଛି ସିନା କାର୍ଯ୍ୟଦକ୍ଷତା ବଢୁନାହିଁ । ତାଙ୍କର ବହୁମୂଲ୍ୟ ବକ୍ତବ୍ୟ ମୋର ଏ ଆଲୋଚନାରେ ପ୍ରତିଫଳିତ ।

ଗତ ୧୧.୭.୯୯ ରବିବାର ଦିନ ବାରିପଦାରେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ଓ ବାଲେଶ୍ୱର ଠାରେ ଫକୀର ମୋହନ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟିତ ହେଲା ଯଥାକ୍ରମେ ରାମଚନ୍ଦ୍ର ବିହାରରେ ଓ ବ୍ୟାସ ବିହାରରେ । କେନ୍ଦୁଝର ଓ ଭଦ୍ରକ ଅଞ୍ଚଳ ଲୋକମାନେ ବିଶ୍ୱବିଦ୍ୟାଳୟ ମାନ ହେଉବୋଲି ଏ ଅବସରରେ ଦାବୀମାନ ଉପସ୍ଥାପନ କରି ସେମାନଙ୍କର ରୋଷ ପ୍ରକଟ କଲେ । ପୂର୍ବରୁ ସ୍ୱୟଂ ଶାସିତ କଲେଜମାନ କାର୍ଯ୍ୟଧାରାରେ ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟ ପରି । ଆଉ କିଛି ବର୍ଷ ପରେ ସେ ଜିଲ୍ଲାରେ ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପିତ ନ ହେବ ବୋଲି କିଏ କହିବ? ଶିକ୍ଷା ପ୍ରସାରକୁ ବିରୋଧ କରିବ କିଏ?

ତେର ଜିଲ୍ଲା ତିରିଶ ଜିଲ୍ଲା ହେଲା । ଏ ସଂପ୍ରସାରଣରେ ଆମେ ବାହା ବାହା ଦେଇ ହେଣ୍ଡି ମାରିଲୁ । ଖୁସିରେ ନାଚିଲୁ ହେଲେ ସଂପ୍ରସାରଣରେ ଆମ ଜନସାଧାରଣଙ୍କ ଲାଭ କେତେ ହେଲା ତାହା ବୁଝିବାକୁ ଲୋକ ନାହାନ୍ତି । ପ୍ରଜା ପ୍ରଜାଙ୍କର ଲାଭ ଯଦି ପଛରେ ଗଲା ନହେଲା ତେବେ ତେର ଜିଲ୍ଲାକୁ ତିରିଶ ଜିଲ୍ଲା କରିବାରେ ଓ ପ୍ରତି ଜିଲ୍ଲାରେ ବିଶ୍ୱବିଦ୍ୟାଳୟ ଖୋଲିବାରେ ଆମର ଆକସ୍ମିକ ସଉକ ଖୁବ୍ ମହଙ୍ଗା ପଡ଼ିବ ।

କୌଣସି ସଂସ୍କାର, ପରିବର୍ତ୍ତନ ବା ବିନ୍ୟାସ ତଳୁ ହେବାକଥା । ତଳ ଆଡୁ ହେଲେ ବିପଦ କମ୍ ଥାଏ । ଧରନ୍ତୁ ମଉଜାରୁ ମଣ୍ଡଳ, ମଣ୍ଡଳରୁ ତହସିଲ, ତହସିଲ୍‌ରୁ ସବ୍‌ଡ଼ିଭିଜନ (ଉପଖଣ୍ଡ) ଓ ଉପଖଣ୍ଡରୁ ଜିଲ୍ଲା । ଏମିତି ହୋଇଥିଲେ ସମସ୍ୟା କମ୍ ହୋଇଥାନ୍ତା । ଚ଼ପରାଶୀଟିଏ ରଖିଲେ ଦପ୍ତର କି ଦଲିଲ୍ ଦରକାର ପଡ଼େ ନାହିଁ । କିନ୍ତୁ ଜିଲ୍ଲାପାଳଟିଏ ରଖିଲେ ଦପ୍ତର ଦରକାର । ଆଉ ନାନା କଥା ମୁଡ଼ି ଆଷାଢୁଆ ବାଦଲ ପରି ଆପେ ଆପେ ଆସେ ଦପ୍ତର, ଦପ୍ତରି, ଅଡ଼ର, ଅର୍ଦ୍ଦଲି, ବଙ୍ଗଳା, ଗାଡ଼ୀ, ଘୋଡ଼ା, ଥାଟ ପାଟ କେତେକଣ ଦରକାର । ରଜାଙ୍କୁ ମନ୍ତ୍ରୀ ପରିଷଦ ଲୋଡ଼ା ଯେମିତି ଜିଲ୍ଲାପାଳଙ୍କୁ ବିଡ଼ିଓ, ଏସ୍.ଡ଼ି.ଓ, ତହସିଲଦାର, ଏ.ଡ଼ି.ଏମ୍ ଭଳି ପଂଝାଏ ସାହେବ ଦରକାର । କିରାନୀ ନ ରହିଲେ ପ୍ରଶାସନ ଶୋଭା ପାଏନା । ଏଣେ ଗାଁର ଗୋବରାକୁ କି ଗଉରାକୁ ପଚାରିଲେ ସେ କହେ, "ଜିଲ୍ଲା ବଢ଼ିଲେ କି ହେବ ଘର ଦୁଆର ଦପ୍ତର ନଥାଇ କାର୍ଯ୍ୟ କରୁଥିବା ମହକୁମାକୁ ଯାଇ ପୁଅ ପ୍ରଜାଏ ହନ୍ତସନ୍ତ ହେଲେଣି ।

ଆମେ ଗାଁର ଚାହିଦାକୁ ବୁଝି ସ୍କୁଲ ଖୋଲିଥାନ୍ତେ । ଖୋଦ୍ ସରକାର କହନ୍ତି ଆମ ରାଜ୍ୟରେ ବାର ହଜାର ପ୍ରାଇମେରି ସ୍କୁଲ ଖୋଲିବେ । ଅନ୍ୟପଟେ କହନ୍ତି, ଧନ ନାହିଁ ବୋଲି ସବୁ ସ୍କୁଲକୁ ଆବଶ୍ୟକ ମୁତାବକ ଶିକ୍ଷକ ଯୋଗାଇ ହଉନାହିଁ । ରାଜ୍ୟର ଆର୍ଥିକ ଅବସ୍ଥା ଟଳମଳ ବୋଲି ଖର୍ଚ୍ଚକାଟ ଚାଲିଛି । ଏ ପ୍ରକାର ବିରୋଧାଭାସ ଭିତରେ ଆମର ପ୍ରଶାସନ ତା' କାମ ଗୁଛି ନଉଛି । ଯେଉଠି କାମ ଗୁଛି ନବା ଜାଣୁନି ସେଠି ଫୁଲଶୁଙ୍ଘେଇବା କୌଶଳ ଅବଲମ୍ବନ କରୁଛି ।

ମୂଳରୁ ଧରିଥିଲେ ଆଜିଆମର ଏ ଦଶା ଏମିତି ହୋଇ ନଥାନ୍ତା । ଦଶଟି ପ୍ରାଥମିକ ବିଦ୍ୟାଳୟ ହେଲେ ଯାଇ ମାଇନର ସ୍କୁଲଟିଏ ହେବ । ଅତିକମ୍‌ରେ ପାଞ୍ଚଟି ମାଇନର ସ୍କୁଲ ରହିଲେ ଯାଇ ହାଇସ୍କୁଲଟିଏ ଗଢ଼ି ଉଠିବ । ଦଶଟି ହାଇସ୍କୁଲ ହେଲେ ସିନା କଲେଜଟିଏ ବସିବ । କମ୍‌ସେ କମ୍ ଶହେଟି କଲେଜ ହେଲେ ଯାଇଁ ବିଶ୍ୱବିଦ୍ୟାଳୟଟିଏ ଗଢ଼ି ଉଠିବ । ଏପରି ତଳୁ ହିସାବକଲେ ଯୋଜନାବଦ୍ଧ ଭାବରେ ଆମ ଚାହିଦାକୁ ନେଇ କାମ କରିଥିଲେ ଆଜି ଆମର ଏ ଦଶା ଏଇପରି ହୋଇ ନଥାନ୍ତା ।

ବିଶ୍ୱବିଦ୍ୟାଳୟ ସ୍ଥାପନକୁ ମୋର ବିବେକର କୌଣସି ବିରୋଧ ନାହିଁ । ପ୍ରଶାସନ ଫୁଲ ଶୁଂଘେଇ ଭେଣ୍ଡାକୁ ମେଣ୍ଢା କରିବାର ଅପଚେଷ୍ଟା କୁହିଁ ମୋର ବିରୋଧ । ଏକଦା ଏକମାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ପଛକୁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ଗଢ଼ି ଉଠିଲା । ମାତ୍ର ଆମେ ଅନୁଭବ କଲୁଣି ପରୀକ୍ଷା ଠିକ୍ ସମୟରେ ହଉନାହିଁ । ଫଳ ଠିକ୍ ସମୟରେ ପ୍ରକାଶ ପାଉନାହିଁ । ଏ ବର୍ଷର ଫଳ ଆସନ୍ତା ବର୍ଷରେ ପ୍ରକାଶିତ ହେଉଛି । ପିଲାଏ ବହୁ ସୁଯୋଗରୁ ବଞ୍ଚିତ ହଉଛନ୍ତି । ଆମ ସଂପ୍ରସାରଣ ଆମ ପିଲାଙ୍କ ଜୀବନକୁ ସଙ୍କୁଚିତ କରୁଛି । ତେବେ ଏହା ଭେଣ୍ଡାକୁ ମେଣ୍ଢା କରିବାର ରୀତି ନୁହେଁକି ?

ପ୍ରବଣତା ଗୋଟିଏ ପ୍ରକାର ପୋକ। ଏହା କୋରି କୋରି ଖାଇଯାଏ। ଆମ ପ୍ରଶାସନ ନାନା ପ୍ରବଣତାରେ ରୋଜରୋଜ ଉନ୍ମତ୍ତ। ସେଇ ପ୍ରବଣତାରେ, ଉତ୍ତେଜନାରେ ଆମ ପ୍ରଶାସନ ନ ହେଲା କାମ କରିବାକୁ ବସିଛି। ଏଣୁ ଏଣିକି ସାବଧାନ ନହେଲେ ଆମର ପ୍ରବଣତା ଆମକୁହିଁ ଖାଇବ।

ପ୍ରଶାସନକୁ ମୋର ଏକମାତ୍ର ଅନୁରୋଧ ମୂଳରୁ ଆବଶ୍ୟକତାକୁ ଦୃଷ୍ଟିଦେଇ ଚୂଳ ପର୍ଯ୍ୟନ୍ତ ଯୋଜନା କରିବାକୁ ହେବ। ସେ ଶିକ୍ଷା ହେଉ ସ୍ୱାସ୍ଥ୍ୟ ହେଉ, ଗୃହ ନିର୍ମାଣ ହଉ କି ରାସ୍ତା ନିର୍ମାଣ ହଉ ଜିଲ୍ଲା ବଢ଼େଇବା ହଉ କି କିଆରୀ ବଢ଼େଇବା ହଉ। ମୂଳରୁ ଚଢ଼ି ଚଢ଼ି ଆଇଲେ ଯାଇ ଚୂଳକୁ ଯାଇହେବ। ଢ଼ହଢ଼ହ ଜାଉ ପାଖେଇ ଖାଇ ନାଜାଣି ଆମେ ମଝିରେ ହାତ ମାରି ଦଉଛୁ।

ସାମୟିକ ଉତ୍ତେଜନା ଘଡ଼ିକର ପ୍ରବଣତା, ମୁହୂର୍ତ୍ତକର ଦରକାରୀତାର ଉପଶମ ପାଇଁ ଆମେ ଏପରି କାମ କରିବା ନାହିଁ ଯାହା ଆମପାଇଁ ଆତ୍ମଘାତୀ ହେବ। ଜିଲ୍ଲା ଗୁଡ଼ିକ ତେରରୁ ତିରିଶ ହେଲା। ଆମ ବିଜୁ ପଟ୍ଟନାୟକ ପ୍ରଶାସନର ଅପାରଗତା କୁ ତାସ୍ଛଲ୍ୟ କରି କହିଲେ "It is a big Zero" ମୋର ଭୟ ଆଗାମୀ ଦିନରେ ତିରିଶ ବିଶ୍ୱବିଦ୍ୟାଳୟ ଆମ ଆସୁଥିବା ପୀଢ଼ିର ପିଲାମାନଙ୍କ ପାଇଁ ଯେପରି big zero ନହେଉ।

ମୋର ଏକମାତ୍ର ସାନକୁହା ମାନୁ। ଆମ ପ୍ରଶାସନ ଫୁଲ ଶୁଂଘେଇବା ଅଭ୍ୟାସ ଛାଡୁ। ଆମ ପ୍ରଶାସନ ମାଲ୍ୟାଣୀର ସେ ଫୁଲଶୁଙ୍ଘା ଦକ୍ଷତା ହାସଲ କରିପାରି ନାହିଁ। ଭେଣ୍ଡାକୁ ମେଣ୍ଢା କରୁଥିଲା ଓ ମେଣ୍ଢାକୁ ପୁଣି ଭେଣ୍ଡା କରିବାର କୌଶଳ ଜଣାଥିଲା ମାଲ୍ୟାଣୀକୁ। ଗୋଠ ମାତିଲେ ହଡ଼ା ମାତେ ବୋଲି ଆମ ପ୍ରଶାସନ ଲୋକଙ୍କ ମାତିବା ସହ ମାତିଯିବ?

ଆମ ରାଜକିଶୋର ପଟନାୟକଙ୍କ ସେଇ ପ୍ରଶ୍ନ "ଆଉ ବିଶ୍ୱବିଦ୍ୟାଳୟ ଖୋଲି ଲାଭକଣ?" ଏବେ ମୁଁ ହିସାବକରି ତାଙ୍କୁ ଉତ୍ତର ଦେବାରେ ଅସମର୍ଥ।



## ୯୬. ଘେରି ରହିଛି ଏ ଘର ମୋତେ

ସନ୍ଥ କବୀରଙ୍କର ଗୋଟାଏ ଗୀତ ମୋର ମନକୁ ସବୁବେଳେ ଟାଣେ।

"ଯବ୍ ତୁମ ପୈଦା ହୋଏ, ଜଗ୍ ହସା ତୁମ୍ ରୋଏ।

କର୍‌ଲୋ ଐସା କର୍‌ନି, ତୁମ୍ ହସୋ, ଜଗ୍‌ରୋଏ।"

ଏ ଗୀତର ପ୍ରେରଣା ମୋର ଅନ୍ତସ୍ଥଳକୁ ସଦା ଛୁଏଁ। ଖୁବ୍ ବଡ଼ ଏକ ଯୌଥ ପରିବାରେ ମୋର ଜନ୍ମ। ସେଇ ପରିବାର ପ୍ରଥମେ ଚାରିଭାଗ ହେଲା। ଠିକ୍ ତା'ର ପରେ ପରେ ପହେଲା ଭାଗଟି ପୁଣି ଚାରିଭାଗ ହେଲା।

ମୋ ବାପା ଶ୍ରୀବସୁ ବିଶ୍ୱାଳଙ୍କ ଭାଗରେ ମୋ ଭାଗବତ ଦେବୀ ମୋର ବଡ଼ନାନୀ ତରୁଲତା ଓ ମୋର ସାନଭାଇ ବିପିନ ବିହାରୀ ବିଶ୍ୱାଳ ଓ ମୁଁ ଏମିତି ପାଞ୍ଚପ୍ରାଣୀର କୁଟୁମ୍ବ । ଆମେ ଦି'ଭାଇ ଭାଗ ନହେଲେ ବି ଚାକିରି କରୁଥିବାରୁ ଅଲଗା ଅଲାଗା ରହିଲୁ । ଏବେ ମୋ' ପରିବାରରେ ତିନିପୁଅ ପ୍ରଶାନ୍ତ, ଅମିତାଭ (ଟିକି) ସିଦ୍ଧାର୍ଥ (ସୁରୁ) । ଏକ ମାତ୍ର ଝିଅ ପ୍ରତିମା ଶାଶୁଘରେ । ଶ୍ରପୁରାର ସୁଶୀଲ କୁମାର ତ୍ରିପାଠୀ ମୋର ଜୁଆଁଇ । ମୋ ଝିଅର ଦୁଇଝିଅ ଅନସୀ ଓ ତୁଳସୀ ଗୋଟିଏ ପୁଅ ତାପସ (ଶିବୁ) । ମୋର ତିନିପୁତ୍ରବଧୂ ବାସନ୍ତୀ, ମମତା ଓ ମଞ୍ଜୁଶ୍ରୀ । ବଡ଼ପୁଅର ଦୁଇଝିଅ ଶ୍ୱେତପର୍ଣ୍ଣା ଓ ଅପର୍ଣ୍ଣା । ପୁଅଟିର ନାଆଁ ବିଜନ । ମଝିଆଁ ପୁଅର ଝିଅଟି ତୃତ୍ପର୍ଣ୍ଣା ଓ ପୁଅ ରାଜନ । ସାନ ପୁଅର ପୁଅ ସାଜନ ଓ ଝିଅ ସୁପର୍ଣ୍ଣା । ଆମ ଦି' ପ୍ରାଣୀରୁ ଏଇମିତି କୋଡ଼ିଏ ପ୍ରାଣୀର କୁଟୁମ୍ବ । ଏଘର ଏମିତି ଘେରି ରହିଛି ଯେ ମୁଁ ମୁକୁଳି ପାରୁନି ଯା'ର ଘମାଘୋଟ ଘେରରୁ ।


ଶ୍ରୀ ଓ ଶ୍ରୀମତୀ ବିଶ୍ୱାଳ

ଏଇତ ଘର । ଏଠି ଜନମ, ଏଠି ମରଣ । ମୋ' ଅଜା ଧରେଇ ଦେଇଥିଲେ ଏମିତି ଏକ ଘର ମୋ' ବାପାଙ୍କୁ । ମୋ' ବାପା ତାଙ୍କ ସାଇତା ଘର ମୋତେ ଧରେଇ ଦେଇ ଜୁଆଡ଼େ ଗଲେ । ମୁଁ ମୋ' ପୁଅକୁ ଏଘର ଧରେଇ ଦେବାର ଲଗନ କେବେ ଆସିବ, କେଜାଣି ?

ଏଇଘର ପାଇଁ ହେତୁହେଲା ଦିନରୁ କାମ କରି ଚାଲିଛି । ପାଠପଢ଼ା ପରେ ଚାକିରିଆ ଚାକିରି ସହିତ ଚାଷ । ପେଟପୋଷ, ନାଇଁ ଦୋଷ । ପେଟ ପୋଷିବାକୁ ବାରଧନ୍ଦା କରିଛି ।

ରାତି ତିନିକୋଣରୁ ତିନିକୋଣ ପାହିନଥିବ, ଉଠିବି । ଘଣ୍ଟାରେ ଚାରିଟା ବାଜିଥିବ । ନିତ୍ୟକର୍ମ ସାରି କିଛି ବ୍ୟାୟାମ କରିବି । ଫରଚା ହୋଇ ଯାଇଥିବ । ସାଇକେଲ ଧରି ବିଲକୁ ଯିବି । କେଉଁଠି କି କାମ ଅଛି ଆଗରୁ ବୁଝିଦେବି । ସାତଟା ବେଳକୁ କମିହାଁ ମାନେ ଆସିଲେ ତାଙ୍କୁ କାମ ବରଗିଦେବି । ସେମାନେ ନିଜନିଜ କାମକୁ ଯିବେ । ମୁଁ ମୋ ସ୍ନାହାନ ସାରି ପ୍ରଭୁଙ୍କ ଥରେ ସୁମରି ଦେବି । ଭୋଜନ ଭାଜନ କରିବି ଆଉ କେତେବେଳେ ?

ବ୍ରାହ୍ମଣର ଗୋଟାଏ ଧର୍ମ ଅଧ୍ୟାପନାଟି କରୁଛି ଯେ! ନଅଟା ବେଳେ ଭାତଖାଇ ସ୍କୁଲକୁ ଯିବାକୁ ହେବ। ଏଣୁ ଜଳଖିଆ ନଖାଇ କେବଳ କପେ ଚା' ଖାଇଦିଏ। ନଅଟାରେ ଭାତଖାଇ ଯିବି ଯେ ସଞ୍ଜକୁ ଫେରିବି। ଇସ୍କୁଲରୁ ଫେରେ ସିଧା ସିଧା ବିଲକୁ ମାଡ଼ିଯିବି। ଆମ କମିହାଁ ମାନେ କାମ କରୁଥିବେ। ତାଙ୍କ ସହ କଥାବାର୍ତ୍ତା କରି ଚାଲି ଚାଲି ଘରକୁ ଫେରିବି। ସେମାନେ ହାତ ହତିଆର ରଖି ନିଜନିଜ ଘରକୁ ଯିବେ।

ଘରକୁ ପହଞ୍ଚି ହାତଗୋଡ଼ ଧୋଇ ମୁଢ଼ି ଖାଇଖାଇ ଖବର କାଗଜ ପଢ଼ିବି। ସଞ୍ଜକୁ ପୁଅମାନଙ୍କ ପଢ଼ାପଢ଼ି କଥା ବୁଝିବି। ରାତି ନଅଟାରେ ଅନ୍ନ ଖାଇ ମୋ' ଲେଖାପଢ଼ା କାମରେ ଲାଗିବି ବା ଲେଖିବାର ମୁଡ଼ ନଥିଲେ ପଢ଼ିବି। ରାତି ବାରଟା ଭିତରେ ଶୋଇ ପଡ଼ିବି। ଚାକିରିରୁ ଅବସର ନେବା ପର୍ଯ୍ୟନ୍ତ ଏଇଥିଲା ମୋ' ପ୍ରାତ୍ୟହିକ କାମ। ଠିକ୍ ନଅଟା ପଇଁତାଳିଶ ବେଳକୁ ସାନପୁଅ ତା ଚାକିରୀକୁ ଯାଏ। ଏଣୁ ତା' ଦୋକାନରେ



ବଡ଼ପୁଅ ଓ ତାର ପରିବାର

ଦି'ଘଣ୍ଟା ବସିବାକୁ ଯାଆନ୍ତେ ଆମ ଶୈଳ ସାନ୍ତାଣୀ ଚିହିଁକି ଉଠନ୍ତି। କହନ୍ତି, "କାମସିନା ତମକୁ ଛାଡ଼ିଲା, ତମେ କିନ୍ତୁ କାମକୁ ଛାଡ଼ି ପାରିଲ ନାହିଁ। ଅବସର ନେଲଣି। ଆରାମରେ ବସ। ପଇସା ପଇସା ହୋଇ ତମ ଜୀବନଯିବ।"

ପୁଅ ଦୋକାନକୁ ମୁଁ ପଇସା କମେଇବା ପାଇଁ ଯାଏନାହିଁ। ତା' ଦୋକନକୁ ଯିବାର ମୂଳ କାରଣଟି ହେଲା ପୁଅ ତା' ମୋଟର ସାଇକଲ ବାହାର କରିବାକୁ ଆଉଜଣକୁ ଦରକାର କରେ। ତେଣୁ ସେ ଆଉ କାହାକୁ ଡ଼ାକି ଗାଡ଼ୀଟାକୁ ବାହାର କରେ। ସବୁଦିନେ ଅନ୍ୟ ଉପରେ ନିର୍ଭର କରିବା ଠିକ୍ କଥାନୁହେଁ। ଏଣୁ ସେ ଯିବାବେଳକୁ ମୁଁ ସେଇଠି

ଥିଲେ ଦୁଇକାମ ହୁଏ। ଏକ ଗୋଲି ମେ ଦୋ' ଶିକାର!

ସାଢ଼େ ଏଗାରଟା ପର୍ଯ୍ୟନ୍ତ ସେଇଠି ବସେଁ। ଖବର କାଗଜ ପଢୁଥାଏଁ। ଗରାଖ ଆସିଲେ ସଉଦାଦିଏ। ମିଛଟାରେ କଉଠି ଆଣ୍ଠୁ ସନ୍ଧିରେ ମୁହଁ ଗୁଞ୍ଜି ବସିବାଠାରୁ ଏ ଭଲ ନୁହେଁକି? ସକାଳ ସାଢ଼େ ଏଗାରଟା ପରେ ଦୋକାନ ବନ୍ଦ କରେଁ। ହାତଗୋଡ଼ ଧୋଇ ବସିଥାଏଁ। ବୋହୂମାନେ ଡ଼ାକିଲେ ଖାଇବାକୁ ଯାଏଁ। ଖାଇସାରି ଅଧଘଣ୍ଟାଏ ଅଣ୍ଟା ଛାଟ କରେଁ। ମଧ୍ୟାହ୍ନରେ ଶୋଇବା ଅଭ୍ୟାସ ଜମା ନାହିଁ। ହାତ ପାହାନ୍ତାରେ ଥିବା କୌଣସି ବହିକୁ ଟାଣିଆଣି ଦୁଇଘଣ୍ଟା ପଢ଼େ। ସେ ସେକ୍ସପିଅର ହୁଅନ୍ତୁ କି ଶ୍ରଦ୍ଧାକର ସୂପକାର ହୁଅନ୍ତୁ। ଠିକ୍ ସାଢ଼େ ତିନିଟା ବେଳକୁ ଦୋକାନକୁ ଆସେଁ। ପୁଅ ସାଢ଼େ ଚାରିଟାରେ ଘରକୁ ଲେଉଟିବା ପର୍ଯ୍ୟନ୍ତ ଦୋକାନ ଜଗେଁ। ଟି.ଭିରେ ଟି ଟାଇମ ମନୋରଞ୍ଜନ ସରିବା ବେଳକୁ ମୁଁ ମୋର ଟିବ୍ରେକ୍ ସାରିଦିଏଁ। ଚା'ପର୍ବ ଶେଷ ବେଳକୁ ବଡ଼ପୁଅ ଚିଠି ପତ୍ର ଓ ଖବରକାଗଜ ନେଇ ପହଞ୍ଚେ। ସନ୍ଧ୍ୟା ଛ'ଟା ପର୍ଯ୍ୟନ୍ତ ଖବର କାଗଜ ଓ ଚିଠିପତ୍ର ଉପରେ ଆଖି ପକାଏଁ। ଯଉ ଚିଠିର ଉତ୍ତର ଦରକାର ପଡ଼େ, ତାକୁ ରଖି ବାକିତକ ଫାଇଲରେ ରଖିଦିଏଁ। ସନ୍ଧ୍ୟା ପ୍ରାର୍ଥନା ପରେ ନାତି ନାତୁଣୀଙ୍କ ହୋମୱାର୍କରେ ସାହାଯ୍ୟ କରେଁ। ଯିଏ ଯାହା ପଚାରେ ବୁଝାଇ ଦିଏଁ। ରେଡ଼ିଓ ବା ଟି.ଭି.ରୁ ନଅଟାରେ ଖବର ଶୁଣିବା ପରେ ଭୋଜନ ସାରି ଶୋଇପଡ଼େ।


ମଝିଆଁ ପୁଅ ଓ ତାର ପରିବାର

ବିଛଣା ଧରିବା ଆଗରୁ ପାଣି ପିଇବା, ମୁଣ୍ଡ କୁଣ୍ଡେଇ ହବା ଓ ପୃଷ୍ଠାଏ ଅଧେ ପଢ଼ିବା ମୋର ପିଲାଦିନରୁ ଅଭ୍ୟାସ। ପଢୁପଢୁ ନିଦ ହୋଇଯାଏ। ଗାଢ଼ନିଦ। ସ୍ଲିପିଙ୍ଗ ପିଲ୍ ଖାଇବାକୁ ପଡ଼େନାହିଁ। ସକାଳ ଚାରିଟା ବେଳକୁ ନିଦଭାଙ୍ଗେ। ରାଷ୍ଟ୍ରୀୟ ପ୍ରସାରଣରୁ ଚରିଟାର ଖବର ଶୁଣେ। ପେଟେ ପାଣି ପିଏଁ। ଆଖିରେ ଔଷଧ ପକାଏଁ। ପାଞ୍ଚଟା ଭିତରେ ନିତ୍ୟକର୍ମ ଓ ବ୍ୟାୟାମ ସାରିଦିଏଁ। ଛଅଟାରୁ ସାଢ଼େ ଛଅଟା ଭିତରେ ବଡ଼ବୋହୂ ଚା' ଜଳଖିଆ ନେଇ ପହଞ୍ଚିଯାଏ। ଚା'ପର୍ବ ପରେ ପୂର୍ବ ସନ୍ଧ୍ୟାରେ ଆସିଥିବା ଚିଠିପତ୍ରର

ଉତ୍ତର ପ୍ରସ୍ତୁତ କରେ। ଚିଠିଲେଖାପରେ ଲେଖା ଗୁଡ଼ିକ ଉତାରେଁ। ସାଢ଼େ ନଅଟା ହେଲେ ପୁଅ ଦୋକାନକୁ ଯାଏଁ। ଅବସର ନେବାପରେ ଏଇ ହଉଛି ମୋର ରୋଜ ରୋଜର କାର୍ଯ୍ୟକ୍ରମ।

ଆଗେ ଶିକ୍ଷକତା କରୁଥିବା କାଳରେ ସକାଳେ ବାଡ଼ି ବଗିଚା କାମ ବୁଝୁଥିଲି। ଏବେ ପୁଅମାନେ ସେସବୁ ବୁଝନ୍ତି। ସେମାନେ ଆରାମରେ ବସିବାକୁ ମୋତେ କହନ୍ତି। ହେଲେ ଆରାମ ହାରାମ ସିନା!

ବହୁବନ୍ଧୁ ଓ ଆଗନ୍ତୁକ ମୋତେ ପଚାରନ୍ତି, "ଏତେସବୁ କାମ କେମିତି କରି ପାରୁଛନ୍ତି?" ସେମାନଙ୍କୁ ମୋର ଏକମାତ୍ର ଉତ୍ତର ସମୟ ଲଙ୍ଘେନାଇଁ କାମ ଲମ୍ବିଯାଏ। ଠିକ୍ ସମୟ ସୀମା ଭିତରେ କାମକଲେ ସବୁକାମ ଆରାମରେ ହେବ। ଏଠି ରାମକୃଷ୍ଣ ପରମହଂସଙ୍କ କଥାଟିଏ ମନେ ପଡ଼ିଯାଉଛି।


ସାନ ପୁଅ ଓ ତାର ପରିବାର

ଥରେ ଜଣେ କର୍ମବ୍ୟସ୍ତ ଡ଼ାକ୍ତର ରାମକୃଷ୍ଣ ପରମହଂସଙ୍କୁ କହିଲେ ତାଙ୍କ ପାଖରେ ଏତେକାମ ଯେ ମରିବାକୁ ବେଳ ନାଇଁ। ସେ ସତ୍‌ସଙ୍ଗକୁ ଯିବେ କେମିତି?" ରାମକୃଷ୍ଣ ତାଙ୍କ ଶ୍ରଦ୍ଧାଶୀଳ ଭଙ୍ଗିରେ କହିଲେ, "ହେଁ ଗୋ' ଏତ ଦାରୁନ ସତ୍ୟ।" ସମୟ କାହାକୁ ବା ମିଳୁଛି? ରାମକୃଷ୍ଣ ପୁନର୍ବାର କହିଲେ "ତମେ କେଉଟୁଣୀକୁ ଦେଖିଥିବ ତ ଡ଼ାକ୍ତର? ସେ କେମିତି ମୁଢ଼ି ଭାଜେ। ଗରାଖ ଆସିଲେ ତାକୁ ଭୁଜା ଦିଏ। ଚାଉଳ ଭାଜେ। ଢ଼ିଙ୍କିରେ ଧାନକୁ ସାଙ୍ଖୁଳେ। ଛାତିରୁ ଲୁଗା କାଢ଼ି କଅଁଳା ଛୁଆକୁ ଥନରୁ କ୍ଷୀର ଖୁଆଏ। ତା' ବଡ ବଡ଼ ଛୁଆଙ୍କୁ ବାପଲୋ, ଧନଲୋ କହି ଚାଟଶାଳୀକୁ ପଠାଇଦିଏ। ଏକାସାଙ୍ଗରେ ସେ ଏତେକାମ କରିପାରେ। ଏସବୁ କାମ ଭିତରେ ଢ଼ିଙ୍କି ପାହାରକୁ ଚରକିଥାଏ। ହେଲା କଲେ କେଁଚି ଦେବଯେ। ଆମେ ଆମ ଜୀବନରେ ସେଇ କେଉଟୁଣୀ ପରି ସବୁକାମ କରୁକରୁ ଢ଼ିଙ୍କି ପାହାରକୁ ଚରକିଥିବା। ଆମ ମନମୁନ ଚଇତନ ସେଇ ଢ଼ିଙ୍କି ପାହାରଭଳି ଈଶ୍ୱରଙ୍କ ପ୍ରତି ସତର୍କ ରହିଲେ, ସବୁକାମ ଆପେ ଆପେ ହୋଇଯିବ।

"ଜମାଂ ମୋହନ୍ତ ନିଜଗୁରୁ, ଉଦ୍ଧବ କେତେ ତୁ ପଚାରୁ।" ମୁଁ ଜୀବନ ତମାମ୍ କାମ ଖଟି ଆସିଛି। ଜପତପ, ଭଜନ, କୀର୍ତ୍ତନ, ଧ୍ୟାନ, ଧାରଣା କରି ଜାଣିନାହିଁ। ସଞ୍ଜେ ସକାଳେ ଦୁଇଥର ପ୍ରଭୁଙ୍କୁ ସୁମରିଲେ ରାତିକଟେ ଓ ଦିନସରେ। ଏଠି ପୁଣି କଥାଏ ମନେ ପଡ଼ିଯାଉଛି। ଥରେ ପ୍ରଭୁ ଭକ୍ତ ନାରଦଙ୍କୁ କହିଲେ "ମର୍ତ୍ତ୍ୟରେ ମୋର ସବୁଠୁ ବଡ଼ ଜଣେ ଭକ୍ତଅଛି। ତାକୁ ଦେଖି ଆସନ୍ତୁନି, ନାରଦ?" ଦିନରାତି ଅଠିପର ନାରାୟଣ ନାରାୟଣ କହି ନାରଦ ନିଜକୁ ବଡ଼ଭକ୍ତ ବୋଲି ମନେ ମନେ ଭାବି ସାରିଥାନ୍ତି। ଠାକୁରଙ୍କୁ କଣବା ଅଜଣା ?

ନାରଦ ଯାଇ ଦେଖିଲେ ପ୍ରଭୁଙ୍କର ବଡ଼ ଭକ୍ତଟି ଜଣେ ଚାଷୀ। ସକାଳେ ମୁଣ୍ଡିଆଟିଏ ମାରି ବିଲକୁ ଯାଏ। ସଞ୍ଜକୁ ପୁଣିଥରେ ପ୍ରଭୁଙ୍କୁ ସୁମରି ଖାଇପିଏ ଶୁଏ। ଏଇମିତି କୃଷକଟିର ରାତିସରେ ଦିନବି। ନାରଦ ପ୍ରଭୁଙ୍କ ବଡ଼ଭକ୍ତଙ୍କ ଏ ଲୀଳା ଦେଖି ମନେମନେ ହସିଲେ। ଏପରି ଲୋକଙ୍କୁ ପ୍ରଭୁ କହୁଛନ୍ତି ବଡ଼ଭକ୍ତ। ନାରଦ ପ୍ରଭୁଙ୍କୁ ସବୁକଥା ଜଣାଇଲେ। ଭଗବାନ୍ ନାରଦଙ୍କ ହାଲୁକା ମନକୁ ବୁଝିଲେ। ନାରଦଙ୍କୁ କାମଟିଏ କରିବାକୁ ପ୍ରଭୁ ଆଦେଶ କଲେ। "ଏ ତେଲ ଭର୍ତ୍ତି ଗିନାଟି ନିଅ। ଜଗତସାରା ଘେରାଏ ବୁଲିଆସ। ସାବଧାନ! ଯେମିତି ଗିନାରୁ ତେଲ ବୁନ୍ଦାଏ ବି ପଡ଼ିବନି। ତେଲ ପଡ଼ିଲେ ଅନର୍ଥ ହେବ।" ନାରଦ ଖୁବ୍ ସାବଧାନତାରେ ପୃଥିବୀ ପରିକ୍ରମା କଲେ। ତେଲ ବୁନ୍ଦାଏ ବି ତଳେ ପଡ଼ିଲାନି। ନାରଦ ଫେରିବା ପରେ ପ୍ରଭୁ ହସି ହସି ଦେଇ ନାରଦଙ୍କୁ ପଚାରିଲେ। "ଏପରିକ୍ରମା ବେଳେ ତମେ ମୋ' କଥା କେତେଥର ମନେ ପକାଇଛ ନାରଦ?" ନାରଦ କହିଲେ, "ଆପଣଙ୍କ କଥା ଆଉ ଭାବିବି କେତେବେଳେ? ତେଲ ଗିନାରେ ତ ମୋ' ମନ ରହିଥାଏ। ଏମିତି ଗୋଟାଏ କାମ ଦେଲେଯେ ମୁଁ ଗୋଟାପଣେ ଆପଣଙ୍କୁ ଭୁଲିଗଲି।" ପ୍ରଭୁ ହସିଲେ। ଏଇ ସାମାନ୍ୟ କାମ ପାଇଁ ତୁମେ ମୋତେ ପାଶୋରିଦେଲ। ଭାବତ ଦେଖି ସେ କୃଷକ ବାପୁଡ଼ା



ଝିଅ / ଜ୍ୱାଇଁ ଓ ସେମାନଙ୍କର ପରିବାର

କେତେକଥା ବୁଝୁଛି । ତଥାପି ମୋତେ ଦିନକୁ ଦୁଇଥର ମନେ ପକାଇବା କଥା କହୁଥାନ୍ତି । ନାରଦ ମୁହଁ ଟଳଟଳି ହୁଙ୍କାର କଲେ ।

କାହିଁକି କେଜାଣି ଏକଥାଟି ମୋ ଉକତରେ ଭେଦି ଯାଉଛି । ସବୁ ନାମତ ମନ ଭିତରେ ପ୍ରଭୁଙ୍କୁ ଥରେ ଡିଉଡି ପାରିଲେ ଏ ଜୀବନ ଧନ୍ୟ ହେବ ।

ଏଇ ମହାସମୟକୁ ମୋ ଜୀବନର ସଙ୍କୁଚିତ ସମୟତକ ମୁଁ ଠିକ୍ ଠିକ୍ ଉପଯୋଗ କରି ପାରୁଛି ବୋଲି ମୋର ଗଭୀର ଆତ୍ମ ସନ୍ତୋଷ ରହିଛି ।

ପିଲାକାଳ ସରିଯାଏ ଖେଳକୁଦରେ, ଯୌବନ କଟେ ମଉଜରେ । ଏବେ ଏଇ ବୁଢା ବୟସରେ ପ୍ରଭୁଙ୍କ ଛଡ଼ା ଆଉ କିଏ ଅଛି? ଖଣ୍ଡି ଯେ ଖଣ୍ଡି ଏଇ ପଞ୍ଜରା କାଠିକୁ ଶ୍ମଶାନ ଶୃଗାଳ ବାଣ୍ଟି ଖାଇବା ପର୍ଯ୍ୟନ୍ତ ଘରକୁ ଛାଡ଼ି ହଉନି । ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ହୁଏତ ମୋ ଗୀତର ସେଇ ଧାଡ଼ିଟି ସତ ହୋଇ ରହିଥିବ ।

"ଘେରି ରହିଛି ଏ ଘର ମୋତେ, ପାରୁନି ମୁଁ ତାକୁ ପରକରି ।"



# ୯୭. ଅସଲ ଜୀବନ

ଆମେ ସଭିଏଁ ସକାଳୁ ଉଠୁ । ନିତ୍ୟକର୍ମ କରୁ । ଜଳଖିଆ ଖାଉ । ଚା' ପିଉ । ଗପୁ । ଚିଠି ଲେଖୁ । ଘରର ଭଲମନ୍ଦ ବୁଝୁ । ଖେତକୁ, ଖମାରକୁ, ଖଣିକୁ, ଖାଦାନକୁ, ଫାର୍ମକୁ, ଫେକ୍ଟ୍ରିକୁ, ବଣିଜକୁ, ଚାକିରୀକୁ ଯାଉ । ଖଟଣି ଖଟୁ । ସଞ୍ଜକୁ ଫେରୁ । ଟିଫିନ୍ ଖାଉ । କଫି ପିଉ । ଟି.ଭି. ଦେଖୁ । ଗୀତ ଗାଉ, ଗୀତ ଲେଖୁ । ନାଟକ କରୁ । ଗପସପ ହେଉ । ତାସ ଖେଳୁ । ବିଛଣାକୁ ଯାଉ । ପୁଣି ସକାଳୁ ଉଠୁ । ଦିନଟି ସରେ, ରାତିଟିବି । ଏଇତ ରୋଜ ରୋଜର ଜୀବନ!

କେଉଁଠି କେବେ ଅକସ୍ମାତ ଦେଖା ହୋଇଯାଏ । ତାଙ୍କ ସାଙ୍ଗରେ ତାଙ୍କ ନାତି । ଆମ ସାଙ୍ଗରେ ଆମ ନାତୁଣୀ । ଦେଖା ହେଲା, ଭଲ ହେଲା । ସେ କହନ୍ତି - ଅନେକ ଅନେକ ଦିନପରେ । ଆମେ କହୁ ହଜିଲା ଦିନ ଗୁଡ଼ିକ ମେଘ ପରି ଘେରିଆସେ । ଫିକା ଫିକା ଅତୀତଟା ସଜ ଜଣାପଡ଼େ । ସଜନା ଶାଗ ଭଳି । ସେ କହନ୍ତି, ପଛ ଜୀବନଟା କେତେ ଭଲଥିଲା ମ! କଥା ଲେଉଟାଇ ଆମେ କହୁ, ମନେ ପକାଇ ଲାଭ କଣ? ଭଙ୍ଗା ଦେଉଳର କାନ୍ଥରେ, ଝରା ବଉଳର ବାସ୍ନାରେ, ପ୍ଲାବିତ ଜୋଛନାରେ କେମିତି ଗୋଟାଏ ଜୀବନ ରହିଯାଇଥାଏ । ଖାଲି ଝୁରିବାକୁ!! ଲମ୍ବା ଲମ୍ବା ହାଇ ମାରିବାକୁ । ଯିଏ ତମକୁ ଅମୁକ-ସମୁକ କଲା, ମୋତେ କିଆଁ କଲା ନାଇଁ ତାନ୍ଧି, ବଗ, ଢେଙ୍କି? ଅତଶୋଷ କରୁଁ । ତାହୁନି ହଉଁ । ସେଇ ଝିଙ୍ଗିଡା ଭିତରେ କୁଆଡ଼େ ଗୋଟାଏ ଜୀବନ ଥାଏ ।

ଆମ ଅନୁଭବ ଭିତରେ ଏଇ ରକମର ବହୁ ଜୀବନ ଆମେ ଜୀଇଁଥାଉଁ। ଏ ପ୍ରକାର ଜୀବନ ଗୁଡ଼ିକୁ ଜୀବନ କହିବାକି? ରୋଜରୋଜର ଜୀଇଁବାରେ କିଛି ବ୍ୟତିକ୍ରମ ହେଲେ ଲୋକ କହନ୍ତି ଖାପଛଡ଼ା। ଏଇପରି ଖାପ ଭିତରେ, ଖୋଳ ଭିତରେ, ଶଗଡ଼ ଗୁଳା ଭିତରେ, ଛାଞ୍ଚ ଭିତରେ ଜୀଇଁ ପାରିବା ଗୋଟାଏ ରକମର ଜୀବନ। ସାପୁଆ କେଳାର ପେଡ଼ି ଭିତରର ସାପ ଯେମିତି। ଟିପ ମାରିଲେ ଫଁ କରୁଛି। ନଇଲେ ଶୋଇଥାଉ। ଆଉମାନଙ୍କ ପରି ଗତାନୁଗତିକ ଜୀବନ ବାହାରେ ଖାପଛଡ଼ା ଜୀବନ ଜୀଇଁଲେ ଦୁନିଆ କହେ ପାଗଳ। କେତେବେଳେ କିଏ କବି କହେତ ଆଉ କେତେବେଳେ ଦାର୍ଶନିକ, ମଜନୁ, ମାତାଲ, ବଞ୍ଜାରା, ଲୁନାଟିକ୍ କହିବାକୁ ମନା କରୁଛି କିଏ? ଆଉ ଦଶଜଣ ଦଶ ପ୍ରକାରର ନ କହିବେ କାହିଁକି? ଖାପଛଡ଼ା ମଣିଷଟିକୁ ଅନ୍ୟମାନେ କେତେ ବାଗରେ ଅନୁରାଗରେ କି ବିତରାଗରେ କି ବିରାଗରେ ଦେଖନ୍ତି କିଏ କହିବ? ଯି ଲୋକ ନିଜ ନିଶାରେ ନିଜେ ମାତାଲ। ହାଣ୍ଡିଆ ନିଶା ରାତି ପାହିଲେ ଉତୁରିଯାଏ, ଏ ନିଶା ଥରେ ଚଢ଼ିଲେ, ଉତୁରିବ କଣ, ଚଢୁଥାଏ। ଯେମିତି ବାବୁ ବ୍ରଜେନ୍ଦ୍ର କିଛି ଗୋଟାଏ ନକଲେ ନିଦ ହୁଏନି। ଭିତରଟା ଅଣ୍ଡାଳି ହୁଏ। ଖୁକୁବୁକୁ ଖୁକୁବୁକୁ ଲାଗୁଥାଏ। ମଦ, ଗଞ୍ଜେଇ, ଚରସ ଭଳି ନିଶା ଖାଇବା ଲୋକଙ୍କ ହାବଭାବ ସବୁଠି ଏକାଭଳି। ବାଲ୍ୟତ, ଯଉବନ କି ବୁଢ଼ା, ଯେଉଁ ଉମରରେ ଥାଆନ୍ତୁ ନା କାହିଁକି। ହେଲେ ଏ ନିଶା ବଅସ ଫଅସ ମାନେନାହିଁ। ଏ ନିଶା କହାକୁ ବାଲ୍ୟତ ବେଳାରେ ଘାରେ ତ ଆଉ କାହାକୁ ଯଉବନରେ। ଶେଷ ପାହାଚରେ ନିଶାତ ଟାଣୁଆ। ଏ ନିଶାର ପ୍ରକୋପ ଜୀବନକୁ ଚାହିଁବାର ଭଙ୍ଗିରେ, ଅନ୍ଦାଜ କରିବାର ଠାଣିରେ, ଠଉରେଇବାର କଉଶଳରେ ନିର୍ଭର କରେ। ଏ ନିଶାରେ ବୁଡ଼ିଥିବା ଲୋକ ସଦା ସର୍ବଦା ଖାପଛଡ଼ା ଜଣାପଡ଼େ।

ଦୁନିଆରେ ଏମିତି ବି ଲୋକ ଅଛନ୍ତି। ଅନ୍ଧାରରେ ବାଡ଼ି ବୁଲାନ୍ତି। ବୁଲ୍ଲାଟାରେ ପାଣି ପିଟୁଥାନ୍ତି, ଶୂନ୍ୟକୁ ଶର ମାରନ୍ତି। ଶର କଉଠି ବାଜୁ ବା ନବାଜୁ, ଫେରି ଆସୁ ବା ନଆସୁ ବୁମେରାଁ ପରି। ଗାଳି ଦିଅନ୍ତି। କାହାକୁ ଦିଅନ୍ତି, ଜଣା ନାହିଁ। ଏ ପ୍ରକାର ଅଭିନୟରୁ ଆଖୁରସ ପରି କିଛି ଶୋଷୁଥାନ୍ତି ଶିଶୁପାଳ ହେବାର ପରବାଏ ନଥାଏ ଯେମିତି।

ପୋଖତ ନାଟୁଆ ନାଚୁଥାଏ, ଠାଣି ଦେଖଉଥାଏ। ମଉନ ମୁଦ୍ରାରେ କେତେ କଣ କହି ଯାଉଥାଏ। ହେଲେ ସେ ଜାଣିପାରୁ ନଥାଏ ଯେ ସେ ନିଜେ ନାଚୁଛି। ଖୁସିରେ ପେଟ ଭରୁଥାଏ। ରସରେ ବୁଡ଼ି ଯାଉଥାଏ। ତା'ରକତ ଭିତରେ ଫୁଲାଏ ପରମ ପଉରୁଷ ଠୁଳ ହଉଥାଏ। ନାଚୁଥାଏ, ଆହୁରି ନାଚୁଥାଏ। ନାଚିବାକୁ ମନ ଉଚ୍ଚାଟ ଥାଏ। ଅସଲ କଥାଟି ହେଲା ନିଜ ଭିତରୁ ସେ ନିଜେ ସଉକ କରି ବାଛିଥିବା କାମରେ ତା'ର ଆଗ୍ରହ ଥାଏ, ଉତ୍ସାହଥାଏ। ଉତ୍ସାହ ଥିଲେ ଉଦ୍ୟମ ଆସେ। ଚାକିରୀଆ କୁ କଣ ଗୋଟାଏ ଓଟାରେ। ଯିଏ ବିଲକୁ ଯାଏ, ତାକୁ ପଛରୁ କିଏ ଠେଲେ। ଖଣିକୁ କହ କି ଖାଦାନକୁ କହ, ଯିଏ

ଯାଏ, ତାକୁ ବଳଦ ଆଡ଼େଇଲା ପରି କିଏ ଯେମିତି ପଛରୁ ଆଡ଼େଇ ଆଡ଼େଇ ନିଏ।

ଏମିତି ସଂସାରୀ ମାନେ, ଚାକିରୀଆମାନେ, ମଜୁରିଆ ମାନେ, ଖଟିଖିଆ ମାନେ, ସବୁପ୍ରକାରର ଜୀବୀମାନେ ଆପଣା ଆପଣା ସଂସାରରେ ମାତିଥାନ୍ତି। ଏମାନେ କେଡ଼େ ଦର୍ପରେ ଜୀବନକୁ ଜୀଅନ୍ତି। ଉଣେଶଚ ଧନ୍ଦାରେ ଧନ୍ଦି ହୋଇ ରୋଜଗାର କରନ୍ତି। ପଦ ପଦବୀରେ ବିରାଜମାନ ହୁଅନ୍ତି। ବଙ୍ଗଳା ବାନ୍ଧନ୍ତି। ସବୁ ଇଲେକ୍‌ଟ୍ରୋନିକ୍ସ ସୁଖକୁ ଚାଖନ୍ତି। ଲଣ୍ଡ ଭଣ୍ଡ ହୋଇ, ପାଷାଣ ହୋଇଥିଲେ ବିତ ଭଲ ହୋଇଥାନ୍ତା। ପାଷାଣ୍ଡ ହୁଅନ୍ତି। ସବୁଠି ସବୁ କରନ୍ତି। ଭିତରଟାକୁ କାହାପାଇଁ ବାହାର କରି ପାରନ୍ତି ନାହିଁ। ସବୁ ଜାଣିଛି ଜାଣିଛି କହି କୂଅ ଭିତରେ ବେଙ୍ଗ ହୋଇ ରହିଥାନ୍ତି। ତୋଡ଼ ଥାଏ, ଜୀବନରେ ମୋଡ଼ ନଥାଏ।

ପହିଲେ ହାଲୁକା ହେବାକୁ ହେବ। ଅଳପ ଭିତରେ କଳ୍ପର କଳ୍ପନା କରିବାକୁ ହେବ। ଆପଣାର ଘେର ଭିତରେ ଘର କରିବାକୁ ହେବ। ନିଜ ମାପର ବାଟରେ ପାଦ ଥୋଇବାକୁ ହେବ। ପହିଲେ ନିଜକୁ ନିଜେ ରାଜି  ନକରି କାମକୁ ବାହାରିବ କିଆଁ? ନିଜକୁ ନିଜର ସାଥି ରୂପେ ପାଇବାକୁ ହେବ। ଆପଣାକୁ ଆପଣାର 'ୟାର୍' କରିବାକୁ ହେବ। ଏତକ କରିପାରିଲେ ବୋଝ ହାଲୁକା ଲାଗିବ। ମୁଁ ଯାହା କରୁଛି, ସହଜ ଲାଗୁଛି। ଏଇ ଅନୁଭବଟି ମୁଁହରେ ଆଭା ହୋଇ ଫୁଟିବ।

ଆପଣାର ରୁଚିରେ ନିଜର କରଣୀୟକୁ ନିଜ ଭିତରୁ ଖୋଜି ବାହାର କରିବା ସହଜ ଲାଗୁଥିଲେ ବି ସହଜ ନୁହେଁ। ବହୁ କରଣୀୟରୁ ଠିକ୍ କରଣୀୟଟିକୁ ବାରି ପାରିବା ଜୀବନରେ ଏକ ବଡ଼ ଘଟଣା। ସେଇ ଘଟଣାର ଘଟକ ହୋଇ ଆନ ଭିତରେ ଉତ୍ସାହ ଉକୁଟାଇ ପାରିବା ଆଉ ଏକ ଘଟଣା। ଏ ପାରିଲା ପଣକୁ ଆପଣାର ଡ଼େଉଁରିଆ କରି ପାରିଲେ ସବୁଠୁ ଭଲ।

ଜଣକୁ ଆନର ଭାଇ ବା ଭଗାରି ନାନା ଆଳରେ କରା ଯାଇପାରେ। ଫି ମଣିଷ ନାନା ସମ୍ଭାବନା ନେଇ ମାଟିକୁ ଆସେ। ଅବସ୍ଥା ବିଶେଷଟାକୁ ସୁଯୋଗ ଦିଏ ବା ବାଟ ଓଗାଳେ। ଖଡ଼ି ପକାଇ କେହିକହି ପାରିବ ନାହିଁ ଯେ କେଉଁଟା ସୁହାଇବ ଆଉ କେଉଁଟା ନ ସୁହାଇବ। ଅମୃତ ବେଳାରେ ଯେ ସଭିଏଁ ଫୁଲ ହୋଇ ଫୁଟିବେ, ଏ କଥାର କି ଗେରେଣ୍ଟି ଅଛି? ରାତି ଆସିଲେ ନିଦ ଆସେ। ନିଦ ଆସେ ନାଇଁ ବୋଲି ଆମେ କହିବାକି ରାତି ଆସି ନାଇଁ ବୋଲି? ବଟିକା ଖାଇଲେ ଯାଇ ନିଦ ଆସେ। ନିଦ ଆସେ ମାନେ ରାତି ଆସେ। ରାତି ହୋଇ ଆଉ କି ଦିନ।

ଆମେ ସଭିଏଁ ଜୀବନରେ କଣଟାଏ ହେବାକୁ ମନ କରିଥାଉଁ। ବହୁବାଟରୁ ବାଟଟାଏ ବାଛୁଁ। ପାଣି ପାଇଲେ ମଞ୍ଜି ଗଜୁରେ। ପତର ଫିଟେ ଡ଼ାଳ ମେଳାଏ। କଢ଼ ଧରେ। ଫୁଲ ଫୁଟେ। ବିକାଶର ଏ ଅନୁକ୍ରମରେ ଭିତରର ଡାକଟିକୁ ବାରିପାରିଲେ ହେଲା। ତାକୁ ଧନ୍ୟ'

ଜହିତା ଯେ ଭିତରର ଡ଼ାକଟି ଶୁଣେ। ଶୁଣି 'ଓ' କରେ। ଭିତରର ଖାସ୍ ଜାଗାରୁ ଅସଲ ଆଖିଟି ଫିଟେ। ଖାଲି ଢୋଲ ମାନି ଆଗେଇ ଗଲେ ହେଲା। ଏମିତି ଜୀବନ ଆଉ ଜୀଇଁବା ଅସଲ ଜୀଇଁବା। ଜୀଇଁବା ପରି ଜୀଇଁବା। ଆମେ ଭାଗ୍ୟବାନ ଯେ ଏଠି ଅଠିପର ଏ ପ୍ରକାର ଜୀଇଁବା ବାଲାମାନେ ଲଗାତାର ଆମ ମାଟିକୁ ମୁହେଁଇଛନ୍ତି। କାହିଁକି କେଜାଣି ମାଁ ସମଲେଇ ହେନା କରୁନାହାନ୍ତି ଏ ପ୍ରକାର ଜୀବନ ଏ ମାଟିକୁ ବରାବର ବରାଦ କରିବାରେ।

କେହି କେବେ ଉପରୁ ବାନା ଧରି ଏଠାକୁ ଆସେ ନାହିଁ। ଆପଣା ପରିଚୟ ଆପେ ଖୋଜେ। ଯେମିତି ହଳଧର ନାଗ, ଫକୀର ପଟ୍ଟନାୟକ, ଶ୍ୟାମସୁନ୍ଦର ଧର, ଦ୍ୱାରିକା ନାୟକ, ତୃପ୍ତି ପଣ୍ଡା, ଜିତେନ୍ଦ୍ରିୟ ହରିପାଲ ଆଦି ଖୋଜୁଛନ୍ତି। ଭିତରର ଝରକା ମେଲା ରଖି ପାରିଲେ ଆଲୁଅ ଯିବ, ପବନ ବି ଯିବ, ବାଆ ବତାସ ଯାଇ ପାରିଲେ ଗାନା, ବାଜନା, ନାଚ, ତାମସା ଯିବନାଇଁ କିଆଁ। ଭିତରଟା ଗୋଟାପଣେ ଉକିଆ ହୋଇଯିବ। ଆଭାମୟ ହୋଇଯିବ। ଏପ୍ରକାର ଜୀବନ ବଞ୍ଚି ପାରିଲେ କୌଣସି ଅପକର୍ମର କାରଣ ହେବାକୁ ହୁଏନାହିଁ।

ଏପରି ଜୀବନ କେବଳ ନିଜର ନହୋଇ ସଭିଙ୍କର ହୋଇଯାଏ। ଏପରି ଜୀବନ ଘର ଦୁଆର କରେ। କୁଟୁମ୍ବ ପୋଷେ। ଚାକିରୀକୁ ଯାଏ। ଖଣି ଖାଦାନକୁ ଯାଏ। ସବୁକରେ। ସଂସାର କରି ସଂସାରୀ ହୁଏନା। ଏଇତ ଝରମରା : ବିଡ଼ମ୍ବନା!!

ଏଇ ଜୀବନ ଭିତରେ ଆଉ ଏକ ଜୀବନର ସୁରାକ ସେ ପାଇସାରିଥାଏ। ନିଜ ପାଇଁ ଫୁଲ ଫୁଟେ ନାଇଁ। ଏ ପ୍ରକାର ଜୀବନ କେବେ ନିଜ ଜୀବନ ପାଇଁ ଗଜୁରେ ନାଇଁ। ଯାହା କରେ ନିଜକୁ ଛାଡ଼ି କରେ। କାହାଠୁ କିଛି ମାଗେ ନାଇଁ। ଫୁଲ କାହାକୁ କିଛି ମାଗେ କି? ମୁନୀ ହୋଇ ରହିଥାଏ ମଉନରେ।

ଏଇ ରୋଜ ରୋଜର ଜୀଇଁବା ଭିତରେ ଆଉଏକ ଜୀବନ ଅଛି। ଏଇ ସନାତନ ସଂସାର ଭିତରେ ଆଉ ଏକ ସଂସାର ଅଛି। ନିତିଦିନିଆଁ ଘରକରା ଭିତରେ ଆଉ ଏକ ଘରକରା ଅଛି। ସେଇ ଖାସ୍ ଘରକରାକୁ ଅସଲ ଜୀବନଟିକୁ ଠଉରାଇ ପାରିଲେ, ଧରି ପାରିଲେ, ବଞ୍ଚି ପାରିଲେ ଯାଇ ଭୀମଭୋଇ ହେବୁ, ସାଲବେଗ ହେବୁ କି ଆଉ କେତେ କଣ ହେବୁ। ଆଖିକୁ ଦିଶୁଛି, ବାଟ ପାଇବୁ। ବାଟ ପାଉନ ମାନେ ଭିତରର ଆଖି ଠିକ୍ ନାହିଁ।



# ୯୮ . ବିଧାନକୁ ବିଧା

ଆମ ଶୈଳସାଆନ୍ତାଣୀ ନୂଆ ବୋହୂ ବାସନ୍ତୀକୁ ପାଖକୁ ଡ଼ାକିଲେ । ସଥାସମୟେ କହିଲେ, "ଆଗୋ' ମାଆ, ଏ ଚାବି ପେଣ୍ଠାକ ନେ' । ଏ ଘର ତୋ'ର । ଏ ସଂସାର ତୋର । ଯଉଠି ଯାହା ଅଛି, ସବୁ ତୋ'ର । ତୁ ମୋ' ନୂଆ ବୋହୂ, ମୋ' ସଂସାରର ନୂଆ ମାଆ । ମୁଁ ତୋ' ଝିଅ । ହେଲା ନହେଲା ବେଳକୁ ନେବେ କେମିତି କିଛି ପାଟିରୁ ବାହାରି ପଡ଼ିଲେ, ଧରିବୁନି । ବଅସ ହେଲାଣି । ଆଉବା କେତେଦିନ? ସଂସାରକୁ ସମ୍ଭାଳିବୁ । ଦରକାରକୁ ପଦେ ବୁଝିବୁ । ତୋ' ପଛରେ, ଥିବାଯାଏ, ଛାଇପରି ଥିବି ।"

ଶାଶୁଙ୍କ ଏକଥାରେ କୁଆଡ଼େ ଗୋଟାଏ ସଂସ୍କୃତି ଅଛି । ସଂସ୍କୃତିଟା କଣ କି? ଆପଣା ଜାଣୁ? ଚଟ ଯାଇ ପଟ ତୋଳି ଆଣିବ । ଆଉ କିଛି ନହେଲେବି ସଂସ୍କୃତି ଏକ ପୁରୁଣା ଚିଜ । ଠେକିରେ ରଖା ଘିଅପରି । ଏକଧାରା । ଏକ ବିଶ୍ୱାସ । ଆମ ପୁଅ ନାତିଙ୍କ ପାଇଁ ପୁଞ୍ଜି । ଉତ୍ତର ପୁରୁଷଙ୍କ ଦମ୍ଭ । ପଛ ପୀଢ଼ୀର ତାକତ୍ ।

ଆମ ବାପା, ଗୋସବାପା, ଗୋସେଇଁ ବାପାମାନେ ଯାହା କରୁଥିଲେ ଯାହା ଭଲ ଓ ହିତକର ଥିଲା । ସମୟର କଷଟି ପଥରରେ ଯା'ର ପରଖ ହୋଇ ସାରିଛି, ପୁଅ, ନାତି, ଅଣନାତି, ପଣନାତି ପର୍ଯ୍ୟନ୍ତ ଚ଼ଳି ଚ଼ଳି ଆସୁଥିବା ଧାରାଟିଏ । ଏଥିରୁ ଧୂଳିମଳି ଝଡ଼ି ସାରିଥାଏ । ହଳଦୀ ମଖା ସକାଳ ସ୍ନାହାନ ପରେ ଝଟକୁଥିବା ରୂପପରି ଏ ସଂସ୍କୃତିର ରୂପ । ଧନୀ ହଉକି ଗରିବ, ପ୍ରାୟ ସବୁ ସମାଜରେ ଉଣା ଅଧିକେ ଏହା ଚାଲିଥାଏ । ଏଇ ଧାରାରେ ଗୋଟିଏ କଥା ବାରି ହଉଥାଏ । ସେ କଥାଟି ହେଲା, ଆଗ ପୀଢ଼ିର ଲୋକେ ପଛ ପୀଢ଼ିର ଲୋକଙ୍କୁ ସୁଯୋଗ ଛାଡ଼ି ଦିଅନ୍ତି ।

ଯେ କୌଣସି ଗୋଟିଏ ପରିବାରକୁ ଧରାଯାଉ । ଅଜା ଆଈ ତାଙ୍କ ଯୁବା ବଅସରେ ଢ଼ବା ଭିତରେ ରହୁଥିଲେ । ତାଙ୍କ ପୁଅ ବାହାପରେ ସେଇ ଢ଼ବା ଘରକୁ ପୁଅ ବୋହୂଙ୍କୁ ଛାଡ଼ିଦେଲେ । ପୁଅ ବୋହୂ ସେଇ ଘରକୁ ଭୋଗିଲେ । ଘରର ମାଲିକ ହେଲେ । ନାତି ବାହାପରେ ନାତି ଓ ନାତୁଣୀ ବୋହୂଙ୍କୁ ଛାଡ଼ିଦେଲେ ସେଇ ଘର । ବାପା ମାଆ ଆବୋରି ଥିବା ଘରକୁ ନାତି ନାତୁଣୀ ବୋହୂ ପାଇଲେ । ବାପା ମାଆ ଉଠି ଆସିଲେ ଘର ପିଣ୍ଡାକୁ । ଅଜା ଆଈ ଆସିଲେ ଦାଣ୍ଡ ପିଣ୍ଡାକୁ । ପର ପୀଢ଼ିର ଲୋକଙ୍କୁ ଆଗ ପୀଢ଼ିର ଲୋକେ ବାଟ ଛାଡ଼ି ଦିଅନ୍ତି । ସୁଯୋଗ ଛାଡ଼ି ଦିଅନ୍ତି । ସୁଖକୁ ନିଜର ମୌରସି ଅଧିକାର ନମଣି ତାକୁ ସମୟ ଅନୁସାରେ ବାଣ୍ଟି କୁଣ୍ଟି ଭୋଗ କରନ୍ତି । ଅଜାରୁ ନାତି ପର୍ଯ୍ୟନ୍ତ ଉପରର ନମୁନାଟି ହେଉଛି ଆମ ସଂସ୍କୃତିର ଏକ ନିଖୁଣ ନଜିର । ଏ ପ୍ରକାର ଚ଼ଳଣିରୁ ସଂସ୍କୃତି ଚିଜଟି ବାରି ହୋଇଯାଏ ।

ଆମ ବାପ ଅଜାମାନେ, ତେପନ ଅଜାମାନେ ବେଶୀ ପାଠ ପଢ଼ିନଥିଲେ ମଧ୍ୟ

ସାମାଜିକ ଚଳଣିରେ ପଣ୍ଡିତଥିଲେ। ଅନ୍ୟର ଆବଶ୍ୟକତା ବୁଝୁଥିଲେ। ଦୂରକୁ ଦେଖି ପାରୁଥିଲେ। ଆସୁଥିବା ସମୟ କଣ ନେଇ ଆସୁଛି, ଅନୁମାନ କରି ପାରୁଥିଲେ। ତାଙ୍କ ଅନୁମାନ ଭିତରେ ସଠିକତା ର ମାତ୍ରା ବେଶୀଥିଲା। ଆଗାମୀ ବଂଶଧର ମାନଙ୍କୁ ଜନମ ହେବା ଆଗରୁ ଚିହ୍ନି ପାରୁଥିଲେ। ଅନୁଭବି ପାରୁଥିଲେ। ଆଗାମୀ ପୀଢ଼ିର ପିଲାଏ କେଉଁ ସମୟର ସମ୍ମୁଖୀନ ହେବେ, ସେଇ ସମୟକୁ ଦେଖି ପାରୁଥିଲେ। ସୁଖକୁ ମାଡ଼ି ବସୁନଥିଲେ। ଗୋଟାପଣେ ଗିଳି ଦେଉନଥିଲେ। ନିଜପରେ ବି ଅନ୍ୟମାନେ ଆସିବେ, ତାଙ୍କ ପାଇଁ କିଛି ଥାଉ, ଭାବୁଥିଲେ। ତାଙ୍କ ପାଇଁ ବାଟଟିଏ ସାଇତା ଥାଉ, ଏଇଆ ହେଲା ସେମାନଙ୍କ କାମନା, ଏଇ ଇଚ୍ଛାରେ ମାର୍ଜିତ ରୁଚିଟାଏ, ସମ୍ପନ୍ନ ସଂସ୍କୃତିଟାଏ, କାଳର କମନୀୟ କଳାଟିଏ ପୂରି ରହିଥିଲା। ସକାଳୁଆ ଫୁଲ ପରି ଫୁଟି ଉଠୁଥିଲା। ଏବେ ଆମେ ତାଙ୍କଠୁ ବେଶୀ ଶିକ୍ଷିତ ବୋଲାଉଛୁ। ବେଶୀ ମାର୍ଜିତ ବୋଲି ହେଣ୍ଡି ମାରୁଛୁ। ହେଲେ ଅମାର୍ଜିତ ଭାବେ ସବୁ ଏକାକୀ ଗିଳି ଦବାକୁ କୌଶଳ ଖୋଜୁଛୁ।

ଏବେ ଆମେ ଅନୁଷ୍ଠାନରେ, ଅଣ ଅନୁଷ୍ଠାନରେ, ସରକାରୀ ହଉକି ବେସରକାରୀ ହେଉ, ଦପ୍ତରରେ, ଦରବାରରେ, ରାଜନୀତିରେ, ବଣିଜରେ ବିପଣିରେ, ଘରେ, ବାହାରେ ସବୁଠି କ୍ଷମତା ଭୋଗପାଇଁ ମାଡ଼ି ବସୁଛୁ। ମଲାଯାଏ ଛାଡ଼ିବାକୁ ନାରାଜ। ଏବର ମାନସିକତା ଆଗ ଚଳଣିର ଓଲଟା। ଏହାହିଁ ସାମ୍ପ୍ରତିକ କାଳର ସବୁଠୁ ବଡ଼ ବିଡ଼ମ୍ବନା।

ଶରୀରବିଦ୍ ମାନେ କହନ୍ତି ଷାଠିଏ ପରେ ବୟସ ଖସେ। ଲୋକ ବୁଢ଼ା ହୁଏ। ସବୁ କାମରୁ ଓହରିଯାଏ। ମନ ଚାହୁଁ ନଥିଲେ ବି ଦେହ କହେ "ଅଟକି ଯା"। 'ପୁତ୍ର ନିବେଶି ପତ୍ନୀ ପାଶେ' ସନ୍ୟାସକୁ ଯିବକଣ ବିନାଶ ଆଡ଼କୁ ବାଟ କଢ଼ାଏ। ପୁଅାନ ପୁଅ ନାତିଏ କରିବି କରିବି ହବା ବେଳକୁ ବୁଢ଼ାଏ "ଏଠୁ ହଟ, ଏଠୁ ହଟ" କହିବାରେ ଲାଗିଛନ୍ତି।

ସର୍ବୋଚ୍ଚ ରାଷ୍ଟ୍ରାଧିପତିଠାରୁ ସର୍ବନିମ୍ନ ଗିରାମପତିଯାଏ ଗାଦୀ ଛାଡ଼ିବାକୁ କୁଣ୍ଠାରେ ଖୁନ୍ଦି ହଉଛନ୍ତି। ସଭିଙ୍କର ମନ ମଲାଯାଏ କୁରସିରେ ଲଟକିଥାନ୍ତେ। କ୍ଷମତାର ବେଲାରୀ ପାନ କପଲଉଥାନ୍ତେ। ଫଳରେ ଚକ ଢ଼ିଲା ଓ ଅଖ ଢ଼ିଲା। ଯେଣ ତେଣ ପ୍ରକାରେଣ କାମଗୁଛି ନେଇ ସମୟ କଟେଇବା ବେଳକୁ କାମପାଇଁ ହାଇଁପାଇଁ ହଉଥିବା ପିଲାଏ ରାଗରେ ଗରଗର। ଅର୍ଥର ଅପଚୟକୁ ଅନର୍ଥର ହରିହାଟ। "ବୁଢ଼ାଏ ମରନ୍ତେ କି?" ଚିନ୍ତାରେ ପିଲାଏ ଅତିଷ୍ଠ। ପିଲାଙ୍କର କ୍ରିୟା କଳାପରୁ ସକାଳ ହେବାପରି ବାରି ହେଲାଣି। ମଉନାବତୀ ବୋହୂଟି ଯେପରି ମନର ରାଗ ଚୂଳିମୁଣ୍ଡକୁ ଛେଚିମାରେ, ଆମ ପିଲାଏ ତାଙ୍କ ମନର ଚାପା ଅସନ୍ତୋଷ ନାନା ରୂପରେ ପ୍ରକଟ କରୁଛନ୍ତି। ଆମେ ତ୍ରାହି ତ୍ରାହି ଡାକୁଥିବା ସନ୍ତ୍ରାସବାଦ୍ ତହିଁରୁ ଗୋଟିଏ।

କାଶ୍ମୀରର ନରସଂହାର, ପଞ୍ଜାବର ପ୍ରପଞ୍ଚ, ଉତ୍ତର ପୂର୍ବାଞ୍ଚଳର ଅରାଜକତା, ଆଉ ଯଉଁଠି ଯାହା ସବୁ ଅସନ୍ତୋଷ ବୁଗୁଡ଼ା ଫୁଟିବା ପରି ଫୁଟୁଛି, ତାରି ମୂଳରେ ଏ ସବୁର

ମଞ୍ଜିଟି ରହିଛି କ୍ଷମତାକୁ ନଛାଡ଼ିବାର ପ୍ରବୃତ୍ତିରେ। କୁରସିର କରାମତି ମଧ୍ୟ ଅଦ୍ଭୁତ। ଥରେ ଯେ ବସିଲା ଉଠିବାକୁ ନାରାଜ। ଯେ କୌଣସି ଉପାୟରେ ଲଟକି ରହିବାକୁ ଆଗ୍ରହୀ। ସାମ୍ପ୍ରତିକ ସମୟର ସକଳ ଜନ ଅସନ୍ତୋଷର ମୂଳ ଉତ୍ସ ଏଇଠି।

ଷାଠିଏ ହେଲେ ଚାକିରି ନାଇଁ। ତେବେ ଦେଶପତି ଠୁଁ ଦଶପତିଯାଏଁ ଷାଠିଏ ପରେ ନିଜ ପଦପଦବୀରୁ ହଟିଯିବା କଥା। ପରପୀଢ଼ିକୁ ଦାୟିତ୍ୱ ସମର୍ପି ରାମନାମ ଜପିବା କଥା। ପିଲାଏ ପଚାରିଲେ ପରାମର୍ଶ ଦବାକୁ ମନା କରୁଛି କିଏ? କଠୋର ଭାବେ ଏ ବିଧାନକୁ ପାଳନ କରିପାରିଲେ ଆମର ଅନେକ ସାମାଜିକ ସମସ୍ୟା ତୁଟିଯାନ୍ତା। ସାମାଜିକ ସମସ୍ୟା ତୁଟିଲେ ଅନ୍ୟ ସମସ୍ୟାର ସମାଧାନକୁ ବାଟ ଫିଟନ୍ତା। ମାତ୍ର ଚ଼ଉକିର ଚ଼ଟନି, କ୍ଷମତାର କ୍ଷୀରସା ଯଉମାନେ ଚାଖିଛନ୍ତି, କ୍ଷମତାକୁ, ଚ଼ଉକିକୁ ବିସର୍ଜିବାକୁ ନାରାଜ। ସଳଖି ଠିଆ ହୋଇ ପାରୁନଥିବା ଲୋକେବି ଶାସନମୁଖ୍ୟ ହବାକୁ ସକସକ ହୁଅନ୍ତି।

ଯୁବ ପୀଢ଼ିକୁ ଫୁଲ ଶୁଙ୍ଘେଇ ଥୋକେ ମେଣ୍ଢା କରିବାର ଅପଚେଷ୍ଟା ବି କରନ୍ତି। ଏଇ ଅପଚେଷ୍ଟାରୁ ଯୁବପୀଢ଼ିର ଦାଦାଗିରି ଜାତହୁଏ। ଯୁବ ପୀଢ଼ିକୁ ମନେଇ, ବୁଝେଇ, ମତେଇ, ଉସୁକେଇ, କେତେଦିନ ସମ୍ଭାଳି ହେବ? ଏମାନଙ୍କ ବାହୁବଳକୁ ବ୍ୟବହାରକରି ମନ ବଳକୁ ମାରା କରୁଛୁ ଆମେ। ଯୁବକ ପିଲାଏ ନିର୍ବୋଧ ନୁହନ୍ତି। ଆମ ମତଲବ ସମଝିଲେଣି। ସେମାନେ ସମର୍ଥ ହେବା ପରେ ବି ସୁଯୋଗ ଛଡ଼ା ହଉଛନ୍ତି। ସବୁ ପ୍ରକାର ଅଘଟଣ ଘଟାଇବାକୁ ପଛଉ ନାହାନ୍ତି। ଫି' ଘରର ମାଆ ବାପା ମାନଙ୍କଠାରୁ ଆରମ୍ଭକରି ଦେଶର ମାଆବାପା ମାନେ ଯୁବପୀଢ଼ିକୁ ଦାୟିତ୍ୱ ଦିଅନ୍ତୁ। ଦେଖିବେ ଆମ ପିଲାଏ ପିରାମିଡ଼ ଗଢ଼ି ଥୋଇଦେବେ। ଆମ ରାଜଧାନୀ ମାନଙ୍କରେ ଦିନ ଦ୍ୱିପହରରେ ରାହାଜାନି ଘଟୁଥିବାର ଦେଖୁଛୁ, ଶୁଣୁଛୁ। ନାକରୁ କାନରୁ ଗହଣା ଛିଣ୍ଡାଇବା, ଗାଡ଼ି ମଟର ଅଟକାଇ ଲୁଟିବା, ଚମ୍ବଲ ଉପତ୍ୟକାର ଖାଲି ଅଧିକାର ନୁହେଁ, ସବୁ ଉପତ୍ୟକାର ଅଧିକାର ହେଲାଣି। ହେଲେ ଆମ ବୟସ – ଆକ୍ରାନ୍ତ ବୁଦ୍ଧିକୁ ସେ ସବୁ ଦିଶୁନାହିଁ। ଆମ ପିଲାଏ ଆମକୁ ମାଗିଲେଣି। ଆମେ ନଦେଲେ ସେମାନେ ବଳେ ଛଡ଼େଇ ନେବେ।

ଆସନ୍ତୁ, ଯୁବ ପୀଢ଼ିକୁ ଆମ ଟ୍ରାଉଜର, ଟ୍ରେଜେରି, ଚଉକି ଓ ଚାମଚ, ଶାସନ ଓ ସଂପ୍ରୀତି ସମର୍ପି ଦେବା। ଦେଖିବା ସେମାନେ ଏସବୁର ,ଭାଜନ କି ନୁହନ୍ତି।



# ୯୯. ଏକ ପରିଚ୍ଛନ୍ନ ଆଭା

ଭିଟାଢ ଦରବାରରେ ରାଜା। ଜଣକ ପରେ ଜଣେ ଅଭିଯୁକ୍ତ ହାଜର ହଉଥାନ୍ତି ଦରବାରରେ। ଅପରାଧୀର ଅପରାଧର ମାତ୍ରାନୁଯାୟୀ ଦଣ୍ଡାଦେଶ କରୁଥାନ୍ତି ମହା ମହିମ ମହାରାଜ। ଏହାକୁ ଜୀବନ୍ତ ଦିବାର କରିଦିଅ। ହାତୀ ପାଦରେ ଦଳିଦିଅ କହୁଥାନ୍ତି ଆଉ କହାକୁ। ଆଉ କାହାକୁ ଅରଣା ଘୋଡ଼ାର ଲାଞ୍ଜରେ ବାନ୍ଧି ଦେବାକୁ କହୁଥାନ୍ତି। ଘୋଷାରି ହୋଇ ଅପରାଧୀର ଗୋଡ଼ ଛିଣ୍ଡିଯିବ ଯେମିତି। ତତଲା ତେଲ କଡ଼େଇରେ ମାଛ ଭାଜିବା ପରି ଭାଜି ଦବାକୁ ହୁକୁମ କରୁଥାନ୍ତି। ଆଉ କାହାକୁ କରତରେ ଦି'ଗଡ଼ କରି କରତି ଦବାକୁ ଆଦେଶ କରୁଥାନ୍ତି। ଏଇପରି ଭାବେ ଅପରାଧୀ ମାନେ ଅପରାଧର ମାତ୍ରାନୁସାରେ ଦଣ୍ଡ ଭୋଗୁଥାନ୍ତି।

ସର୍ବଶେଷରେ ଏପରି ଏକ ଅପରାଧୀକୁ ଦରବାରକୁ ଆଣିଲେ ଯା'ର ଦିହରେ ପତରେ ମାଉଁସ ନାହିଁ। ସଫେଦ୍ ପାଇଜାମା ଉପରେ ଫୁଲପକା ପଞ୍ଜାବୀ। ମୁହଁ ଭର୍ତ୍ତି ବହଳ କଳା ମିସ୍‌ମିସ୍ ଦାଢ଼ୀ। ଆଖି ଦୁଇଟି ରଡ଼ନିଆଁ ପରି ଦପ୍ ଦପ୍ ଜଳୁଛି। ହାତଗୋଡ଼ ସରୁ ସରୁ ହେଲେବି ଗୋଟାଏ ଆଭାମୟ ଗରିମା ଫୁଟିଉଠୁଛି ତା'ର ଚେହେରାରୁ। ଗୋଟାଏ ମସ୍ତବଡ଼ ପାହାଡ଼କୁ ବିଦୀର୍ଣ୍ଣ କରିଦବାର ଏକ ବିସ୍ଫୋଟକ ଆବାଜ ଯେମିତି ନୀରବି ଯାଇଛି। ଏକ ଅଶାନ୍ତ ଝଡ଼ର ନାଭି ମଣ୍ଡଳ ଯେମିତି ତା' ନିଶ୍ୱାସରେ ରୁନ୍ଧି ହୋଇ ରହିଛି। ପ୍ରଭଞ୍ଜନର ପ୍ରବଳ ବେଗଟାଏ ଯେମିତି କୌଣସି ଆକସ୍ମିକତାରେ ଅଟକି ଯାଇଛି ତା'ଭିତରେ। ଏପରି ଏକ ଅପରାଧୀକୁ ହାଜର କଲେ ରଜାଙ୍କ ଆଗରେ। "କି ଦଣ୍ଡ ଦେବି ହେ ଯାକୁ? କଉ ଜୀବନ ଅଛି ଯା'ର ଭିତରେ ଯେ! ମଲାସାପ ପରି ମରି ସାରିଛି ଇଏ।"

ପାରିଷଦ ଭିତରୁ କେହିଜଣେ କହିଲା "ଗୋଖୁର ଟାଏ, ହଜୁର! ମଣିଷ ଖିଆ ବାଘଟାଏ!" "ଫୁଙ୍କିଦେଲେ ଉଡ଼ିଯିବ କଉ ଜୀବନ ଅଛି ଯେ ଦଣ୍ଡଦେବି?" ରାଜା ସହଜ କଣ୍ଠରେ କହିଲେ। ପାରିଷଦ ଜଣକ ପୁଣି କହିଲେ, "ଯା ଭିତରେ ଯେଉଁ ସୂକ୍ଷ୍ମାତିସୂକ୍ଷ୍ମ ଅଗ୍ନିକଣା ଅଛି ତାହା ସାରା ସଂସାରକୁ ଜାଳିପୋଡ଼ି ଦେବ। ଯାକୁ ସବୁଠୁ ଶକ୍ତ ସଜା ଦରକାର ମଣିମା।" ରାଜା ହସିଲେ "ବର୍ଷେ ଖଣ୍ଡେ କାରାଗାରରେ ରଖି ଛାଡ଼ିଦିଅ।" ଯାଙ୍କ ଅପରାଧର ଦଣ୍ଡ ନାହିଁ, ଛାମୁ" ଆଉ ଜଣେ ପାରିଷଦ କହିଲେ, "ତା ହେଲେ ଦୁଇବର୍ଷ ଜେଲ୍‌ରେ ରଖ।" ଆଉ କେହି ଆପତ୍ତି କରନ୍ତେ ରଜା ହୁକୁମ କଲେ 'ଦଶବର୍ଷ'। ବିଚାରବନ୍ତ ନ୍ୟାୟ ପରାମର୍ଶଦାତା ମନ୍ତ୍ରୀ ହାତଯୋଡ଼ି କହିଲେ, "ଉମର କଏଦ ତ କମ୍ ହେବ, ମଣିମା, ଯାକୁ କଲାପାଣିର ସେଲୁଲାର୍ ଜେଲ୍‌ବି ସମ୍ଭାଳି ପାରିବନି।" "କଣ ସେଇପରି ଖତରନାକ ଅପରାଧୀ ଇଏ?" ରାଜା ପ୍ରଶ୍ନକଲେ। ସର୍ବଶେଷ ପାରିଷଦ କହିଲେ, "ଯାକୁ କଠୋରରୁ କଠୋରତର ଦଣ୍ଡ ଦିଅନ୍ତୁ, ମଣିମା। ରାଜା ବିରକ୍ତ ହୋଇ କହିଲେ "ତେବେ ତୁମେ କୁହ କି ପ୍ରକାର ଦଣ୍ଡକୁ ଯୋଗ୍ୟ ଏ ଅପରାଧୀ?" ଶେଷକୁ ସେଇ

ନ୍ୟାୟବିତ୍ ପରାମର୍ଶ ଦେଲେ, ଏହାକୁ ଏକ ଖୁଣ୍ଟରେ ବାନ୍ଧି ଦିଆଯାଉ। ଆଉ ତା ସାମନାରେ ତା' ଭଳି ବେଶ ପୋଷାକରେ ଥିବା ଆଉ ଜଣେ ଲୋକଙ୍କୁ ଏଇ ଭରା ଦରବାରକୁ ଅଣାଯାଉ। ଅଉ ଏଇ ଅପରାଧୀର ସମନାରେ ଅଣା ଯାଇଥିବା ଲୋକକୁ ନୋବେଲ ଠାରୁ ଆରମ୍ଭକରି ଜ୍ଞାନପୀଠ, ସରସ୍ୱତୀ ସମ୍ମାନ, କବୀର ସମ୍ମାନ, କାଳୀଦାସ ସମ୍ମାନ, ସାରଳା ସମ୍ମାନ ଗଙ୍ଗାଧର ସମ୍ମାନ ଭଳି ଯେତେସବୁ ସମ୍ମାନ ଅଛି ଦିଆଯାଉ। ପୁରସ୍କାର ପାଉଥିବା ଲୋକର ପ୍ରଶସ୍ତି ଜଣେ ଉତ୍ତମ କଣ୍ଠର ବାଚକ ଦ୍ୱାରା ଉଦ୍‌ଘୋଷିତ କରାଯାଉ। ଏଇ ଅପରାଧୀ ସେଇ ପ୍ରଶସ୍ତି ଶୁଣି ମରିମରି ବଞ୍ଚୁଥାଉ ଆଉ ବଞ୍ଚିବଞ୍ଚି ମରୁଥାଉ" ତାହାହିଁ ହେବ ଏ ଅପରାଧୀର ଶ୍ରେଷ୍ଠ ଶାସ୍ତି। "ତଥାସ୍ତୁ" କହିବା ପୂର୍ବରୁ ରାଜା ଭଲକରି ଥରେ ଅପରାଧୀକୁ ଅନାଇ ଦେଲେ। ସତକୁ ସତ ଅପରାଧୀଟି ବେହୋସ ହବାକୁ ବସିଲା। ଯେତେବେଳେ ମୋଟା ଅଙ୍କର ସେଇ ଚେକ୍‌ଟାକୁ ସମ୍ମାନିତ ବ୍ୟକ୍ତିକୁ ଧରାଇ ଦଉଥିଲେ ରାଜା। ଅପରାଧୀ ଜଣକ ଜଣେ କଳାକାର କିନା!

ମୋ' ଜାଣିବାରେ ଆମ ଶରତ ନାରାୟଣ ବେହେରା ଏପରି ଅସହିଷ୍ଣୁ କଳାକାର ନୁହନ୍ତି। ୧୯୩୫ର ଜାନୁଆରୀ ତିନିଥାରିଖରେ ଜନମିଥିବା ଘେନୁପାଲି ଗାଁର ଏଇ ଗାଉଁଲୀ ପିଲା ଶ୍ୟାମ ସୁନ୍ଦର ବେହେରା ଓ ରାଜକୁମାରୀ ବେହେରାଙ୍କ ସୁଶୋଭନ ପୁଅଟିଏ। ବଡ଼ ସାହିରେ ପ୍ରାଥମିକ ଶିକ୍ଷା ଶେଷକରି ସମ୍ବଲପୁର ଜିଲ୍ଲା ସ୍କୁଲରୁ ମେଟ୍ରିକ ଓ ଗଙ୍ଗାଧର ମେହେର କଲେଜରୁ ବି.ଏ. ପାସ୍ କରିଛନ୍ତି। କଟକ ମଧୁସୂଦନ ଆଇନ କଲେଜରୁ ଆଇନ ପଢୁଥିଲେବି ବେପାରୀ ମଣିଷଟିଏ ହୋଇ ନଥିବାରୁ ଆଇନ ବେପାରକୁ ଗଲେନାହିଁ। ବୁର୍ଲା ଇଞ୍ଜିନିୟରିଂ କଲେଜରେ ଲାଇବ୍ରେରିଏନ୍ ଥିବାବେଳେ ଆକାଶବାଣୀକୁ ପଶିଲେ। ସେଇଠୁ କେନ୍ଦ୍ର ନିର୍ଦ୍ଦେଶକ ପଦରୁ ଅବସର ନେଲେ। ଏବେ 'ସ୍ୱୀକାର'ର ସମ୍ପାଦକ। ଏ'ସ୍ୱୀକାର'ରେ ମୋ' ଆତ୍ମଲିପି ବାହାରେ।

ମୋଠୁଁ ଶରତ ବେହେରା ମାତ୍ର ଚାରିମାସର ବଡ଼। ମୁଁ ତାଙ୍କୁ ୧୯୫୬ରୁ ଜାଣେ। ସେ ଗଙ୍ଗାଧର ମେହେର କଲେଜରେ ପଢୁଥିବା ବେଳେ ମୁଁ ତାଙ୍କ ତଳ କ୍ଲାସରେ ଥିଲି। ସେତେବେଳେ ତାଙ୍କ ଚେହେରା କୌଣସି ସିନେମା ହିରୋର ଚେହେରାଠାରୁ କମ୍‌ନଥିଲା। ଦୁଧିଆଳୀ ଗୋରା ରଙ୍ଗର ଚେହେରା। କଳାମଚ଼ମଚ଼ ବାଳ ସାଙ୍ଗକୁ ମୁଲାୟାମ ମେଞ୍ଛା। ସେ ଝିଅ ମାନଙ୍କ ପିଛା କରନ୍ତେ କି ନକରନ୍ତେ ଝିଅମାନେ ତାଙ୍କ ପିଛା କରୁଥିଲେ। "ମୋଡ଼ମୋଡ଼ କେ ନା ଦେଖ" କହିଲେବି ତାଙ୍କୁ ଦେଖୁଥିଲେ। ବନ୍ଧୁ ଶୈଳେଶ ଚନ୍ଦ୍ର ପଟ୍ଟନାୟକ, ସୁନ୍ଦରଲାଲ୍ ଦୁବେ, କ୍ଷୀରୋଦ ପ୍ରସାଦ ମିଶ୍ର, ପ୍ରେମାନନ୍ଦ ଦାନୀ ଭଳି ବନ୍ଧୁ ମାନେ ସଦା କହୁଥିଲେ ପୋଷ୍ଟର ଛାପିବା ଭଳି ଚେହେରା ଖଣ୍ଡେ ହୋଇଛି।

ଆମ ଶରତ ନାରାୟଣ ବେହେରା କବିଟାଏ, ଗାଳ୍ପିକ ଜଣେ। ଆଉକେତେ କଣ ଲେଖି ପକାଇ ସାହିତ୍ୟର ବହୁ ଜାଗାକୁ ବେଦଖଲ କରି ପକେଇଛନ୍ତି। ଅନେକ କଦମ୍ବ, ଅସହାୟ, ବିନ୍ଦୁରେ ସିନ୍ଧୁର ସ୍ୱାଦ, ଲୁବୁରୁ, ଅନ୍ୟ ଗୌତମ (କବିତା) ଭଳି ପନ୍ଦରଖଣ୍ଡ

ପୁସ୍ତକର ଲେଖକ। ସେ ଲେଖକ ହୋଇ ଲେଖକକୁ ଘୃଣା କରନ୍ତି ନାହିଁ। ନୂଆ ଲେଖକଟିଏ ତିଆରି କରିବାରେ ପୋଖତ ଲୋକଟିଏ।

ସମ୍ମାନକୁ ଯେ ଅନାଏଁ ନାହିଁ, ସମ୍ମାନ ତାକୁ କଣେଇ କଣେଇ ଚାହେଁ। କଳାକାରର ଜ୍ଞାନ ମୃଢ଼ ହୋଇଗଲେ ସେ କାନ୍ଦିପାରେନା। କଳାକାରର କଳା ପିପାସା ବେଶୀ ଗଭୀର ହୋଇଗଲେ ସେ ହସିପାରେନା। କଳାକାର ବେଶୀ ଆତ୍ମ କେନ୍ଦ୍ରିକ ହୋଇଗଲେ ସେ ଅନ୍ୟକଥା ଭାବି ପାରେନା। ଏପରି କଳା କଳାକାର ଠାରୁ ବେଶୀ ବିପଦ୍ ଜନକ।

ଆମ ଶରତ ନାରାୟଣ ବେହେରା ଭିତରେ ପରିଚ୍ଛନ୍ନ କଳା ପିପାସା ରହିଛି। ସେଇ ପରିଚ୍ଛନ୍ନ କଳାର ଆଭାମୟ ବଳୟକୁ ମୁଁ ସଦା ସ୍ୱାଗତ କରେ।



# ୧୦୦. ପନ୍‌ହାକୁ ପ୍ରହାର

ମାଛି ଅନ୍ଧାର ବେଳକୁ ଗାଈଦୁହାଁ କେମିତି ଉଠି ପଡ଼ିଲା କେଜାଣି ମୋ ବଡ଼ ନାତିଟାବି ଗୋହାଳକୁ ମୋର ପଛେ ପଛେ ଗଲା। ବାଛୁରୀ ଫିଟେଇ ଦେଲି। ଅତର୍କ୍କା ଦୌଡ଼ିଲା ମା' ପାଖକୁ। ପନ୍‌ହାକୁ ଛେଚିଲା। ଚିର ଟାଣି ପୀଅନ୍ତା କଣ, ମାଇଲା ମୁହଁକୁ ଯୋର୍‌ରେ। ନାତି ପଚାରିଲା, "ବାଛୁରୀ କିଆଁ ମୁହଁ ଠେସୁଛି ଇମିତି?" ମୁଁ କହିଲି, "ସେ କ୍ଷୀର ମାଗୁଛି। ଦବାକୁ ଦାବି କରୁଛି। ପାଇବାର ହକ୍ ଜାହିର୍ କରୁଛି।" ଆମେ ଇମିତି କିଛି ଦାବି କଲେ ତମେ କିଆଁ ଦବାକୁ ଅମଙ୍ଗ ହୁଅ ଯେ!'

ନାତିର ଏକଥାରେ କଣଥିଲା କେଜାଣି ମୋ' ଦୁଇଗାଲରେ ଯେମିତି ଥାପଡ଼ ଥାପଡ଼ ପ୍ରହାର କରୁଛି, ବାଛୁରୀ ମାଆଥନକୁ ପ୍ରହାର କଲାପରି। ମୋ' ନାତିର ଏକଥା ମୋ' ଭିତରେ ନୂଆ ମୋଡ଼ ଆଣିଲା। ମୋ' ଭିତରୁ ମୋତେ କାଢ଼ି ଆଣିଲା। ବୟସକୁ ପୁଞ୍ଜିକରି ବଞ୍ଚୁଥିବା ମୋ'ଭଳି ଗୋଟାଏ ଅଜାକୁ ଶିଖେଇଲା ଯେ ପିଲାଙ୍କ କଅଁଳ ଉଚ୍ଚାରଣକୁ ବୁଝିବାକୁ ହେବ। ଆମେ ବୟସର ବୋଝରେ ନଇଁନଇଁ ଭାବୁ ଆମର ଅନ୍ୟଠୁ କିଛି ଶିଖିବାର ନାହିଁ। ଆମେ ହଜାର ଲୋକଙ୍କୁ ଶିଖଉଛୁ। ଆମେ ପୁଣି ଶିଖିବୁ କହାଠୁ? ମୋ' ନାତିଠୁଁ ମୁଁ ସେଦିନ ଶିଖିଲି ଯେ ସେମାନଙ୍କ ଦାବିର ଜବାବ୍ ଦେବାକୁ ହେବ। ସେମାନଙ୍କ ପ୍ରହାର ପାଇଁ ପୂର୍ତ୍ତିର ପନ୍‌ହାକୁ ପ୍ରସାରିତ କରିବାକୁ ହେବ।

ବାଛୁରୀ ଯେମିତି ଗାଈର ପନ୍‌ହାରେ ମୁହଁମାରି ଦାବିକରେ ଆମ ପିଲାଏ ସେମିତି ଦାବି କରିବେ। ଗାଈ ଯେପରି କ୍ଷୀର ଅଜାଡ଼ି ଦିଏ, ଶିକ୍ଷକ ଠିକ୍ ସେପରି ଆପଣାକୁ ଉଜାଡ଼ି ପାରିଲେ ହେଲା। ପାଠ ଦିଆ ନିଆର ପରିବେଶଟି ଠିକ୍ ତିଆରି ପାରିଲେ ଶିଖିବା ଶିଖେଇବା ସହଜ ହୁଏ। ଶିକ୍ଷକ ବାଘ ଭଳି ଗରଜୁଥିଲେ ପିଲାଙ୍କଠୁଁ କିଛି ଆଣି ପାରନ୍ତି ନାହିଁ। ଓଲଟା ପିଲାଙ୍କଠୁଁ ଠେଳା ଖାଆନ୍ତି।

ମୁଁ ଯେତେବେଳେ ନୂଆ କିଛି ପଢୁଥିଲି ମୋ' ପିଲାଙ୍କ ପାଖକୁ ସେତକ ନଉଥିଲି।

ମୁଁ କଦାପି ମୋର ଶ୍ରେଣୀ କୋଠରୀକୁ ଖାଲି ହାତରେ ଓ ଖାଲି ମନରେ ଯାଉନଥିଲି। ପିଲାଏ ଶାସିତ ହେବାର ଚିଜ ନୁହନ୍ତି। ଶିକ୍ଷକମାନଙ୍କୁ ଶାସନ କରିବାର ମୌରସୀ ପଟ୍ଟା କେହି ଦେଇନାହାନ୍ତି। ସଉଦା ବିକିବା ଭଳି ଶିକ୍ଷକ ଦୋକାନୀ ନୁହେଁ। ଯେକି ପାଠ ବିକିବେ। ମୁଁ ମୋ ଜୀବନରେ ପାଠ ବିକିନାହିଁ। ଆଗେ ଶିଖି ପରେ ଶିଖେଇଛି। ଏଣୁ ଅବସର ନେବା ପରେ ବି ମୋର ପାଠ ପଢ଼ିବା ଓ ପଢ଼େଇବା ଚାଲିଛି। ଏଇ ଅନନ୍ତ ପ୍ରକୃତି ମୋର ଶେଣୀଗୃହ ଓ ସ୍ଥାବର ଜଙ୍ଗମ ସଭିଏଁ ମୋର ଗୁରୁ। ଅବଧୂତଙ୍କ ଚ଼ବିଶ ଗୁରୁପରି। ଏ ସଚ଼ରାଚ଼ର ସବୁ ମୋର ଚାଟ। ପାଠ ପାଇଁ ମୋତେ ଅନେଇ ବସିଛନ୍ତି ଯେମିତି।

ଶିଶୁଟିଏ ମା' ପେଟରୁ ବହାରିବା ପରେ ଜାଗାଟିଏ ଲୋଡ଼େ। ଭୂଇଁଟିଏ ମାଗେ। ତା'ପରେ ମା'ଠୁ ଭାଷା ଶିଖେ। ସେଇ ଭାଷା ତା'ର ମାତୃଭାଷା ହୋଇଯାଏ। ସେ ଜନମିଥିବା କୁଳ ଯେଉଁ ଧାରଣାରେ ଥାଏ ସେଇ ଧାରଣାଟି ଶିଶୁର ଧରମ ହୋଇଯାଏ। ସେଇ ଶିଶୁ ଶେଷରେ ପରମ୍ପରାରୁ ସଂଗୃହିତ ଓ କାଳର କଷଟିରେ ପରିଚ୍ଛନ୍ନ ସଂସ୍କୃତିଟିଏ ପାଏ। ଏଇପରିଭାବେ ଭୂମି, ଭାଷା, ଧର୍ମ ଓ ସଂସ୍କୃତି ତା'ର ଜନ୍ମଗତ ମୌରସୀ ଅଧିକାରରେ ପରିଣତ ହୋଇଯାଏ।

ଶିଶୁର ଏ ଅଧିକାର ଭିତରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ସର୍ବୋପରି ତା'ର ପୂର୍ଣ୍ଣାଙ୍ଗ ବିକାଶ ପ୍ରସଙ୍ଗ ବଳେ ବଳେ ଆସିଯାଏ। ଯଉଠି ଶିଶୁ କେଇଗୋଟା କଉଡ଼ିରେ ପଣ୍ୟପରି ବିକାକିଣା ହୁଏ ସେଠି ତା'ର ବିକାଶ କଥା ଭାବିବା ବେଳକୁ କାହିଁକି କେଜାଣି ମୋ' ରକତରେ ପ୍ରତିବାଦର ନାଗରା ବାଜେ। ହାଡ଼ରେ ନିଆଁ ଜଳେ। ଆମେ ଆଦିମ କାଳରୁ ଆମ ଶିଶୁ ମାନଙ୍କୁ ଅବହେଳା ଭିତରେ ଠେଲି ଦବାର ଅଭ୍ୟାସ କରିଛୁ। ଶୁଆ ଘୋଷାକୁ ପାଠ ଭାବି ବହି ଘୋଷାରେ ଲଗେଇଛୁ। ଆମ ଉଦ୍ଦେଶ୍ୟ ମୂଳରୁ ବିଡ଼ମ୍ବିତ ହଉଥିବାରୁ ସମ୍ଭାବନା ସମ୍ଭବ ହଉନାହିଁ। ଗୋହାଳରେ ଗୋରୁ ବାନ୍ଧିବା ପରି ଶିଶୁମାନଙ୍କୁ ଜବରଦସ୍ତ ବାନ୍ଧିରଖି ଆମେ ତାଙ୍କ ଶୈଶବକୁ ଚୂରମାର କରୁଛୁ। ଶିଶୁ ଅଶିକ୍ଷାରେ ବଢ଼ି ପ୍ରୌଢ଼ ଓ ପ୍ରୌଢ଼ ଶିକ୍ଷା ଶେଷ ନକରି ଶେଷ ହୋଇଯାଏ। ମା' ପେଟରୁ ବାହାରି ମରିବାଯାଏ ଯେଉଁ ଅନୁକ୍ରମଟି ଅଛି, ଶିଶୁର ଶିକ୍ଷା ତା'ର ପହିଲି ପାହାଚ଼। ତା' ପଛକୁ ଆଉସବୁ। ଶିଶୁଙ୍କ ସର୍ବବିଧ ବିକାଶ ପାଇଁ ଆମର ସବୁ ମାର୍ଗଦର୍ଶନ କାର୍ତ୍ତିକର ଆଇଁଷ ପରି ଅପାଂକ୍ତେୟ ହୋଇ ରହିଛି।

ଶିଶୁକୁ ଶିକ୍ଷା ନଦେଇ ଆଉକିଛି ଦେଲେ ଭୋକିଲାକୁ ଅତର ଦେବାପରି। ଆମ ପିଲାଏ କଣ ସଦା ଗାଉଥିବେ?

''ମୋତେ ଏତିକି ଶିଖାଅ ସାଇଁହେ
ମୋର ଧନଜନ ଲୋଡ଼ା ନାହିଁହେ।''



# ୧୦୧. ଅବସର ନେଇଥିବା ମଣିଷଟିଏ

ମୁଁ ଘରେ ହାଜର ହେବା ବେଳକୁ ଆମ ସାନ୍ତାଣୀ ଦୁଆର ମୁହଁରେ ଉଭା। ସେଂଚୁରି ଛଡି, ଛତା ଆଉ ପୁଡିଆଟିଏ ତାଙ୍କ ହାତକୁ ବଢାଇ ଦଉ ଦଉ ହସିଦେଲି। '' ହସିଲାବେଳେ ତ ହସିଲ ନାହିଁ, ଆଉ ଏ ଖସିବା ବଅସରେ ହସି କି ଲାଭ?'' ସାନ୍ତାଣୀ କହିଲେ। ଦେଖିଲି ଆମ ସାନ୍ତାଣୀଙ୍କ ମୁହଁରେ ହାକିମିଆଁ ଗାମ୍ଭୀର୍ଯ୍ୟ। ଏମିତିଆ ମୁଡରେ ଶାଢି ଗହଣାର ଫୁସୁଲା ଫୁସୁଲି ଚଳେ ନାହିଁ। ଚୁପ୍ ଚାପ୍ ଭିତରକୁ ପଶିଗଲି। ପଛେ ପଛେ ସିଏ। ଦେଖିଲ, ଦେଖିଲ ପୁଡିଆଟିରେ କ'ଣ ଅଛି ? କ'ଣ ଆଉ ଥିବ? ସଦା ସର୍ବଦା ଯାହା ଥାଏ। ଶୃଙ୍ଖଳା ମାନପତ୍ର, ଗରିବି ଗାମୁଛା। ଶାଢି ଖଣ୍ଡେ ଅଧେ ଥବ ନା !! ସେ ଶହେକୁ ଶହେ ଫଣ ଫଣେଇ ଉଠିଲେ, '' ହଇହେ, ରିଟାୟାର କଲ ତମେ, ଆଉ ଶାଢି ପାଇବି ମୁଁ ? ଫୁଲ ଝାଉଁଳିବ, ପତ୍ର ପାଇବ ପାଣି।' ଅବସର ଖାଲି ମୁଁ ନେଲି, ତମେ ବି ନବ ନା? ଏବେ ପୁଅ ବୋହୂ ମାନେ ଘର ସମ୍ଭାଳିବେ। ଆମେ ଦିହେଁ ମଉଜ କରିବା। ସିନେମା ଯିବା, 'ଲଡକୀ ନେ ଆଁଖିମାରା' ଗୀତରେ ମସଗୁଲ ନହେବା କିଆଁ ?

ବଅସର ଶେଷ ପାଦରେ ଠିଆ ହୋଇ କନ କନ ହଉଥିବା ଆମ ସାନ୍ତାଣୀ ଭଲକରି ପାନେ ଶୁଣାଇଲେ ମୋତେ। ''ହଇହେ, ବଅସବେଳେ ତ ତରଳି ଜାଣିଲ ନାହି, ଏବେ ଗଜରାରୁ ଫୁଲ ଝାଉଁଳିବା ବେଳକୁ କି ସରାଗ ମେଣ୍ଟିବ ଯେ! ପଦ ପଦବୀରେ ଥିବା ବେଳେ ଅସୁରମାନେ ବି ଫକୀର ପ୍ରାୟ ଦିଶନ୍ତି। ପବନକୁ ନାତ ମାରିବାର ସଉକ ଥାଏ। ମୁଁ ତମକୁ କ'ଣ ଚିହ୍ନିନି କି ଜାଣିନି। ବାହା ହବାର ଚାଳିଶ ବର୍ଷ ହୋଇଗଲା ଫୁରସତ ପାଇ କେବେ ବି ଅନ୍ତତଃ ସାଇକଲ ପଛପଟେ ବସେଇ ନେଇ ନାହଁ, ଆଉ ଏବେ? ରାମ୍ ବୋଲ। ତମେ ସିନା କାମକୁ ଛାଡିଲ। କାମ ତମକୁ ଛାଡିଲେତ। ସତେ ତ ଗପଟି ମନେ ପଡି–ଯାଉଛି–ଶିରାବଣର ଭରା ନଈଟିଏ। ଟମାଟମ୍। ଦି'କୂଳ ଖାଇ ଦଉଡୁଛି। ଦି'ଜଣ ଅନେଇଛନ୍ତି। ବାପପୁଅ ହେବେ ନା କ'ଣ। କଅଣଟାଏ ଭାସି ଆଉଚି। ବଢିଆ କମ୍ବଳଟାଏତ! ଯୁଆନ ପୁଅ ! ରକତରେ ବଅସ ଟକ୍‌ମକ୍। ଡେଇଁ ପଡିଲା ନଈକୁ। ସୁଅ କାଟି କାଟି ହାବୁଡିଲା କମ୍ବଳକୁ। ହେଲେ ପୁଅ ତଳକୁ ତଳକୁ ଖସୁଛି। ଏଣେ ବାପ ଛାନିଆଁ। ପାଟିକଲା, ''ପୁଅରେ, କମ୍ବଳ ଛାଡି ଦେ, ପଳେଇ ଆ।'' ପୁଅ ଜୀବନ ବିକଳରେ ପାଟିକଲା,'' ମୁଁ କମ୍ବଳକୁ ଛାଡି ଦେଇଛି, ବାପା, ହେଲେ କମ୍ବଳ ମୋତେ ଛାଡୁନି।'' ସେଇଟା ତ କମ୍ବଳ ନୁହେଁ, ଭାଲୁଟାଏ। ଭାସି ଯାଉଥିଲା। ଆଶ୍ରା ପାଇଛି। ସିମିତି ମୁଁ ଚାକିରିକୁ ଛାଡିଲି ସିନା। ପାଇଟି ମୋତେ ଧରିଛି ଯେ ଧରିଛି।

ରୋଜ ରୋଜ ହଲ ହଲ ତତଲା ଭାତ, ଡାଲି ପାଣି ଆଉ ଆଳୁଚକଟା ଖାଇ ଖାଇ

ବୁଢ଼ି ଜାନ। [illegible], ଔଷଧ ଭୋଜନ, କୁକୁର ଧାଉଡ଼ିର, ତାଙ୍କିରି କାନ ସରିଗଲା। ଏବେ ଆଜ୍ଞାମାନେ [illegible] କରିବା କଥା। 'ଆରାମ ହାରାମ ହାଏ।' ଜବାହାରିଆ ଡାକଟା ଭିତରୁ [illegible] ମାରୁଛି। ରାତି ଘଡିଏ ଥିବ। ଜାଗୁଲୁ ଜାଗୁଲୁ ଅଂଧାର ଫରଚା ହୋଇ ନଥିବ। ବଡ଼ ବୋହୂ, ବେଟେଇ ଦବ, ତାପା, ଗାଈ ଦୁହିଁବେ ପରା।" ସତେତ ବେଳ ରତ ରତ ହେଲେ ମାଛିଏ ଖାଇଯିବେଯେ' ଗାଈଙ୍କ ଦୁହାଁ ପରେ ନିତ୍ୟକର୍ମ। ଆଳକୁଚି ମାଳକୁଚି କେତେକାମ। ଖବର କାଗଜରେ ଆଖି ପକେଇବାକୁ ହବ। ଚିଠି ପତ୍ରର ଉତ୍ତର ନ ଦେଲେ ନ ଚଳେ। ନାତି ନାତୁଣୀମାନେ ସ୍କୁଲଯିବେ। ପୁଅମାନେ ଯିବେ ଚାକିରିକୁ। ସହଜ ସହଜ ରଂଧାବଡ଼ା ଦରକାର। ଉପରୁ ଆମ ସାନ୍ତାଣୀଙ୍କ ପୂଜା ଘଣ୍ଟି ଶୁଭିବା ବେଳକୁ ଜଖାରୁ ଫୁଲ, କେଇଟା, ଜହ୍ନି, କାକୁଡ଼ି, କୁନ୍ଦୁରୁ, କାଂକଡ଼, କଇଲା, ପୁଡୁଲାରୁ କିଛି ତୋଳିଆଣି ଥୋଇଦେବି। ଯଦି ବତର ପଡିଛି ପାନଛତୁ ଯାହାକୁ ଯେତେ। ଆମ ସାନ୍ତାଣୀ ହୁକୁମ କରିବା ପୂର୍ବରୁ ମୁଁ ବୋହୂ ମାନଙ୍କୁ ଶୁଣାଇ ଶୁଣାଇ କହେଁ, " ଆଗୋ ମା' ଯେଉଁଟା ସହଜ ହବ, ଆଗେ କର। ଚୂଲିରେ ଭାତ ବସାଅ, ଗୋବର ଗେସରେ ଡାଲି। ସନ୍ତୁଳା ଫନ୍ତୁଳା କିଛି କର। ପାରୁଛ ଯଦି ଚଟେ ଦି ଚଟୁ ଭଜା ଭାଜ। ଶାଗ କେରାକ ଖରଡି ଦିଅ। ବାଡ଼ିରୁ ଲେମ୍ବୁ ଅଣା ହୋଇଛି କି ନା, ଦେଖ। ବେଳ ଯଦି ପାଇବ ଆମ ଖାଇବା ବେଳକୁ ମହି ଆମ୍ବିଳ କରିବ। ମନେରଖ ଖଣ୍ଡେ ଖଣ୍ଡେ ମାଖନ ଆଉ ଭେଣ୍ଡି ପଡିବ। କରଡି ପକେଇବାକୁ ଭୁଲିବନି। ମୃଦୁ ନିଆଁରେ ଏମିତି ଫୁଟାଇଦବ ଯେ ମହିର ମହକ ଉଡିଯିବ। ଧାରେ ପିଠଉ ଦବ। ଯେମିତି ଢନଢନ ହବନି। ମେଡିସିଂହା ପତର ପୁଂଜାଏ ଆଉ ଶୁଖା ଲଂକା କେଇଟା ଖର୍ ପରଷା କରିବ। ଯେମିତି ଛିଙ୍କ ଆସିଯିବ।

ଆମର ସାନ୍ତାଣୀ ମଣୋହିଁ ଖବର ବୁଝିବା ବେଳକୁ ମୋର ବାଡି ବଗିଚାର କାମ ଶେଷ। ସାନ୍ତାଣୀଙ୍କ ଦିବ୍ୟ ହାତରୁ ଚେନାଏଁ ଗୁଡ଼ ସହ ତୁଳସୀପତ୍ରରୁ ଫାଳେ ପାଟିରେ ପକେଇ ଠାକୁରଙ୍କୁ ସୁମରଣା କରେଁ। ଘର ତ ଘେରି ରହିଛି, ବେଳ କାହିଁ ସେ ଚିନ୍ତାମଣିଙ୍କି ଚିନ୍ତିବି?

ଆମ ସାନ୍ତାଣୀ କହନ୍ତି, ତମେ ଯେଉଁମାନେ ବେଶୀ ପଣ୍ଡିତ, ଥାକ ଥାକ ବହି ଭିତରେ ଗୋଟାପଣେ ବୁଡିରୁହ, ସତରେ ତମେ ସବୁ ବେଶୀ ଦୁଃଖୀ, ବେଶୀ ଏକୁଟିଆ। ମେରିଆ ବଳଦ ପରି ନିଜ ଚଉକଟି ଘୁରି ଘୁରି ହାଲିଆ। ଆମେ ତ ମୁରୁଖ। ତମକୁ ଠାକୁର ମଣୁ। ଆମ ଚାରିପଟେ ଏକ ଘୋ, ଘୋ, ସଂସାର। ଦୁଃଖ ଆଇଲେ ଭାଙ୍ଗି ପଡୁନା। ନିଜ ଉପରେ ନିଜେ ଆଉଜି ପଡୁ। ପୁଅ ଝିଅ ନାତି ନାତୁଣୀ ମହୁମାଛି ପରି ଗୁଣୁ ଗୁଣୁ ହବାର ସୁଖ କହ କାହାକୁ ମିଳେ ? ଜୀବନ ସାରା ହେଡମାଷ୍ଟ୍ରିଆ ଆଟୋପରେ ବୁଡ଼ିରହିଲ ସିନା, ସୁଖ କ'ଣ ଚାଖିଲ ନାହିଁ।

ଆମ ସାନ୍ତାଣୀଙ୍କ କଥାଗୁଡ଼ା ବେଳେ ବେଳେ ତାମଣ ଫୋଡିଲାପରି ଲାଗେ ହେଲେ

ତାଙ୍କ କଥାରେ ମଞ୍ଜ ଥାଏ। ସେ କହନ୍ତି ତମ ରାଷ୍ଟ୍ରପତି ତମମାନଙ୍କୁ ପଦ୍ମବିଭୂଷଣ କରିପାରନ୍ତି। ଭଲ ଲୋକ କରିପାରିବେନି। ଦିଅଁଙ୍କ ଦୟା ହେଲେ ଯାଇ ଲୋକ ଭଲ ହୁଅନ୍ତି। ତାଣ୍ଡବ ନାଚି ଯେତେ ହଇଚଇ କଲେବି କୈଳାସରେ ପତ୍ରଟିଏ ହଲିବନି। ଲମ୍ପଟମାନେ ମାଇକିନାକୁ ମା' ବୋଲି କହୁଥିଲେ ବି ଅଭିଷ୍ଟ ଦେହକୁ ହିଁ ଝୁରନ୍ତି। ଧଳା ବାଳକୁ ରମଣୀରତନମାନେ କଳାବାଳ ଭିତରେ ଲୁଚେଇ ରଖିବାଭଳି ତମେମାନେ ତମର ଅସନା ଅନ୍ତରକୁ ବେଶୀ ଲୁଚାଇ ରଖ। ଏମିତି କଥା କଟାକଟିରେ ସକାଳବେଳ କଟିଯାଏ। ଝିଅ ଚିଠି ଲେଖିଛି। " ବାପା , ଏବେ ତ ରିଟାୟର କଲ, ଆମଘରେ ଆସି ରୁହ। ଖାଲି ପୁଅମାନଙ୍କ କଥା ବୁଝିବ? ମୁଁ କଣ ତମର କେହି ନୁହେଁ ? ଅଭିମାନରେ ଖୁନ୍ଦିହୋଇଛି ତା' ଚିଠି। ବଡ଼ପୁଅ କହୁଛି ଆମେତ ଚାକିରି ବାକିରି କଲୁଣି। ତମେ ଆଉ କଉ ଧନ୍ଦାକୁ ଯିବାକଥା ନୁହଁ। ଘରକଥା, ବିଲବାଡ଼ି କଥା ଆମେ ବୁଝିବୁ। ତମେ ନାତି ନାତୁଣୀଙ୍କ ମେଳରେ ମଉଜ କର। ସାନପୁଅ, ବୋହୂ ମାନଙ୍କୁ ଶୁଣେଇ ଶୁଣେଇ କହୁଛି। ଦେଖ ବାପାଙ୍କର ଯେପରି କିଛି ଅସୁବିଧା ନହୁଏ। ମଝିଆଁ ପୁଅ କହୁଛି। ମାମୁଲି ଚାକିରି କରି ଲୋକେ ଏଠି ସେଠି ଫ୍ଲାଟ୍ କରୁଛନ୍ତି। ବାପା ଚାଳିଶ ବର୍ଷ ଚାକିରି କଲେ ସିନା ସହରରେ ଡିହ ଖଣ୍ଡେ ନେଇ ପାରିଲେନି। ପୂରୁଖା ଲୋକଙ୍କର ଜମିବାଡି ନଥିଲେ ଆମେ ତ ଉପାସରେ ରହିଥାନ୍ତେ। ଚୂଲି ଭିତରକୁ ଲିଭିଲା କାଠ କେଞ୍ଚୁଲାପରି ଆମ ସାନ୍ତାଣୀ ମଝି ମଝିରେ କେଞ୍ଚୁଥାନ୍ତି। ଆଜି କାଲିକାର ପୁଅବୋହୂତ। ହାତଛଡ଼ା କଲେ ସବୁଗଲା। ଦେଖୁନା ସାହୁଘର ଭାଉଜକୁ ହାତରୁ ପଣତରୁ ସବୁ ପୁଅ ପଢ଼ାରେ ସାରିଲା। ଏବେ ପୁଅବୋହୂ କୁଆଡ଼େ କୋଠା କଲେଣି। ମୁଠା ମୁଠା ଟଙ୍କା ରାଂଫୁଛନ୍ତି। ମା' ବିଚାରି ଏଣେ ଭିକ୍ଉଛି। ନିଘା କରିବାକୁ କିଏ ବା ଅଛି? ଯିଏ ଖାଇଲେବି ଠେଣ୍ଟ। ସାରା ଜୀବନ ଖୋଲା ହାତିଆ ହେଇତ ସାଇଲ। ଏବେ ଯା'କିଛି ପାଇବ, ପାଖରେ ରଖ। ବଳ ବଅସ କ'ଣ ସବୁଦିନ ଥିବ?

ଅବସର ନେବା ଆଗରୁ କେହି ଉଁ ଚୁଁ କରୁ ନ ଥିଲେ। କଣହେଲା କେଜାଣି ଅବସର ନେବାପରେ ସଭିଏଁ ପରମହଂସିଆ ପ୍ରବଚନ ଆରମ୍ଭ କଲେଣି। ପଞ୍ଜୁରିରୁ ସଦ୍ୟ ମୁକୁଳିଥିବା ମିଟୁଟିଏ ପରି ମୋର ମନ କାହିଁ କୁଆଡ଼େ ଉଡିଯିବାର ଖୁସିରେ ବିହ୍ୱଳ। ଅନୁଶାସନର କଠୋର ଶୃଙ୍ଖଳ, କର୍ତ୍ତବ୍ୟବୋଧର ନିତ୍ୟ ନୂତନ ଡାକ ମୋତେ ଉଠେଇ ବସେଇ ଦଉଥିଲା। ଯେଉଁ ମୂଲ୍ୟବୋଧକୁ ମୁଁ ଶ୍ରଦ୍ଧାକରେ ତାକୁ ଲାଉକରି ସଂସାର କରିବା ଏବେ କଷ୍ଟକର।

ଏବେ ବି ମନରେ ବଳ ଅଛି। ଲଗାତର ସାତୁଟା କ୍ଲାସ ନେବାର ଯୋସ୍ ଅଛି। ତଥାପି ମୋତେ ଘେରିରହିଥିବା ସଭିଏଁ କାହିଁକି କେଜାଣି ନଡ଼ବଡ଼ କରିଦଉଛନ୍ତି। ଚତୁର

ବିନୋଦରେ ବ୍ରଜନାଥ ବଡ଼ଜେନା ୧୬ ପ୍ରକାରର ପ୍ରୀତି କଥା କହିଛନ୍ତି । ତହିଁରୁ ଗୋଟିଏ କାର୍ଯ୍ୟଘେନା ପ୍ରୀତି । ସଭିଏଁ ପ୍ରୀତି କରୁଥିଲେ ମୋ' ଦରମାକୁ ମୋତେ ନୁହଁ । ସେତକ ଗଲା । ସେତକ ଗଲା । ମୋଠୁ ଖଡାପତ୍ର ନ ମିଳନ୍ତି । ମୋଠୁଁ କିଛି ନ ପାଇବାର ନିରାଶାକୁ ସଭିଏଁ ପାରାୟଣରେ ପରିଣତ କଲେଣି । କ୍ଷୀର ଦଉଥିବାଯାଏ ଲୋକେ ଗାଈକୁ ଦାନା ଦିଅନ୍ତି । କ୍ଷୀର ବନ୍ଦ ତ ଦାନା ବନ୍ଦ । ଦାନା ବନ୍ଦ କଲୁବୋଲି ନ କହି ରାସ୍ତା ଉପରକୁ ଘଉଡ଼ାଇ ଦେବାରରନାଆଁ କାର୍ଯ୍ୟଘେନା ପ୍ରୀତି ।

ଶରଧା ହେଲା ସବୁ ମୂଲ୍ୟବୋଧର ମଞ୍ଜି । ଜାତୀୟ ମହୋତ୍ସବମାନ ହୁଏ । ଆମ ପିଲାଏ ଜୋତା ମୋଜା ପିନ୍ଧି ଦାଣ୍ଡକୁ ଉତୁରି ପଡନ୍ତି । ଦେଶର ଛାତିଟା ଗରବରେ ଉଠେ ଆଉ ପଡ଼େ । ଆମେ ଭାବୁ ଆମ ଭୂଇଁକୁ ସତ୍ୟଯୁଗ ଆସିଗଲା । ସତ୍ୟଯୁଗ ଆସେ ନାହିଁ । ଆମେ ଯେଉଁ ପାଷାଣ୍ଡକୁ ସେଇ ପାଷାଣ୍ଡ ରହିଯାଉଁ । କଚ୍ଚା ଘର ପକ୍କା ହେଲେ, ଛଣରୁ ଟାଇଲ ବଦଳିଲେ, ଗରିବୀ ଗାରରୁ ଚାଖଣ୍ଡେ ଆଗକୁ ମାଡ଼ିଗଲେ ଶ୍ରଦ୍ଧା ଆସେ ନାହିଁ । ପ୍ରୀତି ଆସେ ନାହିଁ । ଖାସ୍ ଜାଗାରୁ ହିଁ ଶ୍ରଦ୍ଧାର କବାଟ୍ ଫିଟେ । ସେଇ ଶ୍ରଦ୍ଧାକୁ ପୁଂଜି କରି ଏ ଯୁଗରେ ବଞ୍ଚିବା କଷ୍ଟକର, ବେଦନାଦାୟକ୍ ।

ପଢିବା ଏ ବାପୁଡ଼ାର ଏକ ସଉକ । ଲେଖାଲେଖି ଅନ୍ୟ ଏକ ସଉକ । ଚାଷ ସଉକଟି ବୁନିଆଦି । ବୁଡ଼ିବି ଯଦି ଏଇ ତିନି ସଉକରେ ଟପ୍ । ସଂପୂର୍ଣ୍ଣ ମଣୋହି ସରିବାବେଳକୁ ବାର ଟପିଯାଇଥାଏ । କୋଉ ଚାକିରିକୁ ଯିବାର ଅଛି ଯେ ନଅଟାରୁ ଖାଇନେବି । ଛ' ତିଉଣ ନ' ଭଜା ନ ହେଲେ ନାହିଁ ର' ଠ' କରି ଯାହା । ଯୁଟିଲା ଚଳେଇଦେବା କଥା । ଖରମରା ଘିଅ ଜରଜର ଭାତ, ପାଟ ଦହି, ତାମ୍ବୁଳ ସେବନକୁ ଯୋଗ କାହିଁ? ହାତରେ ମାପି ଚାଖଣ୍ଡେ ଚାଲିବାର ଗରୀୟସୀ ଭାବରେ ଲଲେଇ ବିଲେଇ ପରି ଗୋଡ଼ ଚଉକଟି ଘୁରୁଘୁରୁ ଘୁରୁଘୁରୁ ହଉଥିବା ଆମ ସାନ୍ତାଣୀ ଯେତେ ଯା' କହନ୍ତି ତା'ର ସାର ମର୍ମ ହେଲା, '' ଏକି କଲ ଘରଖଣ୍ଡି ମୋର! ଭୋ' ଈଶ୍ୱର, ଭୋ' ପାରବତୀ ଧନପାଇଁ ଥନ ମୋର ହେଉ କ୍ଷୀରବତୀ । କହି କହିତ ଲଲୁକା ଲାଇନ୍ ଲଗେଇଲି, ଏବେ ପଞ୍ଝାଏ ନାତି ନାତୁଣୀଙ୍କ ମେଳରେ ଭୋକନି, ଶୋଷନିକୁ ରାଇ ତ୍ରାହି ତ୍ରାହି ଶୁଣିବ କିଏ ? ଅଣ୍ଟାକ ପାଣି ତଣ୍ଟିକୁ ହେବା ବେଳକୁ ମେଘ ଦୁଲୁକୁଛି କହି ଲାଭ କ'ଣ? ଏତକ ଆମ ସାନ୍ତାଣୀ ଶୁଣନ୍ତୁ ବୋଲି କହିବା ବେଳକୁ ମୋ ସାନ ନାତି ମୋ ଗୀତ ଖାତା ଉପରେ ଥେଇ ଥେଇ ଦି'ଥର ନାଚି ଦେଲାଣି । ତାକୁ କୋଳେଇବି ବୋଲି ହାତ ପତାଇବା ବେଳକୁ ସେ ବୁଟ ବୁଟ ହୁ । ସୁଖ ଆଉ କଉଠି ଥାଏ କି? ଏଇ ତ ସୁଖ! ସଞ୍ଜ ବେଳକୁ ବାବୁ ମାନଙ୍କ ପରି ହାୱା ଖାଇଯିବା କଥା । ମୋ' ବାଡିର ନିମ ଗଛ ତଳର ଛନ ଛନିଆ ଘାସ ହାତ ଠାରି ଡାକେ । ଛାଇ ଲେଉଟାଣି ବେଳର ଲମ୍ବିଲା ଛାଇ ବାଟ ଓଗାଳେ । ବର୍ଷାର ଦୁର୍ବାର ହାଉ ହାଉ ଧମକାଏ । ଯିବୁ କୁଆଡ଼େ? ଛୁଆକୁ ମା' ପେଟେଇଲାପରି ସଞ୍ଜ ନଇ ଆସେ । ଅନ୍ଧାରକୁ

ବାଜୁତ କାନରୁ ମୋଠ ଭାଜି ଦରା। ମୋ' ଭଜନ ଭିତରେ ବୁଢୀ ଅସୁରିଣୀ ଏବେବି ଖାଇବି ଖାଇବି ହୁଏ। କ୍ଷମତାଚ୍ୟୁତ ନେତାଙ୍କ ପରି ମନଟା ରାଉ ରାଉ ହୁଏ। ନାଟ୍, ଚିକେନ୍ ଅନାରକଲି ସହିତ ଗୋଟାଏ ପେଗ୍‌ର ସଉଜ ତ ପ୍ରଥମରୁ ନାହିଁ। ସଜଡ଼ା ମେହଫିଲ ଫାଟି ପଡୁଥିବ ଆଉ କଉଠି। ମୋର ମନ କିନ୍ତୁ ଘର ମୁହାଁ ହୁଏ। ରାତି ଆଇଲେ ମାଙ୍କ କଥା ବେଶି ମନେ ପଡ଼େ। ବୁଢୀ ଗାଈ ସମ ଆପଣାର ଶେଷ ଶାବକକୁ ଜିଭ ଲମ୍ବେଇ ଚାଟିବାର ମ୍ଳାନ ଅଭ୍ୟାସରେ ସେ ଯେପରି ମତେ କହୁଛନ୍ତି, "ଖାଇଦେରେ ଧନ, କିଛି ନାହିଁ ଆଜି। ଅଛି ପୋକ୍ଷେ ପାଣିଚିଆ ଲାଲ ଚାହା ଆଉ ମୁଠେ ଫୁକୁଲା ଲିଆ।" ଛେନିର ମାପଚୁପା ଲାଞ୍ଜଭଳି ଥିବା ଆଉ ନଥିବାର ଆମ ସଂସାର ହାତ ଗଣତା ଜୀବନ। ମା'ଆଲୋ ବାପାଲୋ କହି ଲୁହ ସମ୍ଭାଳିବାର ବିତଳିତ ଘରକରା ଉଦାସ ମେଘର ଆଢୁଆଳରେ ମ୍ଳାନ ସୂର୍ଯ୍ୟସମ ମା'ଙ୍କ ମଥାର ସିନ୍ଦୂର ଦାଉ ଦାଉ ଦିଶୁଥାଏ। ମା' ସଦା କହୁଥିଲେ, "ପ୍ରତିଯୋଗିତାରେ ପାଦ ବଢେଇଲେ ସବୁଠି କଚଡ଼ା ଖାଇବୁରେ, ଧନ। ଅନ୍ତରର ଖାଁ ଖାଁ ମହାଶୂନ୍ୟତାକୁ ଢାଙ୍କିବା ପାଇଁ ମିଛ ବାଘର ଖୋଳ ଘୋଡ଼େଇ କି ଲାଭରେ, ପୁଅ ? ମା ବୋଲି ତୋର ଭଲ ମନ୍ଦରେ ମୋତେ ସିନା ବାଧିବ, ଆନ କାହାକୁ ବାଧିବ ଭାବୁଛୁ?"

ଭାତ, ଡାଲି, ଲୁଣ, ଲଙ୍କା କଟା କଟା ପିଆଜ ଖୁଆଇ ରୋଜ୍ ରୋଜ୍ ହରିନେଲା ମତେ ମୋଠୁ ମୋ ସ୍ତ୍ରୀ, ସ୍ୱାମୀ ନାମକ ଏକ ଅପୂର୍ବ ସମ୍ପଦ। ଖେଳକୁଦରେ ବିତାଇଥିଲି ବଚପନ। ଶଗଡ଼ ଚକ ପରି କୌଣସି ଚକା ମୁହାଁର କଥା ଭାବି ଭାବି ପ୍ରତାରିଲି ଯଉବନକୁ। ଏବେ ଜୀବନର ଉପର ବେଳାରେ 'ଖଣ୍ଡିଯେ ଖଣ୍ଡି ମୋର ପଞ୍ଜରା କାଠି ଗଣିବାର ବେଳ। ମୁହାଁଣିଆ ନଈ ପରି ଏ ପ୍ରାଣ ବ୍ୟାକୁଳ ହେଲାଣି। ଚିତ୍ତରେ ଚିନ୍ତାମଣିକୁ ଚିହ୍ନିବାକୁ।

ଭୁଗୁଡ଼ା ଫୁଟିକାର ସମ ତମର ସେ ମେଘ ରଡ଼ା ଡାକରେ ମୁଁ କଉଠି ନିଜକୁ ନିଜେ ଫୁଟାଇ ଦେଲି ଯେ ଆଉ ପାଉନି, ସାଆନ୍ତେ !!!

